# ସାଧୁ ସାଧ୍ୱୀଙ୍କ ସଙ୍ଗେ
# ଆମର ଯାତ୍ରା



ଡଃ. ଫାଦେର୍ ଅଜୟ କୁମାର ସଭାସୁନ୍ଦର

# ସାଧୁ ସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା

# JOURNEYING WITH SAINTS

Imprimatur
**Archbishop John Barwa, SVD**
Cuttack-Bhubaneswar Archdiocese
Odisha, India



Published by :

**St. Vincent Pro-Cathedral**
Bhubaneswar -751 007
Odisha, India

**Price** : 160/-

# ମୋ କଲମରୁ

ପିଲାଦିନରୁ ଆଗ୍ରହ ଥିଲା ସାଧୁ ଓ ସାଧ୍ୱୀମାନଙ୍କ ଜୀବନୀ ଶୁଣିବା ପାଇଁ । ହାଇସ୍କୁଲ୍‌ରେ ଅଧ୍ୟୟନ କରୁଥିବା ସମୟରେ ଛାତ୍ରାବାସକୁ ଯଦି କେହି ଫାଦେର୍ କିମ୍ବା ବ୍ରଦେର ଆସନ୍ତି, ସେମାନଙ୍କୁ ସାଧୁ ସାଧ୍ୱୀମାନଙ୍କ ବିଷୟରେ କିଛି କହିବା ପାଇଁ ପଚାରୁଥିଲି । ଯାଜକ ହେବା ପରେ ଇଚ୍ଛା ହେଲା ସାଧୁସାଧ୍ୱୀମାନଙ୍କ ବିଷୟରେ ଅଧିକା ଜାଣିବା ପାଇଁ । ସେମାନଙ୍କ ଜୀବନୀ ପଢ଼ିବା ସମୟରେ ସ୍ଥାନର ନାମ ଏବଂ ବ୍ୟକ୍ତିଙ୍କ ନାମ ମଧ୍ୟରେ ସ୍ୱଷ୍ଟ ଧାରଣା ଆସୁ ନ ଥାଏ । ଉଚ୍ଚଶିକ୍ଷା ପ୍ରାପ୍ତ କରିବା ପାଇଁ ଯେତେବେଳେ ରୋମକୁ ଯିବାର ସୁଯୋଗ ମିଳିଲା ଆଗ୍ରହର ସହିତ ସେହି ସାଧୁ ସାଧ୍ୱୀମାନଙ୍କ ଜନ୍ମସ୍ଥାନ ପରିଦର୍ଶନ କରି ଆନନ୍ଦ ଅନୁଭବ କଲି । କେତେକ ସାଧୁ ଓ ସାଧ୍ୱୀମାନଙ୍କ ଶରୀର ବର୍ତ୍ତମାନ ପର୍ଯ୍ୟନ୍ତ ରଖାଯାଇଛି । ସେହି ସ୍ଥାନଗୁଡ଼ିକୁ ପରିଦର୍ଶନ କରି ସାଧୁସାଧ୍ୱୀମାନଙ୍କ ମଧ୍ୟସ୍ଥତାରେ ମୋର ଓଡ଼ିଶାର ବିଶ୍ୱାସୀମାନଙ୍କ ନିମନ୍ତେ ପ୍ରାର୍ଥନା କଲି । ସେହି ପବିତ୍ର ସ୍ଥାନଗୁଡ଼ିକ ଦେଖିଲା ପରେ ମୁଁ ନିଜକୁ ଧନ୍ୟ ମନେ କଲି ଏବଂ ପାଇଲି ମଧ୍ୟ ପ୍ରେରଣା । ସେହି ଦିନଠାରୁ ମନସ୍ଥ କଲି ମୋର ଆନନ୍ଦ, ଅନୁଭୂତି ଏବଂ ବିଶ୍ୱାସକୁ ଲେଖନୀ ମାଧ୍ୟମରେ ଓଡ଼ିଶାର ବିଶ୍ୱାସୀ ଭାଇ ଓ ଭଉଣୀମାନଙ୍କ ମଧ୍ୟରେ ପ୍ରକାଶ କରିବି ।

ସାଧୁ ଓ ସାଧ୍ୱୀମାନଙ୍କ ଜୀବନ ପଢ଼ିବା ପୂର୍ବରୁ ଆମକୁ ଜାଣିବା ଆବଶ୍ୟକ ସେମାନେ କିଏ ? ସେମାନେ ଆମ ପାଇଁ କ'ଣ କରିପାରନ୍ତି ? ଆମ୍ଭେ ସାଧୁ ସାଧ୍ୱୀମାନଙ୍କୁ ଭକ୍ତି ଓ ସମ୍ମାନ ଦେବା ଯୁକ୍ତିଯୁକ୍ତ କି ?

ସାଧୁ ଓ ସାଧ୍ୱୀମାନେ ଆଧ୍ୟାତ୍ମିକ ମାର୍ଗର ଜଣେ ଜଣେ ତାରକା ଅଟନ୍ତି । ସେମାନେ ମାନବ ପରିବାରର ସଭ୍ୟ ଅଟନ୍ତି । ସେମାନେ ବ୍ୟକ୍ତିଗତ ଭାବରେ ଏହି ସଂସାରର ଦୁଃଖ, ପରୀକ୍ଷା, ପ୍ରଲୋଭନ, ତାଡ଼ନା ଏବଂ ସଂଘର୍ଷମୟ ଜୀବନ ଦେଇ ଗତି କରିଛନ୍ତି । ଏଣୁ ସେମାନେ ଆମର ଅବସ୍ଥା ବୁଝିପାରିବେ ଏବଂ ଯେତେବେଳେ ଆମେ ତାଙ୍କ ସାହାଯ୍ୟ ଲୋଡ଼ିବା ସେମାନେ ଆମ ପାଇଁ ନିବେଦନ କରନ୍ତି । ସାଧୁ ଓ ସାଧ୍ୱୀମାନେ ଆମର ପ୍ରାର୍ଥନାକୁ ଈଶ୍ୱରଙ୍କ ସିଂହାସନ ସମ୍ମୁଖରେ ଉପସ୍ଥାପନ କରନ୍ତି (ପ୍ରକାଶନ ୮ :୩-୪) । ଆମ୍ଭେ ସାଧୁ ଓ ସାଧ୍ୱୀମାନଙ୍କୁ

ପୂଜା କରୁନାହୁଁ କିନ୍ତୁ ସେମାନଙ୍କୁ ଭକ୍ତି ଓ ସମ୍ମାନ ଦେଉ, କାରଣ ଲେଖାଅଛି, ଯେଉଁମାନେ ସମ୍ମାନ ପାଇବାର ଯୋଗ୍ୟ ସେମାନଙ୍କୁ ସମ୍ମାନ ଦିଅ (ରୋମୀୟ ୧୩:୭) । କେଉଁମାନଙ୍କୁ ସାଧୁ ବା ପବିତ୍ର ବ୍ୟକ୍ତି କୁହାଯାଏ ? ପ୍ରଥମ ମଣ୍ଡଳୀରେ 'ସାଧୁ' ଶବ୍ଦଟି ପ୍ରଥମେ ଖ୍ରୀଷ୍ଟିଆନମାନଙ୍କୁ ବୁଝାଯାଉଥିଲା । ସାଧୁ ପାଉଲ ତାଙ୍କ ଅଭିବାଦନରେ ପ୍ରଥମେ କରିନ୍ଥୀୟମାନଙ୍କୁ 'ସାଧୁ' ବୋଲି ସମ୍ବୋଧନ କରନ୍ତି । ପାଉଲ ସମ୍ବନ୍ଧରେ ଆନାନିୟାସ ପ୍ରଭୁଙ୍କୁ କହନ୍ତି, ପ୍ରଭୁ ମୁଁ ବହୁତ ଲୋକଙ୍କଠାରୁ ଏହି ଲୋକ ବିଷୟରେ ଶୁଣିଛି ଯେ, ସେ ଯେରୁସାଲେମ୍‌ରେ ଆପଣଙ୍କ ପବିତ୍ର ଲୋକମାନଙ୍କ ପ୍ରତି ବହୁତ ଅତ୍ୟାଚାର କରିଛନ୍ତି (ପ୍ରେରିତ ୯:୧୩) । ଏଠାରେ ଖ୍ରୀଷ୍ଟିଆନମାନଙ୍କୁ ପବିତ୍ର ଲୋକ ବା ସାଧୁ ବୋଲି ଉଲ୍ଲେଖ କରାଯାଇଛି । ପ୍ରଥମ ମଣ୍ଡଳୀରେ ବିଶ୍ୱାସ ପାଇଁ ଶହୀଦ ବ୍ୟକ୍ତିମାନଙ୍କୁ ସାଧୁ ବୋଲି କୁହାଯାଉଥିଲା । ଏହାପରେ ମରୁଭୂମିକୁ ଯାଇ ଯେଉଁମାନେ ସନ୍ନ୍ୟାସବ୍ରତ ଜୀବନଯାପନ କରୁଥିଲେ, ସେମାନଙ୍କୁ ମଧ୍ୟ ଏହି ଆଖ୍ୟା ଦିଆଯାଉଥିଲା ।

ପବିତ୍ର ବାକ୍ୟ ବାଇବେଲ୍‌ରେ ଲେଖାଅଛି, 'ଧାର୍ମିକମାନଙ୍କ ପ୍ରାର୍ଥନା ସେ ଶୁଣନ୍ତି' (ହିତୋପଦେଶ ୧୫:୨୯) । 'ଧାର୍ମିକ ସବୁଜପତ୍ର ପତ୍ର ପରି ପ୍ରଫୁଲ୍ଲିତ ହେବେ' (ହିତୋପଦେଶ ୧୧:୨୮) । 'ସଦାପ୍ରଭୁ ଧାର୍ମିକଙ୍କୁ ଧରି ରଖିବେ' (ଗୀତସଂହିତା ୩୭:୧୭) ।

ମଧ୍ୟଯୁଗର ପ୍ରଥମ ପର୍ଯ୍ୟାୟ ପର୍ଯ୍ୟନ୍ତ ସର୍ବ ସାଧାରଣଙ୍କ ମତ ତଥା ପୁଣ୍ୟପିତାଙ୍କ ଆଦେଶକ୍ରମେ ଜଣେ ବ୍ୟକ୍ତିଙ୍କୁ ସାଧୁଭାବେ ଗ୍ରହଣ କରାଯାଉଥିଲା । ୧୨୩୪ ମସିହାରେ ପୁଣ୍ୟପିତା ନବମ ଗ୍ରେଗରୀଙ୍କ (୧୨୨୭-୧୨୪୧ ଖ୍ରୀ.ଅ) ଦ୍ୱାରା ସାଧୁ ଘୋଷଣା ପ୍ରକ୍ରିୟାଟି ପୁଣ୍ୟ ପିତାଙ୍କ ଦାୟିତ୍ୱରେ ରଖାଗଲା, ଯାହା ଧର୍ମଗ୍ରନ୍ଥ ନିର୍ଦ୍ଦେଶିତ ଆଇନ୍ ବା ଆନୁଷ୍ଠାନିକ କ୍ରମିକ ତାଲିକାରେ ସର୍ବ ସାଧାରଣଙ୍କଠାରୁ ଭକ୍ତି ପାଇବା ଯୋଗ୍ୟ ବ୍ୟକ୍ତିମାନଙ୍କ ନାମ ଲେଖାଗଲା । ପୁଣ୍ୟପିତାଙ୍କ ଦ୍ୱାରା 'ସାଧୁ' ଘୋଷିତ ହେବା ପ୍ରକ୍ରିୟାରେ ଚାରୋଟି ପର୍ଯ୍ୟାୟ ଅଛି । ପ୍ରଥମ : Servant of God (ପ୍ରଭୁଙ୍କ ସେବକ), ଦ୍ୱିତୀୟ : Venerable (ସମ୍ମାନସ୍ପଦ), ତୃତୀୟ Beatification (ଧନ୍ୟ ଘୋଷଣା), ଚତୁର୍ଥ : Cannonization (ସାଧୁ ଘୋଷଣା) ।

ଏହିପରି ଭାବେ କାଥଲିକ୍ ମଣ୍ଡଳୀରେ ସାଧୁ ଓ ସାଧ୍ୱୀମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଅଟେ । ସେମାନଙ୍କ ତ୍ୟାଗ, ପ୍ରେମ, ନମ୍ରତା ଓ ପ୍ରାର୍ଥନାମୟ ଜୀବନ ଆମ ସମସ୍ତଙ୍କୁ ଉତ୍ସାହ ଦେବା ସଙ୍ଗେ ସଙ୍ଗେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଯିଶୁଙ୍କୁ ଅଧିକ ପ୍ରେମ କରିବା ପାଇଁ ଆମକୁ ସାହାଯ୍ୟ କରେ ।

ସାଧୁସାଧ୍ୱୀମାନଙ୍କ ଜୀବନୀ ଜାଣିବା ପାଇଁ ଛୋଟ ଦିନରୁ ମୋର ଯଥେଷ୍ଟ ଆଗ୍ରହ ଥିଲା । ୨୦୦୫ ରୁ ୨୦୦୯ ମସିହା ପର୍ଯ୍ୟନ୍ତ ରୋମରେ ଅଧ୍ୟୟନ କରିବା ସମୟରେ ବିଭିନ୍ନ ସାଧୁସାଧ୍ୱୀମାନଙ୍କ ଜନ୍ମ ଓ କର୍ମସ୍ଥାନ ପରିଦର୍ଶନ କରି ଆନନ୍ଦ ଅନୁଭବ କଲି । ମୋର ଆନନ୍ଦକୁ ଓଡ଼ିଶାର ବିଶ୍ୱାସୀ ମାନଙ୍କ ସହିତ ମୋର ପୂର୍ବ ପ୍ରକାଶିତ "ଆକାଶର ତାରକା ପୁଞ୍ଜ" ପୁସ୍ତକରେ ପ୍ରକାଶ କରିଅଛି । "ସାଧୁସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା" ପୁସ୍ତକରେ ୫୫ ଜଣ ସାଧୁସାଧ୍ୱୀଙ୍କ ଜୀବନୀ ଓ ଶିକ୍ଷାକୁ ଉପସ୍ଥାପନ କରିଅଛି । ସେମାନଙ୍କ ମଧ୍ୟରୁ ଭାରତୀୟ ସାଧୁସାଧ୍ୱୀ ମାନଙ୍କ ଜୀବନୀ ମଧ୍ୟ ଅନ୍ତର୍ଗତ ।

କଟକ-ଭୁବନେଶ୍ୱର ମହାଧର୍ମପ୍ରଦେଶ ତଥା ବ୍ରହ୍ମପୁର ଓ ବାଲେଶ୍ୱର ଧର୍ମପ୍ରଦେଶରେ ସେହି ସମୟର ସାଧୁ ଭିନସେନ୍ତ ସଂଘର ସ୍ପେନୀୟ ମିଶିନାରୀ ମାନେ ପ୍ରତ୍ୟେକ ଗ୍ରାମକୁ ଜଣେ ଜଣେ ଇଷ୍ଟ ସାଧୁ ସାଧ୍ୱୀ ମାନଙ୍କ ନାମରେ ପର୍ବ ପାଳନ କରିବା ପାଇଁ ଉତ୍ସାହିତ କରିଥିଲେ । ଆଜି ପ୍ରାୟ ପ୍ରତ୍ୟେକ ଗ୍ରାମରେ ଆମର ବିଶ୍ୱାସୀମାନେ ସେହି ପରମ୍ପରାକୁ ବଜାୟୀ ରଖି ବର୍ତ୍ତମାନ ପର୍ଯ୍ୟନ୍ତ ଗ୍ରାମ ପର୍ବଗୁଡ଼ିକୁ ଅତି ଆଡ଼ମ୍ବର ସହିତ ପର୍ବ ପାଳନ କରିଥାନ୍ତି । ବିଭିନ୍ନ ଗ୍ରାମ ପର୍ବ ଗୁଡ଼ିକରେ ଯୋଗ ଦେଇ ଆମ ବିଶ୍ୱାସୀମାନଙ୍କ ଉତ୍ସାହ ଓ ଆଗ୍ରହ ଦେଖି ସେହି ସାଧୁ ସାଧ୍ୱୀ ମାନଙ୍କ ସମ୍ବନ୍ଧରେ ଅଧିକ ଜାଣିବା ପାଇଁ ମୋଠାରେ ଆଗ୍ରହ ଜାତ ହୋଇଥିଲା ସୁତରାଂ "ସାଧୁ ସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା" ପୁସ୍ତକଟିର ମୂଖ୍ୟ ଉଦ୍ଦେଶ୍ୟ ହେଲା ବିଶ୍ୱାସୀମାନଙ୍କର ବିଶ୍ୱାସକୁ ଦୃଢ଼ କରିବା । ଏହି ପୁସ୍ତକରେ ୫୫ ଜଣ ସାଧୁ ସାଧ୍ୱୀଙ୍କ ଜୀବନୀ ଓ ଶିକ୍ଷା ବ୍ୟତୀତ ପ୍ରାୟ ଅନ୍ୟ ୪୦ ଜଣ ସାଧୁ ସାଧ୍ୱୀଙ୍କ ପ୍ରେରଣାତ୍ମକ ବାଣୀ ଶେଷ ଭାଗରେ ଉଲ୍ଲେଖ କରାଯାଇଛି ।

ବର୍ତ୍ତମାନ covid-୧୯ ପରିସ୍ଥିତି ଦେଇ ଗତି କରିବା ସମୟରେ ଆମେ

ଭୟଭୀତ ଓ ନିରାଶା ନ ହୋଇ ମଣ୍ଡଳୀର ସାଧୁ ସାଧ୍ୱୀ ମାନଙ୍କ ଜୀବନୀ ପଢ଼ିବା ଓ ସେମାନଙ୍କ ଆଦର୍ଶ ଜୀବନକୁ ଅନୁକରଣ କରି ପ୍ରଭୁଙ୍କୁ ସାକ୍ଷ୍ୟ ଦେବା । ପୂଣ୍ୟପିତା ଫ୍ରାନସିସ୍ ତାହାଙ୍କ ପ୍ରେରିତିକ ପତ୍ର Esultate et Gaudate ରେ କହନ୍ତି, "ପବିତ୍ରତା ଏକ ସାର୍ବଜନୀନ ଆହ୍ୱାନ । ପବିତ୍ରତା ଲାଭ କରିବା ପାଇଁ ସମସ୍ତଙ୍କର ସୁଯୋଗ ଅଛି" ଅତଏବ, ପ୍ରଭୁଙ୍କର ବାକ୍ୟକୁ ପାଳନ କରି ଯେପରି ସାଧୁ ସାଧ୍ୱୀ ମାନେ ପ୍ରଭୁଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ, ଆମେ ମଧ୍ୟ ସେମାନଙ୍କ ତୁଲ୍ୟ ଏହି ପୃଥିବୀରେ ପବିତ୍ର ଜୀବନ ବିତାଇ ପ୍ରଭୁଙ୍କ ସହିତ ଅନନ୍ତ ଜୀବନ ବିତାଇ ପାରିବା ଏହାହି ପ୍ରଭୁଙ୍କ ଠାରେ ମୋର କାମନା ଓ ପ୍ରାର୍ଥନା ।

ଫ୍ର ଫାଦେର ଅଜୟ କୁମାର ସଭାସୁନ୍ଦର
ଭୁବନେଶ୍ୱର ଧର୍ମାଞ୍ଚଳର ମୂଖ୍ୟଯାଜକ



# ବାର୍ତ୍ତା

ପ୍ରିୟ ଖ୍ରୀଷ୍ଟପ୍ରେମୀ ବିଶ୍ୱାସୀ ବୃନ୍ଦ, ବର୍ତ୍ତମାନର ପରିସ୍ଥିତିରେ ସମସ୍ତଙ୍କ ମନରେ କେତୋଟି ପ୍ରଶ୍ନ ଆସେ : କେବେ ଏହି ମହାମାରୀର ଅନ୍ତ ଘଟିବ ? କେବେ ମହାମାରୀରୁ ମୁକ୍ତି ପାଇବା ? ପ୍ରଭୁ ଯିଏ ସର୍ବଦା ମନୁଷ୍ୟର ମଙ୍ଗଳ ଚାହାନ୍ତି କାହିଁକି ସେ ନୀରବ ଅଛନ୍ତି ? ଏହି ସବୁ ପ୍ରଶ୍ନର ଉତ୍ତର କେହି ଆମକୁ ସଠିକ୍ ଭାବରେ ଦେଇ ପାରିବେ ନାହିଁ, କେବଳ ବିଶ୍ୱାସରେ ପ୍ରଭୁଙ୍କର ଶରଣ ନେଲେ ସେହି ଆମକୁ ତାହାଙ୍କର ଇଚ୍ଛା ଓ ଯୋଜନାକୁ ପ୍ରକାଶ କରିବେ । ସାଧୁ ସାଧ୍ୱୀମାନେ ସେମାନଙ୍କ ଜୀବନ କାଳରେ ଏହି ପୃଥିବୀରେ ଦୁଃଖ, ବିପଦ, ସମସ୍ୟା ଓ ଅନିଶ୍ଚିତତା ମଧ୍ୟ ଦେଇ ଗତି କରିବା ସମୟରେ, ସେମାନେ ଭାଙ୍ଗି ପଡ଼ି ନ ଥିଲେ ବରଂ ସେହି ପରିସ୍ଥିତିରେ ବିଶ୍ୱାସର ସହ ସଦାପ୍ରଭୁଙ୍କର ଇଚ୍ଛା ଯାଣିବା ପାଇଁ ତାଙ୍କଠାରେ ନିଜକୁ ସମର୍ପଣ କରିଥିଲେ । ପ୍ରତିବାସୀ ପ୍ରେମ, ପରୋପକାର, ଉଦାରତା, ନିଃସ୍ୱାର୍ଥପର ଓ ପବିତ୍ର ଜୀବନ ଦ୍ୱାରା ସେମାନେ ପ୍ରଭୁଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ସମ୍ମାନୀୟ ଫାଦେର ଅଜୟ ସତ୍ତାସୁନ୍ଦର ଆମ ମଣ୍ଡଳୀର ସାଧୁ ସାଧ୍ୱୀ ମାନଙ୍କ ଜୀବନୀକୁ ଅତି ସରଳ ଭାଷାରେ ଏହି ପୁସ୍ତକରେ ଉପସ୍ଥାପନ କରିଛନ୍ତି । ଫାଦେରଙ୍କ ଅକ୍ଳାନ୍ତ ପରିଶ୍ରମ, ତ୍ୟାଗ ଓ ପ୍ରଚେଷ୍ଟା ପାଇଁ ମୁଁ ତାଙ୍କୁ ଅଭିନନ୍ଦନ ଓ ଧନ୍ୟବାଦ ଜଣାଏ ।

ସାଧୁ ପାଉଲ କହନ୍ତି, "ଆମେ ଯେପରି ତାହାଙ୍କ ଦୃଷ୍ଟିରେ ପବିତ୍ର ଓ ଦୋଷଶୂନ୍ୟ ହେବୁ, ଏଥିପାଇଁ ସେ ଆମକୁ ଜଗତର ସୃଷ୍ଟି ପୂର୍ବରୁ ଖ୍ରୀଷ୍ଟଙ୍କଠାରେ ମନୋନୀତ କଲେ" (ଏଫିସୀୟ ୧ :୪) । ଅତଏବ, "ସାଧୁସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା" ପୁସ୍ତକଟି ପଠନ କରି ଆପଣମାନେ ପବିତ୍ର ଜୀବନ ଯାପନ କରନ୍ତୁ, ଏହା ମୋର ଆଶା ଓ କାମନା ।

**ମହାଧର୍ମାଧ୍ୟକ୍ଷ ଯୋହନ ବାରୱା**
**କଟକ-ଭୁବନେଶ୍ୱର ମହାଧର୍ମପ୍ରଦେଶ ।**



# ବାର୍ତ୍ତା

ପରମେଶ୍ୱରଙ୍କ ଇଛା ଜାଣି ଆମ ଜୀବନରେ ତାହା ପୂର୍ଣ୍ଣ କରିବା ପାଇଁ ଆମେ ସର୍ବଦା ପ୍ରୟାସ କରିଥାଉ କାରଣ ଏହା ଆମର ଖ୍ରୀଷ୍ଟିୟ ଆହ୍ୱାନ । ପରମେଶ୍ୱରଙ୍କ ବାକ୍ୟ କହେ, "କାରଣ ଈଶ୍ୱରଙ୍କ ଇଛା ଏହି ଯେ ତୁମେମାନେ ପବିତ୍ର ହୁଅ" (୧ମ ଥେସୋଲନିକୀୟ ୪ : ୩) । ପବିତ୍ର ଜୀବନ ଯାପନ ଦ୍ୱାରା ଦିବ୍ୟଇଛା ସାଧନ କରିବା ଆମ ନିମନ୍ତେ ଯଥାର୍ଥ କାରଣ "ପବିତ୍ରତା ବିନା କେହି ପରମେଶ୍ୱରଙ୍କ ଦର୍ଶନ ଲାଭ କରିପାରନ୍ତି ନାହିଁ" (ହିବ୍ରୁ ୧୨ : ୧୪) ।

ପବିତ୍ର ଜୀବନ ଯାପନ କରିଥିବା ବିଶ୍ୱାସୀମାନଙ୍କ ମଧ୍ୟରୁ ଅନେକଙ୍କୁ ସନ୍ଥ ରୂପେ କ୍ୟାଥଲିକ ମଣ୍ଡଳୀ ଘୋଷଣା କରିଥାଏ । ସେମାନେ ଆମ ସଦୃଶ୍ୟ ସାଧାରଣ ମଣିଷ ଅଟନ୍ତି ଏବଂ କେହି ସାଧୁ କିମ୍ବା ସାଧ୍ୱୀ ହୋଇ ଜନ୍ମ ହୋଇ ନ ଥାଏ । ଏମାନେ ଜୀବନର ସକଳ କ୍ଲେଶ, ସଂକଟ, ଅଭାବ-ଅସୁବିଧା ଏବଂ ପରୀକ୍ଷା-ପ୍ରୋଲଭନ ଦେଇ ଗତି କରି ସୁଦ୍ଧା ପ୍ରଭୁଙ୍କଠାରେ ଅଟଳ ବିଶ୍ୱାସ, ଧର୍ଯ୍ୟ, ପ୍ରଭୁଭୟ, ତ୍ୟାଗ ଓ ସାହାସ ଭଳି ଅପୂର୍ବ ଗୁଣ ଗୁଡିକ ଦ୍ୱାରା ପରମେଶ୍ୱରଙ୍କ ପ୍ରିୟପାତ୍ର ଓ ଜଗତର ଆଦର୍ଶ ହୋଇଥାନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଧର୍ମଶହୀଦର ସର୍ବୋଚ୍ଚ ଗୌରବ ଲାଭ କରିଛନ୍ତି । ଆମେ ସମସ୍ତେ ପବିତ୍ର ହେବା ନିମନ୍ତେ ଆହୁତ ହୋଇଅଛୁ । ମଣ୍ଡଳୀର ଖ୍ରୀଷ୍ଟବିଶ୍ୱାସୀମାନଙ୍କୁ "ସନ୍ଥଜନ" ବୋଲି ସାଧୁ ପାଉଲ ସମ୍ବୋଧନ କରନ୍ତି (ଏଫେସୀୟ ୧ : ୧ ) କାରଣ ସେମାନେ ପିତା ପରମେଶ୍ୱରଙ୍କ ଦ୍ୱାରା ନିର୍ବାଚିତ ପବିତ୍ରାତ୍ମାଙ୍କ ଦ୍ୱାରା ପବିତ୍ରୀକୃତ ଓ ଖ୍ରୀଷ୍ଟଙ୍କ ଦ୍ୱାରା ଅର୍ଜ୍ଜିତ ଗୋଷ୍ଠି ଅଟନ୍ତି । ଗାଉଦେତେ ଏତ୍ ଏକସୁଲତାତେ (ଉଲ୍ଲସିତ ଓ ଆନନ୍ଦିତ ହୁଅ) ପ୍ରେରିତିକ ପତ୍ରରେ ପୁଣ୍ୟପିତା ଫ୍ରାନ୍ସିସ ଉଲ୍ଲେଖ କରନ୍ତି ଯେ ଆମ ପଡ଼ୋଶୀ ଗୃହରେ ସାଧୁସାଧ୍ୱୀମାନେ ବାସ କରନ୍ତି, ଯେଉଁଠାରେ ପତିଟିଏ ନିଜ ପତ୍ନୀଙ୍କୁ ପ୍ରକୃତ ପ୍ରେମ କରେ ଏବଂ ମାଁ ଟିଏ ସହିଷ୍ଣୁତାର ସହ ନିଜ ସନ୍ତାନମାନଙ୍କୁ ଶିକ୍ଷା ଦିଏ ଓ ଯତ୍ନ ନିଏ ଓ ଜଣେ କର୍ମଚାରୀ ସଚ୍ଚୋଟତାର ସହ ନିଜର କର୍ମ କରେ (ନଂ.୭) ।

ସମ୍ମାନନୀୟ ଯାଜକ ଅଜୟ ସଭାସୁନ୍ଦର ସାଧୁସାଧ୍ୱୀମାନଙ୍କ ବୀରତ୍ୱ ଓ ପ୍ରେରଣାମୂକ ଚିନ୍ତାଧାରା ଓ ଜୀବନକୁ ସରଳ ଭାଷାରେ ଏହି ପୁସ୍ତକରେ ଉପସ୍ଥାପନ କରିଛନ୍ତି । ତାଙ୍କର କଠିନ ପରିଶ୍ରମ ଓ ଉତ୍ସାହ ପାଇଁ ଅଭିନନ୍ଦନ ଜଣାଇବା ସାଥେ ସାଥେ ପାଠକ ଓ ପାଠିକା ମାନଙ୍କୁ ଅନୁରୋଧ କରେ ଯେପରି ସେମାନେ କ୍ୟାଥଲିକ ମଣ୍ଡଳୀରେ ଥିବା ସାଧୁସାଧ୍ୱୀମାନଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇ ସ୍ୱର୍ଗ ମୁଖି ପବିତ୍ର ପଥରେ ଯାତ୍ରା କରି ପାରିବେ । ମାଁ ମାରୀୟା ସକଳ ସାଧୁ ସାଧ୍ୱୀମାନଙ୍କ ରାଣୀ, ଆମ୍ଭମାନଙ୍କ ସହଯାତ୍ରୀ ହୁଅନ୍ତୁ ।

ଧର୍ମାଧ୍ୟକ୍ଷ ନିରଞ୍ଜନ ସ୍ୱାଲସିଂ
ସମ୍ବଲପୁର ଧର୍ମପ୍ରଦେଶ ।



# ବାର୍ତ୍ତା

ହେ ଈଶ୍ୱରଙ୍କ ପ୍ରିୟଜନ, କୋଭିଡ୍-୧୯ ସାରା ବିଶ୍ୱ ଓ ମାନବ ଜାତିକୁ ନିଜ କବଳରେ ରଖି ଲକ୍ଷ ଲକ୍ଷ ଲୋକଙ୍କ ଜୀବନକୁ ଧ୍ୱଂସ କରି ପରିବାର ତଥା ସମାଜରେ ଦୁଃଖ, ଅଶ୍ରୁ, ଭୟ ଓ ଉଦବେଗ ଆଣି ଦେଇଛି । ଆଜି ଏହି ମହାମାରୀ ରୋଗ ଅନେକଙ୍କୁ ସ୍ୱାମୀ ହରା ପତ୍ନୀ ହରା, ମା ଛେଉଣ୍ଡ, ବାପା ଛେଉଣ୍ଡ, ବିଧବା ଓ ଅନାଥ କରି ଆମ ପରିବାରକୁ ଧୂଳିସାତ୍ କରି ଦେଇଛି । ଏହି ପ୍ରକାର ଏକ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେବା ସମୟରେ ଆମେ ଖ୍ରୀଷ୍ଟ ବିଶ୍ୱାସୀମାନେ ହତାଶ ଓ ନିରାଶ ନ ହୋଇ ଧର୍ଯ୍ୟ ଓ ବିଶ୍ୱାସର ସହିତ ଉର୍ଦ୍ଧ ଆଡ଼କୁ ଚକ୍ଷୁ ଉତ୍ତୋଳନ କରିବା । ଯେପରି ଗୀତ ସଂଗୀତଜ୍ଞ କହନ୍ତି, "କେଉଁ ଠାରୁ ମୋର ସାହାଯ୍ୟ ଆସେ ? ମୋର ସାହାଯ୍ୟ ପ୍ରଭୁଙ୍କ ଠାରୁ ଆସେ ସେ ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା" (ଗୀତ ସଂହିତା ୧୨୧:୧-୨) ।

ସୁତରାଂ ଏହି ଅବସରରେ ସମ୍ମାନୀୟ ଡ. ଫାଦେର ଅଜୟ ସଭାସୁନ୍ଦରଙ୍କ ଦ୍ୱାରା ଲିଖିତ "ସାଧୁ ସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା" ପୁସ୍ତକଟି ପ୍ରକାଶ ହେବା ଶୁଣି ମୁଁ ଆନନ୍ଦିତ । ଏହି ପୁସ୍ତକର ପାଣ୍ଡୁଲିପି ପଢ଼ି ଅନୁଭବ କଲି ଯେ ଖ୍ରୀଷ୍ଟ ମଣ୍ଡଳୀକୁ ବିଶ୍ୱାସରେ ସୁଦୃଢ଼ କରିବା ପାଇଁ ସାଧୁସାଧ୍ୱୀଙ୍କ ଅସାଧାରଣ ତ୍ୟାଗ, ବଳିଦାନ, ସେବା ଓ ଉତ୍ସର୍ଗୀକୃତ ଜୀବନ ନିଶ୍ଚିତ ଭାବରେ ଆମକୁ ଏକ ଉତ୍ତମ ଖ୍ରୀଷ୍ଟୀୟ ଜୀବନ ଯାପନ କରିବା ପାଇଁ ଆଶା ଓ ଉଦ୍ଦୀପନା ଦେବ । ଏଣୁ ଫାଦେର ଅଜୟ ସଭାସୁନ୍ଦରଙ୍କ ପ୍ରୟାସ ପାଇଁ ତାଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରେ । ମୋର ଆଶା ଓ ବିଶ୍ୱାସ ସାଧୁ ସାଧ୍ୱୀମାନଙ୍କ ଜୀବନୀ ପଢ଼ି ଆମର ଖ୍ରୀଷ୍ଟ ବିଶ୍ୱାସୀମାନେ ସେମାନଙ୍କ ଆଦର୍ଶ ଜୀବନରେ ଅନୁପ୍ରାଣୀତ ହୋଇ ନିଜ ଜୀବନ ଓ କାର୍ଯ୍ୟରେ ଯୀଶୁଖ୍ରୀଷ୍ଟଙ୍କୁ ଏହି ଜଗତରେ ସାକ୍ଷ୍ୟ ଦିଅନ୍ତୁ ।

**ଧର୍ମାଧ୍ୟକ୍ଷ ଡ଼ଃ କିଶୋର କୁମାର କୁଜୁର**

**ରାଉରକେଲା ଧର୍ମପ୍ରଦେଶ ।**

# ଉତ୍ସର୍ଗ

୨୫ ବର୍ଷ ଯାଜକୀୟ କର୍ମର କେନ୍ଦ୍ରସ୍ଥଳ ମୋ ପାଇଁ ଥିଲା ବିଭିନ୍ନ ସେମୀନାରୀ, ଯେଉଁଠାରେ ଯାଜକ ହେବା ପାଇଁ ତାଲିମ ଦିଆଯାଏ । ଖୁସୀ ଲାଗେ ଯେ ମୋର ବିଦ୍ୟାର୍ଥୀମାନେ ବର୍ତ୍ତମାନ ଯାଜକ ହୋଇ ଓଡ଼ିଶା ତଥା ସାରା ବିଶ୍ୱକୁ ଯାଇ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି । ସେମାନଙ୍କର ଆନ୍ତରିକ ସ୍ନେହ, ଶୁଭେଚ୍ଛା ଓ ଉତ୍ସାହ ପ୍ରଦ ବାଣୀ ମୋର ବ୍ୟକ୍ତିଗତ ଜୀବନକୁ ସମୃଦ୍ଧ କରିଛି । ସୁତରାଂ "ସାଧୁ ସାଧ୍ୱୀଙ୍କ ସଙ୍ଗେ ଆମର ଯାତ୍ରା" ପୁସ୍ତକଟିକୁ ସେମୀନାରୀର ସମସ୍ତ ଛାତ୍ରମାନଙ୍କ ସର୍ବାଙ୍ଗୀନ ଉନ୍ନତି କାମନା କରି ପ୍ରଭୁଙ୍କ ଚରଣ ତଳେ ସେମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରେ ।



ଡ଼ଃ ଫାଦେର ଅଜୟ କୁମାର ସିଂହ ସୁନ୍ଦର

# କୃତଜ୍ଞତା ଏଇମାନଙ୍କୁ

ସବୁଥିରେ ସଦାପ୍ରଭୁଙ୍କ ଦୟା ଓ ଆର୍ଶୀବାଦ

ମହାଧର୍ମାଧ୍ୟକ୍ଷ ଯୋହନ ବାରଓ୍ୱାଙ୍କ ଠାରୁ ଅନୁମତି ଓ ଉତ୍ସାହ ବାଣୀ

ଧର୍ମାଧ୍ୟକ୍ଷ ନିରଞ୍ଜନ ସ୍ୱାଲସିଂଙ୍କ ସୁଚିନ୍ତିତ ସଂଶୋଧନ

ଧର୍ମାଧ୍ୟକ୍ଷ କିଶୋର କୁମାର କୁଜୁରଙ୍କ ଆଧ୍ୟାତ୍ମିକ ପ୍ରେରଣା

ପ୍ରଚ୍ଛଦ ପ୍ରସ୍ତୁତି : ଫାଦେର ପୂର୍ଣ୍ଣଚନ୍ଦ୍ର ନାୟକ

କମ୍ପ୍ୟୁଟର ଓ ଟାଇପିଙ୍ଗ୍‌ରେ ସହଯୋଗ : ବ୍ରଦେର ଲୁକାସ ଟୁଡୁ, ପ୍ରତାପ ଯୋଶ କେରକେଟା, ଜୁନସ୍ ଶବର ଓ ଆନ୍ତୋନୀ ଖ୍ଲାର ।

# Grateful to my well wishers

Khristo Jyoti Mohavidyaloyo, Sason, Sambalpur
Staff and Students
Rev. Dr. Fr. Abraham Karugaparambil
(Rector of Shanti Bhavan, Rayagada)
Lucas Mattioli (Italy)
Dr. Mercy Sebastian (New York)
Simmy Joseph (New York)
Maria Alvarej (New York)
Manabendra Misra (Bhubaneswar)
(Former General Manager, R.B.I)

# ସୂଚୀପତ୍ର

# ସାଧୁ ଆରନଲ୍ଡ୍ ଜନସନ୍

## (୧୮୩୭-୧୯୦୯, ଜାନୁୟାରୀ ୧୫)

୧୮୩୭ ମସିହା ନଭେମ୍ବର ମାସ ୫ ତାରିଖରେ ଜର୍ମାନୀ ଦେଶର ଗୋଖ୍ ନାମକ ଏକ ଛୋଟ ସହରରେ ଆରନଲ୍ଡ୍ ଜନସନ୍ ଜନ୍ମ ଗ୍ରହଣ କରିଥିଲେ । ପରିବାରର ୧୧ଟି ସନ୍ତାନ ମଧ୍ୟରୁ ସାଧୁ ଆରନଲ୍ଡ୍ ଜନସନ୍ ଥିଲେ ଦ୍ୱିତୀୟ । ୯ ଜଣ ପୁଅ ଏବଂ ଦୁଇ ଜଣ ଝିଅ ମଧ୍ୟରୁ ତିନି ଜଣଙ୍କ ମୃତ୍ୟୁ ବହୁ ଆଗରୁ ହୋଇଥିଲା । ତାଙ୍କ ପିତା ଜେରହାର୍ଡ ଜନସନ୍ ଓ ମାତା କାଥ୍ରିନେ ୱେଲସନ୍ ଥିଲେ କୃଷକ ପରିବାରରୁ । ଭାଇମାନଙ୍କ ମଧ୍ୟରୁ ୱେଲିୟମ କାପୁଚିଆନ ସଂଘର ଜଣେ ସେବାବ୍ରତୀ ହୋଇଥିଲେ । ସଂଘରେ ଯୋଗ ଦେଲାପରେ ସେ ନିଜର ନାମ ବଦଳାଇ କ୍ଷୁଦ୍ର ଜୁନିପେର ନାମ ରଖିଥିଲେ । ଆରନଲ୍ଡ୍ ଜନସନ୍ ପ୍ରେରିତ ଦିବ୍ୟବାଣୀ ସଂଘର ଜଣେ ସଦସ୍ୟ ଭାବେ ନିଜକୁ ଉତ୍ସର୍ଗ କରିଥିଲେ । ଯେ କୌଣସି ଧର୍ମରେ ଜଣେ ପୁରୋହିତ ହେବା ପାଇଁ ପରିବାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆରନଲ୍ଡ୍ ଜନସନ୍ଙ୍କ ଯାଜକ ଆହ୍ୱାନର ମୁଖ୍ୟ ଉତ୍ସ ଥିଲା ନିଜ ପରିବାର । ନିଜ ପିତାଙ୍କ ପ୍ରାର୍ଥନାଶୀଳ ଜୀବନ ତାଙ୍କ ଆଧ୍ୟାତ୍ମିକ ଜୀବନରେ ପ୍ରେରଣା ଦେଇଥିଲା ଓ ମାତା ତାଙ୍କୁ ଆଧ୍ୟାତ୍ମିକ ପରିବେଶରେ ବଢ଼ାଇଥିଲେ । ସକାଳ ୫ ଘଣ୍ଟା ସମୟରୁ ଜନସନ୍ ଗୃହ କାର୍ଯ୍ୟ ଆରମ୍ଭ କରୁଥିଲେ । ମାଁଙ୍କ ସହିତ ସକାଳ ପ୍ରାର୍ଥନା ସେ କରୁଥିଲେ ଓ ପ୍ରତିଦିନ ଦିବ୍ୟଯଜ୍ଞରେ ଯୋଗ ଦେଇ ଦିନର କାର୍ଯ୍ୟ ସେ ଆରମ୍ଭ କରୁଥିଲେ । ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରୁ ଗାଈମାନଙ୍କ ଯତ୍ନ ନେବା ଓ ଅଧ୍ୟୟନ କରିବା ଥିଲା ତାଙ୍କର ବିଶେଷ କାର୍ଯ୍ୟ । ସାଧୁ ଯୋହନ ସୁସମାଚାରର ପ୍ରଥମ ଅଧ୍ୟାୟକୁ ପ୍ରତିଦିନ ସନ୍ଧ୍ୟା ସମୟରେ ପଠନ କରୁଥିଲେ ।

୧୮୮୧ ମସିହା ଅଗଷ୍ଟ ମାସ ୧୫ ତାରିଖ ଦିନ ଆରନଲ୍ଡ୍ ଜନସନ୍ ଜର୍ମାନୀର ମୁଏନ୍ଷ୍ଟେର ଧର୍ମ ପ୍ରଦେଶ ପାଇଁ ଯାଜକ ଅଭିଷେକ ପ୍ରାପ୍ତ କରିଥିଲେ । ଯାଜକତା ପ୍ରାପ୍ତ କଲାପରେ ସେ ପ୍ରଥମେ ବିଦ୍ୟାଳୟରେ ଜଣେ ଗଣିତ ଶିକ୍ଷକ ରୂପେ ନିଯୁକ୍ତି ପାଇଥିଲେ ଶିକ୍ଷକତା ସମୟରେ ସେ ପ୍ରେରିତିକ ପ୍ରାର୍ଥନା ପାଇଁ ଲୋକଙ୍କୁ ପ୍ରୋତ୍ସାହନ ଦେଉଥିଲେ । ୧୮୬୯ ମସିହାରେ ଧର୍ମ ପ୍ରଦେଶର ନିର୍ଦ୍ଦେଶକ ରୂପେ ସେ ନିଯୁକ୍ତି ପାଇଥିଲେ । ୧୮୭୩ ମସିହା ଅଗଷ୍ଟ ମାସରେ କେମ୍ପେନର

ଉରସୁଲାଇନ୍ ଅନୁଷ୍ଠାନର ଚାପଲେଇନ ରୂପେ ସେ ନିଯୁକ୍ତି ପାଇଲେ । ଅନୁଷ୍ଠାନଟି 'ଦିବ୍ୟ ହୃଦୟର କ୍ଷୁଦ୍ର ବାର୍ତ୍ତାବହ' ପତ୍ରିକା ପ୍ରକାଶ କରୁଥିଲା । ତାଙ୍କ ପିତା ଜେରହାର୍ଡ ଜନସନ୍ ପ୍ରତି ରବିବାର ପବିତ୍ର ତ୍ରିତ୍ୱ ପରମେଶ୍ୱରଙ୍କ ସମ୍ମାନାର୍ଥେ ଦୁଇଟି ଦିବ୍ୟଯଜ୍ଞରେ ଅଂଶ ଗ୍ରହଣ କରୁଥିଲେ ।

**ମିଶନ ସେମିନାରୀର ଆରମ୍ଭ:**

ସମୟର ଆବଶ୍ୟକତା ଉପଲବ୍ଧ କରି ଆରନଲ୍ଡ ଜନସନ୍ ଭାବି ଯାଜକମାନଙ୍କୁ ତାଲିମ୍ ଦେବା ପାଇଁ ମିଶନାରୀ ସେମିନାରୀ ଆରମ୍ଭ କରିଥିଲେ । ଏହି ସେମିନାରୀ ଆରମ୍ଭ କରିବା ପାଇଁ ହଙ୍ଗକଙ୍ଗ ପ୍ରେରିତିକ ଧର୍ମାଞ୍ଚଳର ମୁଖ୍ୟ ପ୍ରଶାସକଙ୍କଠାରୁ ପ୍ରେରଣା ପାଇଥିଲେ । ମିଶନ କାର୍ଯ୍ୟର ଆର୍ଥିକ ପାଣ୍ଠି ବୃଦ୍ଧି କରିବା ପାଇଁ ତାଙ୍କୁ ୟୁରୋପରେ ନିଯୁକ୍ତି ଦିଆଯାଇଥିଲା । ଦିନେ ଆରନଲ୍ଡ ଜନସନ୍ ନିଜ କ୍ଷୁଦ୍ର ପତ୍ରିକାରେ କେତୋଟି ବିଷୟବସ୍ତୁ ପ୍ରକାଶ କରିବା ପାଇଁ ମନ୍‌ସିନର ରାଇମଣ୍ଡିଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲେ । ସେହି ସମୟରେ ସେ ନିଜର ଅଭିଳାଷ ଜର୍ମାନୀରେ ମିଶନ ସେମିନାରୀ ଆରମ୍ଭ କରିବାର ଆବଶ୍ୟକତାକୁ ତାଙ୍କୁ ଜଣାଇଥିଲେ । ମନସିନ୍‌ର ରାଇମଣ୍ଡି ତାଙ୍କ କଥାଶୁଣି ଆଗକୁ ବଢ଼ିବା ପାଇଁ ଉତ୍ସାହିତ କରିଥିଲେ ।

ଆରନଲ୍ଡ ଜନସନ୍ ଯେତେବେଳେ ନିଶ୍ଚିତ ହୁଅନ୍ତି ଯେ ସେ ଯାହା ଚାହିଁଛନ୍ତି ତାହା ଈଶ୍ୱରଙ୍କ ଯୋଜନା, ସେହି କାର୍ଯ୍ୟଟିକୁ ପୂର୍ଣ୍ଣ ନ କରିବା ପର୍ଯ୍ୟନ୍ତ ସେ ସ୍ଥିର ହୋଇ ରହିପାରନ୍ତି ନାହିଁ, କିମ୍ବା କୌଣସି ବିଷୟ ତାଙ୍କୁ ସେଥିରୁ ଅଟକାଇ ପାରେ ନାହିଁ ।

ହଲାଣ୍ଡ ଦେଶର ଷ୍ଟାଇଲ୍‌ରେ ସାଧୁ ମାଇକେଲ ନାମରେ ଗୋଟିଏ ପ୍ରଥମ ମିଶନ ଗୃହ ୧୯୭୫ ମସିହା ସେପ୍ଟେମ୍ବର ୮ ତାରିଖରେ ଆରମ୍ଭ କରିଥିଲେ । ଏହି ଗୃହ ଥିଲା ଦିବ୍ୟବାଣୀ ସଂଘର ମାତୃଗୃହ ।

**ତିନୋଟି ମିଶିନାରୀ ସଂଘର ପ୍ରତିଷ୍ଠାତା:**

ମୁଏନେଷ୍ଟେର ଧର୍ମପ୍ରଦେଶରେ ଯୀଶୁଙ୍କର ଦିବ୍ୟ ହୃଦୟ ପ୍ରତି ସାଧୁ ଆରନଲ୍ଡଙ୍କ ଗଭୀର ଭକ୍ତି ଥିବା ଯୋଗୁଁ ତାଙ୍କୁ ଧର୍ମାଞ୍ଚଳର ପ୍ରେରିତିକ ପ୍ରାର୍ଥନା (Apostleship of Prayer)ର ନିର୍ଦ୍ଦେଶକ ରୂପେ ନିଯୁକ୍ତି ଦେଲେ । ସେହି ପ୍ରେରିତିକ ପ୍ରାର୍ଥନା ସଂଘର ନିର୍ଦ୍ଦେଶକ ରୂପେ ତାଙ୍କୁ ବିଭିନ୍ନ ଖ୍ରୀଷ୍ଟୀୟ ସମାଜ ସହିତ କାର୍ଯ୍ୟ କରିବା ପାଇଁ ସୁଯୋଗ ମିଳିଲା ।

ନିଜ ଧର୍ମ ପ୍ରଦେଶ ମଧ୍ୟରେ ସୀମିତ ନ ରହି ସାର୍ବଜନୀନ ମଣ୍ଡଳୀର ଆଧ୍ୟାତ୍ମିକ ଆବଶ୍ୟକତାକୁ ଦୃଷ୍ଟିରେ ରଖି କାର୍ଯ୍ୟ କରିବା ପାଇଁ ସେ ଆଗ୍ରହ ପ୍ରକାଶ କଲେ । ଜର୍ମାନୀ ମଣ୍ଡଳୀ ଯେପରି ନିଜର ମିଶିନାରୀ ଦାୟିତ୍ୱ ବୁଝି ପାରିବେ ସେହି ସଚେତନତା ଆଣିବା ପାଇଁ ସେ ଦୃଢ ପଦକ୍ଷେପ ନେଲେ ।

ନିଜର ଲକ୍ଷ୍ୟକୁ ସାକାର କରିବା ପାଇଁ ୧୮୭୩ ମସିହାରେ ଶିକ୍ଷକ ପଦବୀରୁ ଇସ୍ତଫା ଦେଇ ଦିବ୍ୟ ହୃଦୟ ବାର୍ତାବାହକ ପତ୍ରିକା ଆରମ୍ଭ କଲେ । ଏହି ମାସିକ ପତ୍ରିକା ମାଧ୍ୟମରେ ମିଶିନାରୀମାନଙ୍କ କାର୍ଯ୍ୟକଳାପ ଏବଂ ଜର୍ମାନୀ ଭାଷା କହୁଥିବା କାଥଲିକମାନଙ୍କୁ ମିଶନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଉତ୍ସାହ ଦିଆଗଲା । ଜର୍ମାନୀର କାଥଲିକ ମଣ୍ଡଳୀ ସେହି ସମୟରେ ଏକ କଠିନ ସମୟ ଦେଇ ଗତି କରୁଥାଏ । ରାଜନୈତିକ ଶାସକ ଦଳ କାଥଲିକମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ରୋମାନ କୋରିଆକୁ ଯଥେଷ୍ଟ କ୍ଷମତା ଦିଆଯାଇଥିଲା ଏଣୁ ବିଶ୍ୱାସଜନିତ ସମସ୍ତ କ୍ଷେତ୍ରରେ ପୂଣ୍ୟପିତାଙ୍କ ଭୂମିକାକୁ ସର୍ବଶ୍ରେଷ୍ଠ ସମ୍ମାନ ଦିଆଯାଉଥିଲା । ଏଣୁ ଶାସକ ଗୋଷ୍ଠୀ ସାଧାରଣ ନାଗରିକମାନଙ୍କ ଜୀବନରେ ମଣ୍ଡଳୀର ସମସ୍ତ ପ୍ରଭାବକୁ ଏଡ଼େଇବାକୁ ଚେଷ୍ଟା କରୁଥିଲେ । ମଣ୍ଡଳୀକୁ ରାଜନୈତିକ ଶାସକ ଗୋଷ୍ଠୀର ଅଧିନରେ ରଖିବା ପାଇଁ ସେମାନଙ୍କର ଲକ୍ଷ୍ୟ ଥିଲା । ଶାସକ ବିସମାର୍କ କାଥଲିକ ନିୟମ ବିରୋଧି କାର୍ଯ୍ୟ କରି ଯାଜକ ତଥା ବିଭିନ୍ନ ଧର୍ମ ସମାଜର ଭାଇ ଓ ଭଉଣୀମାନଙ୍କୁ ସେଥିରୁ ବାହାର କରିବା ସାଥେ ସାଥେ ଧର୍ମାଧ୍ୟକ୍ଷମାନଙ୍କୁ ବନ୍ଦୀ ଶାଳାରେ ନିକ୍ଷେପ କଲେ ।

ଏହି ପ୍ରକାର ଏକ ଦ୍ୱନ୍ଦ ପରିସ୍ଥିତିରେ ଆରନଲ୍ଡ ଜନସନ୍ ବିତାଡ଼ିତ ହୋଇଥିବା ଯାଜକମାନଙ୍କୁ ବାହାର ଦେଶକୁ ମିଶିନାରୀ ରୂପେ ଯିବା ପାଇଁ କିମ୍ବା ମିଶିନାରୀମାନଙ୍କୁ ପ୍ରସ୍ତୁତ କରିବା ପାଇଁ ପ୍ରସ୍ତାବ ଦେଲେ । ମିଶିନାରୀମାନଙ୍କୁ ତାଲିମ ଦେବା ପାଇଁ ୟୁରୋପ ଦେଶରେ ବିଭିନ୍ନ କେନ୍ଦ୍ରମାନ ଖୋଲାଯାଇଥିଲା କିନ୍ତୁ ଜର୍ମାନୀରେ ସେପରି କିଛି ନ ଥିଲା । ଆରନଲ୍ଡଙ୍କ ଆଶା ଥିଲା ଯେ କେତେ ଜଣ ଯାଜକମାନଙ୍କ ମଧ୍ୟରେ ମିଶିନାରୀ ସ୍ୱଭାବ ଜାଗ୍ରତ ହେବା ଆବଶ୍ୟକ ଯଦ୍ୱାରା ସେମାନେ ବର୍ତମାନ ସମୟରେ ଯେଉଁ ସବୁ ସମସ୍ୟା ଦେଖାଯାଉଛି ସେଗୁଡିକୁ ସାମନା କରି ଜଣେ ଜଣେ ଉତମ ମିଶିନାରୀ ହୋଇ ପାରିବେ । ନିଜର ମାସିକ

ପତ୍ରିକା ମାଧ୍ୟମରେ ମିଶିନାରୀ ପ୍ରସ୍ତୁତିର ଆବଶ୍ୟକତାକୁ ସେ ପ୍ରଚାର କରୁଥିଲେ। ଏଇଥିପାଇଁ ଆର୍ଥିକ ପାଣ୍ଠିର ଆବଶ୍ୟକତା ଜରୁରୀ ଥିଲା । ହଂଙ୍ଗର ପ୍ରେରିତିକ କାର୍ଯ୍ୟର (Apostolic Vicar) ପ୍ରତିନିଧିଙ୍କ ମାଧ୍ୟମରେ ପ୍ରଭୁ ତାଙ୍କୁ ଏହି ପ୍ରକାର ଏକ କଷ୍ଟ ସାଧ୍ୟ କାର୍ଯ୍ୟ କରିବା ପାଇଁ ଆହ୍ୱାନ କରିଛନ୍ତି ବୋଲି ସ୍ୱୀକାର କଲେ । ସାଧୁ ଆରନଲ୍ଡଙ୍କ ଏହି ପଦକ୍ଷେପ ନିମନ୍ତେ ଅନେକେ ସମାଲୋଚନା ମଧ୍ୟ କରିଥିଲେ । କିନ୍ତୁ ଆରନଲ୍ଡ କହୁଥାନ୍ତି, "ଯେତେବେଳେ ମଣ୍ଡଳୀର ଅନେକ ବିଷୟ ଭାଙ୍ଗିଯାଉଛି ଠିକ୍ ସେହି ସମୟରେ ପ୍ରଭୁ ଆମର ବିଶ୍ୱାସକୁ ପରୀକ୍ଷା କରନ୍ତି ଯେପରି ଆମ୍ଭେ କିଛି ନୂତନତା ଆଣି ପାରିବା" ।

ଏହି କାର୍ଯ୍ୟଟି ଆରମ୍ଭ କରିବା ପାଇଁ କେତେଜଣ ଧର୍ମାଧ୍ୟକ୍ଷଙ୍କ ସହଯୋଗରେ ଆରନଲ୍ଡ ଆର୍ଥିକ ସାହାଯ୍ୟ ପାଇବାର ବ୍ୟବସ୍ଥା କରିଥିଲେ ଏବଂ ଗୋଟିଏ ଉପଯୁକ୍ତ ସ୍ଥାନ ବାଛି ନେଲେ । ରାଜନୈତିକ ପରିସ୍ଥିତି ଭଲ ନଥିବାରୁ ସେହି ଦେଶର ସୀମାରେ ଅବସ୍ଥିତ ହଲାଣ୍ଡ ଦେଶର ଷ୍ଟାଇଲଠାରେ ଗୋଟିଏ ଗୃହ କିଣିଲେ । ୧୮୭୫ ମସିହା ସେପ୍ଟେମ୍ବର ମାସ ୮ ତାରିଖରେ ସେହି ଗୃହ ପ୍ରତିଷ୍ଠା କରାଗଲା । ଦିବ୍ୟବାଣୀ ସଂଘର ମିଶିନାରୀମାନଙ୍କ ସେହି ଦିନ ଥିଲା ସଂଘର ପ୍ରତିଷ୍ଠା ଦିବସ । ସଂଘଟିର ପ୍ରଥମ ଗୃହ ବହୁତ ପୁରୁଣା ଥିଲା ଏବଂ ଠିକ୍ ଅବସ୍ଥାରେ ନଥିଲା । ୧୮୭୯ ମସିହା ମାର୍ଚ୍ଚ ୨ ତାରିଖରେ ପ୍ରଥମ ଦୁଇଜଣ ମିଶିନାରୀ ପ୍ରଥମଥର ପାଇଁ ଚାଇନାକୁ ଯାଇଥିଲେ । ସେହି ଦୁଇ ଜଣଙ୍କ ମଧ୍ୟରୁ ଜଣେ ହେଲେ ଯୋସେଫ ଫ୍ରାଇନାଡେମେଜ । ଯୋସେଫ ଫ୍ରାଇନାଡେମେଜ ଉତର ଇଟାଲିର ବୋଲଜନା ସହରରେ ଜନ୍ମ ଗ୍ରହଣ କରିଥିଲେ । ଜର୍ମାନୀ ମିଶିନାରୀ ସେମିନାରୀ ପ୍ରଥମରୁ ହିଁ ଆନ୍ତର୍ଜାତୀୟ ସମାଜ ରୂପେ ପରିଚିତ ଥିଲା । ଦିବ୍ୟବାଣୀ ସଂଘ ବିଭିନ୍ନ ଭାଷାଭାଷୀ, ସଂସ୍କୃତି ଏବଂ ଜାତୀୟତାକୁ ଭିତି କରି ଆରମ୍ଭ କରାଯାଇଥିଲା । ସୁତରାଂ ଅନ୍ୟ ଭାଷା ଓ ସଂସ୍କୃତି ପ୍ରତି ଖୋଲା ମନୋଭାବ ରହିବା ଦିବ୍ୟବାଣୀ ସଂଘର ବିଶେଷ ଗୁଣ ଅଟେ । ନୂତନ ଗୃହ ଆରମ୍ଭର ଠିକ୍ ଚାରି ମାସ ପରେ ପତ୍ରିକାର ମୁଦ୍ରଣ ଆରମ୍ଭ କରିଥିଲେ । ଆରନଲ୍ଡ ଜନସନ୍ ଜାଣି ପାରିଥିଲେ ଯେ ପତ୍ରିକା ମୁଦ୍ରଣ ମାଧ୍ୟମରେ କେବଳ ଧାର୍ମିକ ଜୀବନର ଆହ୍ୱାନ ଏବଂ ଆର୍ଥିକ ପାଣ୍ଠିର ଆବଶ୍ୟକତା ଉପରେ ସେ ଲୋକମାନଙ୍କ ମଧ୍ୟରେ ସଚେତନତା ଆଣି ପାରିବେ । ଏହି ପତ୍ରିକା

ବର୍ଣ୍ଣନ କରିବା ପାଇଁ ଆସ୍ତେ ଆସ୍ତେ ହଜାର ହଜାର ଉଦାରଶୀଳ ବ୍ୟକ୍ତିମାନେ ନିଜର ସମୟ ଦେଇ ଜର୍ମାନୀ ଭାଷା କହୁଥିବା ରାଜ୍ୟମାନଙ୍କରେ ମିଶନ କାର୍ଯ୍ୟର ତାତ୍ପର୍ଯ୍ୟତା ବିଷୟରେ ପ୍ରଚାର କରିବାକୁ ଲାଗିଲେ ।

ମିଶିନାରୀ କାର୍ଯ୍ୟକୁ ଆଗକୁ ବଢ଼ାଇବା ପାଇଁ ଅନେକ ଛାତ୍ରମାନେ ସଂଘରେ ଯୋଗ ଦେଲେ । ଏଣୁ ସେମାନଙ୍କ ରହିବା ନିମନ୍ତେ ଗୃହ ନିର୍ମାଣ କାର୍ଯ୍ୟର ଆବଶ୍ୟକତା ପଡ଼ିଲା । ଅନେକେ ସ୍ୱେଚ୍ଛାସେବୀମାନେ ସପ୍ତାହ, ମାସ ଓ ବର୍ଷ ଧରି ଏହି କାର୍ଯ୍ୟ ପାଇଁ ନିଜର ସମୟ ଦେଲେ । ଅନେକ ବ୍ୟକ୍ତିମାନେ ଯାଜକତା ସଂସ୍କାର ଗ୍ରହଣ ନ କରି ମଧ୍ୟ ନିଜର ବ୍ୟବସାୟ ବା କାର୍ଯ୍ୟ ମାଧ୍ୟମରେ ମିଶିନାରୀ କାର୍ଯ୍ୟ ପାଇଁ ନିଜର ଜୀବନକୁ ସମର୍ପଣ କରିଥିଲେ । ଲୋକମାନଙ୍କର ସହଯୋଗ ଦ୍ୱାରା ଅତି ଶୀଘ୍ର ଦିବ୍ୟବାଣୀ ସଂଘ ଯାଜକମାନଙ୍କର ଏକ ସଂଘ ରୂପେ ଗୃହୀତ ହେଲା । ସଂଘରେ ଯୋଗଦେବା ପାଇଁ ଆଗ୍ରହୀ ଛାତ୍ରମାନଙ୍କୁ ଉତମ ବୈଷୟିକ ଶିକ୍ଷା ପ୍ରଦାନ କରି ଏବଂ ସେମାନଙ୍କୁ ମୁଖ୍ୟ କାର୍ଯ୍ୟ ଗୁଡିକର ଦାୟିତ୍ୱ ଦେଇ ସେମାନଙ୍କୁ ନେଇ ଏକ ଧାର୍ମିକ ସେବା ଭ୍ରାତା ସଂଘ ସ୍ଥାପନ କରିଥିଲେ ।

ପ୍ରଥମ ଜେନେରାଲ ଚାପଟେର ପରେ ୧୮୮୫ ମସିହାରେ ଦିବ୍ୟବାଣୀ ସମାଜ (Societatis Verbi Divine SVD) ନାମରେ ଏହି ଧାର୍ମିକ ସଂଘ ପ୍ରତିଷ୍ଠା ହୋଇଥିଲା । ଦିବ୍ୟବାଣୀ ସମାଜର ମୁଖ୍ୟ କାର୍ଯ୍ୟ ହେଲା ଅନ୍ୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ସୁସମାଚାର ଘୋଷଣା କରିବା । ଆରନଲ୍ଡ ଜନସନ୍ ଦିବ୍ୟବାଣୀ ସମାଜର ପ୍ରଥମ ଜେନେରାଲ ରୂପେ ନିଯୁକ୍ତି ପାଇଥିଲେ ।

ମିଶନ ଗୃହର ସ୍ୱେଚ୍ଛାସେବୀମାନେ ଥିଲେ ଉଭୟ ପୁରୁଷ ଓ ସ୍ତ୍ରୀ । ଗୃହର ତଦାରଖ କରିବା ପାଇଁ ପ୍ରଥମରୁ ହିଁ ନାରୀମାନଙ୍କୁ ଦାୟିତ୍ୱ ଦିଆଯାଇଥିଲା । ସେମାନଙ୍କ ମଧ୍ୟରୁ ଧନ୍ୟା ମାରିଆ ହେଲେନ ଷ୍ଟୋଲେନୟେକ୍ ଯିଏ ରୋଷେଇ, ଲୁଗାସଫା ତଥା ଗୃହର କାର୍ଯ୍ୟ ଓ ଅନ୍ୟ ଦାୟିତ୍ୱ ତୁଲାଉଥିଲେ । ଜଣେ ଧାର୍ମିକା ସେବାଭଗ୍ନୀ ହୋଇ ମିଶନ କାର୍ଯ୍ୟରେ ସାହାଯ୍ୟ କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ମିଶନ କାର୍ଯ୍ୟରେ ସମ୍ପୃକ୍ତ ନାରୀମାନଙ୍କର ବିଶ୍ୱସ୍ତ ଓ ସ୍ୱାର୍ଥବିହୀନ ସେବା କାର୍ଯ୍ୟ ଆରନଲ୍ଡ ଜନସନ୍‌ଙ୍କୁ ଅନ୍ୟ ଏକ ମିଶନ ସଂଘ ଆରମ୍ଭ କରିବା ପାଇଁ ପ୍ରେରଣା ଦେଇଥିଲା । ଏଣୁ ୧୮୮୯ ମସିହା ଡିସେମ୍ବର ମାସ ୮ ତାରିଖ ଦିନ ପବିତ୍ର

ଆତ୍ମାଙ୍କ ସେବିକା ସେବାଭଗ୍ନୀ (SSPS) ନାମକ ଏକ ଧାର୍ମିକ ସଂଘ ସେ ସ୍ଥାପନ କରିଥିଲେ। ୧୮୯୫ ମସିହାରେ ଏହି ସଂଘରେ ପ୍ରଥମ ସେବା ଭଗ୍ନୀମାନଙ୍କୁ ମିଶନ କାର୍ଯ୍ୟ ପାଇଁ ଆର୍ଜେଣ୍ଟିନାକୁ ପଠାଇଥିଲେ ।

୧୮୯୬ ମସିହାରେ ସେବା ଭଗ୍ନୀମାନଙ୍କ ନିମନ୍ତେ ଅନ୍ୟ ଏକ ସଂଘ ସ୍ଥାପନ କଲେ ଯେଉଁମାନେ ଗୃହର ଚାରିକୋଣ ଭିତରେ ରହି ସର୍ବଦା ପ୍ରାର୍ଥନାମୟ ଜୀବନ ଯାପନ କରିବେ । ସେହି ସଂଘକୁ ସେ ପବିତ୍ର ଆତ୍ମାଙ୍କ ନିତ୍ୟ ଆରାଧନା ସେବିକା ସଂଘ ବୋଲି ନାମିତ କଲେ । ଅନ୍ୟ ଦୁଇଟି ସକ୍ରିୟ ମିଶିନାରୀ ସଂଘର ସଫଳତା ନିମନ୍ତେ ଦିବା ରାତ୍ରି ଆରାଧନା କରିବା ସେମାନଙ୍କର ମୁଖ୍ୟ କାର୍ଯ୍ୟ ଥିଲା । ଜନସନ୍‌ଙ୍କ ଦ୍ୱାରା ସ୍ଥାପିତ ତିନୋଟି ଧର୍ମ ସଂଘ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଷ୍ଟେଇଲ୍ ମିଶନ ଗୃହର ରୌପ୍ୟ ଜୟନ୍ତି ଅବସରରେ ଯୋଗ ଦେଇଥିବା ସଭ୍ୟ ସଭ୍ୟାଙ୍କ ମୋଟ ସଂଖ୍ୟା ଥିଲା ୭୩୧ । ସେମାନଙ୍କ ମଧ୍ୟରୁ ୨୦୮ ଜଣ ଥିଲେ ଯାଜକଗଣ, ୫୪୯ ଥିଲେ ସେବା ଭ୍ରାତା, ୧୯୦ ସେବାଭଗ୍ନୀ ଏବଂ ଇଶଶାସ୍ତ୍ର ଅଧ୍ୟୟନ କରୁଥିବା ଛାତ୍ରମାନଙ୍କ ସଂଖ୍ୟା ଥିଲା ପ୍ରାୟ ୯୯ ଜଣ ।

୧୯୦୯ ମସିହା ଜାନୁୟାରୀ ୧୫ ତାରିଖରେ ଆରନଲ୍ଡ ମୃତ୍ୟୁବରଣ କରିଥିଲେ । କଠିନ ପରିଶ୍ରମ, ଇଶ୍ୱରଙ୍କ ଦୟା ଉପରେ ଭରସା ରଖିବା ଏବଂ ଇଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣ କରିବା ତାଙ୍କ ଜୀବନର ଏକ ମାର୍ଗ ଥିଲା । ତାଙ୍କ ଦ୍ୱାରା ସ୍ଥାପିତ ବିଭିନ୍ନ ସମାଜର ବିକାଶ ସୂଚାଏ ଯେ ତାଙ୍କ କାର୍ଯ୍ୟ ଈଶ୍ୱରଙ୍କ ଆଶୀର୍ବାଦ ଦ୍ୱାରା ପରିଚାଳିତ ହେଉଥିଲା । ପୃଥିବୀର ୬୫ ଦେଶରେ ଦିବ୍ୟବାଣୀ ସଂଘର ବର୍ତ୍ତମାନ ୬୦୦୦ରୁ (ଛ' ହଜାର) ରୁ ଉର୍ଦ୍ଧ ସଦସ୍ୟମାନେ କାର୍ଯ୍ୟ କରନ୍ତି । ୩୮୦୦ରୁ ଉର୍ଦ୍ଧ ପବିତ୍ର ଆତ୍ମା ମିଶିନାରୀ ସେବା ଭଗ୍ନୀମାନେ ୩୫ଟି ଦେଶରେ ସେବାକାର୍ଯ୍ୟ କରନ୍ତି ଏବଂ ନିତ୍ୟ ଆରାଧନା ପବିତ୍ର ଆତ୍ମା ସେବାଭଗ୍ନୀମାନେ ୧୦ଟି ଦେଶରେ ୪୦୦ରୁ ଉର୍ଦ୍ଧ ସଦସ୍ୟମାନେ ପ୍ରାର୍ଥନା ଜୀବନ ଦ୍ୱାରା ସମାଜ ସେବା କରନ୍ତି ।

**ସାଧୁ ଆରନଲ୍ଡ ଜନସନଙ୍କ ମାଧ୍ୟସ୍ଥତା ପ୍ରାର୍ଥନାର ଆଶ୍ଚର୍ଯ୍ୟ କର୍ମ:**

୧୯୯୫ ମସିହା ଜାନୁଆରୀ ୨ ତାରିଖରେ ୧୪ ବର୍ଷର ବାଳିକା ପାମେଲା ଆଭେଲାନୋସା ସାଇକେଲ ଚଲାଇବା ସମୟରେ ଆକ୍ସିଡେଣ୍ଟ ହେବାରୁ ଡାକ୍ତର

ଘୋଷଣା କଲେ ଯେ ତାଙ୍କର ମସ୍ତିଷ୍କ ମୃତ । ତାର ବଞ୍ଚିବାର ଆଶା ବହୁତ କମ୍ । ଯଦିଓ ସେ ବଞ୍ଚେ ତାର ମସ୍ତିଷ୍କ ୪ ବର୍ଷ ପିଲାର ମସ୍ତିଷ୍କ ପରି ହିଁ କାମ କରିବ, ତା ଠାରୁ ଅଧିକ ନୁହେଁ । ଜାନୁଆରୀ ୬ ତାରିଖରୁ ତାର ଜେଜେମା ନାତୁଣୀର ସୁସ୍ଥତା ପାଇଁ ସାଧୁ ଆରନଲ୍ଡ ଜନସନ୍‌ଙ୍କ ମାଧ୍ୟସ୍ଥତାରେ ୯ ଦିନିଆ (ନବୀନା) ଆରମ୍ଭ କଲେ । ଦୁଇ ସପ୍ତାହ ପରେ ଅର୍ଥାତ୍ ଧନ୍ୟ ଆରନଲ୍ଡ ଜନସନ୍‌ଙ୍କ ପର୍ବଦିନ ହଠାତ୍ ଶଯ୍ୟାରୁ ସେ ଚାଲିବାକୁ ଲାଗିଲେ । ଏହାପରେ ଆଭେଲାନୋସା ଚିକାଗୋ ବିଶ୍ୱ ବିଦ୍ୟାଳୟରୁ Pastoral Council ରେ Master Degree ହାସଲ କରି ପାରିଥିଲେ । ଆଭେଲାନୋସାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇ ଜଣାପଡିଲା ଯେ ବାସ୍ତବରେ ଆରନଲ୍ଡ ଜନସନ୍‌ଙ୍କ ମାଧ୍ୟସ୍ଥତା ପ୍ରାର୍ଥନା ଦ୍ୱାରା ସେ ସୁସ୍ଥ ଲାଭ କରିଛନ୍ତି । ଧନ୍ୟ ଆରନଲ୍ଡ ଜନସନ୍‌ଙ୍କ ସାଧୁ ପଦକୁ ଉନ୍ନୀତ ହେବା ପାଇଁ ଏହି ଚମତ୍କାର କାର୍ଯ୍ୟ ସାକ୍ଷ୍ୟ ଦିଏ ।

**ସାଧୁ ଆରନଲ୍ଡ ଜନସନ୍‌ଙ୍କ କେତୋଟି ଉକ୍ତି:**

- ✸ "ଦୁଃଖ ସମୟରେ ଯିଏ ପ୍ରଭୁଙ୍କୁ ଧନ୍ୟବାଦ ଦିଏ ସେମାନଙ୍କୁ ସେ ପ୍ରେମ କରନ୍ତି" ।
- ✸ "ସମୁଦ୍ରରୁ ମେଘ ଖଣ୍ଡ ଦେଇ ବର୍ଷା ଯେପରି ଆସେ ପୁଣି ନଦୀ ଦେଇ ସମୁଦ୍ରକୁ ଫେରିଯାଏ, ସେହିପରି ତୁମେ ପ୍ରଭୁଙ୍କଠାରୁ ଆସି ତାଙ୍କ ନିକଟକୁ ହିଁ ଫେରିଯିବ" ।
- ✸ "ଜଣେ ମିଶିନାରୀ (ପ୍ରଭୁଙ୍କ ସେବକ) ନିଜେ ଆଲୋକ ନୁହଁନ୍ତି କିନ୍ତୁ ଖ୍ରୀଷ୍ଟ ଯିଏ ଆଲୋକ ତାହାଙ୍କୁ ସେ ପ୍ରକାଶ କରନ୍ତି"।
- ✸ "ଧ୍ୟାନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଚିନ୍ତନ (ପ୍ରତିଫଳନ) ନୁହେଁ, କିନ୍ତୁ ପରମେଶ୍ୱଙ୍କ ସହିତ ଏକତ୍ରିକରଣ" ।

✸✸✸

# ସାଧୁ ଯୋଷେଫ ଭାଜ

## (୧୬୫୧-୧୭୧୧, ଜାନୁୟାରୀ ୧୬)

ପର୍ତ୍ତୁଗୀଜ ସାମ୍ରାଜ୍ୟ ଅନ୍ତର୍ଗତ ଗୋଆ ନିକଟବର୍ତ୍ତୀ ବେନାଉଲିମ ଠାରେ ୧୬୫୧ ମସିହାରେ ଯୋଷେଫ ଭାଜ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା କ୍ରିସ୍ତଭାଓ ଭାଜ ଓ ମାତା ମାରିଆ ଦି ମିରାନ୍ଦା ଦୁହେଁ କାଥଲିକ ବିଶ୍ୱାସୀ ଥିଲେ। ତାହାଙ୍କ ପିତା କ୍ରିସ୍ତଭାଓ ସାନ୍‌କୋଆଲେ ନାମକ ଏକ ବିଖ୍ୟାତ ନାଇକ ପରିବାରଭୁକ୍ତ ଅଟନ୍ତି। ଯୋଷେଫ ତାହାଙ୍କ ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ ସାନ୍‌କୋଆଲେରୁ। ସାନ୍‌କୋଆଲେର ଠାରେ ସେ ପର୍ତ୍ତୁଗୀଜ ଭାଷା ଶିଖିଥିଲେ ଏବଂ ବେନାଉଲିମଠାରେ ଲାଟିନ୍। ସେ ଜଣେ ଜ୍ଞାନୀ ଛାତ୍ର ଥିବାରୁ ଶିକ୍ଷକ ତଥା ତାଙ୍କ ସାଥିମାନେ ତାଙ୍କୁ ଭଲ ପାଉଥିଲେ। ପଢ଼ା କ୍ଷେତ୍ରରେ ବିଶେଷ ଉନ୍ନତି କରିବା ଦେଖି ତାଙ୍କ ପିତା ଗୋଆ ନଗର ସାଧୁ ପାଉଲ ସ୍ଥିତ ଯେସୁଇଟ ମହାବିଦ୍ୟାଳୟରେ ଅଳଙ୍କାର ଶାସ୍ତ୍ର ଓ ମାନବିକତା ବିଷୟରେ ଅଧ୍ୟୟନ କରିବା ପାଇଁ ନାମ ଲେଖାଇଲେ। ଏହା ପରେ ଦର୍ଶନଶାସ୍ତ୍ର ଓ ଇଶଶାସ୍ତ୍ର ଅଧ୍ୟୟନ କରିବାପାଇଁ ଦମନିକାନ ସଂଘ ଦ୍ୱାରା ପରିଚାଳିତ ଗୋଆର ଥମାସ ଆକ୍ୟୁନାସ ଏକାଡେମୀରେ ଯୋଗ ଦେଇଥିଲେ।

୧୬୭୫ ମସିହାରେ ବିଜାପୁର ଏବଂ ଗୋଲକଣ୍ଡା ଧର୍ମପ୍ରଦେଶର ଧର୍ମାଧକ୍ଷ କୁସ୍ତଦିଓ ଦି ପିନୋଙ୍କ ଦ୍ୱାରା ଗୋଆ ମହାଧର୍ମ ପ୍ରଦେଶ ପାଇଁ ଯୋଷେଫ ଉପ-ଯାଜକ ରୂପେ ଅଭିଷିକ୍ତ ହୋଇଥିଲେ। ୧୬୭୬ ମସିହାରେ ଗୋଆର ମହାଧର୍ମାଧ୍ୟକ୍ଷ ଆନ୍ତୋନିଓ ବାନ୍ଦ୍ରାଓଙ୍କ ଦ୍ୱାରା ସେ ଯାଜକାଭିଷେକ ପ୍ରାପ୍ତ କରିଥିଲେ। ଯାଜକତା ଅଭିଷେକ ପରେ ଦରିଦ୍ରମାନଙ୍କ ପରି ଜୀବନ ଯାପନ କରିବା ପାଇଁ ସେ ନିଜେ ଜୋତା ପିନ୍ଧୁ ନ ଥିଲେ। ଅଳ୍ପ ସମୟ ମଧ୍ୟରେ ସେ ଦକ୍ଷ ପ୍ରଚାରକ ଭାବେ ଖ୍ୟାତି ଅର୍ଜନ କଲେ। ଭାବି ସେମିନାରିଆନମାନଙ୍କୁ ପ୍ରସ୍ତୁତ କରିବାପାଇଁ ସାନଗୋଆଲେର ରେ ଗୋଟିଏ ଲାଟିନ ସ୍କୁଲ ଆରମ୍ଭ କରିଥିଲେ।

୧୬୭୭ ମସିହାରେ ନିଜକୁ ମାରୀୟାଙ୍କ ଦାସ ରୂପେ ଉତ୍ସର୍ଗ କରିଥିଲେ। ଶ୍ରୀଲଙ୍କାରେ ମିଶନାରୀ ଭାବେ କାର୍ଯ୍ୟ କରିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲା। ବାନ୍ଦାଓଙ୍କ ମୃତ୍ୟୁପରେ ସେ ଧର୍ମପ୍ରଦେଶର କାଥେଡ୍ରାଲ ଚାପ୍‌ଟରକୁ ନିଜର

ଅନୁରୋଧ ପ୍ରକାଶ କରିଥିଲେ । କିନ୍ତୁ ତାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ମାଙ୍ଗାଲୋର ସ୍ଥିତ କାନାରାକୁ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ସେହି ସମୟରେ ଗୋଆର ପାଦ୍ରୋଆଦୋ ଭାଟିକାନ ଦ୍ୱାରା ପ୍ରେରିତ ମିଶିନାରୀ ସଂଘ ମଧ୍ୟରେ ଦ୍ୱନ୍ଦ ଲାଗି ରହିଥିଲା । ଫାଦେର ଯୋଷେଫ୍ ୧୬୮୧ ରେ ପାଦ୍ରୋଆଦୋ ଦ୍ୱାରା କାନାରା ଅଞ୍ଚଳର ଭିକାର ଭାବେ ନିଯୁକ୍ତି ପାଇ ନିଜର ଶାସନକୁ ପ୍ରୟୋଗ କରିଥିଲେ ଯାହା ବିଶ୍ୱାସର ପ୍ରଚାର ସଂଘର ବିପକ୍ଷ ଥିଲା । ସେଠାରେ ପହଞ୍ଚି ସେ କାଥଲିକ ମଣ୍ଡଳୀର ଯେଉଁ ପରିସ୍ଥିତିର ସମ୍ମୁଖିନ ହୋଇଥିଲେ ତାହା ବାସ୍ତବରେ ଭୟଙ୍କର ଥିଲା ।

୧୬୭୫ ମସିହା ଅଗଷ୍ଟ ୩୦ ତାରିଖରେ ଧର୍ମାଧ୍ୟକ୍ଷ ଥୋମାସ ଡି କାଷ୍ଟ୍ରୋଙ୍କୁ ପୂଣ୍ୟପିତା ଦଶମ କ୍ଲେମେନ୍ତ କାନାରା (ମାଙ୍ଗାଲୋର) ର ଭିକାର ଭାବେ ନିଯୁକ୍ତି ଦେଲେ । ପୂଣ୍ୟପିତା ଦେଇଥିବା ନିଯୁକ୍ତିକୁ ପାଦ୍ରୋଆଦୋ ସ୍ୱୀକାର କଲେନାହିଁ । ପାଦ୍ରୋଆଦୋ ଏବଂ ଭାଟିକାନ ମିଶନାରୀ (Propaganda Fide) ମଧ୍ୟରେ ଥିବା ଦ୍ୱନ୍ଦ କାନାରାର କାଥଲିକ ମାନଙ୍କୁ ଦୁଇ ଭାଗରେ ବିଭକ୍ତ କରିଥିଲା । ଯେଉଁମାନେ ଗୋଆର ମହାଧର୍ମାଧକ୍ଷ ପାଦ୍ରୋଆଦୋଙ୍କ ଅଧିକାରକୁ ସ୍ୱୀକାର କଲେ ସେମାନେ ଗୋଟିଏ ପକ୍ଷରେ ରହିଲେ ଏବଂ ବିପକ୍ଷ ଦଳରେ ରହିଲେ ଭାଟିକାନ୍ ଦ୍ୱାରା ନିଯୁକ୍ତ ଧର୍ମାଧ୍ୟକ୍ଷ ଥମାସ ଡି କାଷ୍ଟ୍ରୋ । ଯେଉଁମାନେ ପାଦ୍ରୋଆଦୋଙ୍କ ଅଧିକାରକୁ ସ୍ୱୀକାର କଲେ ସେମାନେ ଧର୍ମାଧ୍ୟକ୍ଷ ଥମାସ ଡି କାଷ୍ଟ୍ରୋଙ୍କ ଦ୍ୱାରା ସେମାନଙ୍କୁ ବାସନ୍ଦ କରାଗଲା । ପୁଣି ଯେଉଁମାନେ ଥମାସ ଡି କାଷ୍ଟ୍ରୋଙ୍କ ଅଧିକାରୀକୁ ସ୍ୱୀକାର କଲେ ସେମାନେ ମଧ୍ୟ ଗୋଆର ପାଦ୍ରୋଆଦୋଙ୍କ ଦ୍ୱାରା ବାସନ୍ଦ ହୋଇଥିଲେ । ବାସନ୍ଦ ଯୋଗୁ ଦୁଇ ଦଳକୁ ଦିବ୍ୟପ୍ରସାଦ ସଂସ୍କାର ଗ୍ରହଣ କରିବାରୁ ବଞ୍ଚିତ କରାଗଲା ।

ଧର୍ମାଧ୍ୟକ୍ଷ ଡି କାଷ୍ଟ୍ରୋଙ୍କୁ ନିଜ ଦଲିଲ ବିଷୟରେ ଦୃଢ଼ତାର ସହିତ ତାହାଙ୍କୁ ଅବଗତ କରାଇଥିଲେ । ନୂତନ ପୁଣ୍ୟପିତା ଏକାଦଶ ଇନୋସେନ୍ତଙ୍କ ଠାରୁ ଆସିବା ସଂକେତ ପର୍ଯ୍ୟନ୍ତ, ସାବଧାନତାର ସହିତ ସେ ତାଙ୍କ ସହିତ ସମ୍ପର୍କ ରଖିଥିଲେ । ଯଦିଓ ପାଦ୍ରୋଆଦୋ ସହିତ ସେ ଜଡ଼ିତ ଥିଲେ ତଥାପି ଧର୍ମାଧ୍ୟକ୍ଷ ଡି କାଷ୍ଟ୍ରୋଙ୍କ ଅଧିକାରକୁ ସେ ସମ୍ମାନ ଦେଉଥିଲେ ଏବଂ ଲୋକଙ୍କର ଧାର୍ମିକ ହିତକର କାର୍ଯ୍ୟ

କରୁଥିଲେ । ଧର୍ମାଧ୍ୟକ୍ଷ ସର୍ତମୂଳକ ଭାବେ କାର୍ଯ୍ୟ କରିବା ପାଇଁ ତାଙ୍କୁ ଅଧିକାର ଦେଇଥିଲେ । ଫାଦେର ଯୋସେଫ ମଧ୍ୟ ତାଙ୍କୁ ପରାମର୍ଶ ଦେଇ ବାସନ୍ଦ ନ କରିବା ପାଇଁ ଅନୁରୋଧ କରିଥିଲେ । କାରଣ ଏହାଦ୍ଵାରା ଖ୍ରୀଷ୍ଟଧର୍ମକୁ ହିନ୍ଦୁମାନେ ବଦନାମ କରି ପାରନ୍ତି ।

୧୬୮୧ ରୁ ୧୬୮୪ ପର୍ଯ୍ୟନ୍ତ କାନାରାରେ ସାଧୁ ଯୋସେଫ ବିଭିନ୍ନ ପ୍ରକାରର ମିଶନାରୀ କାର୍ଯ୍ୟଗୁଡ଼ିକୁ ଆରମ୍ଭ କଲେ । ବିଭିନ୍ନ ସ୍ଥାନରେ ବିସ୍ତାରିତ ହୋଇ ରହିଥିବା କାଥଲିକମାନଙ୍କର ବିଶ୍ୱାସକୁ ଜାଗରଣ କରିବାପାଇଁ ସେ ମାଙ୍ଗାଲୋର, ବାସରୁର, ମୁଲକି ଏବଂ କାଲିଆନପୁର ରେ ତାଙ୍କର ମିଶିନାରୀ କାର୍ଯ୍ୟ ଜାରି ରଖୁଥିଲେ । ମାଙ୍ଗାଲୋରରେ ଏକ ବିରାଟ ରୋଜାରିଓ କାଥେଡ୍ରାଲ ନିର୍ମାଣ କରିଥିଲେ ଏବଂ ଓନରେ, ବାସରୁର, କୁଣ୍ଡାପୋର ଏବଂ ଗାଙ୍ଗାଲିମ ନୂତନ ଦେବାଳୟ ଗୁଡ଼ିକ ପ୍ରତିଷ୍ଠା କରିଥିଲେ । କେତେକ ଗ୍ରାମରେ ଲୋକମାନଙ୍କ ସହଯୋଗରେ ଛୋଟ ସ୍କୁଲ ଗୁଡ଼ିକ ଆରମ୍ଭ କରିଥିଲେ ।

ଯୋସେଫଙ୍କ ସବୁଠାରୁ ବଡ଼ ଅବଦାନ ଥିଲା, କାନାରାର ଚତୁର୍ଦ୍ଦିଗରେ ଇନମିଦାଦେ (ଭ୍ରାତୃଭାବ) ସ୍ଥାପନ କରିଥିଲେ ଯେଉଁଠାରେ ବିଭିନ୍ନ ସମୟରେ ବଡ଼ ଧରଣର ଧାର୍ମିକ ସମାଗମ କରୁଥିଲେ । ଯେଉଁଠାରେ ଗୀର୍ଜାଗୃହ ନ ଥାଏ କିମ୍ବା ଯାଜକମାନଙ୍କ ଅଭାବ ସେମାନେ ଇରମାଦେବରେ ଜମା ହୋଇ ପ୍ରାର୍ଥନା କରୁଥିଲେ । ଖ୍ରୀଷ୍ଟିୟାନମାନଙ୍କର ବିଶ୍ୱାସକୁ ପ୍ରଜ୍ଜ୍ୱଳିତ କରିବା ପାଇଁ ଏହି ପ୍ରକାର ସମାଗମ ସେମାନଙ୍କୁ ସାହାଯ୍ୟ କରୁଥିଲା ।

ପଛୁଆବର୍ଗ ଲୋକଙ୍କ ପ୍ରତି ଫାଦେର ଯୋସେଫଙ୍କ ଗଭୀର ସହାନୁଭୂତି ଥିଲା । ତାଙ୍କ ମାଧ୍ୟମରେ ଅନେକ ଆଶ୍ଚର୍ଯ୍ୟ କର୍ମ ଘଟିଥିବା ସ୍ଥାନୀୟ ବାସିନ୍ଦା ସାକ୍ଷ୍ୟ ଦିଅନ୍ତି । ମୁଦିପୁ ଓ ବାନ୍ତୱାଲା ନିକଟବର୍ତ୍ତୀ ପାନର ଧର୍ମାଞ୍ଚଳର ମୁଖ୍ୟ ଯାଜକ ଥିବା ସମୟରେ ଦିନେ ରାତ୍ରି ସମୟରେ କିଛି ହିନ୍ଦୁ ଧର୍ମାବଲମ୍ବୀମାନେ ଫାଦେରଙ୍କ ନିକଟକୁ ଆସି ଜଣେ ରୋଗୀକୁ ଶେଷ ସଂସ୍କାର ଦେବା ପାଇଁ ଅନୁରୋଧ କଲେ । ଯେଉଁ ଲୋକମାନେ ଫାଦେରଙ୍କୁ ଡାକିବା ପାଇଁ ଆସିଥିଲେ ସେମାନେ ତାଙ୍କୁ ହତ୍ୟା କରିବା ଯୋଜନା ନେଇ ଆସିଥିଲେ । ଯେତେବେଳେ ସେମାନେ ପର୍ବତର ଶୀର୍ଷରେ ପହଞ୍ଚିଲେ, ସେମାନଙ୍କ ମଧ୍ୟରୁ ଜଣେ ଫାଦେରଙ୍କୁ ହତ୍ୟା କରିବା ପାଇଁ ଚେଷ୍ଟା

ଜଲା । ଫାଦେର ଯୋଷେଫ ପଥ ଉପରେ ଆଣ୍ଠୁପାତି ହସ୍ତରେ ଥିବା ଯଷ୍ଟିକୁ ଧରି ରହିଲେ । ସେହି ସମୟରେ ଗୋଟିଏ ଉଜ୍ଜଳ କିରଣ ସେମାନଙ୍କ ଚତୁର୍ଦ୍ଦିଗରେ ଝଲସିଗଲା ଏବଂ ସେମାନେ ଦେଖିବାକୁ ପାଇଲେ ଯେ ଯେଉଁଠାରେ ଫାଦେର ଆଣ୍ଠୁପାତିଥିଲେ ସେହି ସ୍ଥାନରୁ ଜଳ ନିର୍ଗତ ହେବାକୁ ଲାଗିଲା । ଏହି ଆଶ୍ଚର୍ଯ୍ୟ ଘଟଣା ଦେଖି, ସେହି ଲୋକମାନେ ସେଠାରୁ ପଳାୟନ କଲେ ଏବଂ ଫାଦେର ଯୋସେଫଙ୍କର କୌଣସି କ୍ଷତି କରି ପାରିଲେ ନାହି । ସେ ନିରାପଦରେ ନିଜ ପାରିଶକୁ ଫେରିଥିଲେ । ସେଠାକାର ସ୍ଥାନୀୟ ବାସିନ୍ଦା ତାଙ୍କ ନାମରେ ଗୋଟିଏ ଗୀର୍ଜା ଘର ତିଆରି କଲେ । ପ୍ରତି ବର୍ଷ ହଜାର ହଜାର ତୀର୍ଥଯାତ୍ରୀ ଏହି ସ୍ଥାନକୁ ଆସି ଫାଦେର ଯୋସେଫଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରି ସୁସ୍ଥତା ଲାଭ କରୁଥାନ୍ତି ।

ଗୋଆର ନୂତନ ମହା ଧର୍ମାଧ୍ୟକ୍ଷ ମାନୁଏଲ ଡି ସୌଜା ଯୋସେଫଙ୍କ ପ୍ରତି ସନ୍ତୁଷ୍ଟ ନ ଥିଲେ କାରଣ ଧର୍ମାଧ୍ୟକ୍ଷ ଡିକାସ୍ତ୍ରୋଙ୍କ ସହ ସେ ଯେଉଁ ଚୁକ୍ତି ରଖି କାର୍ଯ୍ୟ କରୁଥିଲେ, ତାହା ନୂତନ ଧର୍ମାଧ୍ୟକ୍ଷଙ୍କ ମତରେ ଠିକ୍ ନ ଥିଲା । ଗୋଆକୁ ଫେରିବା ପାଇଁ ଫାଦେର ଯୋସେଫଙ୍କ ଅନୁରୋଧକୁ ନୂତନ ଧର୍ମାଧ୍ୟକ୍ଷ ପ୍ରତ୍ୟାଖ୍ୟାନ କରିଥିଲେ । ୧୬୮୪ ମସିହାରେ ମହା ଧର୍ମାଧ୍ୟକ୍ଷ ମାନୁଏଲ ଡି ସୌଜାଙ୍କ ମୃତ୍ୟୁପରେ ପୁଣି ଥରେ ଗୋଆରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ନିକଟବର୍ତ୍ତୀ ଗ୍ରାମ ଗୁଡ଼ିକୁ ଯାଇ ପ୍ରଭୁଙ୍କର ବାର୍ତ୍ତାକୁ ସେ ପ୍ରଚାର କରୁଥିଲେ । ଗୋଆ ଧର୍ମପ୍ରଦେଶର କେତେଜଣ ଯାଜକ ଏକତ୍ର ହୋଇ ଗୋଟିଏ ସଂଘ ଆରମ୍ଭ କରିବା ପାଇଁ ସ୍ଥିର କରିଥିଲେ । ସାଧୁ ଫିଲିପ ନେରିଙ୍କ ନାମରେ ଏକ ସଂଘ ୧୬୮୫ ସେପ୍ଟେମ୍ବର ୨୫ ତାରିଖରେ ସ୍ଥାପନ କରିଥିଲେ । ଏହି ସଂଘ ଥିଲା ଗୋଆ ଧର୍ମପ୍ରଦେଶର ପ୍ରଥମ ଆଞ୍ଚଳିକ ସଂଘ । ଆଶ୍ଚର୍ଯ୍ୟ ପବିତ୍ର କ୍ରୁଶ ସଂଘର ଯାଜକମାନେ ଧର୍ମାଞ୍ଚଳରେ ପ୍ରଥମେ ନିଜର ମିଶନ ଗୃହ ନିର୍ମାଣ କରିଥିଲେ ।

ଶ୍ରୀଲଙ୍କାରେ ଯାଜକମାନଙ୍କର ଅଭାବ ଥିବା ହେତୁ ସେଠାକୁ ଯାଇ ଧର୍ମପ୍ରଚାର କରିବା ପାଇଁ ଫାଦେର ଯୋସେଫ ଇଛା କଲେ । ସାଧୁ ଯୋସେଫ କାନାର ମିଶନର ଅଧିକାରୀ ରୂପେ ତିନି ବର୍ଷ ନିଯୁକ୍ତି ପାଇଥିଲେ । ୧୬୮୬ ମସିହାରେ ଏହି ଦାୟିତ୍ୱରୁ ଅବସର ନେବାପାଇଁ ତାଙ୍କୁ ଅନୁମତି ମିଳିବାରୁ, ତାହା ଛାଡ଼ି ସେ ମିଶନ କାର୍ଯ୍ୟ ପାଇଁ ଶ୍ରୀଲଙ୍କାକୁ ଯାଇଥିଲେ । ଜଣେ ଛଦ୍ମବେଶୀ ଭିକ୍ଷୁକ

ରୂପେ ସେ ୧୬୮୭ ପାସ୍କା ରବିବାର ଦିନ ଟୁଟିକୁରିନ ବନ୍ଦରରେ ପହଞ୍ଚିଲେ । ସେହି ଅଞ୍ଚଳରେ ପ୍ରୋଟେଷ୍ଟାଣ୍ଟ ଦଳର କାଲଭିନ ମାନଙ୍କ ଉପସ୍ଥିତି ଯଥେଷ୍ଟ ଥିଲା । ଡଚ୍ ମିଶିନାରୀମାନଙ୍କ ଦ୍ୱାରା ସେଠାରେ କାଥଲିକ ଯାଜକମାନଙ୍କୁ ପ୍ରବେଶ କରିବା ମନା କରାଯାଇଥିଲା । ଏଣୁ ଯୋସେଫ ଜଣେ ଭିକ୍ଷୁକ ରୂପେ ଗୁପ୍ତରେ କାମ କରୁଥିଲେ । ଜଣେ ଭାରତୀୟ ସନ୍ୟାସୀ ଭାବେ ବିନା ପାଦୁକାରେ ସେ ଯାତ୍ରା କରୁଥିଲେ । ସେଠାରେ ତାଙ୍କୁ ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖିନ ହେବାକୁ ପଡ଼ିଥିଲା । ସେ କିଛି ମାସ ଧରି ଅତିଶୟ ପିଡିତ ହୋଇଥିଲେ । କିନ୍ତୁ ସୁସ୍ଥ ହେବା ପରେ ଡଚମାନଙ୍କ ଅଜ୍ଞାତରେ କାଥଲିକମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରି, ରାତ୍ରି ସମୟରେ ଗୁପ୍ତରେ ସେ ବିଶ୍ୱାସୀମାନଙ୍କର ସେବା କରୁଥିଲେ ।

ସିଲାଲାଇ ଗ୍ରାମରେ ଘର ନେଇ ସେଠାକାର କାଥଲିକମାନଙ୍କର ବିଶ୍ୱାସକୁ ଦୃଢ଼ୀଭୂତ କରୁଥିଲେ । ୧୬୯୦ରେ ପୁତାଲାମ ନାମକ ଅନ୍ୟ ଏକ ଗ୍ରାମରେ ଗୋଟିଏ ବର୍ଷ ରହି ସେଠାରେ ମଧ୍ୟ ବିଶ୍ୱାସୀମାନଙ୍କର ଆଧ୍ୟାତ୍ମିକ ଜୀବନକୁ ଗୁଦ୍ଧିମନ୍ତ କରିଥିଲେ । ପର୍ତୁଗୀଜ ଭାଷା ସେହି ଅଞ୍ଚଳରେ ସର୍ବ ସାଧାରଣ ଭାବେ ବ୍ୟବହୃତ ହେଉଥିଲା । ଏଣୁ ଫାଦେର ଯୋସେଫ ଅତି ସହଜରେ ବିଶ୍ୱାସୀମାନଙ୍କ ସହିତ ମିଶି ପାରୁଥିଲେ । ୧୬୯୨ ମସିହାରେ ନିଜ କାର୍ଯ୍ୟର କେନ୍ଦ୍ରସ୍ଥାନ ରୂପେ କାଣ୍ଡି ସହରକୁ ସେ ବାଛି ନେଇଥିଲେ । ଯେତେବେଳେ ଫାଦେର ସେଠାରେ ପହଞ୍ଚିଲେ ତାହାଙ୍କୁ ପର୍ତୁଗୀଜମାନଙ୍କର ଗୁପ୍ତଚୋର ବୋଲି ସନ୍ଦେହ କରି ଅନ୍ୟ ଦୁଇ ଜଣ କାଥଲିକମାନଙ୍କ ସହିତ ବନ୍ଦିଶାଳାରେ ନିକ୍ଷେପ କରାଗଲା । ବନ୍ଦିଶାଳାରେ ଥିବା ସମୟରେ ଆଞ୍ଚଳିକ ଭାଷା ସିଂହଳୀ ସେ ଶିଖି ପାରିଥିଲେ । ବନ୍ଦିଶାଳାରେ ରହି ମଧ୍ୟ ସେ ସେଠାରେ ଅନେକଙ୍କୁ ପରିବର୍ତନ କରିପାରିଥିଲେ । ଡଚମାନଙ୍କ ଅଧିନରେ ଥିବା କାଥଲିକମାନଙ୍କୁ ସେ ପରିଦର୍ଶନ କରୁଥିଲେ ଏବଂ କଲମ୍ବୋରେ ବାସ କରୁଥିବା କାଥଲିକମାନଙ୍କ ଆଧ୍ୟାତ୍ମିକ ଜୀବନର ଅଭିବୃଦ୍ଧି ନିମନ୍ତେ କାର୍ଯ୍ୟ କରୁଥିଲେ । ଗୋଆର ତିନି ଜଣ ମିଶିନାରି ଫାଦେର ଯୋସେଫଙ୍କୁ ସାହାଯ୍ୟ କରିବା ପାଇଁ ୧୬୯୭ ମସିହାରେ ଶ୍ରୀଲଙ୍କାରେ ପହଞ୍ଚିଲେ । କୋଚିନର ବିଷପ ପେଡ୍ର ପାଖେକ ଯୋସେଫ ଭାଜଙ୍କୁ ଶ୍ରୀଲଙ୍କାର ଭିକାର ଜେନେରାଲ ରୂପେ ନିଯୁକ୍ତି ଦେଲେ । ଶ୍ରୀଲଙ୍କାର କାଣ୍ଡିରେ ବସନ୍ତ ରୋଗରେ ପୀଡ଼ିତ ଲୋକମାନଙ୍କୁ ସେ

ସାହାଯ୍ୟ କରୁଥିଲେ । ଫାଦେର ଯୋସେଫଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ସେଠିକାର ରାଜା ଯୋସେଫଙ୍କୁ ତାଙ୍କ ସେବାକୁ ଜାରି ରଖିବା ପାଇଁ ସ୍ୱାଧିନତା ଦେଲେ । ପର୍ତୁଗୀଜ ପୁସ୍ତକ ଗୁଡ଼ିକ ସେ ସିଂହଳୀ ଭାଷାରେ ଅନୁବାଦ କରୁଥିଲେ । ଗୀର୍ଜାଘର ଗୁଡ଼ିକ ନିର୍ମାଣ କରି ଜନତାଙ୍କ ସେବା କାର୍ଯ୍ୟ କରୁଥିଲେ । ୧୬୯୯ ମସିହାରେ ବୁଦ୍ଧ ଧର୍ମର ସନ୍ୟାସୀମାନଙ୍କ ଦ୍ୱାରା ବିତାଡିତ ଫାଦେର ଯୋସେଫ ତ୍ରି ଜାରଭାଲୋଙ୍କୁ ନେଇ ସେ ପୁନର୍ବାର କାଣ୍ଡିକୁ ଯାଇଥିଲେ । ଗୋଆରୁ ଆସୁଥିବା ମିଶିନାରୀମାନେ ଫାଦେର ଯୋସେଫଙ୍କ ତତ୍ୱାବଧାନରେ କାର୍ଯ୍ୟ କରୁଥିଲେ ।

୧୭୦୫ ମସିହାରେ ନୂଆ ମିଶିନାରୀମାନେ ଶ୍ରୀଲଙ୍କାରେ ପହଞ୍ଚିବା ପରେ ଶୃଙ୍ଖଳିତ ଭାବରେ ମିଶନକୁ ଚଳାଇବା ଓ ବିଶ୍ୱାସୀଙ୍କ ସେବା କାର୍ଯ୍ୟକୁ ପରିଚାଳିତ କରିବା ପାଇଁ ସେ ସେହି ଅଞ୍ଚଳକୁ ୮ ଟି ଜିଲ୍ଲାରେ ବିଭକ୍ତି କରିଥିଲେ ଏବଂ ସେଗୁଡ଼ିକୁ ଜଣେ ଜଣେ ଯାଜକଙ୍କ ଦାୟିତ୍ୱରେ ରଖିଥିଲେ । ବୁଦ୍ଧ ଧର୍ମର ସାହିତ୍ୟ ପରି କାଥଲିକ ସାହିତ୍ୟ ସୃଷ୍ଟି କରିବା ପାଇଁ ଫାଦେର ଯୋସେଫ ପ୍ରଚେଷ୍ଟା କରିଥିଲେ । ଠିକ୍ ସେହିପରି ଡଚ୍ କାଲଭିନ ଖ୍ରୀଷ୍ଟିଆନମାନଙ୍କ ପରି କାଥଲିକ ଖ୍ରୀଷ୍ଟିୟାନମାନଙ୍କୁ ମଧ୍ୟ ସମସ୍ତ ଅଧିକାର ଦେବା ପାଇଁ ଦାବି କରିଥିଲେ । ଫାଦେର ଜାକମ ଗନସାଲଭେସ ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଥିଲେ । ୧୭୦୫ ମସିହାରେ ଯୋସେଫ ଭାଜଙ୍କୁ ସିଲୋନରେ ଧର୍ମାଧ୍ୟକ୍ଷ ହେବା ପାଇଁ କୁହାଗଲା କିନ୍ତୁ ସେହି ପଦବୀକୁ ସେ ଗ୍ରହଣ ନ କରି ଜଣେ ସାଧାରଣ ମିଶନାରୀ ହୋଇ ରହିବା ପାଇଁ ଇଛା ପ୍ରକାଶ କଲେ ।ଏହି କାରଣରୁ ଯୋସେଫ ଭାଜଙ୍କୁ ସବୁବେଳେ ତାଙ୍କ ଛବି ପାର୍ଶ୍ୱରେ ବିଶପଙ୍କ ପଦବୀ ଚିହ୍ନ ସ୍ୱରୂପ ପରିହିତ ଲମ୍ବା ଶିରସ୍ତ୍ରାଣ ରଖାଯାଏ ।

କାଥଲିକ ଖ୍ରୀଷ୍ଟିୟାନମାନେ ଡଚ୍ ମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହେଉଥିବା ଜାଣି ଯୋସେଫ ଭାଜ ବାଟି କାଲୋଆକୁ ୧୭୧୦ ମସିହାରେ ଯାତ୍ରା କରିଥିଲେ ଓ ସେମାନଙ୍କ ବିଶ୍ୱାସକୁ ନବିକରଣ କରିବା ପାଇଁ କାର୍ଯ୍ୟ କରିଥିଲେ । ଫାଦେର ଯୋଷେଫ ଭାଜ ଥାଣ୍ଡାଭେନ ଭାଲିରେ ଥିବା ଗୋଟିଏ ପ୍ୟାରିସ୍‌ରେ ବିଶ୍ୱାସୀମାନଙ୍କୁ ସାକ୍ଷାତ କରିବା ପାଇଁ ଗଲେ କିନ୍ତୁ ସେଠି କାର କେତେକ ଲୋକ ତାଙ୍କୁ ଗୋଟିଏ ଗଛରେ ବାନ୍ଧି ପ୍ରହାର କଲେ । ପୁଣି ଥରେ ବାଟିକାଲୋଆକୁ ଦ୍ୱିତୀୟ ଥର ପରିଦର୍ଶନ କରି କାଣ୍ଡିକୁ ଫେରିଥିଲେ । ୧୭୦୭ ଖ୍ରୀଷ୍ଟାବ୍ଦରେ ରାଜା ବିମଳ ଧର୍ମ

ସୂର୍ଯ୍ୟ ଦ୍ୱିତୀୟଙ୍କ ମୃତ୍ୟୁ ହୋଇଥିଲା । ତାହାଙ୍କ ମୃତ୍ୟୁ ପରେ ବୀର ନରେନ୍ଦ୍ର ସିହ୍ନା ଫାଦର ଯୋସେଫଙ୍କୁ ସମସ୍ତ ସେବା କାର୍ଯ୍ୟରେ ସହାୟତା କରିଥିଲେ । ୧୭୦୮ ମସିହାରେ ପୁଣି ନୂଆ ମିଶନାରିମାନେ ଭାରତରୁ ସେଠାକୁ ପହଞ୍ଚିଥିଲେ । ବିଭିନ୍ନ ସମୟରେ ମିଶନାରୀ ଯାତ୍ରା କରି ସେ ଦୁର୍ବଳ ହୋଇ ପଡ଼ିଲେ । ଓରେଟରିଆନ ନିୟମ ପ୍ରକାରେ ୮ ଦିନର ଆଧ୍ୟାତ୍ମିକ ଧ୍ୟାନ କରିବାକୁ ସେ ଆରମ୍ଭ କରିଥିଲେ କିନ୍ତୁ ଧ୍ୟାନର ଷଷ୍ଠ ଦିନ ଅର୍ଥାତ ୧୭୧୧ ମସିହା ଜାନୁୟାରି ୧୬ ତାରିଖ ଦିନ ୫୯ ବର୍ଷ ବୟସରେ ସେ ମୃତ୍ୟୁବରଣ କରିଥଲେ । ଫାଦେର ଯୋସେଫଙ୍କ ସାଧୁ ପଦକୁ ଉନ୍ନିତ ହେବାର ପ୍ରକ୍ରିୟା ପ୍ରଥମେ କୋଚିନ ର ଧର୍ମାଧ୍ୟକ୍ଷ ଫ୍ରାନ୍‌ସିସ୍‌କୋ ଡି ଭାସ କୋନସେଲସ ଏସ.ଜେ.ଙ୍କ ଦ୍ୱାରା ୧୭୩୭ ମସିହାରେ ଆରମ୍ଭ ହୋଇଥିଲା କିନ୍ତୁ ଆବଶ୍ୟକୀୟ ପ୍ରମାଣ ପତ୍ରର ଅଭାବ ଯୋଗୁ ତାହା ସ୍ଥଗିତ ହୋଇ ରହି ଥିଲା । ପୁଣି ଥରେ ଗୋଆ ମହାଧର୍ମ ପ୍ରଦେଶର ପ୍ରଚେଷ୍ଟା ଦ୍ୱାରା ୧୯୫୩ ମସିହାରେ ସେହି କାର୍ଯ୍ୟଟି ତ୍ୱରାନ୍ୱିତ କରାଗଲା । ୧୯୯୫ ମସିହା ଯାନୁୟାରୀ ୨୧ ତାରିଖ ଦିନ ଶ୍ରୀଲଙ୍କାର କୋଲମ୍ବଠାରେ ପୂଣ୍ୟପିତା ଯୋହନ ପାଉଲ ଦ୍ୱିତୀୟଙ୍କ ଦ୍ୱାରା ତାଙ୍କୁ "ଧନ୍ୟ" ବୋଲି ଘୋଷାଣା କରାଗଲା ।

୨୦୧୩ ଅକ୍ଟୁବର ମାସରେ ଫାଦର ଯୋସେଫ ଭାଜଙ୍କ ମାଧସ୍ଥତାରେ ପ୍ରାର୍ଥନାର ଗୋଟିଏ ଆଶ୍ଚର୍ଯ୍ୟ କର୍ମର ସାକ୍ଷ୍ୟ ଦିଆଯାଇଥିଲା । ଏହା ପରେ ୨୦୧୫ ଜାନୁୟାରୀ ମାସରେ ଶ୍ରୀଲଙ୍କା ଦେଶର କଲମ୍ବ ନିକଟବର୍ତ୍ତୀ ଗଲଫାଚ୍‌ ଠାରେ ପୂଣ୍ୟପିତା ଫ୍ରାନସିସ ଯୋସେଫ ଭାଜଙ୍କୁ କାଥଲିକ ମଣ୍ଡଳୀର ସାଧୁ ରୂପେ ଘୋଷଣା କରିଥିଲେ । ସାଧୁ ଫ୍ରାନସିସ ଭାଜ ଯଦିଓ ଭାରତର ଗୋଆରେ ଜନ୍ମ ଗ୍ରହଣ କରିଥିଲେ ତଥାପି ସେ ଶ୍ରୀଲଙ୍କାରେ ମିଶନାରି କାର୍ଯ୍ୟ କରି ସେଠାରେ ମୃତ୍ୟୁ ବରଣ କରିଥିଲେ, ଏଣୁ ଶ୍ରୀଲଙ୍କାର ସେ ହେଉଛନ୍ତି ପ୍ରଥମ ସାଧୁ । ମାଙ୍ଗାଲୋରର ମୁଡ଼ିପୁଠାରେ ୨୦୧୫ ମସିହା ଜାନୁୟାରୀ ୧୪ ରୁ ୧୬ ପର୍ଯ୍ୟନ୍ତ ସାଧୁ ଯୋସେଫ ଭାଜଙ୍କ ସାଧୁ ପଦବୀ ସମାରୋହ ପାଳନ କରାଯାଇଥିଲା, କାରଣ ତାଙ୍କ ଅଞ୍ଚଳର ସେ ହେଉଛନ୍ତି ପ୍ରଥମ ଯାଜକ ଯାହାଙ୍କୁ ସାଧୁ ପଦବୀରେ ସମ୍ମାନିତ କରାଯାଇଛି ।

ସାଧୁ ଯୋଷେଫ ରାଜଙ୍କ କେତୋଟି ଉକ୍ତି:

- ✵ "ମୁଁ ବୃଦ୍ଧ ହେଉ ନାହିଁ । ମୁଁ ବହୁତ ଭଲରେ ରହୁଛି" ।
  "ବିଲେଇ ଛୁଆଠାରୁ ଗୋଟିଏ ବିଷୟ ମୁଁ ଶିକ୍ଷା କରେ ଯେ ସେ ଯାହା କରେ, ମାରିବା ଉଦ୍ଦେଶ୍ୟରେ ହି ସବୁକିଛି କରେ" ।
- ✵ "କାହାକୁ ଘୃଣା ନ କରି ଜଣେ ଅନ୍ୟ ଜଣକୁ ପ୍ରଭୁଙ୍କ ଉଦାରତା ଅନୁକରଣ କରି ସାହାଯ୍ୟ କର, ଭଲ କାମ ପାଇଁ ସୁଯୋଗ ମିଳିଲେ ତାହାକୁ ହାତ ଛଡ଼ା କରିବ ନାହିଁ" ।
- ✵ "ତୁମ ଠାରେ ପ୍ରେମ ଯେତିକି ବୃଦ୍ଧି ହୁଏ ସେତେ ସୌନ୍ଦର୍ଯ୍ୟ ବୃଦ୍ଧି ହେବ କାରଣ ଆତ୍ମାର ସୌନ୍ଦର୍ଯ୍ୟ ହେଲା ପ୍ରେମ" ।

✵✵✵

# ସାଧୁ ସେବାଷ୍ଟିଆନ (ଜାନୁୟାରୀ ୨୦)

ସାଧୁ ସେବାଷ୍ଟିଆନ ଗାଉଲର ନାର୍ବୋନେ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଓ ମାତା ଥିଲେ ଇଟାଲୀର ମିଲାନ ସହରର ଅଧିବାସୀ । ସେବାଷ୍ଟିଆନ ମିଲାନ୍‌ରେ ବାଲ୍ୟ କାଳରୁ ବଢ଼ିଲେ ଏବଂ ରୋମୀୟ ସୈନ୍ୟ ବିଭାଗରେ ଜଣେ ଅଫିସର ହୋଇ ପାରିଥିଲେ । ଛୋଟରୁ ଯୀଶୁଖ୍ରୀଷ୍ଟଙ୍କର ସେବକ ହୋଇ କାମ କରିବା ପାଇଁ ତାଙ୍କର ଗଭୀର ଇଚ୍ଛା ଥିଲା । ଯଦିଓ ସୈନ୍ୟ ବିଭାଗରେ ରହି କାମ କରିବାର ତାଙ୍କର ଇଚ୍ଛା ନଥିଲା, ତଥାପି ଖ୍ରୀଷ୍ଟିଆନମାନଙ୍କୁ ଗୁପ୍ତରେ ବନ୍ଦୀଶାଳାରୁ ଏବଂ ନିର୍ଯ୍ୟାତନାରୁ ରକ୍ଷା କରିବା ପାଇଁ ସେ ସୈନ୍ୟଦଳରେ ଯୋଗ ଦେଇଥିଲେ । ସେ ଯେ ଜଣେ ଖ୍ରୀଷ୍ଟିଆନ୍, ତାହା ଅନ୍ୟ ସୈନ୍ୟମାନଙ୍କୁ ଜଣା ନଥିଲା ।

ମାର୍କ ଏବଂ ମାସେଲିନୁସ୍ ନାମରେ ଜାଆଁଳା ଦୁଇ ଭାଇ ନୂତନ ଭାବରେ ଦୀକ୍ଷାସ୍ନାନ ଗ୍ରହଣ କରି ଖ୍ରୀଷ୍ଟିଆନ ହୋଇଥିଲେ । ସେବାଷ୍ଟିଆନ ଯେତେବେଳେ ଶୁଣିଲେ ଯେ ସେହି ଦୁଇ ଜଣ ଜାଆଁଳା ଭାଇଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ ବନ୍ଦିଶାଳାକୁ ପଠାଯାଇଛି, ସେବାଷ୍ଟିଆନ୍ ଦୁଃଖରେ ମର୍ମାହତ ହେଲେ । ସେବାଷ୍ଟିଆନ୍ ବନ୍ଦିଶାଳାକୁ ଯାଇ ଦେଖିଲେ ଯେ ସେହି ଦୁଇ ଭାଇଙ୍କ ଚତୁଃପାର୍ଶ୍ୱରେ ତାଙ୍କର ଅନେକ ବନ୍ଧୁ ଜମା ହୋଇଛନ୍ତି । ତାଙ୍କ ପିତା ଓ ମାତା ମଧ୍ୟ ସେମାନଙ୍କ ସହିତ ରହି ବିଶ୍ୱାସକୁ ପରିତ୍ୟାଗ କରିବା ପାଇଁ ପ୍ରବୋର୍ଚ୍ଚାଉଛନ୍ତି, ଯେପରି ସେମାନେ ବଞ୍ଚି ପାରିବେ । ମାର୍କ ଏବଂ ମାର୍ସେଲିନୁସ୍ ସ୍ୱର୍ଗୀୟ ପିତା ଓ ପାର୍ଥିବ ପିତାଙ୍କର ପ୍ରେମ, ଏହି ଦୁଇଟି ମଧ୍ୟରୁ ସେମାନଙ୍କୁ ଗୋଟିଏ ବାଛିବା ପାଇଁ ସେମାନଙ୍କର ହୃଦୟ ଭାଙ୍ଗି ପଡ଼ିଥିଲା । ସେମାନେ ଅସ୍ଥିରତା ଅନୁଭବ କରୁଥିଲେ । ସେହି ସମୟରେ ସେବାଷ୍ଟିଆନ ସେଠାରେ ପହଞ୍ଚି ଅତି ସ୍ପଷ୍ଟ ଭାବରେ କହିଥିଲେ, 'ହେ ମୋର ପ୍ରିୟ ଭାଇମାନେ, ତୁମ୍ଭେମାନେ ଯିଏ ସର୍ବଦା ପ୍ରଭୁଙ୍କ ନିମନ୍ତେ ସାହସିକତା ପ୍ରଦର୍ଶନ କରି ଆସିଛ, ପୁଣି ଯେଉଁ ସ୍ୱର୍ଗୀୟ ରାଜା ତୁମ୍ଭମାନଙ୍କ ପାଇଁ ଅନନ୍ତ ଗୌରବର ସ୍ଥାନ ପ୍ରସ୍ତୁତ କରିଛନ୍ତି, ସେହି ପ୍ରଭୁଙ୍କୁ ତୁମେ କ'ଣ ବର୍ତ୍ତମାନ ପରିତ୍ୟାଗ କରି ପଛକୁ ଫେରିଯିବା ପାଇଁ ଚାହୁଁଛ' ? ସେବାଷ୍ଟିଆନଙ୍କର ଏହି ବାକ୍ୟ ଶୁଣି

ସମସ୍ତେ ନୀରବ ରହିଲେ, ସ୍ବର୍ଗୀୟ କିରଣରେ ତାଙ୍କ ମୁଖ ଉଜ୍ଜ୍ୱଳତର ହେଲା ଏବଂ ସେ କହିବାକୁ ଲାଗିଲେ 'ଶେଷରେ ଏହି ପାର୍ଥିବ ଜଗତ ତୁମକୁ କଣ ଦେଇପାରିବ, କେବଳ ମୃତ୍ୟୁ' । ତୁମର ଅନନ୍ତ ଜୀବନର ଆନନ୍ଦ କଣ ତୁମେ ବଦଳେଇ ପାରିବ ? ଏହା ଶୁଣି ଦୁଇ ଭାଇ ନୀରବରେ ପରସ୍ପରକୁ ଚାହିଁ ମସ୍ତକ ନତ କଲେ । ସେମାନେ ଈଶ୍ୱରଙ୍କ ସେବା କରିବା ପାଇଁ ନିଷ୍ପତି ନେଲେ । ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ ତାଙ୍କ ପିତା ଓ ମାତା ସମସ୍ତେ ସେବାସ୍ତିଆନଙ୍କ ଭାଷଣରେ ଆଶ୍ଚର୍ଯ୍ୟ ହେଲେ ଏବଂ ଯୀଶୁଙ୍କ ବିଷୟରେ ଅଧିକ ଜାଣିବା ପାଇଁ ତାଙ୍କୁ ପ୍ରଶ୍ନ କଲେ । ତତ୍‌ପରେ ଜଣକ ପରେ ଜଣେ ଦୀକ୍ଷାସ୍ନାନ ଗ୍ରହଣ କରିବା ପାଇଁ ଇଚ୍ଛୁକ ହେଲେ । ଉପସ୍ଥିତ ଜନତା ମଧ୍ୟରୁ କେବଳ ଜଣେ ବ୍ୟକ୍ତି ଯିଏ ସେବାସ୍ତିଆନ୍‌ଙ୍କ ବାକ୍ୟକୁ ବିଶ୍ୱାସ କଲେ ନାହିଁ, ସେ ହେଉଛନ୍ତି ଚାନ୍‌ସେଲର ନିକୋସ୍ତ୍ରାତୁସ । ସେ କହିଲେ ତୁମର ବାକ୍ୟ ଯଥେଷ୍ଟ ନୁହଁ, ତୁମ ବାକ୍ୟଠାରୁ ଅଧିକ ମୋତେ ଆବଶ୍ୟକ ପ୍ରମାଣ । ସେବାସ୍ତିଆନ୍ ଦେଖିଲେ ନିକୋସ୍ତ୍ରାତୁସଙ୍କ ପାର୍ଶ୍ୱରେ ଠିଆ ହୋଇଛନ୍ତି ତାଙ୍କ ସ୍ତ୍ରୀ ଜୋଏ । ସେବାସ୍ତିଆନ୍ କହିଲେ, ତୁମ ସ୍ୱାମୀଙ୍କୁ କାହିଁକି ତୁମେ କିଛି କହୁନାହଁ, ହୁଏତ ତୁମ କଥାରେ ସେ ବୁଝି ମନ ପରିବର୍ତନ କରିପାରନ୍ତି । ସେହି ସମୟରେ ଜୋଏଙ୍କ ଆଖିରୁ ଲୁହ ଝରିବାକୁ ଲାଗିଲା । ସେବାସ୍ତିଆନ ବୁଝି ପାରିଲେ ନାହିଁ କାହିଁକି ସେ ଏପରି କାନ୍ଦୁଛି ? ସେହି ସମୟରେ ନିକୋସ୍ତ୍ରାତୁସ ଆଗକୁ ବଢ଼ି କହିଲେ, 'ସେବାସ୍ତିଆନ୍ ତୁମେ କ'ଣ ଜାଣି ନାହଁ ଆଜକୁ ପ୍ରାୟ ଛ' ବର୍ଷ ହେଲାଣି ସେ ଗୋଟିଏ ଶବ୍ଦ କହିବାକୁ ଅକ୍ଷମ' । ଏହା ଶୁଣି ସେବାସ୍ତିନ କିଛି ସମୟ ନୀରବରେ ପ୍ରାର୍ଥନା କଲେ । ତାପରେ ଜୋଏଙ୍କୁ କହିଲେ, 'ଜୋଏ ମୋ ଆଡ଼କୁ ଚାହଁ' । ଯେତେବେଳେ ଜୋଏ ସେବାସ୍ତିଆନ ଆଡ଼କୁ ଚାହିଁଲେ, ସେବାସ୍ତିଆନ୍ ଜୋଏଙ୍କ ଓଠରେ କ୍ରୁଶ ଚିହ୍ନ ଅଙ୍କନ କରି କହିଲେ, 'ଜୋଏ, ଯୀଶୁଖ୍ରୀଷ୍ଟ ଆମର ପ୍ରଭୁଙ୍କୁ ତୁମେ ବିଶ୍ୱାସ କରୁଛ କି ? ଜୋଏଙ୍କ ଓଠ ଖୋଲିଗଲା ଏବଂ ଥର ଥର ହୋଇ କହିଲେ, 'ହଁ ମୁଁ ପ୍ରଭୁ ଯୀଶୁଙ୍କୁ ବିଶ୍ୱାସ କରୁଅଛି' । ଏହା ଶୁଣିବା ମାତ୍ରେ ଜୋଏଙ୍କ ସ୍ୱାମୀ ସେବାସ୍ତିଆନ୍‌ଙ୍କ ପାଦରେ ପଡ଼ିଗଲେ ଏବଂ ଖ୍ରୀଷ୍ଟଙ୍କୁ ସ୍ୱୀକାର କଲେ ।

ଖ୍ରୀଷ୍ଟିଆନ୍‌ମାନଙ୍କ ପ୍ରତି ନିର୍ଯ୍ୟାତନା ବଢ଼ିବାକୁ ଲାଗିଲା । ଇତିମଧ୍ୟରେ

ସେବାସ୍ତିଆନ୍ ବନ୍ଦି ଶାଳାରେ ଥିବା ଖ୍ରୀଷ୍ଟିଆନମାନଙ୍କୁ ଆଶ୍ୱାସନା ଦେଇ ସେମାନଙ୍କୁ ବିଭିନ୍ନ ଭାବରେ ସାହାଯ୍ୟ କରୁଥିଲେ । ସେବାସ୍ତିଆନ ଦର୍ଶନରେ ଜାଣିପାରିଲେ ଯେ ତାଙ୍କ ମୃତ୍ୟୁର ସମୟ ସନ୍ନିକଟ ।

ଶାସକ ଡାଇଓକ୍ଲେସିଆନଙ୍କ ଅତି ପ୍ରିୟ ସୈନିକ ଥିଲେ ସେବାସ୍ତିଆନ । ଯେତେବେଳେ ଶାସକ ଶୁଣିଲେ ଯେ ସେବାସ୍ତିଆନ ଖ୍ରୀଷ୍ଟିଆନମାନଙ୍କୁ ଏହିପରି ସାହାଯ୍ୟ କରୁଛନ୍ତି, ତାଙ୍କର ସେବାସ୍ତିଆନଙ୍କ ପ୍ରତି କ୍ରୋଧ ବଢ଼ିବାକୁ ଲାଗିଲା । ସେ କ୍ରୋଧ ଜର୍ଜରିତ ହୋଇ ତାଙ୍କ ସୈନ୍ୟମାନଙ୍କୁ ଆଦେଶ ଦେଇ କହିଲେ; ତୀର ଦ୍ୱାରା ସେବାସ୍ତିଆନ ମୃତ୍ୟୁଦଣ୍ଡ ପାଇବା ଯୋଗ୍ୟ । ସେବାସ୍ତିଆନଙ୍କୁ ଜଗୁଆଳିମାନେ ଗୋଟିଏ ବଡ଼ ଗଛରେ ବାନ୍ଧିଦେଲେ ଏବଂ ଶାସକଙ୍କ ବର୍ଚ୍ଛାଧାରୀମାନଙ୍କ ଦାୟିତ୍ୱରେ ଛାଡ଼ିଦେଇ ଚାଲିଗଲେ । ଗୋଟିଏ ପରେ ଗୋଟିଏ ତୀର ବର୍ଚ୍ଛାଧାରୀ ସୈନ୍ୟମାନେ ସେବାସ୍ତିଆନଙ୍କ ଶରୀରରେ ଶରବିଦ୍ଧ କଲେ । ସେବାସ୍ତିଆନ ଯଥେଷ୍ଟ ପୀଡ଼ା ଅନୁଭବ କଲେ, କିନ୍ତୁ କ୍ରନ୍ଦନ କଲେ ନାହିଁ । ବର୍ଚ୍ଛାଧାରୀମାନେ ନିଶ୍ଚିତ ହେଲେ ଯେ, ସେ କଷ୍ଟ ପାଇ ମୃତ୍ୟୁବରଣ କରିବେ ।

ସେହି ସମୟରେ ଇରେନ୍ ନାମକ ଜଣେ ଧାର୍ମିକା ବୃଦ୍ଧା ସେଠାରେ ପହଞ୍ଚି ସେବାସ୍ତିଆନଙ୍କ ଶରୀରକୁ ଉତମ ଭାବରେ କବର ଦେବା ପାଇଁ ସେଠାକୁ ଯାଇଥିଲେ । କିନ୍ତୁ ବୃଦ୍ଧା ଜଣକ ଜାଣିପାରିଲେ ଯେ, ତାର ବଞ୍ଚିବାର କିଛି ଆଶା ଅଛି । ଏଣୁ ଇରେନ୍ ନିଜ ଗୃହକୁ ଆଣି ତାର ତତ୍ତ୍ୱାବଧାନ ନେଲେ । ଆସ୍ତେ ଆସ୍ତେ ସେବାସ୍ତିଆନ ଶକ୍ତି ଫେରି ପାଇଲେ । ସେ ଭାବିଲେ ହୁଏତ ପ୍ରଭୁ ମୋତେ ବଞ୍ଚାଇଛନ୍ତି । ଶାସକ ଡାଇଓକ୍ଲେସିଆନ୍ ଯେପରି ତାଙ୍କ କ୍ରୁର ସ୍ୱଭାବରୁ ମନ ପରିବର୍ତନ କରିପାରିବ, ଏହି ବିଷୟ ଚିନ୍ତା କରି ସେ ପ୍ରାର୍ଥନା କରିବାକୁ ଲାଗିଲେ । ଚାଲିବା ପାଇଁ ଶକ୍ତି ନ ଥିଲେ ମଧ୍ୟ ଦିନେ ସେବାସ୍ତିଆନ୍ ନିଜେ ସୈନିକର ପୋଷାକ ପରିଧାନ କରି ଶାସକ ଯେଉଁ ରାସ୍ତାରେ ପାର ହେବେ, ସେଠାରେ ଅପେକ୍ଷାକରି ବସିଲେ । ଯେତେବେଳେ ଶାସକ ଡାଇଓକ୍ଲେସିଆନ ସେହି ରାସ୍ତା ଦେଇ ପାର ହେଲେ ସେବାସ୍ତିଆନ ଚିହାର କରି କହିଲେ, 'ନ୍ୟାୟର ସମୟ ଆସିଯାଇଛି, ଅନୁତାପ କର । ତୁମେ ଯେଉଁ ପାପ କରିଛ, ସେଇଥିପାଇଁ

ପ୍ରଭୁଙ୍କଠାରୁ କ୍ଷମାଭିକ୍ଷା କର' । ସେବାସ୍ତିଆନ ଯେ ବଞ୍ଚିଯାଇଛି ତାହା ତାଇଓକ୍ଲେସିଆନ୍ ଶୁଣି କିଛି ସମୟ ଆଶ୍ଚର୍ଯ୍ୟ ହୋଇ ସ୍ତମ୍ଭୀଭୂତ ହେଲେ । ତଥାପି ଶାସକ ରାଗରେ ଚିତ୍କାର କରି କରି କହିଲେ, 'ସେହି ବ୍ୟକ୍ତିଙ୍କୁ ନେଇଯାଅ ଏବଂ ତାର ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କୁ ପ୍ରହାର କରନ୍ତୁ' । ଏହାପରେ ସୈନିକମାନଙ୍କ ପ୍ରହାରରେ ସେବାସ୍ତିୟାନ ମୃତ୍ୟୁବରଣ କଲେ । ସୈନିକମାନେ ତାଙ୍କ ଶରୀରକୁ ମଳ ସୁଡଙ୍ଗ (Sewer) କୁ ଫିଙ୍ଗିଦେଲେ । ଖ୍ରୀଷ୍ଟିଆନମାନେ ସେହି ଶରୀରକୁ ଉଦ୍ଧାର କରି କବର ଦେଲେ ଏବଂ କବର ଉପରେ ଏକ ବିରାଟ ଗୀର୍ଜା ନିର୍ମାଣ କଲେ ।

ସେବାସ୍ତିଆନଙ୍କ ସମ୍ମୁଖରେ ସବୁବେଳେ ଗୋଟିଏ ଚିନ୍ତା ଥିଲା ତାହା 'ସ୍ୱର୍ଗ' । ସେହି 'ସ୍ୱର୍ଗ' ହରାଇବା ପାଇଁ ସେ କେବେହେଲେ ଚାହିଁ ନ ଥିଲେ । ଯାହା ଠିକ୍ ତାହା କରି ଏବଂ ଭୁଲ୍‌କୁ ପରିତ୍ୟାଗ କରି ଆମ୍ଭେ ସେହି 'ସ୍ୱର୍ଗ' ଲାଭ କରିବା ପାଇଁ ସାଧୁ ସେବାସ୍ତିଆନଙ୍କ ମାଧମରେ ପ୍ରାର୍ଥନା କରିବା । ସାଧୁ ସେବାସ୍ତିଆନଙ୍କ ଦୃଢ ଈଶ୍ୱର ବିଶ୍ୱାସ, ପରୋପକାରିତା ଏବଂ ସାହସିକତା ଆମ ପାଇଁ ଅନୁକରଣୀୟ ।

**ସାଧୁ ସେବାସ୍ତିଆନ୍‌ଙ୍କ କେତୋଟି ଉକ୍ତି**

* "ଖ୍ରୀଷ୍ଟଙ୍କ ଅଧିନରେ ଥିବା ଆତ୍ମା ମାନଙ୍କୁ ଜିଣିବା ପାଇଁ ଶୟତାନ ତାର ସମସ୍ତ ଶକ୍ତି ପ୍ରୟୋଗ କରିଥାଏ । ଶୟତାନଠାରେ ଲଢ଼େଇ କରି ପରମେଶ୍ୱରଙ୍କୁ ସେହି ଆତ୍ମାଗୁଡ଼ିକୁ ଫେରାଇବା ପାଇଁ ଆମେ ଯେଉଁ ପରିଶ୍ରମ କରୁ ସେଥିପାଇଁ କ୍ରୋଧ କରିବା ନାହିଁ" ।
* "ମୃତ୍ୟୁ ପୂର୍ବରୁ ସେ କହନ୍ତି, ପ୍ରଭୁ ଯୀଶୁ ମୋର ଆତ୍ମାକୁ ଗ୍ରହଣ କର । ପ୍ରଭୁ ସେମାନଙ୍କର ଏହି ପାପ ପାଇଁ ସେମାନେ ଦୋଷୀ ନ ହୁଅନ୍ତୁ" ।

***

# ସାଧ୍ୱୀ ଆଗ୍ନେସ

## (୨୯୧-୩୦୪, ଜାନୁୟାରୀ ୨୧)

୨୯୧ ମସିହାରେ ରୋମର ଏକ ସମ୍ଭ୍ରାନ୍ତ ଖ୍ରୀଷ୍ଟିୟାନ ପରିବାରରେ ଆଗ୍ନେସଙ୍କ ଜନ୍ମ । ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଏବଂ ଧନରେ ବିମୋହିତ ହୋଇ ଅନେକ ଯୁବକମାନେ ତାଙ୍କୁ ପ୍ରୋଲଭନ ଦ୍ୱାରା ଫାନ୍ଦରେ ପକାଇବା ପାଇଁ ଚେଷ୍ଟା କରୁଥିଲେ । କିନ୍ତୁ ଯୀଶୁଙ୍କୁ ନିଜର କୁମାରୀତ୍ୱ ଉସର୍ଗ କରି ଅନ୍ୟମାନଙ୍କୁ ପାଦରେ ଠେଲି ଦେଇଥିଲେ । ସେ ଯେ କେବଳ ସୁନ୍ଦରୀ ଥିଲେ ତା ନୁହଁ ସେ ମଧ୍ୟ ଆଧ୍ୟାତ୍ମିକ ଭାବେ ବୟୋଃପ୍ରାପ୍ତ ଥିଲେ । ୧୩ ବର୍ଷ ବୟସରୁ ହିଁ ଯୀଶୁଙ୍କୁ ନିଜର ବର ରୂପେ ଗ୍ରହଣ କରି ରହସ୍ୟମୟ ଭାବେ ତାଙ୍କଠାରେ ସଂଯୁକ୍ତ ହୋଇଥିଲେ ।

ଦିନକର ଘଟଣା ଆଗ୍ନେସ ସ୍କୁଲରୁ ଫେରିବା ସମୟରେ ସେହି ଅଞ୍ଚଳର ମୁଖ୍ୟ ଶାସକ ସେମ୍ପ୍ରନିୟୁସଙ୍କ ପୁତ୍ର ପ୍ରୋକପ ତାଙ୍କ ଚେହେରା ଦେଖି ପ୍ରେମରେ ପଡିଲେ । ଟଙ୍କା ଓ ସୁନା ପରି ମୂଲ୍ୟବାନ ବସ୍ତୁ ଓ ଧନ ଦେଇ ନିଜର ସ୍ତ୍ରୀ ରୂପେ ଗ୍ରହଣ କରିବା ପାଇଁ ତାଙ୍କୁ ବିଭିନ୍ନ ପ୍ରକାରର ପ୍ରଲୋଭନ ଦେଖାଉଥିଲେ । ଆଗ୍ନେସ ତାଙ୍କୁ କହିଲେ, ରେ ମୃତ୍ୟୁର ଆହାର, ଦୁଷ୍କାମିର ଜାଳେଣି, ପାପର ଅଗ୍ନିକୁ ଜଳାଉଥିବା ବ୍ୟକ୍ତି ମୋ ଠାରୁ ଦୂରେଇ ଯାଅ । ମୋର ପ୍ରେମକୁ ମୁଁ ଅନ୍ୟ ଜଣଙ୍କୁ ଦେଇ ଦେଇଛି । ଯାହାଙ୍କୁ ମୋର ସ୍ନେହ ଦେଇଛି, ସେହି ବରର ପାଞ୍ଚୋଟି ବିଷୟକୁ ମୁଁ ପ୍ରଶଂସା କରେ । ସେଗୁଡିକ ହେଲା, ଉଚ୍ଚ ବଂଶ, ତାଙ୍କ ସୌନ୍ଦର୍ଯ୍ୟ, ତାଙ୍କ ପ୍ରାଚୁର୍ଯ୍ୟତା, ସଫଳତା ପାଇଁ ସାହାସ ଓ ଶକ୍ତି ଏବଂ ଉତ୍କୃଷ୍ଟ ପ୍ରେମ । ସେ ପୁଣି କହିବାକୁ ଲାଗିଲେ ଯେ ସେ ଯାହାଙ୍କୁ ପ୍ରେମ କରନ୍ତି ତାହାଙ୍କର ପ୍ରେମ ତୁମଠାରୁ ଅଧିକ ଉନ୍ନତ ଓ ତାହାଙ୍କର ଉତ୍ପତି ଅଧିକ ସୁଖ୍ୟାତ । ତାଙ୍କ ମାଁ ଅଟନ୍ତି କୁମାରୀ, ତାଙ୍କ ପିତା ଜାଣନ୍ତି ନାହିଁ କୌଣସି ପୁରୁଷଙ୍କୁ, ଦୂତମାନେ ତାଙ୍କୁ ସେବା କରନ୍ତି, ତାଙ୍କ ସୌନ୍ଦର୍ଯ୍ୟରେ ସୂର୍ଯ୍ୟ ଚନ୍ଦ୍ର ବିମୁଗ୍ଧ ହୁଅନ୍ତି, ତାଙ୍କଠାରେ ଅଛି ଅସରନ୍ତି ଧନ, ତାହାଙ୍କ ସୁଗନ୍ଧରେ ମୃତ୍ୟୁ ଜୀବନ ପାଏ, ତାହାଙ୍କ ସ୍ପର୍ଶରେ ଦୁର୍ବଳ ଶକ୍ତିଶାଳୀ ହୁଏ । ତାହାଙ୍କ ପ୍ରେମ ଅଟେ ପବିତ୍ର । ତାହାଙ୍କ ସ୍ପର୍ଶରେ ପବିତ୍ରତା ଆସେ । ତାଙ୍କ ସହିତ ଏକତ୍ର ରହିବା କୁମାରୀତ୍ୱ ।

ଏହା ଶୁଣି ସେ ହତୋତ୍ସାହ ହେଲେ ଏବଂ ଘରକୁ ଯାଇ ବେମାର ପଡିଲେ । କିଛିଦିନ ପରେ ସେହି ଯୁବକର ପିତା ପୁଅର ବେମାରର କାରଣ ଜାଣି ଆଗ୍ନେସଙ୍କୁ ଅନୁରୋଧ କଲେ, ଯେପରି ସେ ତାର ପୁତ୍ର ସହିତ ବିବାହ କରିବ । ପ୍ରଥମେ କୋମଳ କଥା ଦ୍ୱାରା ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ଆଗ୍ନେସ ନିଜ ନିଷ୍ପତିରେ ଅଟଳ ଥିବା ଜାଣି ବିଭିନ୍ନ ଭାଷା ବ୍ୟବହାର କରି ଭୟଭୀତ ଦେଖାଇ ତାଙ୍କ କହିବା ପ୍ରକାରେ କାର୍ଯ୍ୟ କରିବା ପାଇଁ ଆଦେଶ ଦେଲେ । ତାଙ୍କ ସମ୍ମୁଖରେ ଦୁଇଟି ପ୍ରସ୍ତାବ ମଧ୍ୟରୁ ଗୋଟିଏ ତାଙ୍କୁ ବାଛିବା ପାଇଁ କୁହାଗଲା । ସେହି ଦୁଇଟି ପ୍ରସ୍ତାବ ଥିଲା, "ତାହାଙ୍କ ଦେବୀ ଭେଷ୍ଟାଙ୍କୁ ଧୂପ ଓ ବଳି ଉତ୍ସର୍ଗ କରିବେ ନଚେତ୍ ବେଶ୍ୟାଶାଳାକୁ ନିକ୍ଷେପ କରାଯାଇ ତାଙ୍କୁ ବେଶ୍ୟା ମାନଙ୍କ ପରି ବ୍ୟବହାର କରାଯିବ"। ତାଙ୍କୁ ଯେତେବେଳେ ଘୋଷାରି ନିଆଯାଇ ଭେଷ୍ଟା ଦେବୀ ପ୍ରତିମୂର୍ତ୍ତି ସମ୍ମୁଖରେ ବଳି ଉତ୍ସର୍ଗ କରିବା ପାଇଁ କୁହାଗଲା, ସେ କେବଳ କ୍ରୁଶଚିହ୍ନ କରିଥିଲେ ।

ସେହି ମୂଖ୍ୟ ଶାସକ ତାଙ୍କୁ ଅପମାନ ଦେଇ ତାଙ୍କ ଚରିତ୍ରକୁ ନଷ୍ଟ କରିବା ପାଇଁ ଚେଷ୍ଟା କଲେ । ରୋମୀୟମାନଙ୍କ ନିୟମ ପ୍ରକାରେ ଜଣେ କୁମାରୀଙ୍କୁ ବିନା କାରଣରେ ହତ୍ୟା କରାଯାଏ ନାହିଁ ଏଣୁ ତାଙ୍କୁ କେବଳ ଅପମାନ ଦେଇ ସମସ୍ତଙ୍କ ସମ୍ମୁଖରେ ବେଶ୍ୟାଶାଳକୁ ଟାଣି ନିଆଗଲା । ତାଙ୍କୁ ଉଲଗ୍ନ କରି ସେହି ବେଶ୍ୟାଶାଳାରେ ରଖାଗଲା । ଏହି ଅବସ୍ଥାରେ ସେ ପ୍ରାର୍ଥନା କରନ୍ତେ, କୁହାଯାଏ ତାଙ୍କ କେଶ ଲମ୍ୱା ହୋଇ ପୋଷାକ ପରି ତାଙ୍କ ସମଗ୍ର ଶରୀରକୁ ଲୁଚାଇଲା । ଯେଉଁମାନେ ବ୍ୟଭିଚାରୀ, ବିନା ଶାସ୍ତି ଦ୍ୱାରା ସେମାନେ ଆଗ୍ନେସଙ୍କୁ ବ୍ୟବହାର କରିବା ପାଇଁ ରୋମୀୟ ମୂଖ୍ୟ ଶାସକ ସେମାନଙ୍କୁ ଅନୁମତି ଦେଇଥିଲେ । ଅଧିକାଂଶ ଭ୍ରଷ୍ଟ ଯୁବକମାନେ ତାଙ୍କ ନିକଟକୁ ଯିବାକୁ ଚାହିଁଲେ କିନ୍ତୁ ତାଙ୍କ ନିକଟବର୍ତ୍ତୀ ହେବା ପାଇଁ ସାହାସ କରୁ ନଥିଲେ । ଜଣେ ଯୁବକ ତାଙ୍କୁ ଅପବ୍ୟବହାର କରିବା ନିମନ୍ତେ ଆଗକୁ ବଢନ୍ତେ ତାଙ୍କ ଚକ୍ଷୁ ବନ୍ଦ ହୋଇଗଲା ଓ ସେ ଅନ୍ଧ ହେଲେ । ଏହାପରେ ତାଙ୍କ ସାଙ୍ଗମାନେ ତାଙ୍କୁ ଆଗ୍ନେସଙ୍କ ପାଖକୁ ବୋହି ନେଲେ । ସେହି ଯୁବକ ଜଣକ ଦୂରରେ ରହି ଆଗ୍ନେସଙ୍କ ମାଧ୍ୟସ୍ଥତାରେ ପ୍ରଭୁଙ୍କୁ ପ୍ରାର୍ଥନା କରନ୍ତେ ସେ ସୁସ୍ଥତା ଲାଭ କରିଥିଲେ । ମୂଖ୍ୟ ଶାସକ ବିଭିନ୍ନ ଭାବରେ ଆଗ୍ନେସଙ୍କ ମନକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରି ବିଫଳ ହୋଇଥିଲେ । ଏଣୁ ତାଙ୍କ ମସ୍ତକକୁ

ଛେଦନ କରିବା ପାଇଁ ସେ ଆଦେଶ ଦେଲେ । ଅନ୍ୟ କେତେକ କହନ୍ତି ଯେ ଜଣେ ସୈନିକ ବର୍ଚ୍ଛାରେ ଆଗ୍ନେସଙ୍କ ଗଳା କାଟି ଦେଇଥିଲେ । ଯେଉଁ ସ୍ଥାନରେ ଆଗ୍ନେସ ନିଜର ରକ୍ତ ଦେଇଥିଲେ ସେହି ସ୍ଥାନରେ ଗୋଟିଏ ବଡ ଗୀର୍ଜା ଗୃହ ରୋମୀୟ ଶାସକ କନ୍‌ଷ୍ଟାନ୍‌ଟିନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ସାଧୁ ଅଗଷ୍ଟିନ କହନ୍ତି, ଗ୍ରୀକ ଭାଷାରେ ଆଗ୍ନେସର ଅର୍ଥ 'ପବିତ୍ରତା' ଏବଂ ଲାଟିନ୍ ଭାଷାରେ ଆଗ୍ନେସର ଅର୍ଥ 'ମେଷ ଶାବକ'। ସାଧ୍ୱୀ ଆଗ୍ନେସଙ୍କ ପର୍ବ ଜାନୁୟାରୀ ୨୧ ଦିନ କାଥଲିକ ଚର୍ଚ୍ଚରେ ଗୋଟିଏ ସୁନ୍ଦର ପ୍ରଥା ପ୍ରଚଳିତ ହୋଇଛି, ପ୍ରତିବର୍ଷ ଜାନୁୟାରୀ ୨୧ ତାରିଖ ଦିନ ରୋମର ତ୍ରେ ଫନ୍ତାନା (ଯେଉଁଠାରେ ପାଉଲଙ୍କ ମସ୍ତକ ଛେଦନ କରାଯାଇଥିଲା ଏବଂ କିମ୍ବଦନ୍ତୀ ଅନୁଯାୟୀ ତାଙ୍କ ମସ୍ତକ ତିନି ଥର ତିନୋଟି ସ୍ଥାନରେ ଡେଇଁ ତିନୋଟି ଝରଣା ସୃଷ୍ଟି ହୋଇଥିଲା) ରେ ଥିବା ଟ୍ରପିଷ୍ଟ ମୋନାଷ୍ଟ୍ରି (ନୀରବତା ପାଳନ କରୁଥିବା ସନ୍ନ୍ୟାସୀବର୍ଗ) ଠାରୁ ଦୁଇଟି ମେଷ ପୂଣ୍ୟପିତାଙ୍କ ପାଖକୁ ନିଆଯାଏ ଓ ସେହି ମେଷଗୁଡିକୁ ସେ ଆର୍ଶୀବାଦ କରନ୍ତି । ପୂଣ୍ୟ ଗୁରୁବାର ଦିନ ସେହି ମେଷ ଗୁଡିକୁ ମରାଯାଇ ସେଥିରୁ ତୁଳା ବାହାର କରି ପାଲିଉମ୍ ତିଆରି କରାଯାଏ ଯାହା ନୂତନ ଭାବେ ଅଭିଷିକ୍ତ ମହା ଧର୍ମାଧ୍ୟକ୍ଷମାନେ ବ୍ୟବହାର କରିଥାନ୍ତି । ଏହି ବସ୍ତ୍ରର ପ୍ରତୀକ ସୂଚାଏ ଯେ ମହା ଧର୍ମାଧ୍ୟକ୍ଷମାନେ ପୂଣ୍ୟପିତାଙ୍କ ସହ ତାଙ୍କର ଏକତ୍ରିକରଣ ହେବାର ଚିହ୍ନ ଏବଂ ସେମାନଙ୍କ ଶାସନର ନିର୍ଦ୍ଦିଷ୍ଟ ଭୌଗଳିକ ଅଞ୍ଚଳକୁ ବୁଝାଏ ।

ଆଗ୍ନେସଙ୍କୁ ଧର୍ଷିତା ହେଉଥିବା ନାରୀମାନଙ୍କ ଇଷ୍ଟ ସାଧ୍ୱୀ ରୂପେ ମାନ୍ୟତା ଦିଆଯାଇଛି । ବିବାହ ନିର୍ବନ୍ଧ ନିମନ୍ତେ ସଂଯୁକ୍ତ ହୋଇଥିବା ଦମ୍ପତିଙ୍କ ଇଷ୍ଟ ସାଧ୍ୱୀ । କୁମାରୀ ତଥା ମାଳୀ ମାନଙ୍କର ଇଷ୍ଟ ସାଧ୍ୱୀ ରୂପେ ମଧ୍ୟ ତାଙ୍କୁ ସମ୍ମାନ ଦିଆଯାଏ ।

**ସାଧ୍ୱୀ ଆଗ୍ନେସଙ୍କ କେତୋଟି ଉକ୍ତି:**

✸ "ତୁମର ବର୍ଚ୍ଛା ମୋର ରକ୍ତକୁ ଦୂଷିତ କରିପାରେ କିନ୍ତୁ ଯୀଶୁଙ୍କ ପାଇଁ ଉତ୍ସର୍ଗୀକୃତ ମୋର ଶରୀରକୁ ତୁମେ କେବେହେଲେ ଦୂଷିତ କରିପାରିବ ନାହିଁ" ।



# ସାଧୁ ଥମାସ ଆକୁଇନାସ
## (୧୨୨୫-୧୨୭୪, ଜାନୁୟାରୀ ୨୮)

ଇଟାଲୀ ଦେଶର ମନ୍ତେକାସିନ ନିକଟବର୍ତୀ ଆକୁଇନା ସହରର ରୋକା ସେକା ଦୁର୍ଗରେ ସାଧୁ ଥମାସ ଆକୁଇନାସ୍ ୧୨୨୫ ଶତାବ୍ଦୀରେ ଗୋଟିଏ ଧନଶାଳୀ ଏବଂ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା କାଉଣ୍ଟଲାଣ୍ଡୋଲଫ୍ ଶାସକ ଫ୍ରେଡ୍ରିକ୍ ବାର୍‌ବାରୋସାଙ୍କ ଭଣଜା ଅଟନ୍ତି । ତାଙ୍କ ମାତା ଟିଓଦରା ଜର୍ମାନୀ ଦେଶର ଅଧିବାସୀ ଥିଲେ । ୫ ବର୍ଷ ବୟସରେ ସାଧୁ ଥମାସ୍ ପ୍ରଥମେ ବେନେଦିକ୍ତ ସଙ୍ଘର ସନ୍ୟାସୀମାନଙ୍କ ଦ୍ୱାରା ପରିଚାଳିତ ମନ୍ତେକାସିନରେ ଥିବା ସ୍କୁଲ୍‌ରେ ଅଧ୍ୟୟନ ଆରମ୍ଭ କଲେ । ତାଙ୍କ ଜ୍ଞାନର ପ୍ରତିଭା ଦେଖି ୧୦ ବର୍ଷ ବୟସରେ ସେ ନାପଲିଠାରେ ଉଚ୍ଚଶିକ୍ଷା ଲାଭ କଲେ । ୧୮ବର୍ଷ ବୟସରେ ଦମନିକାନ୍ ସଂଘରେ ଯୋଗଦେଇ ଜଣେ ଯାଜକ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । ତାଙ୍କ ପିତା ମାତା ଏଥିରେ ରାଜି ନ ଥିଲେ । ତାଙ୍କ ମନକୁ ପରିବର୍ତନ କରିବା ପାଇଁ ତାଙ୍କୁ ବନ୍ଦହାରରେ ଗୋଟିଏ ପରିବାର ଦୁର୍ଗରେ କବାଟ ବନ୍ଦ କରି ପ୍ରାୟ ୧୫ମାସ ରଖାଗଲା । ସେହି ଦୁର୍ଗର ଅନ୍ଧକାର କୋଠରି ମଧ୍ୟରେ ଶୀତ ଦିନରେ ବିନା ଖାଦ୍ୟରେ ତାଙ୍କୁ ଏକାକୀ ରହିବାକୁ ପଡ଼ିଥିଲା । ସାଧୁ ଥମାସଙ୍କ ଦୁଇଜଣ ଭାଇ ତାଙ୍କୁ ପରୀକ୍ଷା କରିବା ପାଇଁ ଜଣେ ଚରିତ୍ର ବିହୀନ ସ୍ତ୍ରୀକୁ ସେହି କୋଠରି ମଧ୍ୟକୁ ପଠାଇଥିଲେ । କିନ୍ତୁ ସାଧୁ ଥମାସ ନିଆଁହୁଳା ଧରି ତାଙ୍କୁ ତଡ଼ି ଦେଇଥିଲେ । କୋଠରିର କାନ୍ଥ ଉପରେ କ୍ରୁଶ ଚିହ୍ନ କରି ତାରି ସମ୍ମୁଖରେ ଆଣ୍ଠୁପାତି ପବିତ୍ର ଜୀବନଯାପନ କରିବା ପାଇଁ ପ୍ରାର୍ଥନା କରୁଥିଲେ । ଦିନେ ଦୁଇ ଜଣ ସ୍ୱର୍ଗଦୂତ ଆଶ୍ଚର୍ଯ୍ୟରୂପକ ଦଉଡ଼ି ଧରି ତାଙ୍କୁ ଦର୍ଶନ ଦେଇ କହିଲେ, 'ଆମ୍ଭେ ତୁମ୍ଭକୁ ପବିତ୍ରତା ଡୋରିରେ ଶକ୍ତିବନ୍ତ କରିବା ପାଇଁ ପ୍ରଭୁଙ୍କଠାରୁ ଆସିଅଛୁ । ଈଶ୍ୱର ତୁମ୍ଭର ପ୍ରାର୍ଥନା ଶୁଣିଛନ୍ତି । ମନୁଷ୍ୟର ଦୁର୍ବଳତା ଯାହା କେବେ ପୁଣ୍ୟତା ଆଣିପାରିବ ନାହିଁ, ପ୍ରଭୁଙ୍କ ଦାନ ତାହା ଦେଇପାରିବ' । ମୃତ୍ୟୁ ପର୍ଯ୍ୟନ୍ତ ସେ ସେହି ଡୋରି ପରିଧାନ କରିଥିଲେ । ତାଙ୍କ ପରିବାରର କେତେଜଣ ସଭ୍ୟ ତାଙ୍କୁ ମୁକ୍ତକରି ନାପଲିର ଦମନିକାନ୍ ଆଶ୍ରମରେ ଯୋଗଦେବା ପାଇଁ ସାହାଯ୍ୟ କରିଥିଲେ । ସଂଘର ଅଧିକାରୀ (General) ସାଧୁ ଥମାସଙ୍କ ଜ୍ଞାନର ବିଚକ୍ଷଣତା ଜାଣି ଜର୍ମାନୀ ଦେଶର କୋଲନ୍‌କୁ ପଠାଇଥିଲେ । କୋଲନ୍‌ରେ

ତାଙ୍କର ସମସ୍ତ ଲେଖା ମଧ୍ୟରେ' SUMMA THEOLOGICA'- ଥିଲା ଜ୍ଞାନର ଗନ୍ତାଘର । ତାଙ୍କ ଅନୁଯାୟୀ ପ୍ରାଚୁର୍ଯ୍ୟତା, ଜ୍ଞାନ ତୁଳନାରେ କିଛି ନୁହଁ । ତାଙ୍କ ଦ୍ୱାରା ଲିଖିତ (Catena Aurea) ଈଶ୍ୱରଙ୍କ ବାକ୍ୟ ବୁଝିବା ପାଇଁ ଯାଜକ ନିମନ୍ତେ ବିଶେଷ ସହାୟକ ହୋଇପାରିଥିଲା । (Summa Contra Gentiles) ସାଧୁ ଥମାସଙ୍କ ଅନ୍ୟ ଏକ ଅବଦାନ, ଯେଉଁଥିରେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ କିପରି ମିଶନାରୀମାନେ ଗୋଟିଏ ନିର୍ଦ୍ଦିଷ୍ଟ ପନ୍ଥା ଅବଲମ୍ବନ କରିବା ଆବଶ୍ୟକ, ତାହା ସେଥିରେ ସୂଚାଇଛନ୍ତି । ସେ କହୁଥାନ୍ତି, 'ମେଜ ଉପରେ ଅଧ୍ୟୟନ କରିବା ଅପେକ୍ଷା କ୍ରୁଶ ସମ୍ମୁଖରେ ଆଣ୍ଠୁପାଡି ସେ ଅଧିକ ଜ୍ଞାନ ଆହରଣ କରିଛନ୍ତି' । ଦିବ୍ୟମଞ୍ଜୁଷା ସମ୍ମୁଖରେ ରହି ପ୍ରାର୍ଥନା କରିବାକୁ ସେ ବିଶେଷ ଭଲ ପାଉଥିଲେ ଏବଂ ଖ୍ରୀଷ୍ଟଙ୍କ ଶରୀର ଓ ରୁଧିର ପର୍ବ ନିମନ୍ତେ ଯେଉଁ ସଙ୍ଗୀତ ସେ ରଚନା କରିଛନ୍ତି ତାହା ବର୍ତ୍ତମାନ ପର୍ଯ୍ୟନ୍ତ ମଣ୍ଡଳୀରେ ବିଶେଷ ଆଦୃତ ହୋଇପାରିଛି । ୧୨୫୯ ରୁ ୧୨୬୯ ପର୍ଯ୍ୟନ୍ତ ରୋମରେ ସାଧୁ ଥମାସ ପୁଣ୍ୟପିତା ଚତୁର୍ଥ ଉର୍ବାନଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ୧୨୭୪ ମସିହାରେ ପୁଣ୍ୟ ପିତାଙ୍କ ଆଜ୍ଞା ମାନ୍ୟ କରି ନିଜର କନ୍‌ଫେରରମାନଙ୍କ ସହିତ ସାଧୁ ଆଲ୍‌ବେର୍ଟ ଦି ଗ୍ରେଟ୍‌ଙ୍କ ଶିଷ୍ୟ ହୋଇ ଶିକ୍ଷାଲାଭ କଲେ । ସାଧୁ ଆଲବେର୍ଟ ତାଙ୍କ ଜ୍ଞାନର ପାରଦର୍ଶୀତା ଜାଣିପାରି ସେ ଯେ ଦିନେ ସାରା ପୃଥିବୀର ଜଣେ ମହାନ୍ ବ୍ୟକ୍ତି ହୋଇପାରିବେ ଏହି ବିଷୟ ସମସ୍ତଙ୍କ ଆଗରେ ପ୍ରକାଶ କରିଥିଲେ । ୧୨୪୫ ମସିହାରେ ଆଲ୍‌ବର୍ଟ ଜେନେରାଲ୍ ଚାପ୍‌ଟେର୍‌ରେ ଯୋଗଦେବା ପାଇଁ ସାଧୁ ଥମାସଙ୍କୁ ନେଇ ପ୍ୟାରିସ୍ ଯାତ୍ରା କଲେ । ଫ୍ରାନ୍‌ସିସ୍‌କାନ୍ ସଂଘର ଫାଦେର ସାଧୁ ବୋନାଭେଞ୍ଚୁରଙ୍କ ସହିତ ସେଠାରେ ସାକ୍ଷାତ ହୋଇ ଦୁହେଁ ଉତମ ଅନ୍ତରଙ୍ଗ ବନ୍ଧୁ ହୋଇପାରିଥିଲେ । ପ୍ରାୟ ୩ ବର୍ଷ ସେମାନେ ଏକତ୍ର ଅଧ୍ୟୟନ କଲା ପରେ ସାଧୁ ଥମାସ କଲୋନକୁ ପ୍ରତ୍ୟାବର୍ତ୍ତନ କରି ଯାଜକତା ପାଇଁ ଅଭିଷେକ ପ୍ରାପ୍ତ କରିଥିଲେ । ଯାଜକତା ଅଭିଷେକ ପ୍ରାପ୍ତ କଲାପରେ ୪ ବର୍ଷ ସେଠାରେ ଦର୍ଶନ ଶାସ୍ତ୍ର ଓ ଧର୍ମ ତତ୍ତ୍ୱ ଶିକ୍ଷା ଦେଇଥିଲେ । ୧୨୫୨ ମସିହାରେ ପ୍ୟାରିସ୍‌ରେ ଶିକ୍ଷା ଦେବା ଆରମ୍ଭ କଲେ । ତାଙ୍କ ଶିକ୍ଷା ଶୁଣିବା ପାଇଁ ଲୋକଙ୍କ ଭିଡ଼ ଏପରି ହେଉଥିଲା ଯେ, ସେହି ହଲ୍‌ରେ ବସିବା ପାଇଁ ସ୍ଥାନ ନ ଥିଲା । ଲିୟନସ୍‌ର

ଧର୍ମସଭାରେ ଯୋଗ ଦେବା ପାଇଁ ସେ ଜେନେରାଲ୍‌ଙ୍କ ସହିତ ଯାତ୍ରା କରିଥିଲେ । ତାଙ୍କର ସ୍ୱାସ୍ଥ୍ୟ ଭଲ ନ ରହିବାରୁ ତାଙ୍କୁ ଫସାନୂଅଭଠାରେ ଥିବା ସିଷ୍ଟେରସିଆନ୍ ଆଶ୍ରମକୁ ଅଣାଗଲା । ସେଠାରେ ତାଙ୍କ ଜଣେ ସହକର୍ମୀ ସାଧୁ ଥମାସଙ୍କୁ ପଚାରିଥିଲେ, ଈଶ୍ୱରଙ୍କୁ ଦୁଃଖ ନ ଦେଇ କେଉଁଟା ସବୁଠାରୁ ଉତମ ରାସ୍ତା । ସାଧୁ ଥମାସ ଉତରରେ କହିଥିଲେ, 'ଯିଏ ଈଶ୍ୱରଙ୍କ ଉପସ୍ଥିତିରେ ଚାଲେ ଏବଂ ପ୍ରତ୍ୟେକ ମୁହୂର୍ତରେ ନିଜର କାର୍ଯ୍ୟର ହିସାବ ଦେବା ପାଇଁ ସର୍ବଦା ପ୍ରସ୍ତୁତ ଥାଏ ସେ କେବେହେଲେ ଈଶ୍ୱରଙ୍କଠାରୁ ଅଲଗା ହୋଇପାରିବ ନାହିଁ' । ଏହା ଥିଲା ସାଧୁ ଥମାସଙ୍କ ଶେଷ ବାର୍ତା । ୧୨୭୪ ମସିହା ମାର୍ଚ୍ଚ ୭ ତାରିଖରେ ୪୯ ବର୍ଷ ବୟସରେ ସାଧୁ ଥମାସ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ସାଧୁ ଥମାସଙ୍କଠାରୁ ଆମେ କ'ଣ ଶିକ୍ଷା ଲାଭ କରିପାରିବା ? ତାଙ୍କର ପବିତ୍ରତା ଜୀବନ ଏବଂ ପବିତ୍ର ଗ୍ରନ୍ଥର ଅଧ୍ୟୟନ ଆମ ସମସ୍ତଙ୍କ ପାଇଁ ପ୍ରେରଣା ଦାୟକ ଅଟେ । ଦିନେ ପ୍ରଭୁ ତାଙ୍କୁ ପଚାରିଥିଲେ, 'ଥମାସ୍ ତୁମେ ମୋ ବିଷୟରେ ଏତେ ଭଲ ଲେଖିଅଛ, ତୁମର ଉତମ କାର୍ଯ୍ୟ ବଦଳରେ ତୁମେ ମୋ ଠାରୁ କ'ଣ ପାଇବାକୁ ଅଶା କରୁଅଛ' ? ଅତି ସାଧାରଣ ଭାବରେ ଉତର ଦେଇ କହିଲେ, ମୋତେ ତୁମ ବିନା କିଛି ଆବଶ୍ୟକ ନାହିଁ ।୧୩୨୩ ଶତାବ୍ଦୀରେ ପୁଣ୍ୟପିତା ଏକାଦଶ ବେନେଦିକ୍ତ ତାଙ୍କୁ ସାଧୁରୂପେ ଘୋଷଣା କଲେ । ୧୫୬୭ ମସିହାରେ ତାଙ୍କୁ ମଣ୍ଡଳୀର ଆଚାର୍ଯ୍ୟ ଆଖ୍ୟା ଦିଆଗଲା । ପ୍ରତ୍ୟେକ କ୍ୟାଥଲିକ୍ ୟୁନିଭରସିଟି ଏବଂ ଯେଉଁ କ୍ୟାଥଲିକ୍ ଶିକ୍ଷା ଅନୁଷ୍ଠାନରେ ଶିକ୍ଷା ଦିଆଯାଏ ତାହାର ସେ ଅଟନ୍ତି ଇଷ୍ଟ ସାଧୁ । ସାଧୁ ଥମାସ୍ ଆକୁଇନାସଙ୍କ ମଧ୍ୟସ୍ଥତାରେ ଆମ୍ଭେ ସଦାପ୍ରଭୁଙ୍କୁ ପ୍ରାର୍ଥନା କରିବା ଯେପରି ଆମ୍ଭେ ସାଧୁ ଥମାସଙ୍କ ପରି ଜ୍ଞାନ ଆହରଣ କରିପାରିବା ।

**ସାଧୁ ଥମାସ ଆକ୍ୟୁନାସଙ୍କ କେତୋଟି ଉକ୍ତି :**

- "ନ୍ୟାୟ ବିନା ଦୟା ସମସ୍ତ ବିଘଟନ ର ମାଁ ଅଟେ ; ସେହିପରି ଦୟା ବିନା ନ୍ୟାୟ ନିଷ୍ଠୁରତା ଅଟେ" ।
- "ଗୋଟିଏ ପୁସ୍ତକର ଲେଖକ ପ୍ରତି ସାବଧାନ ରୁହ" ।

* * *

# ସାଧୁ ଯୋହନ ବସ୍କୋ

## (୧୮୧୫-୧୮୮୮, ଜାନୁୟାରୀ ୩୧)

ଇଟାଲୀ ଦେଶର ଟୁରିନ୍‌ଠାରୁ ୧୫ କିଲୋମିଟର ଦୂର ବେଖି ନାମକ ଗୋଟିଏ ଛୋଟିଆ ଗ୍ରାମରେ ଯୋହନ ବସ୍କୋ ୧୮୧୫ ସାଲ ଅଗଷ୍ଟ ୧୬ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମର ଦୁଇ ବର୍ଷ ପରେ ପିତାଙ୍କ ବିୟୋଗ ହୋଇଥିଲା । ପିଲାଦିନରୁ ଯାଜକ ହେବାର ଲକ୍ଷ୍ୟ ରଖି ସେ ପଢ଼ାରେ ବିଶେଷ ଧ୍ୟାନ ଦେଉଥିଲେ । ଦିନେ ଯୋହନ ବସ୍କୋ ସ୍ୱପ୍ନ ଦେଖିଲେ ଯେ, 'ସେ ପିଲାମାନଙ୍କ ଦଳରେ ଠିଆ ହୋଇଛନ୍ତି' । ସେହି ପିଲାମାନେ ପରସ୍ପର ମଧ୍ୟରେ କଳି ଓ ଝଗଡ଼ା କରୁଛନ୍ତି । ଯୋହନ ସେମାନଙ୍କ କଳି ବନ୍ଦ କରିବା ପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ସେମାନେ ତାଙ୍କ କଥା ଶୁଣୁ ନଥିଲେ । ଶେଷରେ ସେ ଗୋଡ଼ରେ ଗୋଇଠା ମାରି ଅଲଗା କରିବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ତାହା ମଧ୍ୟ କାମ ଦେଲାନାହିଁ । ହଠାତ୍ ସେହି ସମୟରେ ସେ ଦେଖିବାକୁ ପାଇଲେ ଜଣେ ଧଳାବସ୍ତ୍ର ପରିହିତ ବ୍ୟକ୍ତି ତାଙ୍କ ଆଡ଼କୁ ଆସୁଛନ୍ତି । ସେହି ବ୍ୟକ୍ତି ଜଣକ ହସ ହସ ମୁହଁରେ ଯୋହନଙ୍କୁ ନିରୀକ୍ଷଣ କରି କହିଲା, 'ମାଡ଼ ବା ଗୋଇଠା ଦ୍ୱାରା ସେମାନଙ୍କୁ ନିଜର କରିପାରିବା ନାହିଁ ବରଂ ସ୍ନେହଦ୍ୱାରା ତୁମେ ତାଙ୍କର ବନ୍ଧୁ ହୋଇପାରିବ । ସେହି ବ୍ୟକ୍ତି ପୁଣି କହିବାକୁ ଲାଗିଲା, 'କେଉଁ ଭାବରେ ସେମାନଙ୍କୁ ଭଲ କରାଯିବ ତାହା ତୁମେ ସେମାନଙ୍କୁ ଦେଖାଇବ । ଯୋହନ ଉତର ଦେଲେ କିପରି ତାହା କରିପାରିବି ? ଆଜ୍ଞାବହତା ଏବଂ ତୁମ୍ଭ ଅଧ୍ୟୟନରେ କଠିନ ପରିଶ୍ରମ ଦ୍ୱାରା ତାହା ତୁମେ କରିପାରିବ । ଯୋହନ ତାଙ୍କୁ ପଚାରିଲେ ତୁମେ କିଏ ଏବଂ ତୁମର ପରିଚୟ କ'ଣ ? ମୁଁ ହେଉଛି, ସେହି ମା'ଙ୍କ ପୁତ୍ର ଯାହାଙ୍କ ବିଷୟରେ ତୁମଙ୍କୁ ତୁମ ମା' ପ୍ରାର୍ଥନା କରିବା ପାଇଁ ଶିଖାଇଛନ୍ତି । ମୋ ମା'ଙ୍କଠାରେ ସାହାଯ୍ୟ ପାଇଁ ପ୍ରାର୍ଥନା କର ସେହି ସମୟରେ ମା' ମାରୀୟା ସେଠାରେ ଉପସ୍ଥିତ ହୋଇ ଅତି ମଧୁର ସ୍ୱରରେ କହିଲେ, 'ଦେଖ' ସେହିକ୍ଷଣି ଯୋହନଙ୍କ ଚତୁର୍ଦ୍ଦିଗରେ କଳି କରୁଥିବା ପିଲାମାନେ ବନ୍ୟପଶୁ ପାଲଟିଗଲେ । ମୁଁ ଏହି ବନ୍ୟ ପଶୁମାନଙ୍କୁ ଯାହା କରିବି ତୁମେ ସେହିପରି ଏହି ପିଲାମାନଙ୍କୁ କରିବ । ସେହି ବନ୍ୟ ପଶୁମାନେ ମେଷ

ଶାବକ ପାଇଟି ଯାଉ ଚାରଣ ଭୂମିକୁ ଯିବାପାଇଁ ପ୍ରସ୍ତୁତ ହେଲେ । ସେହି ସମୟରୁ ଯୋହନ ନିଜେ ଜାଣିପାରିଲେ ଯେ, ତାଙ୍କ ଜୀବନର ବିଶେଷ ଲକ୍ଷ୍ୟ ହେବ ପିଲାମାନଙ୍କୁ ସାହାଯ୍ୟ କରିବା ।

ଯୁଦ୍ଧ ପରେ ଅନେକ ପିଲା ନିଜର ପିତା ଓ ମାତାଙ୍କୁ ହରାଇ ଅନାଥ ହୋଇଥିଲେ । ସ୍କୁଲଗୁଡ଼ିକ ଧ୍ୱଂସ ହୋଇଥିବାରୁ ପିଲାମାନେ ପାଠ ପଢ଼ିବା ସୁଯୋଗ ହରାଇଲେ । କେତେକ ପିଲାଙ୍କୁ କାରଖାନାରେ କାମ କରିବାକୁ ପଡୁଥିଲା । ଦିନେ ଯୋହନଙ୍କ ମା' ତାଙ୍କୁ ନେଇ ଆକ୍ରୋବାଟସ୍ (କୌତୁକ ଖେଳ) ଦେଖିବାକୁ ଗଲେ । ଘରକୁ ଫେରିବା ପରେ ଯୋହନ ଦୁଇଟି ଗଛରେ ଦଉଡ଼ି ବାନ୍ଧି ସେଥିରେ ଚାଲିବାକୁ ଚେଷ୍ଟା କରୁଥାନ୍ତି । ଅବଶ୍ୟ ସେ ଅନେକ ସମୟରେ ତଳକୁ ପଡ଼ିଯାଉଥିଲେ । ତାଙ୍କ ଭାଇ ଆନ୍ତୋଣୀ ତାହା ଦେଖି ଥଟ୍ଟାରେ ହସୁଥିଲେ କିନ୍ତୁ ସେ ହତାଶ ନଥିଲେ । ଅତିଶୀଘ୍ର ସେ ଦଉଡ଼ି ଉପରେ ଚାଲିବାକୁ ଆରମ୍ଭ କଲେ । ତାପରେ ସେ ଆକ୍ରୋବାଇଟ୍‌ର ଅନ୍ୟାନ୍ୟ କୌଶଳ ଶିଖିଥିଲେ । ଦିନେ ରବିବାର ଦିନ ସନ୍ଧ୍ୟା ସମୟରେ କେତେକ ଯୁବକ ଏବଂ ଲୋକମାନେ ତା'ର ଖେଳ ପ୍ରଦର୍ଶନ ଦେଖିବାକୁ ଏକତ୍ର ହୋଇଥିଲେ । ସମସ୍ତେ ଅତି ଆଗ୍ରହ ସହକାରେ ତା'ର ଖେଳ ପ୍ରଦର୍ଶନ ଦେଖି ତାଳି ମାରି ତାଙ୍କୁ ଉତ୍ସାହିତ କଲେ । ଏହାପରେ ସେ ମା' ମେରୀଙ୍କ ଗୀତ ଗାଇବାକୁ ଆରମ୍ଭ କଲେ ଏବଂ ଜମା ହୋଇଥିବା ସମସ୍ତ ଜନତା ତାଙ୍କ ସହିତ ମିଶି ସେହି ଗୀତ ଗାଇଲେ । ତା'ପରେ ଯୋହନ ସମସ୍ତଙ୍କୁ ଆଉ ଗୋଟିଏ ଖେଳ ଦେଖାଇଲେ । ସେହି ଖେଳ ସମୟରେ ସେ ଲୋକମାନଙ୍କୁ କହିଲେ ଯଦି ତୁମେ ମାଳାଜପ ନ କର ତେବେ ମୁଁ ତଳେ ପଡ଼ିଯିବି ଏବଂ ମୋର ମୁଣ୍ଡ ଫାଟିଯିବ । ଲୋକମାନେ ଏହା ଶୁଣି ମାଳା ଜପିବାକୁ ଲାଗିଲେ । ଖେଳ ଶେଷରେ ସେ ନିଜେ ଏକୁଟିଆ ବସି ସକାଳ ଯଜ୍ଞ ସମୟରେ ଯାଜକ ଯେଉଁ ବିଷୟ ପ୍ରଚାର କରିଥିଲେ, ତାହା ପୁନରାବୃତି କରୁଥାନ୍ତି । ୧୬ ବର୍ଷ ବୟସରେ ଯୋହନ ସେମିନାରୀରେ ପ୍ରବେଶ କଲେ । ଯୋହନ ଜାଣିପାରିଲେ ଯେ, ଯଦି ସେ ଅଧ୍ୟୟନ କରନ୍ତି, ତାଙ୍କ ମା'ଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିବ । ତାଙ୍କ ମା' ସବୁବେଳେ ଯୋହନଙ୍କୁ କହୁଥାନ୍ତି, କୌଣସି ବିଷୟରେ ଚିନ୍ତା ନ କରି କେବଳ ଈଶ୍ୱରଙ୍କ ଇଚ୍ଛା କ'ଣ ତୁମ ପ୍ରତି ତାହା ଜାଣିବା ପାଇଁ ଚେଷ୍ଟା କର । ସେ କହିଥିଲେ, 'ମୁଁ ଗରିବ ହୋଇ ଜନ୍ମ

ହୋଇଥିଲି, ବର୍ତ୍ତମାନ ଗରିବ ଏବଂ ଗରିବ ହୋଇ ମରିବା ମୋର ଇଚ୍ଛା' । ଯେତେବେଳେ ଯୋହନ ଯାଜକତା ଅଭିଷେକ ପ୍ରାପ୍ତ କଲେ, ଗାଁର ସମସ୍ତେ ଆନନ୍ଦିତ ହୋଇ ତାଙ୍କ ଅଭିଷେକ ଉତ୍ସବରେ ଯୋଗ ଦେଇଥିଲେ । ଆନନ୍ଦର ଅଶ୍ରୁ ତାଙ୍କ ମା'ଙ୍କ ଆଖିରୁ ବହିଥିଲା । ବର୍ତ୍ତମାନ ସେ ଆଉ ଯୋହନ ନୁହଁନ୍ତି ବରଂ ସମସ୍ତଙ୍କ ଆଗରେ ଫାଦେର୍ ଡନ୍ ବସ୍କୋ ରୂପେ ପରିଚିତ ।

ଦିନକର ଘଟଣା । ଯୋହନ ଯେତେବେଳେ ଦିବ୍ୟ ଯଜ୍ଞ ପାଇଁ ପ୍ରସ୍ତୁତ ହେଉଥିଲେ, ଗୀର୍ଜାର ସାକ୍ରିସ୍ତିରୁ ସେ ଶୁଣି ପାରିଲେ, ବାହାରେ କେତେକ କୋଳାହଳ କରୁଛନ୍ତି । ଫାଦେର୍ ଡନ୍ ବସ୍କୋ ବାହାରି ଦେଖିଲେ ଯେ, ତାଙ୍କ ସାକ୍ରିସ୍ତିଆନ୍ ଜଣେ ବାଳକକୁ ମନଇଚ୍ଛା ବ୍ୟବହାର କରୁଛନ୍ତି । ସାକ୍ରିସ୍ତିଆନ୍‌କୁ ବୁଝି ସେ କାରଣ ଜାଣିପାରିଲେ ଯେ,ବାଳକଟି କେମିତି ଯଜ୍ଞ ସାହାଯ୍ୟ କରାଯିବ, ତାହା ଜାଣିପାରି ନଥିଲା । ଅତି ଶୀଘ୍ର ଡନ୍ ବୋସ୍କୋ ସାକ୍ରିସ୍ତିଆନ୍‌କୁ ବାହାର କରି ସେହି ବାଳକକୁ ପଚାରିଲେ, କେମିତି ଯଜ୍ଞ ସାହାଯ୍ୟ କରିବାକୁ ପଡ଼ିବ ତାହା ତୁମକୁ ଶିଖାଇ ପାରିବି କି ? କୃତଜ୍ଞତାର ସହ ବାଳକଟି ମୁଣ୍ଡ ହଲାଇ ରାଜି ହେଲା । ବାଳକଟିକୁ ଶିକ୍ଷା ଦେଲା ପରେ ତା' ସାଙ୍ଗମାନଙ୍କୁ ପରବର୍ତ୍ତୀ ଦିନ ନେଇ ଆସିବା ପାଇଁ ଡନ୍ ବସ୍କୋ କହୁଥିଲେ । ଏହାପରେ ଦିନକୁ ଦିନ ବହୁତ ପିଲା ଶିକ୍ଷା ସଂକ୍ଷେପ ଶିଖିବା ପାଇଁ ଫାଦେର୍ ଡନ୍ ବସ୍କୋଙ୍କ ପାଖକୁ ଆସିଥିଲେ । ସକାଳେ ଓ ସନ୍ଧ୍ୟାରେ ଯଜ୍ଞ ସାହାଯ୍ୟ କରିବା ପାଇଁ ପିଲାମାନେ ଆସୁଥିଲେ ଏବଂ ପାପସ୍ୱୀକାର ମଧ୍ୟ କରୁଥିଲେ । ସେମାନଙ୍କ ମଧ୍ୟରେ ଅନେକ ଅନାଥ ଥିଲେ । ଏଣୁ ଫାଦେର୍ ସେମାନଙ୍କ ରହିବାର ବ୍ୟବସ୍ଥା ମଧ୍ୟ କରିଥିଲେ । ତାଙ୍କ ନିଜ ମା' ପିଲାମାନଙ୍କ ଯତ୍ନ ନେବାରେ ସାହାଯ୍ୟ କରୁଥିଲେ ।

ଦିନକର ଘଟଣା । ସନ୍ଧ୍ୟା ସମୟରେ ଯେତେବେଳେ ଡନ୍ ବସ୍କୋ ବୁଲିବା ପାଇଁ ବାହାରିଥିଲେ, ହଠାତ୍ ଚାରି ଜଣ ଅଚିହ୍ନା ବ୍ୟକ୍ତି ତାଙ୍କ ନିକଟକୁ ଆସି ତାଙ୍କୁ ଜୀବନରେ ମାରିବା ପାଇଁ ଉଦ୍ୟତ ହେଉଥିଲେ । ସେହି ସମୟରେ ଗୋଟିଏ ବିରାଟ କୁକୁର ସେହି ସ୍ଥାନରେ ପହଞ୍ଚି ସେହି ଚୋରମାନଙ୍କୁ ଜାବୁଡ଼ି ଧରିଲା । ଅନ୍ୟ ଚୋରମାନେ ଦୌଡ଼ି ପଳାଇଗଲେ । ଗୋଟିଏ ଚୋରକୁ କୁକୁରଟି ଜାବୁଡ଼ି ଧରି ବସିଥିଲା । ସେହି ବ୍ୟକ୍ତିକୁ ପ୍ରାଣରେ ମାରିବା ପାଇଁ ଚେଷ୍ଟା କରୁଥିଲା । ସେହି

ସମୟରେ ଡନ୍ ବସ୍କୋ କୁକୁରଟିକୁ ତାଙ୍କ ଆଡ଼କୁ ଡାକିଲେ । କୁକୁରଟି ପାଦେରଙ୍କ ତାଙ୍କ ବସାରେ ପହଞ୍ଚାଇ ଅଦୃଶ୍ୟ ହୋଇଗଲା । ପାଦେରଙ୍କ ଜୀବନର ବିପଦ ସମୟରେ ଅନେକ ଥର କୁକୁରଟି ଦୃଶ୍ୟ ହୋଇ ତାଙ୍କ ଜୀବନ ରକ୍ଷା କରିଥିଲେ ।

**ସାଧୁ ଯୋହନ ବସ୍କୋଙ୍କ କେତୋଟି ଉକ୍ତି :**

✸ "ଶିକ୍ଷା ହୃଦୟର ବିଷୟ ଅଟେ । ପିଲାମାନଙ୍କୁ କେବଳ ଭଲ ପାଇବା ତାହା ନୁହଁ, କିନ୍ତୁ ସେମାନେ ସେହି ପ୍ରେମକୁ ଅନୁଭବ କରିବା ଉଚିତ" ।

✸ "ବିଦ୍ୟାଳୟ ଆମର ଶେଷ ଲକ୍ଷ୍ୟ ନୁହଁ; ଏହା ବରଂ ଜୀବନ ବିକାଶ ଧାରା ପାଇଁ ଏକ ମାଧ୍ୟମ ଅଟେ" ।

✸ "ପ୍ରେମ ଓ ଦୃଢ଼ ବିଶ୍ୱାସ ବିନା ବାସ୍ତବ ଶିକ୍ଷାର ସ୍ଥିତି ନ ଥାଏ । ତୁମ୍ଭେ ଯଦି ପ୍ରେମ ପାଇବାକୁ ଚାହଁ ତେବେ ନିଜକୁ ପ୍ରଥମେ ପ୍ରେମ କର ଏବଂ ତୁମର ପିଲାମାନେ ସେହି ପ୍ରେମକୁ ଅନୁଭବ କରିବା ଆବଶ୍ୟକ" ।

✸ "ଯଦି ଜଣେ କିଛି ଉତ୍ତମ କାର୍ଯ୍ୟ କରିବା ପାଇଁ ଚାହେଁ, ତାହାର କିଛି ସାହାସ ଥିବା ଆବଶ୍ୟକ, ତ୍ୟାଗ ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ, ସମସ୍ତଙ୍କ ସହିତ ବନ୍ଧୁଭାବାପନ୍ନ ସୃଷ୍ଟି କରିବା ଏବଂ କାହାକୁ ମଧ୍ୟ ସାମାନ୍ୟ ଭାବେ ଦୃଷ୍ଟି ଦେବା ନାହିଁ । ଏହି ପ୍ରଣାଳୀ ଅନୁକରଣ କରି ମୁଁ ଜୀବନରେ ସବୁବେଳେ ଗୁରୁତ୍ୱପୂର୍ଣ୍ଣ ସଫଳତା ବାସ୍ତବରେ ଚମତ୍କାର ସଫଳତା ଲାଭ କରିଛି" ।

✸✸✸

# ସାଧୁ ଜନ୍ ଦି ବ୍ରିଟୋ
# (୧୬୪୭-୧୬୯୩, ଫେବୃୟାରୀ ୪)

୧୬୪୭ ମସିହା ମାର୍ଚ୍ଚ ମାସ ୧ ତାରିଖରେ ପର୍ତୁଗାଲର ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ଜନ୍ ଦି ବ୍ରିଟୋ ଜନ୍ମ ଗ୍ରହଣ କରିଥିଲେ । ତାଙ୍କୁ ଯେତେବେଳେ ତିନି ବର୍ଷ ହୋଇଥିଲା ସେ ନିଜ ପିତାଙ୍କୁ ହରାଇଥିଲେ । ଉତମ ଖ୍ରୀଷ୍ଟିୟାନ ଶିକ୍ଷା ସେ ନିଜ ମାଁଙ୍କଠାରୁ ପାଇଥିଲେ । ପର୍ତୁଗାଲର ରାଜା ଦ୍ୱିତୀୟ ପେଡ୍ର ଜନ୍‌ଙ୍କ ସେ ପିଲାଦିନର ସାଙ୍ଗ ଥିଲେ । ତାହାଙ୍କ ସ୍ୱାସ୍ଥ୍ୟ ଯଦିଓ ଦୁର୍ବଳ ଥିଲା ଆତ୍ମାରେ ସେ ଶକ୍ତିଶାଳୀ ଥିଲେ । ଛୋଟ ଥିବା ସମୟରେ ଜନ୍ ଗୁରୁତର ରୋଗରେ ପୀଡ଼ିତ ଥିଲେ । ସାଧୁ ଫ୍ରାନ୍ସିସ ଜେଭିୟରଙ୍କ ମାଧ୍ୟସ୍ଥତାରେ ତାଙ୍କ ମାତା ପୁଅର ଆରୋଗ୍ୟ ନିମିତ ପ୍ରାର୍ଥନା କରିଥିଲେ ଓ ସେ ସୁସ୍ଥତା ପାଇଥିଲା । କୃତଜ୍ଞତା ସହ ସେ ଈଶ୍ୱରଙ୍କୁ ଧନ୍ୟବାଦ ଦେଇ ସେହି ଯୀଶୁ ସଂଘରେ ପୁଅଙ୍କୁ ଯୋଗ ଦେବା ପାଇଁ ପ୍ରେରଣା ଦେଇଥିଲେ । ଯାଜକ ହୋଇ ଶହୀଦ ହେବା ପର୍ଯ୍ୟନ୍ତ ସେ ନିଜ ଆହ୍ୱାନରେ ବିଶ୍ୱସ୍ତ ହୋଇ ରହିଥିଲେ । ୧୬୬୨ ମସିହା ଡିସେମ୍ବର ମାସ ୧୭ ତାରିଖ ଦିନ ନିଜ ସମ୍ଭ୍ରାନ୍ତ ପରିବାର ତ୍ୟାଗ କରି ସେ ଯୀଶୁ ସଂଘରେ ଯୋଗ ଦେଇଥିଲେ । ସେ ଭଲ ପଢୁଥିଲେ ଏଣୁ ସମସ୍ତେ ଭାବିଥିଲେ ଯେ ଦିନେ ସେ ଦର୍ଶନ ଶାସ୍ତ୍ର ବିଭାଗରେ ଜଣେ ମୂଖ୍ୟ ପ୍ରଫେସର ହୋଇ ପାରିବେ ।

ଦିନେ ତାଙ୍କ ସଂଘର ମୂଖ୍ୟ ଜେନେରାଲଙ୍କ ନିକଟରେ ଭାରତରେ କାର୍ଯ୍ୟ କରିବା ପାଇଁ ନିଜର ଇଛା ସେ ପ୍ରକାଶ କରିଥିଲେ । ୧୬୭୦ ମସିହାରେ ଫାଦେର ବି.ଦା. କୋସ୍ତା ପର୍ତୁଗାଲ୍ ଯାଇଥିଲେ ଏବଂ ଭାରତରେ ମାଦୁରାଇ ମିଶନ ପରି ଗୋଟିଏ କଷ୍ଟ ସାଧ୍ୟ ଅଞ୍ଚଳରେ କାର୍ଯ୍ୟ କରିବା ପାଇଁ ଇଚ୍ଛୁକ ଯାଜକମାନଙ୍କୁ ନିମନ୍ତ୍ରଣ କରିଥିଲେ । ଜନ୍ ଦି ବ୍ରିଟୋ ସେହି ସମୟରେ ଯଦିଓ ଜଣେ କେବଳ ବିଦ୍ୟାର୍ଥୀ ଥିଲେ ତଥାପି ନିଜର ଇଛାକୁ ସେ ପ୍ରଥମେ ପ୍ରକାଶ କରିଥିଲେ । ତାଙ୍କ ମାଁ ନିଜର ପୁଅକୁ ପ୍ରଭୁଙ୍କ ପାଇଁ ଉତ୍ସର୍ଗ କରିବା ପାଇଁ ଯଦିଓ ଚାହୁଥିଲେ ତଥାପି ବହୁତ ଦୂରକୁ ଛାଡ଼ିବା ପାଇଁ ତାଙ୍କର ଇଛା ନ ଥିଲା । ଯୀଶୁ ସଂଘର ଅଧିକାରୀ, ରାଜା ତଥା ନୁନ୍‌ସିଓଙ୍କୁ ସେ ଅନୁରୋଧ କରିଥିଲେ ମଧ୍ୟ ଜନ୍ ନିଜର ଦୃଢ ସଂକଳ୍ପ ଦ୍ୱାରା ଅନ୍ୟମାନଙ୍କୁ ପ୍ରବର୍ତାଇ ଥିଲେ । ୧୬୭୩ ମସିହାରେ ସେ ଜଣେ ଯାଜକ ରୂପେ

ଅଭିଷିକ୍ତ ହୋଇଥିଲେ । ପୁଣିର ହସ୍ତରୁ ଦିବ୍ୟପ୍ରସାଦ ଗ୍ରହଣ କଲାପରେ ତାଙ୍କଠାରୁ ଅଲଗା ହୋଇ ରହିବା ପାଇଁ ରାଜି ହୋଇଥିଲେ । ୧୬୭୮ ମସିହା ମାର୍ଚ୍ଚ ମାସ ୨୫ ତାରିଖ ଦିନ ସେ ଭାରତ ଯାତ୍ରା ଆରମ୍ଭ କରି ସେପ୍ଟେମ୍ବର ମାସ ୪ ତାରିଖରେ ଗୋଆରେ ପଦାର୍ପଣ କରିଥିଲେ ।

ସମୁଦ୍ର ଯାତ୍ରା କଠିନ ଥିବାରୁ କେତେଜଣ ଅସୁସ୍ଥ ହୋଇ ଫେରିଗଲେ । ଶେଷରେ ୨୪ ଜଣରୁ କେବଳ ୧୦ ଜଣ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିଥିଲେ । ମାଦୁରାଇ ମିଶନ୍ ରେ ପ୍ରଭୁଙ୍କ ପ୍ରେମ ଓ ଶାନ୍ତିର ସୁସମାଚାର ପ୍ରଚାର କରିବା ସହଜ ନ ଥିଲା । ଅନ୍ୟମାନଙ୍କଠାରୁ ଏହି କାର୍ଯ୍ୟ ପାଇଁ ତାଡ଼ନା ପାଇବାର ଭୟ ଥିଲା । ପ୍ରଭୁଙ୍କର ଦିବ୍ୟ ଅନୁଗ୍ରହ ଦ୍ୱାରା ମିଶନାରୀମାନେ ସାହାସର ସହିତ କାର୍ଯ୍ୟ କରିବା ପାଇଁ ପ୍ରେରଣା ପାଉଥିଲେ । ଜଣେ ଭାରତୀୟ ସନ୍ୟାସୀ ପରି ପୋଷାକ ପରିଧାନ କରି ଏବଂ ସେହି ଅଞ୍ଚଳର ତାମିଲ ଭାଷା ଶିକ୍ଷା କରି ନିଜର ନାମକୁ ପରିବର୍ତ୍ତନ କରି ଅର୍ଥାତ ଅରୁଳାନନ୍ଦମ ନାମ ନେଇ ଜନ୍ ଧର୍ମ ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ଶିକ୍ଷାରେ ମନ ପରିବର୍ତ୍ତନ କରି ଅନେକ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ । ଜନ୍‌ଙ୍କର ଏହି କାର୍ଯ୍ୟକୁ ସମାଜର ବ୍ରାହ୍ମଣ ଗୋଷ୍ଠୀ ଏବଂ ନେତାମାନେ ପ୍ରତିରୋଧ କଲେ ।

ତାଞ୍ଜାଓର ଅଞ୍ଚଳରେ କାର୍ଯ୍ୟ କରି ଫାଦର ଜନ୍ ଶେଷରେ ତାତୁରାନ୍‌ଚେରିଠାରେ ନିଜର ମୁଖ୍ୟ କେନ୍ଦ୍ର ସ୍ଥାପନ କଲେ । ସେ ସରଳ ଓ କଠୋର ଜୀବନ ଅତିବାହିତ କରୁଥିଲେ । ଯେତିକି କଷ୍ଟ ଓ ବିପଦ ଆସୁଥାଏ ସେତିକି ତାଙ୍କ ମଧରେ ଉତ୍ସାହ ବଢୁଥାଏ । ୧୪ ବର୍ଷ ପର୍ଯ୍ୟନ୍ତ ବିଭିନ୍ନ କଷ୍ଟ ସ୍ୱୀକାର କରି, ପ୍ରଭୁଙ୍କର ବାକ୍ୟକୁ ପ୍ରଚାର କରି ଅନେକଙ୍କୁ ପ୍ରଭୁଙ୍କ ଆଡ଼କୁ ଆଣି ପାରିଥିଲେ । ସାଧାରଣ ଲୋକଙ୍କର ହୃଦୟକୁ ପ୍ରେମରେ ସେ ଜିଣି ପାରିଥିଲେ ।

ଜନ୍‌ଙ୍କ କାର୍ଯ୍ୟକୁ ବନ୍ଦ କରିବା ପାଇଁ କିଛି ସ୍ଥାନୀୟ ଲୋକେ ବିଭିନ୍ନ ପ୍ରକାର ଷଡ଼ଯନ୍ତ୍ର ଆରମ୍ଭ କଲେ । ଫାଦର ଜନ୍ ଓ ତାହାଙ୍କର ସହଯୋଗୀମାନଙ୍କୁ ମାଡ଼ ମାରି ବନ୍ଦୀଶାଳାରେ ନିକ୍ଷେପ କଲେ । ସେଠାରୁ ମୁକ୍ତ ହୋଇ ସେ ତାଞ୍ଜାଉରକୁ ଗଲେ ଯେଉଁଠାରେ ଖ୍ରୀଷ୍ଟିୟାନମାନଙ୍କ ପ୍ରତି ତାଡ଼ନା ଟିକିଏ କୋହଳ ଥିଲା । ଖ୍ରୀଷ୍ଟିୟାନମାନଙ୍କୁ ଯେତେବେଳେ ବନ୍ଦୀଶାଳାରେ ନିକ୍ଷେପ କରୁଥିଲେ, ସେମାନଙ୍କ

ଦ୍ୱାରା ପରିଚାଳିତ ହେଉଥିବା ରାଜାମାନଙ୍କର ଘୋଡ଼ା ଓ ହସ୍ତୀମାନଙ୍କୁ ଭୋକରେ ରହିବାକୁ ପଡୁଥିଲା । ଏଣୁ ଶେଷରେ ରାଜାମାନେ ବନ୍ଦୀଙ୍କୁ ମୁକ୍ତ କରି ନିଜର ଧର୍ମକୁ ପାଳନ କରିବା ପାଇଁ ଅନୁମତି ଦେଇଥିଲେ ।

ଏହାପରେ ଫାଦେର ଜନ୍ ୧୬୮୬ ମସିହାରେ ମାରାଭା ଅଞ୍ଚଳରେ ଧର୍ମ ପ୍ରଚାର କରିଥିଲେ । କୁମାର ପିଲାଇ ନାମକ ଜଣେ ବ୍ୟକ୍ତି ଜନଙ୍କର କାର୍ଯ୍ୟକୁ ପ୍ରତିରୋଧ କଲେ । ଫାଦେର ଜନ୍ ଓ ତାହାଙ୍କ ସହଯୋଗୀ, ବିଶେଷ ଭାବରେ ଧର୍ମ ପ୍ରଚାରକମାନଙ୍କୁ ଗିରଫ କରି ଅତି ନିଷ୍ଠୁର ଭାବରେ ନିର୍ଯ୍ୟାତନା ଦେଲେ । ଖାଲି ପାଦରେ ସେମାନଙ୍କୁ ପ୍ରାୟ ୧୮ କିଲୋମିଟର ଚାଲିବାକୁ କୁହାଗଲା । ପାଗାନି ପର୍ଯ୍ୟନ୍ତ ସେମାନଙ୍କୁ ସେହିପରି ଚାଲିବାକୁ ପଡ଼ିଥିଲା । ଯେଉଁଠି କୁମାର ପିଲାଇ ଶାସନ କରୁଥିଲେ, ସେଠାରେ ସେମାନଙ୍କୁ ଏହିପରି ଭାବରେ ନିର୍ଯ୍ୟାତନା ଦେଉଥିଲେ ଯେ ସିଲୁ ଭାଇ ନାୟକଙ୍କର ଚକ୍ଷୁଟିକୁ ସକେଟରୁ ମୋଡ଼ି ଝିକି ବାହାର କରିଥିଲେ । ସିଲୁଭାଇଙ୍କ ସେହି ଚକ୍ଷୁଟିକୁ ଜନ୍ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରି ପୁନର୍ବାର ସେହି ସକେଟ ଭିତରେ ହିଁ ଯୋଡ଼ି ରଖିଦେଲେ । ସେହି ଧର୍ମପ୍ରଚାରକ ସିଲୁ ଭାଇ ସୁସ୍ଥତା ଲାଭ କରି ପୁନର୍ବାର ଦେଖି ପାରିଲେ । ମାରାଭାର ରାଜା ଜନ୍‌ଙ୍କର ଆଶ୍ଚର୍ଯ୍ୟ କର୍ମ ଦେଖି ତାଙ୍କୁ ଡକାଇଲେ ଏବଂ ନିଜେ ହୃଦବୋଧ କଲେ ଯେ ଖ୍ରୀଷ୍ଟଧର୍ମ କାହାର କ୍ଷତି କରେ ନାହିଁ କିଅବା କାହାକୁ ମନ୍ଦ ଆଡ଼କୁ ନିଏ ନାହିଁ । ଏହା ସର୍ବଦା ଅନ୍ୟମାନଙ୍କର ଉତମତା ହିଁ ଚାହିଥାଏ । ଏଣୁ ସମସ୍ତ ଖ୍ରୀଷ୍ଟିୟାନ ମାନଙ୍କୁ ସେ ବନ୍ଦୀରୁ ମୁକ୍ତ କଲେ ।

ଫାଦେର ଜନ୍‌ଙ୍କ ଅଧିକାରୀ ଜନଙ୍କୁ ମିଶନର ପ୍ରକ୍ୟୁରେଟର ଦାୟିତ୍ୱ ଦେଲେ ଏବଂ ଶେଷରେ ତାଙ୍କୁ ପର୍ତ୍ତୁଗାଲ ଯିବାକୁ ପଡ଼ିଥିଲା । ନିଜ ଦେଶକୁ ଫେରିଯିବା ପରେ ପର୍ତ୍ତୁଗାଲରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇଥିଲେ । ପୁଅକୁ ପାଇ ତାଙ୍କ ମାଁ ଙ୍କ ଆନନ୍ଦ କହିଲେ ନ ସରେ । କିନ୍ତୁ ପୁଣି ଥରେ ନିଜର ମିଶନ କାର୍ଯ୍ୟ ପାଇଁ ଭାରତକୁ ଫେରିବାପାଇଁ ତାଙ୍କ ହୃଦୟରେ ପ୍ରବଳ ଇଛା ଥାଏ । ବହୁତ କଷ୍ଟରେ ରାଣୀଙ୍କର ଅନୁରୋଧ କ୍ରମେ ରାଜା ପେଦ୍ର ତାଙ୍କୁ ଅନୁମତି ଦେଲେ । ୧୬୯୦ ମସିହା ଏପ୍ରିଲ ମାସରେ ସେ ପର୍ତ୍ତୁଗାଲରୁ ଭାରତ ଅଭିମୁଖେ ଯାତ୍ରା କରି ନଭେମ୍ବର ମାସ ୨ ତାରିଖରେ ଗୋଆରେ ପହଞ୍ଚିଲେ । ତାହାଙ୍କର ପ୍ରତ୍ୟାବର୍ତ୍ତନ ଖବର ଶୁଣି

ତାଙ୍କ ଜୀବନରେ ଯେ ବିପଦ ଅଛି ତାହା ଜାଣି ସେ ଜଙ୍ଗଲରେ ରହିଲେ ଓ ଲୋକେ ତାଙ୍କୁ ସାକ୍ଷାତ କରିବା ପାଇଁ ସେଠାକୁ ଯାଉଥିଲେ ।

ତାଦିୟା ତେଭା ନାମକ ଜଣେ ଶକ୍ତିଶାଳୀ ଓ ପ୍ରଭାବଶାଳୀ ବ୍ୟକ୍ତି ଅସାଧ୍ୟ ରୋଗରେ ଆକ୍ରାନ୍ତ ହୋଇଥିଲେ । ଫାଦେର ଜନ୍‌ଙ୍କର ଆଶ୍ଚର୍ଯ୍ୟ କର୍ମର ଶକ୍ତି ଜାଣି ସେହି ବ୍ୟକ୍ତି ତାଙ୍କ ନିକଟକୁ ଆସିଲେ ଏବଂ ସୁସ୍ଥତା ପାଇଁ ନିବେଦନ କଲେ ।

ତାଦିୟା ତେଭା ସୁସ୍ଥତା ଲାଭ କଲା ପରେ ଦୀକ୍ଷାସ୍ନାନ ପାଇବା ପାଇଁ ଫାଦେର ଜନ୍‌ଙ୍କୁ ସେ ଅନୁରୋଧ କଲେ । ଫାଦେର ଜନ୍ ଜାଣି ପାରିଲେ ଯେ ସେହି ବ୍ୟକ୍ତି ଜଣକ ସଙ୍କୋଟ ଅଟନ୍ତି ତଥାପି ତାଙ୍କର ପରିବର୍ତ୍ତନ ହୁଏତ ଖ୍ରୀଷ୍ଟିୟାନ ଲୋକମାନଙ୍କ ପାଇଁ ଅଧିକ ତାଡ଼ନା ଆଣିପାରେ । ତେଣୁ ସେ ନୀରବ ରହିଲେ । ସେ ଖ୍ରୀଷ୍ଟିୟାନମାନଙ୍କୁ ଏହି ବିଷୟରେ ପରାମର୍ଶ କଲେ । ଖ୍ରୀଷ୍ଟ ବିଶ୍ୱାସୀମାନେ ତାଙ୍କୁ ଦୀକ୍ଷାସ୍ନାନ ଦେବା ପାଇଁ ଅନୁରୋଧ କଲେ ।

ତାଦିୟା ତେଭାଙ୍କର ୫ ଜଣ ପତ୍ନୀ ଓ ଅନେକେ ଉପପତ୍ନୀ ବା ରକ୍ଷିତା ସ୍ତ୍ରୀ ମାନେ ଥିଲେ । ଦୀକ୍ଷାସ୍ନାନ ଗ୍ରହଣ କରିବା ପରେ ସେ ଅନ୍ୟ ସ୍ତ୍ରୀ ଓ ଉପପତ୍ନୀ ମାନଙ୍କର ଉପଯୁକ୍ତ ବ୍ୟାବସ୍ଥା କରି କେବଳ ଜଣେ ସ୍ତ୍ରୀଙ୍କୁ ନିଜର ସ୍ତ୍ରୀ ରୂପେ ଗ୍ରହଣ କଲେ । ସେହି ପ୍ରଥମ ସ୍ତ୍ରୀ ମଧ୍ୟ ଦୀକ୍ଷାସ୍ନାନ ଗ୍ରହଣ କରିଥିଲେ । ତାଙ୍କର ସବୁଠାରୁ କନିଷ୍ଠ ସ୍ତ୍ରୀ, ଜନ୍ ତଥା ତାଙ୍କର ସହଯୋଗୀ ଧର୍ମପ୍ରଚାରକମାନଙ୍କ ବିରୁଦ୍ଧରେ ଘୃଣାର ଷଡ଼ଯନ୍ତ୍ର କରି ସେମାନଙ୍କୁ ଗିରଫ କରାଇଲେ । ଜଗୁଆଳିମାନେ ସେମାନଙ୍କୁ ଏହିପରି ନିର୍ମମ ଭାବେ ଅପମାନ ଦେଲେ ଯେ, ଖ୍ରୀଷ୍ଟିୟାନମାନେ କେବଳ ଏହାଦ୍ୱାରା ଆଘାତ ପାଇଥିଲେ ତା ନୁହେଁ ଏପରିକି ହିନ୍ଦୁ ଧର୍ମାବଲମ୍ବୀମାନେ ମଧ୍ୟ ସେହି ପ୍ରକାର ଆଚରଣକୁ ବିରୁଦ୍ଧ କରିଥିଲେ । ଜନ୍‌ଙ୍କର ଏହି ପ୍ରକାର କ୍ରୁଶ ଯାତନା ସମୟରେ ଦୁଇ ଜଣ ବାଳକ ତାଙ୍କ ରକ୍ତାକ୍ତ ପାଦ ତଳେ ପଡ଼ି ତାଙ୍କୁ ଆଲିଙ୍ଗନ କରିଥିଲେ ।

ଫାଦେର ଜନ୍‌ଙ୍କ ଜଣେ ଘନିଷ୍ଠ ବନ୍ଧୁ କାନାଗାପାନ୍ ତାଙ୍କର ଅନେକ ସହଯୋଗୀମାନଙ୍କ ସହିତ ତାଞ୍ଜୋରୁ ଆସିଲେ ତାଙ୍କୁ ମୁକ୍ତ କରିବା ପାଇଁ । ଜନ୍ ତାଙ୍କ ବନ୍ଧୁଙ୍କୁ ବନ୍ଦୀଶାଳାକୁ ଆକ୍ରମଣ ନ କରିବା ପାଇଁ କହିଲେ । ଦ୍ୱିତୀୟ ଥର ମଧ୍ୟ ସେହି ବନ୍ଧୁଜଣକ ବନ୍ଦୀଶାଳାକୁ ଧ୍ୱଂସ କରିବା ପାଇଁ ଚେଷ୍ଟା କଲେ କିନ୍ତୁ

ଜନ୍‌ଙ୍କ କଥା ଶୁଣି ସେହି ପ୍ରକାର କାର୍ଯ୍ୟରୁ ସେ ଓହରିଗଲେ । ଏହି ସମୟରେ ରାଜ ଦରବାରରୁ ରାଜା ରଘୁନାଥ ଶିବଙ୍କୁ ପୂଜା କରିବା ପାଇଁ ଆଦେଶ ଦେଲେ । କିନ୍ତୁ ରାଜାଙ୍କ ଆଦେଶକୁ ସେ ପ୍ରତ୍ୟାଖ୍ୟାନ କଲେ । ଏହା ପରେ ରାଜା ତାଙ୍କୁ ମୃତ୍ୟୁଦଣ୍ଡ ଦେବା ପାଇଁ ଚାହିଁଲେ କିନ୍ତୁ ଜନସମୂହକୁ ସେ ଭୟ କଲେ । ତାଙ୍କ ବିଚାରକ ମଣ୍ଡଳୀ ରାଜାଙ୍କ ପକ୍ଷରେ ଥିଲେ । ବିଭିନ୍ନ ପ୍ରକାରର ପ୍ରଲୋଭନ ଏବଂ ଭୟ ଦେଖାଇ କହିଲେ ମଧ୍ୟ ସେହି ପ୍ରଚାରକମାନେ ନିଜର ବିଶ୍ୱାସରେ ଅଟଳ ରହିଲେ । ଏଣୁ ରାଜା ସେମାନଙ୍କୁ ଗୁଳି କରି ହତ୍ୟା କରିବା ପାଇଁ ଆଦେଶ ଦେଲେ । ଆଶ୍ଚର୍ଯ୍ୟଭାବେ ସେହି ଗୁଳିଟି ସେମାନଙ୍କୁ ଭେଦ ନ କରି ଅନ୍ୟଆଡେ ଚାଲିଗଲା । ଫାଦେର ଜନ୍ ଦୌଡିଯାଇ ତାଙ୍କ ସ୍ଥାନରେ ନିଜେ ଠିଆ ହେଲେ । ସୈନ୍ୟମାନେ ତାଙ୍କୁ ଗୋଇଠି, ଚାପୁଡ଼ା ମାରି ତାଙ୍କୁ ତଳେ ପକାଇ ଦଳି ଦେଲେ । ତଥାପି ସେ ନମ୍ର ଭାବରେ ସବୁ କିଛି ସହ୍ୟ କଲେ । ରାଗରେ ଚିଡ଼ିଯାଇ ରାଜା ଜନ୍‌ଙ୍କୁ ଗୁଳିମାରିବା ପାଇଁ ଆଦେଶ ଦେଲେ । ତାଦିଆ ତେଭା ଆଗକୁ ବଢି କହିଲେ, "ପ୍ରଥମେ ମୋତେ ଗୁଳି କରନ୍ତୁ" । ଫାଦେର ଜନ୍‌ଙ୍କ ଅନୁଗାମୀମାନେ କାଳେ ରାଜାଙ୍କ ବିରୁଧରେ ବିଦ୍ରୋହ କରିବେ ଭାବି ତାଙ୍କୁ ମୁକ୍ତ କରି ଓରିଭର ସାଥିରେ ନେଇ ଗଲେ । ଫାଦେର ଜନ୍‌ଙ୍କୁ ହତ୍ୟା କରିବା ପାଇଁ ଗୁପ୍ତରେ ଓରିଭରର ଗଭର୍ଣ୍ଣରଙ୍କୁ ରାଜା ଆଦେଶ ଦେଲେ । ଅରିଭରକୁ ଯିବା ରାସ୍ତାରେ ଯେଉଁ ଭାବରେ ଫାଦେର ଜନ୍‌ଙ୍କୁ ଅପମାନ ଓ କଷ୍ଟ ଦେଲେ, ତାହା ଦେଖି ଜଣେ ହିନ୍ଦୁ ସ୍ତ୍ରୀ ତାଙ୍କୁ ଗିଲାସେ କ୍ଷୀର ପିଇବାକୁ ଦେଇଥିଲେ । ଫାଦେର ଜନ୍ ସେହି ଗ୍ରାମର ନାମ ପଚାରି ଜାଣିଲେ ଯେ ତାର ନାମ ଥିଲା, ପୁଲୁର (ଘାସ ଗାଁ) । ଫାଦେର ଜନ୍ କହିଲେ, "ଏହି ପୁଲୁର ବା ଘାସ ଗାଁ ଦିନେ ନେଲର ଧାନ ଗାଁ ହେଉ" । ସେହିପରି ଆଜି ସେହି ଜାଗାଟି ନେଲୁର ସହର ରୂପେ ପରିଚିତ ।

ଓରିଭରର ଗଭର୍ଣ୍ଣର କୁଷ୍ଠ ରୋଗରେ ଆକ୍ରାନ୍ତ ଥିଲେ । ଫାଦେର ଜନ୍‌ଙ୍କ ନିକଟକୁ ଆସି ତାଙ୍କୁ ସୁସ୍ଥ କରିବା ପାଇଁ ମିନତି କଲେ । ଫାଦେର ଜନ୍ ତାଙ୍କୁ ନିଜର କାର୍ଯ୍ୟ ଯୋଗୁ ପ୍ରାୟଶ୍ଚିତ କରିବା ପାଇଁ କହିଲେ । ରାଜାଙ୍କ ଆଦେଶରେ ଗଭର୍ଣ୍ଣର ସମସ୍ତ ପ୍ରକାର ଚେଷ୍ଟାକଲେ ତାଙ୍କ ବିଶ୍ୱାସକୁ ତ୍ୟାଗ କରିବା ପାଇଁ କିନ୍ତୁ ଜନ୍ ନିଜ ବିଶ୍ୱାସରେ ଅଟଳ ରହିଲେ । ନିଜର ଅଧିକାରୀମାନଙ୍କୁ ଅଙ୍ଗାର ଜଳରେ

ନଡ଼ା ବୁଡ଼ାଇ ଯେଉଁ ପତ୍ର ଲେଖିଲେ ତାହା ଆଜି ମଧ୍ୟ ପବିତ୍ର ରୂପେ ସ୍ମୃତି ସଞ୍ଚୟ କରି ରଖାଯାଇଛି ।

୧୬୯୩ ମସିହା ଫେବୃୟାରୀ ମାସ ୪ ତାରିଖ ଦିନ ଫାଦେର ଜନ୍‌ଙ୍କୁ ସେହି ମୃତ୍ୟୁଦଣ୍ଡ ଦେବା ସ୍ଥାନକୁ ନିଆଗଲା । ଜଣେ ବର ଯେପରି ତାର ବିବାହ କାର୍ଯ୍ୟ ପାଇଁ ଖୁସୀ ଓ ଚଞ୍ଚଳ ହୋଇ ଯାଏ ସେହିପରି ଆନନ୍ଦର ସହିତ ଫାଦେର ଜନ୍ ଯାଇଥିଲେ । ପ୍ରାର୍ଥନା କରିବା ପାଇଁ ସେ ଆଣ୍ଠୁ ପାତି ନିଜର ମସ୍ତକକୁ ଧିରେ ତଳକୁ ନୁଆଇଲେ । ଯିଏ ତାଙ୍କୁ ହତ୍ୟା କରିବା ପାଇଁ ପ୍ରସ୍ତୁତ ଥିଲେ ସେ ଅତି ଶୀଘ୍ର ତାହାଙ୍କ ମସ୍ତକ, ହସ୍ତ ଓ ଗୋଡ଼କୁ କାଟି ପକାଇଲେ । ଏହି ରୂପେ ଶହୀଦମାନଙ୍କ ଗୌରବ ସ୍ଥାନରେ ତାଙ୍କୁ ସମ୍ମାନ ଦିଆଗଲା ।

ପୂଣ୍ୟପିତା ନବମ ପୀୟ ୧୮୫୩ ମସିହା ଅଗଷ୍ଟ ୨୧ ତାରିଖ ଦିନ ଫାଦେର ଜନ୍‌ଙ୍କୁ 'ଧନ୍ୟ' ବୋଲି ଘୋଷଣା କରିଥିଲେ । ପୂଣ୍ୟପିତା ଦ୍ୱାଦଶ ପୀୟ ୧୯୪୭ ମସିହା ଜୁନ୍ ୨୨ ତାରିଖ ଦିନ ତାଙ୍କୁ ସାଧୁରୂପେ ଘୋଷଣା କଲେ । ତାମିଲନାଡୁର ଓରିଭର ଯେଉଁଠାରେ ସେ ମୃତ୍ୟୁବରଣ କଲେ, ସେହି ସ୍ଥାନରେ ତାଙ୍କ ନାମ ଅରୁଲ ଆନନ୍ଦର ସ୍କୁଲ ସ୍ଥାପନ କରାଯାଇଛି । ମାଦୁରାଇର କାରୁମାଥୁରଠାରେ ମଧ୍ୟ ଯୀଶୁ ସଂଘ ଦ୍ୱାରା ତାଙ୍କ ନାମରେ ଅର୍ଥାତ ସାଧୁ ଅରୁଲ ଆନନ୍ଦର କଲେଜ ନାମକରଣ କରାଯାଇଛି । ଶିକ୍ଷାର ଉନ୍ନତି ପାଇଁ ଯୀଶୁ ସଂଘ ଏହି ଦୁଇଟି ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ପର୍ତ୍ତୁଗାଲ ଦେଶର ଲିସବନଠାରେ ମଧ୍ୟ ଯୀଶୁ ସଂଘ ଦ୍ୱାରା ଜନ୍ ଡି ବ୍ରିଟୋ କଲେଜ ତାଙ୍କ ନାମରେ ନାମକରଣ କରାଯାଇଛି । ଗୋଆରେ ପ୍ରାୟ ୭ ମାସ ଧରି ସେ ଇଶ ଶାସ୍ତ୍ର ଅଧ୍ୟୟନ କରିଥିବାରୁ ସେଠାରେ ମଧ୍ୟ ତାଙ୍କ ନାମରେ ଗୋଟିଏ ସ୍କୁଲ ଖୋଲାଯାଇଛି । କେରଳର କୋଚି ନିକଟବର୍ତ୍ତୀ ଧର୍ମାଧକ୍ଷଙ୍କ ବାସ ଭବନ ନିକଟରେ ଗୋଟିଏ ଆଙ୍ଗ୍ଲୋ ଇଣ୍ଡିଆନ ବାଳକ ମାନଙ୍କ ପାଇଁ ତାଙ୍କ ନାମରେ ସ୍କୁଲ ସ୍ଥାପନ କରାଯାଇଛି । କେରଳର କଲମ (କୋଇଲନ) ଧର୍ମ ପ୍ରଦେଶର ଶକ୍ତି କୁଲାଙ୍ଗାର ଧର୍ମାଞ୍ଚଳର ସେ ଅଟନ୍ତି ଇଷ୍ଟ ସାଧୁ । ପ୍ରତିବର୍ଷ ହଜାର ହଜାର ତୀର୍ଥଯାତ୍ରୀ ସାଧୁ ଯୋହନଙ୍କ ପର୍ବ ଦିନ ସମବେତ ହୋଇ ତାହାଙ୍କ ମାଧ୍ୟସ୍ଥତାରେ ପ୍ରଭୁଙ୍କର ଅନୁଗ୍ରହ ଲାଭ କରିଥାନ୍ତି । ତାଙ୍କ ମୃତ୍ୟୁର ଗୋଟିଏ ଦିନ ପୂର୍ବରୁ ସେ ଲେଖିଥିଲେ, "ବ୍ୟାକୁଳତାର ସହ ମୁଁ

ଅପେକ୍ଷା କରିଛି, ଅପେକ୍ଷା କରିଛି ସେହି ମୃତ୍ୟୁ ପାଇଁ । ମୋର ପରିଶ୍ରମ ଏବଂ କଷ୍ଟର ସବୁଠାରୁ ଅତି ମୂଲ୍ୟବାନ ପୁରସ୍କାର ଆଜି ମୁଁ ପ୍ରାପ୍ତ କରିବାକୁ ଯାଉଛି" ।

**ସାଧୁ ଜନ୍ ଡି ବ୍ରିଟୋଙ୍କ ଉକ୍ତି:**

✸ ସାଧୁଙ୍କୁ ହତ୍ୟା କରିବା ପାଇଁ ଆଦେଶ ପାଇଥିବା ଜଣେ ବ୍ୟକ୍ତିଙ୍କୁ ସେ ଏହିପରି କହିଥିଲେ, "ହେ ମୋର ବନ୍ଧୁ ପରମେଶ୍ୱରଙ୍କଠାରେ ମୁଁ ପ୍ରାର୍ଥନା କରିଅଛି । ମୋ ତରଫରୁ ମୁଁ ଯାହା କରିବା କଥା ତାହା କରିଅଛି । ବର୍ତ୍ତମାନ ତୁମର କାର୍ଯ୍ୟ ସମ୍ପାଦନ କର" ।

✸✸✸

## ସାଧୁ ଗନ୍‌ସାଲ୍‌ଭୋ ଗାରସିଆ (ଫେବୃୟାରୀ ୬)

ଭାରତର ମୁମ୍ବାଇ ନିକଟବର୍ତ୍ତୀ ଭାସାଇରେ ସାଧୁ ଗନ୍‌ସାଲ୍‌ଭୋ ୧୫୫୭ ମସିହା ଫେବୃୟାରୀ ୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ ପର୍ତ୍ତୁଗାଲ ଦେଶର ଏବଂ ମାତା ପୂର୍ବ ଭାରତର କଙ୍କଣ ଅଞ୍ଚଳରୁ । ଜଣେ ଧର୍ମ ଶିକ୍ଷକ (Catechist) ଭାବରେ ଯୀଶୁ ସଂଘର ଫାଦେରମାନଙ୍କ ନିର୍ଦ୍ଦେଶରେ ଗନ୍‌ସାଲ୍‌ଭୋ କାମ କରୁଥିଲେ । ଗନ୍‌ସାଲ୍‌ଭୋ ଯେଶୁଇଟ ମିଶନାରୀ ଭାବରେ ଜାପାନ୍‌କୁ ଯିବାପାଇଁ ପ୍ରବଳ ଇଚ୍ଛା ପ୍ରକାଶ କରୁଥିଲେ । କିନ୍ତୁ ଏହି ଲକ୍ଷ୍ୟଟି ତାଙ୍କର ପୂରଣ ହୋଇପାରିଲା ନାହିଁ । ସେ ଜାପାନୀ ଭାଷା ଭଲ ଭାବରେ ଶିଖିଲେ । ଏଣୁ ନାଗାସାକିରେ ପର୍ତ୍ତୁଗୀଜ ବଣିକମାନେ ତାଙ୍କୁ ନିମନ୍ତ୍ରଣ କଲେ ସେମାନଙ୍କର ଭାଷାକୁ ବ୍ୟାଖ୍ୟା କରିବା ପାଇଁ । ପର୍ତ୍ତୁଗୀଜ ବଣିକମାନଙ୍କ ଜଣେ Interpreter ହିସାବରେ ସେ ନିଜର ବ୍ୟବସାୟ ମଧ୍ୟ ସେଠାରେ ଦୃଢ଼ କରି ପାରିଥିଲେ । ଜାପାନ୍‌ର ହିରାଦ ଦ୍ୱୀପରେ ରହଣି ମଧ୍ୟରେ ଫାଦେର ଜନ୍ ନାମକ ଜଣେ ଫ୍ରାନ୍‌ସିସ୍‌କାନ୍ ଫାଦେର୍‌ଙ୍କ ସହିତ ସାକ୍ଷାତ ହୋଇଥିଲେ । ଫାଦେର ଜନ୍‌ଙ୍କ ସରଳତା ଏବଂ ଦାରିଦ୍ର୍ୟତା ତାଙ୍କୁ ବିଶେଷ ଭାବରେ ସ୍ପର୍ଶ କରିଥିଲା । ସେଠାରୁ ଗନ୍‌ସାଲ୍‌ଭୋ ମାକାଓ ଯାଇ ଜଣେ ସଫଳ ବ୍ୟବସାୟୀ ଭାବରେ ପ୍ରତିଷ୍ଠିତ ହୋଇପାରିଥିଲେ । ବ୍ୟବସାୟ କାର୍ଯ୍ୟରେ ସେ ଅନେକ ଥର ଫିଲିପାଇନ୍ ଯାଉଥାନ୍ତି । ସରଳ ଜୀବନଯାପନ କରି ଉଦାରତା ସହିତ ଗରିବମାନଙ୍କୁ ଦାନ ଦେଉଥିଲେ ଏବଂ ପ୍ରାର୍ଥନାରେ ଅଧିକାଂଶ ସମୟ ବିତାଉଥିଲେ । ଫ୍ରାନ୍‌ସିସ୍କାନ୍ ସଂଘର ଅଧିକାରୀ ଫାଦେର୍ ପେଦ୍ର ବାଉତିସ୍ତାଙ୍କୁ ତାଙ୍କ ସଂଘରେ ଯୋଗଦେବା ପାଇଁ ନିଜର ଅଭିଳାଷ ପ୍ରକାଶ କରିଥିଲେ । ଯେଉଁ ପର୍ତ୍ତୁଗୀଜ ବଣିକଙ୍କ ଅଧିନରେ ଜଣେ Interpreter ହିସାବରେ ଗନ୍‌ସାଲ୍‌ଭୋ କାମ କରୁଥିଲେ, ସେ ଫ୍ରାନ୍‌ସିସ୍‌କାନ୍ ଫାଦେରମାନଙ୍କୁ ପ୍ରବର୍ତ୍ତାଇଲେ ତାଙ୍କୁ ଗ୍ରହଣ ନ କରିବା ପାଇଁ କିନ୍ତୁ ତାହା ସମ୍ଭବ ହୋଇପାରିଲା ନାହିଁ । ଶେଷରେ ୧୫୮୮ ମସିହା ଜୁଲାଇ ୩ ତାରିଖରେ ଗନ୍‌ସାଲ୍‌ଭୋ ଫ୍ରାନ୍‌ସିସ୍‌କାନ୍ ସଂଘର ଜଣେ ବ୍ରଦେର୍ ହୋଇ ପାରିଥିଲେ । ଫାଦେର ପେଦ୍ରଙ୍କର Interpreter ବ୍ୟାଖ୍ୟା କାରୀ ହୋଇ ନୁହେଁ, ବରଂ ଜୀବନ ଓ ମରଣର ସାଥି ହୋଇ ପାରିଥିଲେ । ଯଦିଓ ଗନ୍‌ସାଲ୍‌ଭୋ ଜଣେ ବିଖ୍ୟାତ ବ୍ୟବସାୟୀ ଏବଂ ପ୍ରସିଦ୍ଧ ଧନଶାଳୀ ବ୍ୟକ୍ତି

ଥିଲେ, ସେ ଦାରିଦ୍ର୍ୟ ଜୀବନକୁ ଭଲ ପାଇ ନିଜ ଜୀବନରେ ତା'ର ସାକ୍ଷ୍ୟ ଦେଇ ପାରିଥିଲେ । ସେ ଜଣେ ପରିଶ୍ରମୀ ଏବଂ ଖୁସୀର ବ୍ୟକ୍ତି ଥିଲେ । ଯାହା ତାଙ୍କୁ କୁହାଯାଉଥିଲା, ହୃଦୟ ସହିତ ସେ ତାହା କରୁଥିଲେ । ରୋଷେଇଠାରୁ ଆରମ୍ଭ କରି, ସଉଦା କରିବା ତଥା ଖାଇବା ସମୟରେ ଅନ୍ୟକୁ ବାଢ଼ିଦେବା ଏବଂ ଖାଇବା ପରେ ବାସନ ମଧ ମାଜିବା ପାଇଁ ସେ ପଛଘୁଞ୍ଚା ଦେଉ ନଥିଲେ । ହସ୍ପିଟାଲ୍ ଯାଇ ରୋଗୀମାନଙ୍କ ସେବା କରୁଥିଲେ ।

୧୫୯୩ ମସିହାରେ ବ୍ରଦେର୍ ଗନ୍‌ସାଲ୍‌ଭୋ ଦ୍ୱିତୀୟ ଥର ପାଇଁ ଜାପାନ୍‌କୁ ମାନିଲାର ରକ୍ଷୀଦୂତଙ୍କ ସହକର୍ମୀ ଭାବରେ ଯାଇଥିଲେ । ରକ୍ଷୀଦୂତ ଥିଲେ ଜଣେ ଫ୍ରାନ୍‌ସିସ୍‌କାନ୍ ଯାଜକ । ନାଗାସାକି ପହଞ୍ଚିବା ପରେ ଗନ୍‌ସାଲଭ ଗୃହ ନିର୍ମାଣ କରିବାର ଦାୟିତ୍ୱ ନେଲେ । ଗୃହ ନିର୍ମାଣ କାର୍ଯ୍ୟରେ ତାଙ୍କ ନିପୁଣତା ଏବଂ କଳା ତାଙ୍କୁ ପ୍ରସିଦ୍ଧ କରାଇଥିଲା । ବ୍ରଦେର ଗନ୍‌ସାଲ୍‌ଭୋ ସେଠାରେ ଅନେକ ଗୀର୍ଜା ଘର ଏବଂ କୁଷ୍ଠୀମାନଙ୍କ ପାଇଁ ଗୃହ ନିର୍ମାଣ କଲେ ।

ଜାପାନ୍‌ର ଶାସକ ହିଦେୟୋଶି ଶୁଣିବାକୁ ପାଇଲେ ଯେ, ଯେଉଁ ଖ୍ରୀଷ୍ଟିଆନମାନଙ୍କୁ ସାହାଯ୍ୟ କରୁଛନ୍ତି ସେମାନେ ବିଶ୍ୱସ୍ତ ନୁହନ୍ତି । ଶାସକଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଛନ୍ତି ବୋଲି ମିଥ୍ୟା ଖବର ପାଇ ସମସ୍ତ ଖ୍ରୀଷ୍ଟିଆନ୍‌ମାନଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଲେ ।

୧୫୯୬ ମସିହା ଡିସେମ୍ବର ୮ ତାରିଖରେ ମିଆକୋରେ (କିଓଟୋ) ସମସ୍ତ ମିଶିନାରୀମାନଙ୍କୁ ନଜର ବନ୍ଦୀ କଲେ । ଡିସେମ୍ବର ୮ ତାରିଖ କୁମାରୀ ମାରୀୟାଙ୍କ ବିମଳା ଗର୍ଭ ସମ୍ଭବ ପର୍ବ ଦିନ ଗନ୍‌ସାଲ୍‌ଭୋଙ୍କ ସମେତ ତାଙ୍କର ୨୬ଜଣ ସାଥିଙ୍କୁ ନାଗାସାକି ପାହାଡ଼କୁ ନେଇ କ୍ରୁଶ ଉପରେ ମାରିବା ପାଇଁ ନିଆଗଲା । ୧୫୯୭ ମସିହା ଜାନୁଆରୀ ୩ ତାରିଖ ଦିନ ଜାପାନ୍‌ର ଶାସକ ହିଦେୟୋଶୀ ସେମାନଙ୍କର କାନ କାଟିବା ପାଇଁ ଆଦେଶ ଦେଲେ । ମିଶନାରୀମାନଙ୍କ କାନ କଟା ହେଲା ପରେ ରକ୍ତ ବହୁଥିବା ଅବସ୍ଥାରେ ସେମାନଙ୍କୁ ସହର ପରିକ୍ରମା କରିବାକୁ କୁହାଗଲା । ଶୀତଦିନ ଶରୀରରେ ବସ୍ତ୍ର ନ ଥାଇ ଥରି ଥରି ଭୋକିଲା ପେଟରେ ସେହି କାଲଭାରୀ ରୂପକ ନାଗାସାକି ପାହାଡ଼କୁ ଚଢ଼ିଲେ । ଗନ୍‌ସାଲଭୋଙ୍କ କ୍ରୁଶଟି ତାଙ୍କ ସାଥିମାନଙ୍କ ମଧ୍ୟରୁ ମଝିରେ ଥିଲା ଏବଂ କ୍ରୁଶରେ

ଚଢ଼ିବା ପାଇଁ ସେ ଥିଲେ ପ୍ରଥମ । ନିଜର କ୍ରୁଶ ପାଖକୁ ଆନନ୍ଦରେ ଦୌଡ଼ି ଯାଇ କ୍ରୁଶଟିକୁ ଚୁମ୍ବନ କରି ଆଲିଙ୍ଗନ କଲେ । ସମସ୍ତ ମିଶନାରୀ ଏକତ୍ର ପ୍ରାର୍ଥନା କରି ଈଶ୍ୱରଙ୍କ ସ୍ତବଗାନ କଲେ । ସେମାନେ ପରସ୍ପର ପ୍ରତି ପ୍ରାର୍ଥନା କଲେ । ଏହାପରେ ଜଣକ ପରେ ଜଣକୁ ସେମାନେ ବର୍ଚ୍ଛାରେ ଆଘାତ କଲେ । ମୃତ୍ୟୁ ପୂର୍ବରୁ ସେମାନଙ୍କୁ କୁହାଗଲା ଯଦି ସେମାନେ ନିଜର ବିଶ୍ୱାସକୁ ତ୍ୟାଗ କରିବେ, ତେବେ ସେମାନଙ୍କୁ ମୁକ୍ତ କରାଯିବ । କିନ୍ତୁ ସେମାନେ ନିଜର ବିଶ୍ୱାସକୁ ବଜାୟ ରଖି ବିଶ୍ୱାସ ପାଇଁ ନିଜର ରକ୍ତ ଦେଲେ । ୧୫୯୭ ମସିହା ଫେବୃୟାରୀ ୫ ତାରିଖରେ ନାଗାସାକିର ତାତେୟାମା (ଗହମର ପାହାଡ଼) ଉପରେ ତାଙ୍କୁ କ୍ରୁଶବିଦ୍ଧ କରାଗଲା । ତାଙ୍କର ମୃତ୍ୟୁ ପରେ ସେହି ଶହୀଦମାନଙ୍କ ଶରୀର କିଛି ଅଂଶ ସ୍ମରଣ କରିବା ପାଇଁ ନିଜ ଘରକୁ ନେଇଗଲେ ।

୧୬୨୭ ସାଲ୍ ସେପ୍ଟେମ୍ବର ୧୪ ତାରିଖରେ ପୁଣ୍ୟପିତା ଅଷ୍ଟମ ଉର୍ବାନ ସେମାନଙ୍କୁ ଧନ୍ୟ ବୋଲି ଘୋଷଣା କରିଥିଲେ । ୧୮୬୨ ମସିହା ଜୁନ୍ ୮ ତାରିଖରେ ପୁଣ୍ୟପିତା ନବମ ପୀୟୁଷ ସେମାନଙ୍କୁ ସାଧୁ ବୋଲି ଘୋଷଣା କରିଥିଲେ ।

ପରବର୍ତ୍ତୀ ସମୟରେ ଖ୍ରୀଷ୍ଟିଆନମାନେ ପ୍ରତି କ୍ରୁଶ ଜାଗାରେ ଗଛ ପୋତିଲେ ଏବଂ କେନ୍ଦ୍ର ସ୍ଥାନରେ ଗୋଟିଏ ବଡ଼ କ୍ରୁଶ ତିଆରି କଲେ । ସେହି ସ୍ଥାନକୁ 'ପୁନରୁତ୍‌ଥାନର ପାହାଡ଼' ବୋଲି ନାମକରଣ କଲେ । ପ୍ରତିବର୍ଷ ତୀର୍ଥ ଯାତ୍ରୀମାନେ ଆସି ଏଠାରେ ପ୍ରାର୍ଥନା କରନ୍ତି । ଏହି ପାହାଡ଼କୁ ଶହୀଦମାନଙ୍କ ପାହାଡ଼ ବୋଲି ମଧ୍ୟ କୁହାଯାଏ । ପୁଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ ୧୯୮୧ ମସିହାରେ ଏହି ସ୍ଥାନ ପରିଦର୍ଶନ କରି ଏହାକୁ ପୁନରୁତ୍‌ଥାନର ପାହାଡ଼ ବୋଲି ନାମ ଦେଲେ । ଯେଉଁ ୨୬ଜଣ ମିଶିନାରୀ ଶହୀଦ ହେଲେ ସେମାନଙ୍କ ମଧ୍ୟରୁ ୬ଜଣ ଥିଲେ ଫ୍ରାନ୍‌ସିସ୍କାନ୍ ସଂଘରୁ: ପିଟେର ବାପଟିଷ୍ଟ, ମାର୍ଟିନ ଦି ଆଗୁଇରେ, ଫ୍ରାନ୍‌ସିସ୍ ବ୍ଲାଙ୍କୋ, ଫ୍ରାନ୍‌ସିସ୍ ମଇକେଲ୍ (ଏହି ଚାରି ଜଣ ସ୍ପେନୀୟ ଥିଲେ); ଫିଲିପ୍ ଦେଲା କାସାସ (ମେକସିକାନ୍) ଗନ୍‌ସାଲଭୋ ଗାର୍‌ସିଆ (ଭାରତ); ତିନିଜଣ ଯେଶୁଇଟ୍ ପଲ ମିକି, ଜନ୍ ଗୋଟ ଏବଂ ଜେମ୍‌ସ କିସାଇ (ଜାପାନ୍‌ରୁ) ଦୁଇ ଜଣ ଜାପାନି ଫ୍ରାନ୍‌ସିସ୍କାନ୍ ତେର୍‌ତିଆରିସ୍; ଗାଇଉସ୍ ଫ୍ରାନ୍‌ସିସ୍ (ସୈନିକ),

ଫ୍ରାନ୍ସି ମିକାଓ (ଫିଜିସିଆନ୍), ଲିଓ କାରାସୁମା (କୋରିଆନ୍) ଏବଂ ତିନି ଜଣ ବେଦୀ ସାହାଯ୍ୟକାରୀ ବାଳକ, ଯାହାଙ୍କର ବୟସ ଯଥାକ୍ରମେ ୧୨, ୧୩, ଏବଂ ୧୪, ସେମାନେ ହେଲେ ଲୁୟିସ୍ଇବ୍ରାକି, ଆନ୍ତୋଣୀ ଦେନ୍ୟାନ୍, ଥୋମାସ କାସାକି ଏବଂ ୧୧ଜଣ ବିଶ୍ୱାସୀ । ସାଧୁ ଗନ୍ସାଲ୍ଭୋ ଗାରସିଆଙ୍କ ତ୍ୟାଗମୟ ଜୀବନ ଏବଂ ତାହାଙ୍କ ଯୀଶୁଙ୍କ ପ୍ରତି ଥିବା ଗଭୀର ପ୍ରେମ ଆମ ଜୀବନ ପାଇଁ ବିଶେଷ ପ୍ରେରଣାଦାୟକ ।

**ସାଧୁ ଗନସାଲଭ ଗାରସିଆଙ୍କ ଉକ୍ତି :**

✸ ସହୀଦ ହେବା ସମୟରେ ତାଙ୍କର ଜଣେ ବନ୍ଧୁଙ୍କୁ ଏହି ପରି କହି ଥିଲେ, "ହେ ମୋର ଉତ୍ତମ ବନ୍ଧୁ, ପ୍ରଭୁ ତୁମ ସହିତ ରହନ୍ତୁ । ମୁଁ ସ୍ୱର୍ଗକୁ ଯାଉଅଛି । ଫାଦେର ସେବାଷ୍ଟିଆନ ଗନସାଲଭନଙ୍କୁ ମୋର ହୃଦୟ ଭରା ଆଲିଙ୍ଗନ ଜଣାଇବ" ।

✸✸✸

# ସାଧ୍ୱୀ ଯୋସେଫାଇନ ବାଖିତା

## (୧୮୬୯-୧୯୪୭, ଫେବୃୟାରୀ ୮)

ବାଖିତାଙ୍କ ଜନ୍ମ ହୋଇଥିଲା ୧୮୬୯ ମସିହାରେ ଦକ୍ଷିଣ ଆଫ୍ରିକାର ସୁଦାନ ସ୍ଥିତ ଡାରଫୁର ଅଞ୍ଚଳର ଓଲଗୋସା ଠାରେ । ତାଙ୍କର ଚାରି ଭଉଣୀ ଓ ତିନି ଭାଇ ଥିଲେ । ସାତ ବର୍ଷ ବୟସରେ ତାଙ୍କୁ ମୁସଲମାନ୍ ଦୁର୍ବୃତ୍ତମାନେ ଅପହରଣ କରି ନେଇଯାଇଥିଲେ । ଏହି ପ୍ରକାର ଏକ ଭୟଭୀତ ଓ ଭୟଙ୍କର ଅନୁଭୂତି ଦ୍ୱାରା ସେ ନିଜର ନାମ ଏପରିକି ନିଜ ପିତା ମାତାଙ୍କ ଠିକଣା ବା ମନରୁ ଭୁଲିଯାଇଥିଲା । ଏଲ୍ଓବେଇଦ୍ ଏବଂ ଖାର୍ତୁମ କ୍ରୀତଦାସ ବଜାରରେ ତାଙ୍କୁ କିଣା ଯାଇଥିଲା ଏବଂ ଜଣକ ପରେ ଜଣକୁ ବିକ୍ରି କରାଯାଇଥିଲା । ଜଣେ କ୍ରୀତଦାସୀ ଭାବରେ ବାଖିତା ଯେଉଁ ଲଜ୍ଜା, ଅପମାନ, ଶାରିରୀକ ତିକ୍ତତା ଓ ନୈତିକତାର ଅବକ୍ଷୟ ଅନୁଭୂତି ପାଇଥିଲେ ତାହା ବାସ୍ତବରେ ମାନବ ଜାତି ପାଇଁ ସର୍ବଦା ଏକ ଶିକ୍ଷଣୀୟ ବିଷୟ ହୋଇ ରହିବ ।

ସୁଦାନର ରାଜଧାନୀରେ ଇଟାଲୀର ଜଣେ ବାଣିଜ୍ୟ ଦୂତ କାଲିସ୍ଟୁସ ଲେଗାନି ପ୍ରଥମେ ବାଖିତାଙ୍କୁ କ୍ରୟ କରିଥିଲେ । ଯେତେବେଳେ ବାଣିଜ୍ୟ ଦୂତ ଇଟାଲୀକୁ ଫେରିଲେ ସେ ବାଖିତାଙ୍କୁ ସଙ୍ଗରେ ନେଇଗଲେ । ଇଟାଲୀରେ ବାଣିଜ୍ୟ ଦୂତଙ୍କ ଜଣେ ବନ୍ଧୁ ଅଗସ୍ଟୁସ ମିଖିଏଲ ତାଙ୍କୁ ନେଇ ନିଜ ଗୃହକୁ ଗଲେ । ତାଙ୍କର ଝିଅର ଝିଅକୁ ଲାଳନ ପାଳନ କରିବାର ଦାୟିତ୍ୱ ସେ ନେଲେ । ଅର୍ଥାତ୍ Baby-sitter ଭାବରେ ସେହି ଗୃହରେ କାର୍ଯ୍ୟ କଲେ । ୧୮୯୦ ମସିହା ଜାନୁୟାରୀ ୯ ତାରିଖ ଦିନ ବାଖିତା ଦୀକ୍ଷାସ୍ନାନ, ଦୃଢୀକରଣ ଏବଂ ଦିବ୍ୟ ପ୍ରସାଦ ସଂସ୍କାର ଗ୍ରହଣ କରିଥିଲେ । ସେହି ଦିନ ଠାରୁ ସେ ନିଜର ନାମ ପରିବର୍ତ୍ତନ କରି ଏକ ନୂଆ ନାମ ଯୋସେଫାଇନ୍ ନାମରେ ପରିଚିତ ହେଲେ ।

୧୮୯୩ ମସିହା ଡିସେମ୍ବର ୭ ତାରିଖ ଦିନ Canossian Daughters of Charity କନ୍‌ଭେଣ୍ଟରେ ସେ ପ୍ରବେଶ କଲେ । ୧୮୯୬ ମସିହା ଡିସେମ୍ବର ମାସ ୮ ତାରିଖରେ ଚିରସ୍ଥାୟୀ ବ୍ରତ ନେଲେ । ସେ ଜଣେ ନମ୍ର, ସରଳ ଓ ବିଶ୍ୱସ୍ତ ବ୍ୟକ୍ତି ରୂପେ ପରିଚିତ ଥିଲେ । ତାଙ୍କର ମୃଦୁ ହସ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲା । ରୋଷେଇ, ସିଲାଇ ଇତ୍ୟାଦି କାର୍ଯ୍ୟରେ ସେ ପାରଙ୍ଗମ ଥିଲେ ।

ବୟସରେ ବୃଦ୍ଧି ହୁଅନ୍ତେ, ସେ ବିଭିନ୍ନ ପ୍ରକାରର ରୋଗରେ ପୀଡିତ ହେଲେ । ନିଜର କାର୍ଯ୍ୟରେ ସେ ବିଶ୍ୱାସ ଓ ଖ୍ରୀଷ୍ଟିୟାନ୍ ଜୀବନର ପରିଚୟ ଦେଉଥିଲେ । ମାରୀୟାଙ୍କ ପ୍ରତି ବାଖିତାଙ୍କ ଗଭୀର ଭକ୍ତି ଥିଲା । ୧୯୪୭ ମସିହା ଫେବୃୟାରୀ

ମାସ ୮ ତାରିଖରେ ଭିଚେନ୍ସାର ସ୍କିଓରେ ସେ ମୃତ୍ୟୁ ବରଣ କରିଥିଲେ । ୧୯୯୨ ମସିହା ମଇ ମାସ ୧୭ ତାରିଖରେ ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟ ବାକ୍ଷିତାଙ୍କୁ 'ଧନ୍ୟା' ବୋଲି ଘୋଷଣା କଲେ । ୨୦୦୦ ମସିହା ଅକ୍ଟୋବର ମାସ ୧ ତାରିଖ ଦିନ ପୂଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ ତାଙ୍କୁ ସାଧ୍ୱୀ ରୂପେ ଘୋଷଣା କଲେ ।

ଗୀତ ସଂହିତା ୧୯:୮ "ପ୍ରଭୁଙ୍କର ନିୟମ ଶୁଦ୍ଧ ଅଟେ...ଏହା ସରଳ ଲୋକଙ୍କୁ ଜ୍ଞାନ ଦିଏ"। ଏହି ବାକ୍ୟକୁ ଦୋହରାଇ ପୂଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ କହିଲେ, "ଏହି ବାକ୍ୟ ସିଷ୍ଟେର ବାକ୍ଷିତାଙ୍କ ଜୀବନରେ ଶକ୍ତିଶାଳୀ ଭାବେ ପ୍ରତିଧ୍ୱନି କରେ"। ସାତ ବର୍ଷ ବୟସରେ ତାଙ୍କୁ କ୍ରୀତଦାସ ରୂପେ ଅପହରଣ କରି ବିକ୍ରି କରାଯାଇଥିଲା । ତାଙ୍କ ନିଷ୍ଠୁର ମାଲିକମାନଙ୍କ ଦ୍ୱାରା ସେ ନିର୍ଯ୍ୟତିତ ହୋଇଥିଲେ । ଏହି ଅନୁଭୂତି ମାଧ୍ୟମରେ ସେ ଏକ ସତ୍ୟତା ହୃଦୟଙ୍ଗମ କରିଥିଲେ ଯେ କେବଳ ଇଶ୍ୱର ହିଁ ସମସ୍ତ ମାନବ ଜାତିର ମାଲିକ । ଏଣୁ ଯେଉଁ ଝିଅ ମାନେ ବିଭିନ୍ନ ଭାବରେ ଅନ୍ୟାୟରେ ନିର୍ଯ୍ୟାତିତା ହେଉଥିଲେ, ସେମାନଙ୍କୁ ମୁକ୍ତ କରି ସେମାନଙ୍କୁ ସମ୍ମାନ ଓ ମର୍ଯ୍ୟଦା ଦେବା ପାଇଁ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ

ଯୋସେଫାଇନ୍ ମାର୍ଗାରେଟ ବାକ୍ଷିତା ହେଉଛନ୍ତି ଆଫ୍ରିକାର ପ୍ରଥମ ମହିଳା ସାଧ୍ୱୀ ଯିଏ ସୁଦାନ୍‌ରେ କ୍ରୀତଦାସ ହୋଇ ରହିବା ପରେ ଇଟାଲୀର ଭିଚେନ୍ସାସ୍ଥିତ ସ୍କିଓରେ ପ୍ରାୟ ୪୫ ବର୍ଷ ଅତିବାହିତ କରିଥିଲେ । ସମସ୍ତେ ତାଙ୍କୁ ସ୍ନେହରେ 'ଆମର କାଳିଆ ମାଁ' ବୋଲି ଡାକୁଥିଲେ । ବାକ୍ଷିତାଙ୍କ ସାଧ୍ୱୀ ହେବାର ପ୍ରକ୍ରିୟା ମୃତ୍ୟୁର ୧୨ ବର୍ଷ ପରେ ଅର୍ଥାତ୍ ୧୯୫୮ ମସିହା ଡିସେମ୍ବର ମାସ ୧ ତାରିଖରେ ଆରମ୍ଭ ହୋଇଥିଲା ।

ବାକ୍ଷିତା ନାମଟି ଜନ୍ମରୁ ତାଙ୍କ ପିତା ମାତା ଦେଇ ନାହାନ୍ତି । କିନ୍ତୁ ଯେଉଁମାନେ ତାଙ୍କୁ ଅପହରଣ କରି ନେଇଥିଲେ ସେମାନେ ତାଙ୍କୁ ଏହି ନାମ ଦେଇଥିଲେ । ବାକ୍ଷିତା ନାମର ଅର୍ଥ ହେଲା ପେରସିଆ ଭାଷାରେ 'ଭାଗ୍ୟବତୀ' । ବାଣିଜ୍ୟ ଦୂତ ଗୃହରେ ବାକ୍ଷିତା ଅନୁଭବ କଲେ ଶାନ୍ତି, ଓ ଆନନ୍ଦ । ଯଦିଓ ନିଜ ଗୃହ, ପିତାମାତା ଓ ଆତ୍ମୀୟଜନଙ୍କ ଠାରୁ ଦୂରରେ ରହି ଦୁଃଖ ଅନୁଭବ କରୁଥିଲେ, ତଥାପି ଇଶ୍ୱରଙ୍କୁ ନ ଜାଣି ନିଜ ହୃଦୟରେ ସେ ଗଭୀର ଅଶାନ୍ତି ଅନୁଭବ କରିଥିଲେ । ସେ କହନ୍ତି, "ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ର ଗୁଡିକୁ ଦେଖି ନିଜକୁ ନିଜେ ସେ ପଚାରୁଥାନ୍ତି, କିଏ ହୋଇପାରେ ଏହି ସବୁ ସୁନ୍ଦର ବସ୍ତୁର ମାଲିକ" ? ସେହି ମାଲିକଙ୍କୁ ଦେଖିବା ପାଇଁ ଓ ତାଙ୍କୁ ଜାଣିବା ପାଇଁ ଏବଂ ତାଙ୍କୁ ଆରାଧନା କରିବା ପାଇଁ ତାଙ୍କ ହୃଦୟରେ ଗଭୀର ଇଚ୍ଛା ଜାତ ହେଲା । ଅନେକ ସମୟରେ ଗୀର୍ଜାରେ ଥିବା ସ୍ନାନ କୁଣ୍ଡକୁ

ଦେଖି ଏବଂ ଚୁମ୍ବନ କରି କହୁଥାନ୍ତି, "ଏହିଠାରେ ମୁଁ ଇଶ୍ୱରଙ୍କର ଝିଅ ହୋଇ ପାରିଲି" ।

ପ୍ରତ୍ୟେକ ଦିନ ସେହି ଇଶ୍ୱରଙ୍କୁ ସେ ପ୍ରେମ କରୁଥିଲେ ଯିଏ ତାଙ୍କୁ ରହସ୍ୟମୟ ଭାବେ ହସ୍ତରେ କଢାଇ ଆଣିଥିଲେ । ଯେତେବେଳେ ସେ ଦୂରରେ ଜଗି ରହି ନିଜର କର୍ତ୍ତବ୍ୟ କରୁଥିଲେ, କାନୋସିଆନ୍ ସ୍କୁଲରେ ପଢୁଥିବା ପିଲାମାନେ ଘରକୁ ଫେରିଯିବା ସମୟରେ ସ୍ନେହରେ ସେମାନଙ୍କ ମସ୍ତକରେ ହସ୍ତ ରଖୁଥିଲେ । ତାର ମଧୁର ସ୍ୱର,ନିଜ ଦେଶର ସଙ୍ଗୀତର ତାଳ ସେହି ପିଲାମାନଙ୍କୁ ଆପ୍ୟାୟିତ କରୁଥିଲା, ଦୁଃଖି ଓ ଗରୀବ ମାନଙ୍କୁ ସାନ୍ତ୍ୱନା ପ୍ରଦାନ କରୁଥିଲା ଏବଂ ଅନୁଷ୍ଠାନରୁ ବାହାରି ଯାଉଥିବା ଲୋକମାନଙ୍କୁ ଉତ୍ସାହିତ କରୁଥିଲା । ବାକ୍ଷିତା ନିଜର ସରଳ, ନମ୍ର ଏବଂ ସର୍ବଦା ହସ ହସ ମୁଖ ଦ୍ୱାରା ସମସ୍ତଙ୍କ ହୃଦୟକୁ ଜିଣି ପାରିଥିଲେ । ସେହି ସଂଘର ସିଷ୍ଟେରମାନେ ମଧ୍ୟ ତାଙ୍କର ମୃଦୁ ମଧୁର ସ୍ୱଭାବ ଦେଖି ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । ନିଜର ଉତମ ଗୁଣ ଦ୍ୱାରା ସେ ପ୍ରଭୁଙ୍କୁ ବାସ୍ତବ ଜୀବନରେ ସାକ୍ଷ୍ୟ ଦେଇ ପାରୁଥିଲେ । ସେ ସବୁବେଳେ କହୁଥାନ୍ତି, "ଉତମ ଜୀବନ ଯାପନ କର, ଇଶ୍ୱରଙ୍କୁ ପ୍ରେମ କର, ଯେଉଁମାନେ ତାଙ୍କୁ ଜାଣି ନାହାନ୍ତି ସେମାନଙ୍କ ନିମନ୍ତେ ପ୍ରାର୍ଥନା କର । ଇଶ୍ୱରଙ୍କୁ ଜାଣିବା ସବୁଠାରୁ ମହାନ ଅନୁଗ୍ରହ ଅଟେ"। ଯେଉଁମାନେ ତାଙ୍କୁ ଦେଖିବା ପାଇଁ ଆସନ୍ତି ଓ ପଚାରନ୍ତି ସେ କେମିତି ଅଛନ୍ତି ? ହସ ହସ ମୁଖରେ ସେ କହନ୍ତି, ମାଲିକ ଯେମିତି ଚାହାନ୍ତି ।

ଶେଷ ସମୟରେ, କ୍ରୀତଦାସ ହୋଇ ଯେଉଁ ଯନ୍ତ୍ରଣା ଦାୟକ ଜୀବନ ସେ ବିତାଇଥିଲେ ସେହି ସବୁ ସ୍ମୃତି ତାର ମନରେ ଆସିଯାଏ ଏବଂ ଯେଉଁ ନର୍ସମାନେ ତାଙ୍କୁ ସେବା କରୁଥାନ୍ତି, ସେମାନଙ୍କୁ କହନ୍ତି, "ଶିକୁଳିକୁ ଖୋଲିଦିଅ, ସେଗୁଡିକ ବହୁତ ଓଜନ ଲାଗୁଛି"। ମୃତ୍ୟୁ ସମୟରେ ସେ ଚିତ୍କାର କରି କହିଥିଲେ 'ଆମର ମାଁ, ଆମର ମାଁ' । ଆଞ୍ଜେଲା ମାରି ସିଲା ନାମକ ଜଣେ ଯୁବତୀ ସିଷ୍ଟେର ଦିନେ ତାଙ୍କ ବାମ ଆଣ୍ଠୁରେ ବହୁତ ବ୍ୟଥା ଅନୁଭବ କଲେ । ଦିନକୁ ଦିନ ବ୍ୟଥା ବଢିବାକୁ ଲାଗିଲା । ଡାକ୍ତରୀ ଚିକିତ୍ସାରୁ ଜଣା ପଡିଲା ଯେ ସେ Arthritic ବେମାରୀ ଦ୍ୱାରା ପୀଡିତ । ସେ ଆଣ୍ଠୁରେ ପୁଣି ପୋକ ବାହାରିବାକୁ ଲାଗିଲା । ଆଠ ବର୍ଷ ଧରି ବିଭିନ୍ନ ପ୍ରକାରର ଚିକିତ୍ସା ସେ କରୁଥିଲେ । କିନ୍ତୁ ସେ ସୁସ୍ଥତା ପାଇ ନ ଥିଲେ । ଶଯ୍ୟାଶାୟୀ ହୋଇ ସେ ଅନେକ କଷ୍ଟ ପାଉଥିଲେ ।

୧୯୩୯ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟ, ପୁଣି ଜର୍ମାନୀର ଆକ୍ରମଣ ଯୋଗୁ ତାଙ୍କର ଚିକିତ୍ସା ସ୍ଥଗିତ ରହିଲା । ଯୁଦ୍ଧ ଶେଷ ହେବା ପରେ, ଆଞ୍ଜେଲାଙ୍କ

ଶରୀର ଦୁର୍ବଳ ହେବାକୁ ଲାଗିଲା । ସେ ଗଭୀର ଯନ୍ତ୍ରଣା ଅନୁଭବ କରୁଥିଲେ । ୧୯୪୭ ମସିହା ଫେବୃୟାରୀ ମାସ ୮ ତାରିଖ ଦିନ ବାକ୍ଷିତା ମୃତ୍ୟୁ ବରଣ କରିଥିଲେ । ସେହି ବର୍ଷ ହିଁ ଆଞ୍ଜେଲାଙ୍କ ଆଣ୍ଠୁରେ ଦିଆଯାଇଥିବା ନି କ୍ୟାପ ଏବଂ tibia ହାଡ଼ଟିକୁ ବାହାର କରିବା ପାଇଁ ଡାକ୍ତର କହିଲେ । ଅକ୍ଟୋବର ୧୨ ତାରିଖରେ ଅପରେସନ ପାଇଁ ଦିନ ଧାର୍ଯ୍ୟ ହୋଇଥିଲା ଅପରେସନ ପାଇଁ ଅପେକ୍ଷା କରୁଥିବା ସମୟରେ ଜଣେ ସାଙ୍ଗ ସିଷ୍ଟର ରେଚେଲ୍ ରୁଗେରି ସିଷ୍ଟର ବାକ୍ଷିତାଙ୍କ ମାଧ୍ୟସ୍ଥତାରେ ନବୀନା କରିବା ପାଇଁ ଆଞ୍ଜେଲାମାରିଙ୍କୁ କହିଲେ, 'ନ' ଦିନ ଧରି ସେ ଦୁହେଁ ପ୍ରାର୍ଥନା କଲେ । ଅପରେସନ ହେବାର ପୂର୍ବ ଦିନ ଭୋର ସକାଳ ଦୁଇ ଘଣ୍ଟା ସମୟରେ ଆଞ୍ଜେଲାମାରି ଗୋଟିଏ ସ୍ୱର ଶୁଣିଲେ, କେହି ଜଣେ ଡାକ ପକାଇ ତାଙ୍କୁ କହିଲେ, "ଉଠ, ଜାଗ୍ରତ ହୁଅ, ଉଠ ଓ ଚାଲ"। ନିଦ୍ରାରୁ ଉଠନ୍ତେ ସେ ଚାଲିବା ପାଇଁ ଶକ୍ତି ପାଇଲେ ଏବଂ କୋଠରୀର ଚାରିପଟେ ବିନା ଯଷ୍ଟିରେ, ବିସ୍ମିତ ହୋଇ ଆନନ୍ଦରେ ଚାଲିବାକୁ ଲାଗିଲେ । ତହିଁ ଆରଦିନ ଡାକ୍ତରମାନେ ବିଭିନ୍ନ ପରୀକ୍ଷା କରି ଜାଣି ପାରିଲେ ଯେ, ସେହି ଆଣ୍ଠୁରେ କୌଣସି ଦାଗ କିମ୍ବା ବ୍ୟଥା ବା ଦାଗର ଚିହ୍ନ ନାହି ଯାହା ପୂର୍ବେ ଥିଲା ।

ଅନ୍ୟ ଏକ ଆଶ୍ଚର୍ଯ୍ୟ ଘଟଣା ଯାହା ବାକ୍ଷିତାଙ୍କ ମାଧ୍ୟସ୍ଥତା ପ୍ରାର୍ଥନା ଦ୍ୱାରା ସମ୍ଭବପର ହୋଇଥିଲା । ୧୯୭୬ ମସିହାରେ ଇଭା ଦା କୋଷ୍ଟା ନାମକ ଜଣେ ବ୍ରାଜିଲ୍‌ର ନାରୀ ଯାହାଙ୍କ ଗୋଡରେ ଡାଇବେଟିକ ଯୋଗୁଁ ulcer ହୋଇ ବହୁତ ଦିନ କଷ୍ଟ ପାଉଥିଲା । ତାଙ୍କର ପରିସ୍ଥିତି ଏପରି ହୋଇଥିଲା ଯେ ଡାକ୍ତର ପରୀକ୍ଷା କରି ଗୋଡଟିକୁ କାଟିବାକୁ ଆବଶ୍ୟକ ବୋଲି ଇଭାଙ୍କୁ ଜଣାଇଲେ । ଇଭା ବାକ୍ଷିତାଙ୍କ ଜୀବନୀ ଜାଣିଲା ପରେ ତାଙ୍କ ଗୋଡଟିକୁ ଧରି ଏହିପରି ପ୍ରାର୍ଥନା କଲେ, "ବାକ୍ଷିତା ତୁମ୍ଭେ ଯେ ଏତେ ଯନ୍ତ୍ରଣା ପାଇଅଛ, ଦୟାକରି ମୋର ଗୋଡଟିକୁ ସୁସ୍ଥ କର" । ଅତିଶୀଘ୍ର ସେହି ulcer ଗୋଡ଼ଟି ସମ୍ପୁର୍ଣ୍ଣ ରୂପେ ଭଲ ହୋଇଗଲା । ଜଣେ କ୍ୟାନ୍‌ସେରରେ ପୀଡିତ ସେମିନାରିଆନ୍ ମଧ୍ୟ ବାକ୍ଷିତାଙ୍କ ଦ୍ୱାରା ସୁସ୍ଥତା ପାଇଥିଲେ ।

**ସାଧ୍ୱୀ ବାକ୍ଷିତାଙ୍କ କେତୋଟି ଉକ୍ତି:**

* ଜୀବନର ଶେଷ ମୂହୁର୍ତ୍ତରେ ଯେତେବେଳେ ସେ ବିଭିନ୍ନ ପ୍ରକାର ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ହୁଇଲ୍ chair ବ୍ୟବହାର କରୁଥିଲେ, ସେହି ସମୟରେ ପ୍ରାର୍ଥନାରେ ସେ ସମୟ ବିତାଉଥିଲେ ।

✸ "ରୋଗ ଦ୍ୱାରା ଯେଉଁ ଯନ୍ତ୍ରଣା ଆସେ, ସେହି ଯନ୍ତ୍ରଣାର ଫଳ ନିଜ ଦ୍ୱାରା ଆଘାତ ପ୍ରାୟଶ୍ଚିତର ଫଳ ଠାରୁ ଅଧିକ ଗୁଣଦାୟକ ଅଟେ"।

✸ "ବଞ୍ଚି ରହେ କିମ୍ବା ମୃତ୍ୟୁ ବରଣ କରେ ସେଥିପ୍ରତି ମୁଁ ଉଦାସୀନ କାରଣ ସର୍ବଦା ମୁଁ ତାହାଙ୍କର । ମୁଁ ଯେତେବେଳେ ତାଙ୍କ ସହିତ ରହେ କିମ୍ବା ଯେଉଁ ଆଡ଼େ ସେ ମୋତେ ନିଅନ୍ତି ମୁଁ ସେହି ଆଡ଼େ ଯାଏ । ସେ ମୋର ମାଲିକ ମୁଁ ତାହାଙ୍କର ଜଣେ କ୍ଷୁଦ୍ର ପ୍ରାଣୀ" ।

✸ "ଯଦି ପ୍ରଭୁ ଡାକନ୍ତି, ଆମ୍ଭେ ଯାଉ, ଗୋଟିଏ ଘଣ୍ଟା ଆଗରେ ନୁହଁ କି ଗୋଟିଏ ଘଣ୍ଟା ପଛରେ ନୁହଁ। ପ୍ରଭୁଙ୍କର ଇଚ୍ଛା ପାଳନ କରିବା କି ସୁନ୍ଦର ଅଟେ"।

✸ "ଯେତେବେଳେ ସେ ଦିବ୍ୟଯଜ୍ଞରେ ଯୋଗଦେଇ ପାରୁନଥିଲେ ସେ କହୁଥିଲେ, କିଛି ଚିନ୍ତା କରିବାର ନାହିଁ, ମୋର ରକ୍ଷୀଦୂତ ମୋ ପାଇଁ ଦିବ୍ୟଯଜ୍ଞରେ ଯୋଗ ଦେବେ ଓ ସେ ମୋତେ ଜଣା କରିବେ"।

✸ ନିଜ ଜୀବନ ଯାତ୍ରା ବିଷୟରେ ସେ କହନ୍ତି: "ମୋର ଯାତ୍ରା ଅତି ଧିର, ଥରକେ ଗୋଟିଏ ପାଦ ଦିଏ । ମୁଁ ଦୁଇଟି ସୁଟକେଶ୍ ଧରିଛି । ଗୋଟିଏ ସୁଟକେଶ୍‌ରେ ମୋର ପାପ ଭରିଛି, ଅନ୍ୟ ସୁଟକେଶ୍‌ଟି ଆହୁରି ଭାରି ଯେଉଁଠି ଅଛି ମୋ ଯୀଶୁଙ୍କ ଅସୀମ ଗୁଣ । ସ୍ୱର୍ଗରାଜ୍ୟରେ ମୁଁ ଯେତେବେଳେ ପହଞ୍ଚିବି ମୋର ସୁଟକେଶ୍ ଖୋଲି ଦେଇ ପ୍ରଭୁଙ୍କୁ କହିବି, ହେ ଅନନ୍ତ କାଳୀନ ପିତା ବର୍ତ୍ତମାନ ତୁମେ ମୋର ବିଚାର କର । ପୁଣି ସାଧୁ ପିତରଙ୍କୁ କହିବି, ପିତର କବାଟ ବନ୍ଦ କର କାରଣ ମୁଁ ଏଠାରେ ରହିବି" ।

✸ "ହେ ପ୍ରଭୁ, ମୁଁ ଯଦି ବର୍ତ୍ତମାନ ଉଡ଼ିଯାଇ ମୋର ଲୋକଙ୍କୁ ତୁମ ଉତମତା ବିଷୟରେ ଚିତ୍କାର କରି କହନ୍ତି, ଓଃ କେତେ ଯେ ଆତ୍ମା ତୁମ ପାଇଁ ଜୟ କରିପାରନ୍ତି" ।



# ସାଧୁ କୁରିଆକୁସ ଏଲିଆସ ଚାଭାରା
# (୧୮୦୫- ୧୮୭୧, ଫେବୃୟାରି ୧୮)

୧୮୦୫ ମସିହା ଫେବୃୟାରୀ ମାସ ୧୦ ତାରିଖରେ ଭାରତର କେରଳ ରାଜ୍ୟସ୍ଥିତ କାଇନାକାରି ଗ୍ରାମରେ ଏଲିଆସ ଚାଭାରା ଜନ୍ମଗ୍ରହଣ କରିଥିଲେ । ପିତା କୁରିଆକୁସ ଚାଭାରା ଓ ମାତା ମାରିଆମ୍ ତୋପିଲଙ୍କ ତିନୋଟି ସନ୍ତାନଙ୍କ ମଧ୍ୟରୁ ଏଲିଆସ ଥିଲେ କନିଷ୍ଠ । "ସାଧୁ ଥୋମାସ ଖ୍ରୀଷ୍ଟିୟାନ" ନାମରେ ପରିଚିତ ଏକ ପ୍ରାଚୀନ ଗୋଷ୍ଠିର ସେ ଜଣେ ସଭ୍ୟ ଅଟନ୍ତି । ନିଜ ଗ୍ରାମରେ ପ୍ରାଥମିକ ଶିକ୍ଷା ପ୍ରାପ୍ତ କଲାପରେ ସେ ଫାଦେର ଥୋମାସ ପାଲାକାଲଙ୍କ ତତ୍ତ୍ୱାବଧାନରେ ସେମିନାରିରେ ପ୍ରବେଶ କରିଥିଲେ । ସେମିନାରୀ ତାଲିମ ସମାପ୍ତ ପରେ ସେ ୧୮୨୯ ମସିହାରେ ପାଲିପୁରମ୍‌ଠାରେ ଯାଜକାଭିଷେକ ପ୍ରାପ୍ତ କରିଥିଲେ । ଫାଦେର ପରୁକାରା ଏବଂ ଫାଦେର ଥୋମାସ ପାଲାକାଲଙ୍କ ପ୍ରେରଣା ଓ ସହଯୋଗରେ ୧୮୩୧ ମସିହାରେ ସେ ଏକ ନୂତନ ଧର୍ମସଂଘ ସ୍ଥାପନ କରିଥିଲେ ଯାହା ଆଜି ବିମଳା ମାରୀୟା କାର୍ମେଲ ସଂଘ ନାମରେ ପରିଚିତ । ୧୮୫୫ ମସିହାରେ ସଂଘଟି ମଣ୍ଡଳୀର ସ୍ୱୀକୃତି ପ୍ରାପ୍ତ କରିଥିଲା । ଏଲିଆସ ସଂଘର ମୂଖ୍ୟ ପରିଚାଳକ ଭାବେ ନିଯୁକ୍ତି ପ୍ରାପ୍ତ କରିଥିଲେ ଓ ସେ ନିଜେ ଧର୍ମୀୟ ବ୍ରତ ନେଇଥିଲେ ।

୧୮୬୧ ମସିହାରେ ଭେରାପାଲି ଧର୍ମପ୍ରଦେଶର ଭିକାର ଜେନେରାଲ ରୂପେ ସେ ନିଯୁକ୍ତି ପାଇଥିଲେ । କେରଳର ମାନମ୍‌ଠାରେ ଏହି ସଂଘର ପ୍ରଥମ ଗୃହ ଖୋଲାଯାଇଥିଲା । ସଂଘର ମୂଖ୍ୟ ଗୃହ ବ୍ୟତୀତ ନିଜ ଜୀବନ କାଳରେ ସେ ଅନ୍ୟ ଛ' ଟି ଗୃହ ଆରମ୍ଭ କରିଥିଲେ ଯାହା ସେମିନାରୀ ତାଲିମ, ସ୍କୁଲ ଓ ବୃଦ୍ଧ ବୃଦ୍ଧାମାନଙ୍କ ସେବା ନିମନ୍ତେ ବ୍ୟବହାର କରାଯାଉଥିଲା । ଯାଜକ ତଥା ବିଶ୍ୱାସୀମାନଙ୍କର ଆଧ୍ୟାତ୍ମିକ ତାଲିମ ନିମନ୍ତେ ଧ୍ୟାନକେନ୍ଦ୍ର ଏବଂ ଦୀକ୍ଷାସ୍ନାନ ସଂସ୍କାର ଗ୍ରହଣ ତଥା ପ୍ରସ୍ତୁତି ହେଉଥିବା ବିଶ୍ୱାସୀମାନଙ୍କର ଧର୍ମଶିକ୍ଷା ପାଇଁ ବିଭିନ୍ନ ତାଲିମ କେନ୍ଦ୍ର ମଧ୍ୟ ଆରମ୍ଭ କରିଥିଲେ ।

ସିରୋମାଲାବାର ମଣ୍ଡଳୀରେ ରବିବାର ଗୁଡିକରେ ବାକ୍ୟ ପ୍ରଚାର କରିବା, ଦିବ୍ୟଯଜ୍ଞର ବିଭିନ୍ନ ଭକ୍ତିକ୍ରିୟା ଓ କାଥଲିକ ସ୍କୁଲ ସେ ପ୍ରଥମେ ଆରମ୍ଭ କରିଥିଲେ ।

ତିନୋଟି ବିଷୟରେ ସେ ଭକ୍ତିରୂପକ ପଦ୍ୟ ରଚନା କରିଥିଲେ । ସେଗୁଡିକ ହେଲା ଅନୁତାପ ସମ୍ବନ୍ଧୀୟ ପଦ୍ୟ, ମୃତ ପରିବାର ପାଇଁ କରୁଥିବା ପ୍ରାର୍ଥନା ଓ ତୃତୀୟଟି ହେଲା ଆନାସ୍ତିଆନଙ୍କ ଶହୀଦ ବିବରଣୀ ।

କାର୍ମେଲ ସଂଘର ମିଶନାରୀ ଫାଦେର ଲିୟ ପଲ ବେକାରୋଙ୍କ ସହିତ ସେ ଦୁଇଟି ସେବାସଂଘ ସିରିୟାନ ମାତୃ କାର୍ମେଲ ସଂଘ ଓ ତେରେସିଆନ କାର୍ମେଲ ସଂଘ ଆରମ୍ଭ କରିଥିଲେ । ୧୮୪୬ ମସିହାରେ ସେ ମାନାନାମ୍‌ଠାରେ ସାଧୁ ଯୋଷେଫ ଛାପାଖାନା ଆରମ୍ଭ କରିଥିଲେ ଏବଂ କେରଳରେ ଏହା ତୃତୀୟ ଛାପାଖାନା ଥିଲା । ସେ ହେଉଛନ୍ତି ପ୍ରଥମ କେରଳୀ ମୁଦ୍ରଣ କ୍ଷେତ୍ରରେ ଯାହାଙ୍କ ଅବଦାନ ପ୍ରଶଂସନୀୟ । ମାଲ୍ୟାଳମ୍ ଦୈନିକ ଖବର‘ନାସରାନି ଦୀପିକା’ଏହି ଛାପାଖାନାରୁ ପ୍ରକାଶ କରାଯାଉଥିଲା । ଏହା ପୂର୍ବରୁ ପର୍ତ୍ତୁଗୀଜ ମିଶନାରୀମାନେ ଦୁଇଟି ମୁଦ୍ରଣ ଯନ୍ତ୍ର ସ୍ଥାପନ କରିଥିଲେ ଏବଂ ଉକ୍ତ ମୁଦ୍ରଣ ଯନ୍ତ୍ର ଦ୍ୱାରା ମାଲ୍ୟାଳମ୍ ଭାଷାରେ ଧର୍ମଶିକ୍ଷା ପୁସ୍ତକମାନ ପ୍ରକାଶକରାଯାଇଥିଲା । ସିରୋମାଲାବାର ଉପାସନ ରୀତି ଭିତିକ ପୁସ୍ତକ ଗୁଡିକର ସଂଶୋଧନ ଓ ପ୍ରକାଶନ କରୁଥିଲେ । ୧୯୦୨ ମସିହାରେ କାର୍ମେଲ କୁସୁମ ବା କାର୍ମେଲ ପୁଷ୍ପ ନାମରେ ଏକ ମାଗାଜିନ ଏହି ମୁଦ୍ରଣ ଯନ୍ତ୍ର ଦ୍ୱାରା ପ୍ରକାଶିତ ହୋଇଥିଲା ।

ଶିକ୍ଷାକ୍ଷେତ୍ରରେ ମଧ୍ୟ ତାହାଙ୍କ ଅବଦାନ ଅତି ଗୁରୁତ୍ୱପୂର୍ଣ୍ଣ ଅଟେ । ମାନନାମ୍ ଠାରେ ସେହି ବର୍ଷ ହି ଗୋଟିଏ ସ୍କୁଲ ଆରମ୍ଭ କଲେ । ସ୍କୁଲରେ ଛାତ୍ରମାନଙ୍କ ମଧ୍ୟାହ୍ନ ଭୋଜନ ଦେବାର ପ୍ରକ୍ରିୟାଟି ପ୍ରଥମେ କୁରିଆକୁସ ଆରମ୍ଭ କରିଥିଲେ ଯାହା ତତକାଳୀନ ଟ୍ରାଭାନଙ୍କାର ଶାସକମାନଙ୍କ ଦ୍ୱାରା ଗ୍ରହଣୀୟ ହୋଇଥିଲା ।

ଫାଦେର କୁରିଆକସଙ୍କୁ ବିଶ୍ୱାସ ସମ୍ବନ୍ଧୀୟ ବିଭିନ୍ନ ମତବାଦୀ ଦଳ ଗୁଡିକର ସମ୍ମୁଖୀନ ହେବାକୁ ପଡୁଥିଲା । ସିରୋମାଲାବାର ମଣ୍ଡଳୀର ପରିସ୍ଥିତି ଜାଣିବା ପାଇଁ ୧୮୬୧ରେ କାଲଡିଆନରୁ (ପାଟ୍ରିକ୍) ଧର୍ମାଧକ୍ଷ ଥମାସ ରୋକ କେରଳକୁ ଆସିଥିଲେ । ଧର୍ମାଧକ୍ଷ ଥମାସ ରୋକ ପୂଣ୍ୟପିତାଙ୍କଠାରୁ କ୍ଷମତା ଲାଭ କରିବାର ଛଳନା କରି ଅନ୍ୟାୟରେ ସିରୋମାଲାବାର ମଣ୍ଡଳୀକୁ ଶାସନ କରିବା ଆରମ୍ଭ କରିଥିଲେ । ଦୁର୍ଭାଗ୍ୟବଶତଃ ବିଭିନ୍ନ ଧର୍ମାଞ୍ଚଳରୁ ଲୋକେ ତାଙ୍କୁ ବିଶ୍ୱାସ କଲେ ଏବଂ ତାହାଙ୍କ ଅଧିନତା ସ୍ୱୀକାର କଲେ । କିନ୍ତୁ ଫାଦେର କୁରିଆକୁସ ଧର୍ମାଧକ୍ଷ

ଥମାସ ରୋଜଙ୍କ କଠୋର ନୀତିକୁ ପ୍ରତିବାଦ କରି ଭୂଲରେ ଧର୍ମାଞ୍ଚଳଠାରୁ ଦୂରେଇ ଯାଇଥିବା ବିଶ୍ୱାସୀମାନଙ୍କୁ ପୁଣିଥରେ ନିଜ ଆଡକୁ ଫେରେଇ ଆଣିପାରିଥିଲେ । ଫାଦେର କୁରିଆକୁସଙ୍କ ପ୍ରଚେଷ୍ଟା ବଳରେ ଧର୍ମାଧକ୍ଷଙ୍କ ଦ୍ୱାରା ଲୋକଙ୍କ ମଧ୍ୟରେ ଉପୁଜିଥିବା ବିଭାଜନକୁ ଦୂର କରାଯାଇପାରିଥିଲା ।

ସେ କେବଳ ଧାର୍ମିକ ସଂଘର ପ୍ରତିଷ୍ଠାତା ଓ ମୁଦ୍ରଣ ଯନ୍ତ୍ରର ସ୍ଥାପକ ରୂପେ ପରିଚିତ ଥିଲେ ତା ନୁହେଁ ସେ ମଧ୍ୟ ଜଣେ ଦକ୍ଷ ଓ ଉତ୍ସାହୀ ପାଳକ ଥିଲେ । ୧୮୬୮ ମସିହାରେ କାଇନାକାରି ଧର୍ମାଞ୍ଚଳର ବିଶ୍ୱାସୀମାନଙ୍କୁ ତାଙ୍କ ପତ୍ରରେ ଏହି ପ୍ରକାର ଲେଖିଥିଲେ, "ତୁମ ଜୀବନରେ ଯେଉଁସବୁ ମହତ କାମ କରିଅଛ, ସେଗୁଡିକ ଯଦିଓ କେହି ମନେ ପକାନ୍ତି ନାହି ତଥାପି ପରସ୍ପର ପ୍ରତି ତୁମର ସ୍ନେହ ପ୍ରଦର୍ଶନ କର, ପରସ୍ପରର ଭୁଲକୁ କ୍ଷମାକର, ତାହାହେଲେ ତୁମେ ଇହ ଜୀବନ ତଥା ପରବର୍ତ୍ତୀ ଜୀବନରେ ଶାନ୍ତି ଓ ଅନନ୍ତ ସୁଖ ପ୍ରାପ୍ତି କରିବ ।

ପ୍ରତ୍ୟେକ ମଣ୍ଡଳୀରେ ସ୍କୁଲ ଆରମ୍ଭ କରିବାରେ ଫାଦେର କୁରିଆକସ ହେଉଛନ୍ତି ପ୍ରଥମ । ଏହି ସ୍କୁଲଗୁଡିକ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏଣୁ ଏହି ସ୍କୁଲ ବା ବିଦ୍ୟାୟଳଗୁଡ଼ିକୁ ମଣ୍ଡଳୀ ଶିବିର (Church Tent) ବୋଲି କୁହାଯାଉଥିଲା । କେରଳର ଏରାଭା ଜାତିର (ନିମ୍ନଶ୍ରେଣୀ) ଲୋକମାନଙ୍କ ମଧ୍ୟରେ ସଚେତନ ଆଣିବା ନିମନ୍ତେ ଶ୍ରୀ ନାରାୟଣଗୁରୁଙ୍କ ଅବଦାନ ସ୍ମରଣୀୟ । କେରଳର ଏରାଭା ଲୋକଙ୍କର ସଶକ୍ତିକରଣ ନିମନ୍ତେ ଶିକ୍ଷା ଓ ଚାକିରି ଉପରେ ସେ ଗୁରୁତ୍ୱ ଦେଉଥିଲେ ।

ଫାଦେର କୁରିଆକୁସ ଚାଭାରା ମଧ୍ୟ ଖ୍ରୀଷ୍ଟିୟାନ ସମାଜକୁ ସଶକ୍ତିକରଣ କରିବାରେ ସମାନ ପ୍ରକାର ପନ୍ଥା ଅବଲମ୍ବନ କରିଥିଲେ । ଏହି ପବିତ୍ର ଯାଜକ ଏକାଧାରରେ ଜଣେ ଲେଖକ, କବି, ସମ୍ପାଦକ, ବହୁଭାଷୀ ଓ ବିଜ୍ଞ ଥିଲେ । କ୍ରୁଶର ସାଧୁ ଯୋହନ ଓ ଆଭିଲାର ସାଧ୍ୱୀ ତେରେସାଙ୍କ ବାସ୍ତବ କାର୍ଯ୍ୟକଳାପ ଜାଣିବାପାଇଁ ନିଜ ପ୍ରଚେଷ୍ଟାରେ ସେ ସ୍ପାନିସ ଭାଷା ଶିକ୍ଷା କରିଥିଲେ । କାର୍ମେଲ ସଂଘର ଆଧ୍ୟାତ୍ମିକତାରେ ସେ ପାରଦର୍ଶୀ ଥିଲେ ଓ ମାରିଆଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ସେ ଜଣେ ପ୍ରାଧାନ୍ୟଶୀଳ ବ୍ୟକ୍ତି ଓ ସଦାବେଳେ ଗରିବ ଓ ପୀଡିତ ବ୍ୟକ୍ତିଙ୍କ ପ୍ରତି ତାଙ୍କ ହୃଦୟ ତତ୍‌ପର ଥିଲା । ମୃତ୍ୟୁ ପୂର୍ବରୁ ନିଜର ସହଭ୍ରାତା ମାନଙ୍କ ନିକଟକୁ ପତ୍ର ଲେଖି କହିଥିଲେ, "ମୋ ପାଇଁ କାହିକି ରୋଦନ କରୁଅଛ, ଯିଏ ହେଉନା କାହିକି ମନୁଷ୍ୟମାନେ ଦିନେ ତାକୁ ମୃତ୍ୟୁବରଣ କରିବାକୁ ପଡିବ । ମୋ ପାଇଁ ସେହି ସମୟ ହେଉଛି ବର୍ତ୍ତମାନ । କିଛିଦିନ ଧରି ଏହି ଦିନ ପାଇଁ ପ୍ରଭୁଙ୍କ

ଦୟାରୁ ମୁଁ ପ୍ରସ୍ତୁତ ହୋଇ ଆସୁଅଛି" । ସେହି ସମାନ ପତ୍ରରେ ସେ ପୁଣି କହନ୍ତି, "ପ୍ରଭୁଙ୍କ ଆଶୀର୍ବାଦରୁ ମୁଁ କହିପାରିବି ଯେ ଯେଉଁ ଦିନ ଠାରୁ ମୁଁ ଦୀକ୍ଷାସ୍ନାନ ଗ୍ରହଣକଲି ସେହି ପରମେଶ୍ୱରଙ୍କ ଅନୁଗ୍ରହକୁ ନଷ୍ଟ କରିନାହିଁ" ।

୧୮୭୧ ମସିହା ଜାନୁୟାରୀ ୩ ତାରିଖ ଦିନ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ଓ ତାଙ୍କୁ କୁନାମାଭୁ ଧର୍ମାଞ୍ଚଳର ସାଧ୍ୱୀ ଫିଲମିନା ଗୀର୍ଜାରେ କବର ଦିଆଗଲା । କିଛି ବର୍ଷ ପରେ ଅର୍ଥାତ ୧୮୮୯ ମସିହାରେ ତାଙ୍କ ମର ଶରୀରକୁ ମାନାନାମକୁ ସ୍ଥାନାନ୍ତରିତ କରାଗଲା, ଯେଉଁଠାରେ ବହୁସଂଖ୍ୟାରେ ତୀର୍ଥଯାତ୍ରୀମାନେ ଆସି ତାହାଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରୁଥିଲେ । ୧୯୮୬ ମସିହା ଫେବୃୟାରି ମାସ ୮ ତାରିଖରେ ପୂଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ ତାଙ୍କୁ ଧନ୍ୟ ବୋଲି ଘୋଷଣା କରିଥିଲେ । ତାଙ୍କ ବକ୍ତୃତାରେ ସେ କହିଥିଲେ, "ଫାଦେର ଚାଭରାଙ୍କ ସଫଳତାର ମୂଳରେ ଅଛି ତାଙ୍କର ଗଭୀର ପ୍ରାର୍ଥନା ଓ ପ୍ରେମଜନିତ ଜୀବନ । ଖ୍ରୀଷ୍ଟଙ୍କଠାରେ ସଂଯୁକ୍ତ ହୋଇରହିବା ଓ ମଣ୍ଡଳୀ ପ୍ରତି ତାଙ୍କ ଅମାପ ପ୍ରେମ ପ୍ରକାଶ କରିବା ଥିଲା ଫାଦେର ଚାଭାରାଙ୍କ ଦୈନିକ ଜୀବନ । ସାଧୁ ଚାଭରାଙ୍କ ଜୀବନରୁ ଆମେ କଣ ଶିକ୍ଷାକରିପାରିବା ? ତାଙ୍କରଜୀବନରୁ ଆମ୍ଭେ ନିମ୍ନଲିଖିତ ବିଷୟ ଅନୁକରଣ କରିପାରିବା, ସାମାଜିକ ସଚେତନତା, ପ୍ରାର୍ଥନା ଓ ଆଧ୍ୟାତ୍ମିକ ଜୀବନ ପ୍ରତି ଆଗ୍ରହ, ମାରୀୟାଙ୍କ ପ୍ରତି ତାହାଙ୍କର ଗଭୀରଭକ୍ତି, ମୁଦ୍ରଣକାର୍ଯ୍ୟର ପ୍ରସାର, ମଣ୍ଡଳୀ ପ୍ରତି ତାହାଙ୍କ ପ୍ରେମ, ସେବାକାର୍ଯ୍ୟରେ ଉତ୍ସାହ, ଦରିଦ୍ର ଓ ପୀଡ଼ିତମାନଙ୍କ ପ୍ରତି ଦୟା । ୨୦୧୪ ମସିହା ନଭେମ୍ବର ୨୩ ତାରିଖ ଦିନ ପୂଣ୍ୟପିତା ଫ୍ରାନସିସ ରୋମରେ ଧନ୍ୟ ଚାଭରାଙ୍କୁ ସାଧୁ ରୂପେ ଘୋଷଣାକଲେ ।

**ସାଧୁ କୁରିଆକୁସ ଏଲିଆସ ଚାଭାରାଙ୍କ କେତୋଟି ଉକ୍ତି:**

- "ନିୟମିତ ଉତମ ପୁସ୍ତକ ପଢ଼ି ତାହା ଉପରେ ଧ୍ୟାନ କରିବା ଦ୍ୱାରା ଆମର ମନ ଆଲୋକିତ ହେବ"।
- "ଆମର ମୂଲ୍ୟବାନ ସମ୍ପଦ ହେଲା ଉତମ ପୁସ୍ତକ, ଯେଉଁ ପୁସ୍ତକଗୁଡ଼ିକ ପିଲାମାନଙ୍କ ଭବିଷ୍ୟତକୁ ପ୍ରଭାବିତ କରିବ" ।
- "ଖରାପ ପୁସ୍ତକ ନିଜ ପାଖରେ ରଖିବା, ନଡ଼ା ତଳେ ଅଗ୍ନି ଲୁଚାଇ ରଖିବା ସଦୃଶ" ।

***

# ଧନ୍ୟା ରାଣୀ ମାରିଆ

## (୧୯୫୪-୧୯୯୫, ଫେବୃୟାରୀ ୨୫)

୧୯୫୪ ମସିହା ଜାନୁଆରୀ ୨୯ ତାରିଖ ଦିନ କେରଳ ରାଜ୍ୟର ଏରନାକୁଲାମ ଜିଲ୍ଲାସ୍ଥିତ ପୁଲୁଭାରି ଗ୍ରାମରେ ମାରିଆମ ଭାତାଲିଲ୍ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଷ୍ଟେପାନ୍ ପାଇଲି ଭାତାଲିଲ ଓ ମାତା ଏଲିସା । ସେମାନଙ୍କର ସାତୋଟି ସନ୍ତାନ ସନ୍ତତି ମଧ୍ୟରୁ ପାଞ୍ଚ ଜଣ ଥିଲେ ଝିଅ ଓ ଦୁଇ ଜଣ ପୁଅ । ଭାଇ ଓ ଭଉଣୀମାନଙ୍କ ମଧ୍ୟରୁ ମାରିଆ ଥିଲେ ପରିବାରର ଦ୍ୱିତୀୟ ଓ ଭଉଣୀମାନଙ୍କ ମଧ୍ୟରୁ ସେ ଥିଲେ ଜ୍ୟେଷ୍ଠ । ପୁଲୁଭାରି ପ୍ରାଥମିକ ସରକାରୀ ସ୍କୁଲରେ ମାରିଆ ପଢା ଆରମ୍ଭ କରିଥିଲେ । ସାଧୁ ଯୋସେଫ ଉଚ୍ଚ ବିଦ୍ୟାଳୟ, ତ୍ରିପୁନିତାରାରୁ ତାଙ୍କ ଶିକ୍ଷା ସମାପ୍ତ କରିଥିଲେ । ଜଣେ ସେବାଭଗ୍ନୀ ହେବାର ଅଭିଳାଷକୁ ତାଙ୍କ ପରିବାର ତଥା ଆତ୍ମୀୟମାନେ ମନା କରି ଦେଇଥିଲେ । କିନ୍ତୁ ପରେ ସେମାନେ ରାଜି ହୋଇଥିଲେ । ଏଣୁ ୧୯୭୨ ମସିହା ଜୁଲାଇ ୧ ତାରିଖ ଦିନ ମାରିଆ କିଡାଙ୍ଗୁର ସ୍ଥିତ ଫ୍ରାନ୍‌ସିସ୍‌କିଆନ କ୍ଲାରିଷ୍ଟ ସଂଘରେ ପ୍ରବେଶ କରିଥିଲେ । ସଂଘର ନିୟମ ପ୍ରକାରେ ମାରିଆଙ୍କୁ ବିଭିନ୍ନ ପର୍ଯ୍ୟାୟରେ ତାଲିମ ନେବାକୁ ପଡିଥିଲା ।

ଜଣେ ମିଶନାରୀ ହେବାର ସ୍ୱପ୍ନ ସେ ଦେଖିଥିଲେ ନିକଟବର୍ତ୍ତୀ ଥିବା ବିଭିନ୍ନ କନ୍‌ଭେଣ୍ଟ ଗୁଡିକୁ ପରିଦର୍ଶନ କରି ଏବଂ ମିଶନ ସ୍ଥାନରେ କାର୍ଯ୍ୟ କରୁଥିବା ଫାଦର ଓ ସିଷ୍ଟରମାନଙ୍କ ସଂସ୍ପର୍ଶରେ ଆସି ସେ ପ୍ରେରଣା ପାଇଥିଲେ । ୧୯୭୪ ମସିହା ମଇ ମାସ ୧ ତାରିଖ ଦିନ ପ୍ରଥମ ବ୍ରତ ଗ୍ରହଣ କରିଥିଲେ ଏବଂ ସେହି ସମୟରେ ନିଜର ନାମକୁ ପରିବର୍ତ୍ତନ କରି ରାଣି ମାରିଆ ନାମରେ ପରିଚିତ ହେଲେ ।

୧୯୭୫ ମସିହାରେ ତାଙ୍କ ପ୍ରଥମ ନିଯୁକ୍ତି ସେ ପାଇଥିଲେ ଉତର ପ୍ରଦେଶର ବିଜିନର ଅଞ୍ଚଳରେ । ବିଜିନର ଅଞ୍ଚଳର ଦରିଦ୍ରମାନଙ୍କୁ ସେବା କରିବା ସମୟରେ ଭୋପାଳ University ରୁ ଘରୋଇ ଭାବେ ନିଜର କଲେଜ୍ ପଢା ସମାପ୍ତ କରି ପାରିଥିଲେ । ୧୯୮୦ ମସିହା ମଇ ମାସ ୨୨ ତାରିଖ ଦିନ ତାଙ୍କର ଶେଷ ବ୍ରତ ସେ ନେଇଥିଲେ । ମଧ୍ୟ ପ୍ରଦେଶର ରିଭା ବିଶ୍ୱବିଦ୍ୟାଳୟରୁ Sociology

ରେ ସେ କଲେ । ୧୯୮୩ ମସିହାରେ ସେ ମଧ୍ୟ ପ୍ରଦେଶର ସାତନାକୁ ବଦଳି ହୋଇଥିଲେ । ପରିଶେଷରେ ନୂଆରେ ଆରମ୍ଭ ହୋଇଥିବା ଆମଲା ମିଶନରେ ଯୋଗ ଦେଇଥିଲେ । ଭୋପାଳରେ ଥିଲା ସେହି ମିଶନର ମୂଖ୍ୟ କେନ୍ଦ୍ର । ୧୯୯୧ ମସିହାରୁ ୧୯୯୪ ପର୍ଯ୍ୟନ୍ତ ଆମଲା ପ୍ରୋଭିନ୍ସର ସାମାଜିକ ସେବା ବିଭାଗର ମୂଖ୍ୟ ପରିଚାଳିକା ରୂପେ କାର୍ଯ୍ୟ କଲେ ।

୧୯୯୨ ମସିହା ମଇ ମାସ ୧୮ ତାରିଖରେ ସେ ଇଣ୍ଡୋର ଧର୍ମ ପ୍ରଦେଶର ଉଦୟନଗରକୁ ବଦଳି ହୋଇଥିଲେ । ଗ୍ରାମ ଗୁଡିକ ଯାଇ ଲୋକଙ୍କର ପରିସ୍ଥିତି ଦେଖିଲା ପରେ ସେମାନଙ୍କର ଉନ୍ନତି ପାଇଁ ଚେଷ୍ଟା କଲେ । ପିଲାମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ସେମାନଙ୍କର ପିତାମାତାଙ୍କୁ ପ୍ରଥମେ ଶିକ୍ଷା ଦେଲେ । ଗ୍ରାମ ଗ୍ରାମ ଯାଇ ମାଁ ମାନଙ୍କୁ ଏକତ୍ର କରି ସ୍ୱୟଂ ସହାୟକ ଦଳ ଗଠନ କଲେ । ଏହି ଦଳ ମାଧ୍ୟମରେ ସେମାନେ କିପରି ଅର୍ଥ ସଞ୍ଚୟ କରି ଆବଶ୍ୟକ ବେଳେ ସେହି ସଞ୍ଚୟ ଟଙ୍କାକୁ ବିନିଯୋଗ କରି ପାରିବେ, ଏହି ସବୁ ବିଷୟରେ ସେମାନଙ୍କୁ ଶିକ୍ଷା ଦେଲେ । ଆଇନ ସମ୍ବନ୍ଧୀୟ ସଚେତନ ମୂଳକ ଆଲୋଚନା ଚକ୍ର ଦ୍ୱାରା ସେମାନଙ୍କୁ ଅଧିକାର ଓ ସୁଯୋଗ ବିଷୟରେ ଅବଗତ କଲେ । ମଦ୍ୟପାନ ତ୍ୟାଗ କରିବା ପାଇଁ ସେ ଉତ୍ସାହିତ କଲେ । ସ୍ୱୟଂ ସହାୟକ ଦଳ ମାଧ୍ୟମରେ ଜମିଦାର ମାନଙ୍କର ଅନ୍ୟାୟ ନୀତିକୁ ପ୍ରତିରୋଧ କଲେ । ଜମିହୀନ ବ୍ୟକ୍ତି ମାନଙ୍କ ପ୍ରତି ମହାଜନମାନେ କିପରି ଚଢ଼ା ଦରରେ ବ୍ୟବସାୟ କରୁଥିଲେ ସେ ସବୁକୁ ପ୍ରତିବାଦ କରିବା ପାଇଁ ଲୋକମାନେ ପଛଘୁଞ୍ଚା ହୋଇନଥିଲେ । ସିଷ୍ଟରଙ୍କର ଏହି ପ୍ରକାର କାର୍ଯ୍ୟକୁ ସେହି ଜମିଦାରମାନେ ସହ୍ୟ କରି ପାରିନଥିଲେ । ସେମାନଙ୍କ ସ୍ୱାର୍ଥରେ ଆଞ୍ଚ ଆସିବାରୁ ସେମାନେ ଚକ୍ରାନ୍ତ କଲେ ତାଙ୍କୁ ହତ୍ୟା କରିବା ପାଇଁ । ୧୯୯୫ ମସିହା ଫେବୃୟାରୀ ମାସ ୫ ତାରିଖ ଦିନ ଇଣ୍ଡୋରକୁ ବସ୍‌ରେ ଯିବା ସମୟରେ ନାଚାନବୋର୍ ଠାରେ ତାଙ୍କୁ ଜଣେ ବ୍ୟକ୍ତି ହତ୍ୟା କଲେ । ପ୍ରାୟ ୫୪ ଥର ତାଙ୍କ ଶରୀରକୁ ବର୍ଚ୍ଛା ଦ୍ୱାରା ଆଘାତ କରିଥିଲେ । ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସିଷ୍ଟର ରାଣୀ ମାରିଆ, ଯୀଶୁଙ୍କ ନାମ ଉଚ୍ଚାରଣ କରି ମୃତ୍ୟୁ ବରଣ କରିଥିଲେ । ଗରୀବ, ଦୀନ ଦୁଃଖିଙ୍କର ସେବା କରି ରାଣୀ ମାରିଆ ନିଜ ଜୀବନ ଉତ୍ସର୍ଗ କରିଥିବା ଘଟଣା ସର୍ବଦା ଖ୍ରୀଷ୍ଟିୟାନ ଇତିହାସରେ ସ୍ମରଣୀୟ ହୋଇ ରହିବ । ବିଶେଷ ଭାବରେ ବିଜନର, ସାତନା ଏବଂ ଉଦୟନଗର ଅଞ୍ଚଳର ଦୀନ ଦୁଃଖିଙ୍କ ପାଇଁ ରାଣୀ ମାରିଆ ସର୍ବଦା ହସର

ପ୍ରେରିତ ରୂପେ ଜୀବନ୍ତ ହୋଇ ରହିବେ ଯାହାଙ୍କର ଆଶାକୁ ସେ ଉଜ୍ଜୀବିତ କରି ରଖିଥିଲେ ।

୨୦୧୭ ମସିହା ନଭେମ୍ବର ମାସ ୪ ତାରିଖ ରାଣୀ ମାରିଆଙ୍କୁ 'ଧନ୍ୟା' ବୋଲି ଘୋଷଣା କରିବା ଅବସରରେ ଇଣ୍ଡୋରର ଧର୍ମାଧ୍ୟକ୍ଷ ଚାକୋ ଥୋଟୁମାରିକାଲ ଏହିପରି କହିଥିଲେ, "ସିଷ୍ଟର ରାଣୀ ମାରିଆ ଯିଏ ଲୋକଙ୍କର ଉନ୍ନତି ପାଇଁ କାମ ଓ ସେବା କରି ମୃତ୍ୟୁ ବରଣ କଲେ, ଆମ୍ଭେ ନିଶ୍ଚିତ ଯେ ତାହାଙ୍କର ଶକ୍ତିଶାଳୀ ପ୍ରାର୍ଥନା ଓ ସେବା ଲୋକଙ୍କର ଉତମତା ନିମନ୍ତେ ଅଧିକ ଫଳପ୍ରଦ ହେବ । ଦୀନ, ଦୁଃଖି ଓ ଗରୀବଙ୍କ ନିମନ୍ତେ ରାଣୀ ମାରିଆ ନିଜର ରକ୍ତ ଦେଇ ଆମ ସମସ୍ତଙ୍କ ପାଇଁ ଆଦର୍ଶ ହୋଇଛନ୍ତି" ।

ରାଣୀ ମାରିଆଙ୍କ ହତ୍ୟା ଓ ତାହାଙ୍କର ହତ୍ୟାକାରୀର ଅନୁତାପ ସମ୍ବନ୍ଧୀୟ ୫୬ ମିନିଟର ଯେଉଁ ଫିଲ୍ମ କରାଯାଇଛି ତାହା ୨୦୧୩ ମସିହା ବିଶ୍ୱ ବିଶ୍ୱାସ ଆଦାନ ପ୍ରଦାନ ସୁସଙ୍ଗତ ଫିଲ୍ମ ଫେଷ୍ଟିଭାଲରେ ପ୍ରଥମ ସ୍ଥାନ ପ୍ରାପ୍ତ କରି ପୁରସ୍କୃତ ହୋଇଅଛି । ରାଣୀ ମାରିଆଙ୍କ ଛୋଟ ଭଉଣୀ ସେଲିନ ବଡ଼ ଭଉଣୀଙ୍କୁ ଅନୁକରଣ କରି ଫ୍ରାନ୍‌ସିସ୍‌କାନ କ୍ଲାରିଷ୍ଟ ସଂଘରେ ଯୋଗ ଦେଇ ଜଣେ ସେବାଭଗ୍ନୀ ହୋଇ ପାରିଥିଲେ । ବର୍ତମାନ ସେଲିନ ନିଜ ନାମ ବଦଳାଇ ସେଲିମ ପଲ୍ ନାମରେ ପରିଚିତ ।

ପିତାମାତାଙ୍କ ପ୍ରାର୍ଥନା ଓ ବିଶ୍ୱାସ ଜୀବନ ତାଙ୍କୁ ପ୍ରେରଣା ଦେଇଥିଲା । ଛୋଟରୁ ସେ ନିଜ ପିତାଙ୍କୁ କୃଷି କାମରେ ସାହାଯ୍ୟ କରୁଥିଲେ ଏବଂ ଗୃହର ସବୁ କାମରେ ମାଁଙ୍କୁ ସହାୟତା ପ୍ରଦାନ କରୁଥିଲେ । ଗୃହକୁ କାମ କରି ଆସୁଥିବା ବ୍ୟକ୍ତିମାନଙ୍କ ସହ ସ୍ନେହରେ ବାର୍ତାଳାପ କରୁଥିଲେ ।

ସେ ଯେତେବେଳେ ଆସପିରେନ୍ସି (ତାଲିମ୍ ପ୍ରାପ୍ତ ସମୟର ଗୋଟିଏ ପର୍ଯ୍ୟାୟ) ରେ ଥିଲେ, ତାହାଙ୍କର ବ୍ୟବହାର ଓ ଜୀବନ ବିଷୟରେ ତାହାଙ୍କର ତତ୍ୱାବଧାରକ ସିଷ୍ଟର ଗ୍ଲାଡି ଏହିପରି ସାକ୍ଷ୍ୟ ଦିଅନ୍ତି :

"ହସ ହସ ମୁଖରେ ସର୍ବଦା ସେ ରହନ୍ତି । ପୁଣି ସେ ବହୁତ ଚଞ୍ଚଳ ଥିଲେ । ଯେଉଁ କାର୍ଯ୍ୟ ତାଙ୍କୁ ଦିଆଯାଇଥାଏ ସବୁକିଛି ସେ ଉତମ ରୂପେ କରନ୍ତି । କୌଣସି ବିଷୟରେ ସେ ଅଭିଯୋଗ କରନ୍ତି ନାହିଁ । ତାଙ୍କୁ ସଂଶୋଧନ କଲା ଭଳି କିଛି

ଆମଠାରେ ନ ଥାଏ । ସତ୍ୟ ଓ ନ୍ୟାୟ ପାଇଁ ସବୁବେଳେ ସେ ଖୋଲା ଭାବରେ ପ୍ରକାଶ କରୁଥାନ୍ତି । ରାଣୀ ମାରିଆ ପ୍ରତି ଘଣ୍ଟାକୁ ପ୍ରାର୍ଥନା ଦ୍ୱାରା ପବିତ୍ରିକୃତ କରୁଥିଲେ । କାମ ସମୟରେ ତାହାଙ୍କର ପ୍ରିୟ ପ୍ରାର୍ଥନା ଥିଲା, "ଯୀଶୁ" । ସେ ଏହି ପବିତ୍ର ନାମ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଓଠରେ ସର୍ବଦା ଉଚ୍ଚାରଣ କରିଥିଲେ ।

ରାଣୀ ମାରିଆଙ୍କ ନଭିସ ଅଧିକାରୀ ଇନ୍‌ଫାଣ୍ଟ ମେରୀ କହିଥିଲେ, "ପ୍ରାର୍ଥନାରେ, ପଢ଼ାରେ, ନିୟମ ପାଳନ କରିବାରେ, ଦାୟିତ୍ୱ ସମ୍ପାଦନ କରିବାରେ ବାସ୍ତବରେ ସବୁ କାର୍ଯ୍ୟରେ ସେ ଥିଲେ ସମସ୍ତଙ୍କ ପାଇଁ ଆଦର୍ଶ । ସେ ଅନ୍ୟମାନଙ୍କୁ କେବେ ରାଗ ହେବା ମୁଁ ଦେଖି ନାହିଁ । ସେ କାହା ସପକ୍ଷ ନିଅନ୍ତି ନାହିଁ ଯେତେବେଳେ ଅନ୍ୟର ଦୋଷ ଦେଖନ୍ତି, ଯାହା ବାସ୍ତବ ତାହା ହିଁ ସେ କହନ୍ତି । ସବୁବେଳେ ଈଶ୍ୱରଙ୍କ ଇଚ୍ଛାକୁ ପାଳନ କରିବା ତାଙ୍କର ପ୍ରାଧାନ୍ୟତା" । ଉତର ଭାରତର ମିଶନ ପ୍ରଭିନସିଆଲ କାଉନସିଲର ଦାୟିତ୍ୱରେ ଥିବା ସମୟରେ ଯେତେବେଳେ ନଭିସ (ତାଲିମ ପ୍ରାପ୍ତ କରିବାର ଶେଷ ପର୍ଯ୍ୟାୟ) ମାନଙ୍କୁ ମିଶନ ଅନୁଭୂତି ପ୍ରକାଶ କରୁଥାଏ ଏବଂ ଅଶିକ୍ଷିତ ଓ ଅଜ୍ଞ ଲୋକମାନଙ୍କ ମଧ୍ୟରେ ସୁସମାଚାର ପ୍ରଚାର କରିବାର ଦାୟିତ୍ୱ କେତେ ଯେ ଜରୁରୀ ତାହା ଆମ୍ଭେ ଉପଲବ୍ଧି କରିବା ଆବଶ୍ୟକ । ମିଶିନାରୀ ଆହ୍ୱାନର ବୀଜ ସେହି ସମୟରୁ ତାଙ୍କ ହୃଦୟରେ ବପନ କରାଯାଇଥାଏ । ମିଶିନାରୀମାନଙ୍କ ଅନୁଭୂତି ଶୁଣି ସେ କହୁଥାନ୍ତି, "ମୁଁ ମଧ୍ୟ ଉତର ଭାରତକୁ ଯାଇ ଗରୀବ ମାନଙ୍କ ସେବା କରିବି ଓ ସେମାନଙ୍କ ପାଇଁ ମୃତ୍ୟୁ ବରଣ କରିବି"।

୧୯୯୫ ମସିହା ଫେବୃୟାରୀ ମାସ ୨୫ ତାରିଖ ଦିନ ଅତି ଭୋରରୁ ସମସ୍ତଙ୍କ ଆଗରୁ ଗୀର୍ଜାକୁ ଯାଇ ପ୍ରାର୍ଥନା କରିବା ପରେ ଜଳଖିଆ ଖାଇଲେ । ଅନ୍ୟ ଦୁଇ ଜଣ ସିଷ୍ଟେର ତାଙ୍କୁ ଛାଡିବା ପାଇଁ ବସ୍‌ଷ୍ଟାଣ୍ଡକୁ ଗଲେ । ଯେଉଁ ବସ୍‌ରେ ସିଷ୍ଟେର ଯାତ୍ରା କରିବାର ଥିଲା ସେହି ବସ୍‌ଟି ସେହିଦିନ କ୍ୟାନସେଲ୍ ହୋଇଛି ବୋଲି କୁହାଗଲା । ସେହି ତିନି ଜଣ ସିଷ୍ଟେର କନ୍‌ଭେଣ୍ଟକୁ ଫେରିଯିବା ପାଇଁ ପ୍ରସ୍ତୁତ ହୁଅନ୍ତେ, କିଛିକ୍ଷଣ ପରେ ସେହି ବସ୍‌ଟି ଆସିଗଲା । ବସ୍‌ର ନାମ ଥିଲା କପିଲ୍ । ସିଷ୍ଟେର ଲିଜା ରୋଜ କଣ୍ଡକ୍ଟରଙ୍କୁ ଗୋଟିଏ ସିଟ୍ ସିଷ୍ଟେରଙ୍କୁ ଦେବା ପାଇଁ କହି ସେ ବିଦାୟ ନେଇ ଫେରିଗଲେ । ଧଳା ବସ୍ତ୍ରରେ ପରିଧାନ କରିଥିବା ଜଣେ

ବ୍ୟକ୍ତି ଡ୍ରାଇଭେରଙ୍କ ନିକଟରେ ସିଷ୍ଟେରଙ୍କ ବ୍ୟାଗଟିକୁ ଥୋଇଦେଲେ ଏବଂ ଡ୍ରାଇଭେରଙ୍କ ପଛପଟେ ଥିବା ସିଟ୍‌ରେ ବସିବା ପାଇଁ କହିଲେ । ସାଧାରଣତଃ ବସ୍‌ର ଆଗ ସିଟରେ ସିଷ୍ଟେରମାନଙ୍କୁ ଦେଇଥାନ୍ତି । ସେ ଯାହା ହେଉ ସିଷ୍ଟେର ସେହି ଡ୍ରାଇଭେରଙ୍କ ସିଟ ପଛ ପଟୁ ବସିଲେ ଏବଂ ତାଙ୍କ ସହିତ ତିନିଜଣ ବ୍ୟକ୍ତି ଯେଉଁମାନେ ସିଷ୍ଟେରଙ୍କୁ ହତ୍ୟା କରିବା ଯୋଜନାରେ ଥିଲେ ସେମାନେ ବସିଲେ । ସେହି ତିନି ଜଣ ବ୍ୟକ୍ତିଙ୍କ ନେତା ଥିଲେ ଜୀବନ ସିଂ ଏବଂ ତାଙ୍କର ଦୁଇ ଜଣ ଜଗାଳି ହେଲେ ଧର୍ମେନ୍ଦ୍ର ଏବଂ ସମୁନ୍ଦର ସିଂ । ଜୀବନ ସିଂ ଅପମାନ ଜନକ କଥା କହି ସିଷ୍ଟେରଙ୍କୁ ଗାଳି ଗୁଲଜ କରିବାକୁ ଲାଗିଲେ । ସମୁନ୍ଦର ଗାଡିଟିକୁ ବନ୍ଦ କରିବା ପାଇଁ ଡ୍ରାଇଭେରଙ୍କୁ କହିଲେ । ସମୁନ୍ଦର ବାହାରକୁ ଯାଇ ନଡ଼ିଆ ଭାଙ୍ଗି ସମସ୍ତ ଯାତ୍ରୀମାନଙ୍କୁ ପ୍ରସାଦ ରୂପେ ବାଣ୍ଟି ଦେଲେ । ସିଷ୍ଟେରଙ୍କ ପାଖକୁ ଯାଇ ପ୍ରସାଦଟିଏ ଦେଲା ପରି କରି ସମସ୍ତଙ୍କ ସମ୍ମୁଖରେ ତାଙ୍କୁ ମୁର୍ଖ ପରି ବ୍ୟବହାର କରୁଥିଲା । ଏହାପରେ ସିଷ୍ଟେରଙ୍କୁ ବସ୍‌ରୁ ଘୋଷାରି ଆଣି ଧରିଥିବା ଛୁରୀରେ ତାଙ୍କ ପେଟକୁ ଆଘାତ କଲେ । ବସିଥିବା ଯାତ୍ରୀମାନେ ଏହି ଦୃଶ୍ୟ ଦେଖି ଅବାକ୍ ହୋଇଗଲେ । ଦିନ ଘ.୧୦:୪୫ ମିନିଟରେ ପୋଲିସ କନ୍‌ଭେଣ୍ଟକୁ ଯାଇ ସୂଚନା ଦେଲେ ଯେ ସେମାନଙ୍କ ସିଷ୍ଟେରଙ୍କ ଶବ ରାସ୍ତା କଡ଼ରେ ପଡି ରହିଛି । ସିଷ୍ଟେରମାନେ ଇନ୍ଦୋରର ଧର୍ମାଧ୍ୟକ୍ଷ ଜର୍ଜ ଆନାଥିଲଙ୍କୁ ଏହି ବିଷୟ ଜଣାଇଲେ । ଏହି ଖବର ପାଇ ଧର୍ମାଧ୍ୟକ୍ଷ ଆନାଥିଲ କେତେଜଣ ଯାଜକଙ୍କ ସହିତ ସିଷ୍ଟେରଙ୍କୁ ହତ୍ୟା କରାଯାଇଥିବା ସ୍ଥାନରେ ପ୍ରାୟ ଅପରାହ୍ଣ ୨ ଘଣ୍ଟା ସମୟରେ ପହଞ୍ଚିଲେ । ମୃତ ଶରୀରଟିକୁ ନେଇ ତାଙ୍କୁ ମର୍ଯ୍ୟଦା ସହକାରେ କବର ଦିଆଗଲା । ସିଷ୍ଟେର ରାଣୀ ମାରିଆଙ୍କ ହତ୍ୟାକାରୀ ସମୁନ୍ଦର ସିଂକୁ ସାରା ଜୀବନ ପାଇଁ ବନ୍ଦୀ ଶାଳାରେ ରହିବାକୁ ଆଦେଶ ଦିଆଗଲା ।

ସିଷ୍ଟେର ରାଣୀ ମାରିଆଙ୍କ ନିଜ ଭଉଣୀ ଯିଏ ଜଣେ ସେବାଭଗ୍ନୀ, ୨୦୦୨ ମସିହା ଅଗଷ୍ଟ ମାସ ୩ ତାରିଖ ଦିନ ବନ୍ଦି ଶାଳାକୁ ଯାଇ ସମୁନ୍ଦରଙ୍କୁ ସାକ୍ଷାତ କରି ତାଙ୍କୁ କ୍ଷମା ଦେଇଥିଲେ । ସିଷ୍ଟେରଙ୍କ ଏହି ପ୍ରକାର ବ୍ୟବହାରରେ ସମୁନ୍ଦର ସିଂ ବିସ୍ମିତ ହୋଇ ନିଜର ଦୋଷ ପାଇଁ ଅନୁତାପ କରି ତାଙ୍କ ଠାରୁ କ୍ଷମା ମାଗିଥିଲେ । ସିଷ୍ଟେରଙ୍କ ମାଁ ମଧ୍ୟ ୨୦୦୩ ମସିହା ଫେବୃୟାରୀ ମାସ ୨୫ ତାରିଖ ଦିନ ବନ୍ଦୀ

ଶାଳାକୁ ଯାଇ ସମୁନ୍ଦରଙ୍କୁ କ୍ଷମା ଦେବାର ଚିହ୍ନ ସ୍ୱରୂପ ତାଙ୍କ ହସ୍ତକୁ ଚୁମ୍ବନ କରିଥିଲେ । ୨୦୦୬ ମସିହାରେ ସିଷ୍ଟେର ରାଣୀ ମାରିଆଙ୍କ ପରିବାରର ହସ୍ତକ୍ଷେପ ଦ୍ୱାରା ବନ୍ଦୀଶାଳାରୁ ସେ ମୁକ୍ତ ହେଲେ । ବର୍ତ୍ତମାନ ସମୁନ୍ଦର ସିଂ ସିଷ୍ଟେରଙ୍କ ପରିବାରର ଜଣେ ସଭ୍ୟ ରୂପେ ବିବେଚିତ ହୁଅନ୍ତି । ୨୦୧୭ ମସିହାରେ ରାଣୀ ମାରିଆଙ୍କୁ 'ଧନ୍ୟା' ରୂପେ ଘୋଷଣା କରାଗଲା । ସମୁନ୍ଦର ସିଂ ଛଳ ଛଳ ଆଖିରେ ସେହି ଉତ୍ସବରେ ଯୋଗ ଦେବା ପାଇଁ ଆଗ୍ରହୀ ଥିଲେ ।

୫୦ ଜଣ ବସ୍ ଯାତ୍ରୀଙ୍କ ସମ୍ମୁଖରେ ସମୁନ୍ଦର ସିଂ ସିଷ୍ଟେର ରାଣୀ ମାରିଆଙ୍କୁ ପ୍ରାୟ ୫୪ ଥର ଛୁରୀରେ ଆଘାତ କରିଥିଲେ । ଯଦିଓ ହତ୍ୟାକରୀ ସମୁନ୍ଦର ସିଂ ଅନ୍ୟମାନଙ୍କ ଦ୍ୱାରା ଟଙ୍କା ଲୋଭରେ ସିଷ୍ଟେର ରାଣୀ ମାରିଆଙ୍କୁ ହତ୍ୟା କରିଥିଲେ ତଥାପି ନିଜ ଅମାନୁଷିକ କାର୍ଯ୍ୟ ପାଇଁ ସେ ନିଜକୁ ହିଁ ଦାୟୀ କରିଥିଲେ । ସେ କହନ୍ତି, "ସିଷ୍ଟେରଙ୍କୁ ଅମାନୁଷିକ ଭାବେ ହତ୍ୟା କରିଥିବା ହେତୁ ମୋ ନିଜ ଆତ୍ମକୁ ମୁଁ ଦାୟୀ ବୋଲି ସ୍ୱୀକାର କରୁଅଛି । ମୁଁ କହି ପାରିବି ନାହିଁ ଯେ ଅନ୍ୟମାନେ ମୋତେ ପ୍ରବର୍ତ୍ତାଇଛନ୍ତି କାରଣ ମୋର ହସ୍ତ ତାଙ୍କୁ ବାରମ୍ବାର ଆଘାତ କରିଛି । ମୁଁ ମରିବା ପର୍ଯ୍ୟନ୍ତ ଏହି କାର୍ଯ୍ୟ ପାଇଁ ଅନୁତାପ କରିବି । ସିଷ୍ଟେରଙ୍କ ଆଦର୍ଶ ଅନୁକରଣ କରି ଗରୀବ ଆଦିବାସୀ ଭାଇ ମାନଙ୍କର କିଛି ମଙ୍ଗଳ କଲେ ମୋର ଆତ୍ମା ଶାନ୍ତି ପାଇବ"।

୧୯୯୦ ମସିହାରୁ ସିଷ୍ଟେର ରାଣୀ ମାରିଆଙ୍କ ଭଉଣୀ Colon cancer (ସ୍ଥୂଳାନ୍ତ) ରୋଗରେ ପୀଡିତ ଥିଲେ । କେମିଓ ଥେରାପି ଓ ଅନ୍ୟାନ୍ୟ ଚିକିତ୍ସା କଲାପରେ ୧୯୯୨ ମସିହାରେ ତ୍ରିଭେନ୍ଦ୍ରମ RCC (କ୍ୟାନସେର କେନ୍ଦ୍ର) ରେ ଭର୍ତ୍ତି କରାଗଲା । ମେଡିକାଲ ରିପର୍ଟରୁ ଜଣାଗଲା ଯେ ଏହା ତାଙ୍କର ଲିଭରକୁ ପ୍ରଭାବିତ କରିଛି । ଡାକ୍ତରମାନେ ତାଙ୍କୁ Liver surgery କରିବା ପାଇଁ କହିଲେ । ତାହା ବିପଦଜନକ ଥିବାରୁ Homeo ଚିକିତ୍ସା କରିବା ପାଇଁ ପରାମର୍ଶ ଦେଲେ । ସିଷ୍ଟେର ରାଣୀ ମାରିଆଙ୍କ ମୃତ୍ୟୁ ପରେ ତାଙ୍କ ଭଉଣୀଙ୍କୁ ଉଦୟନଗରରେ ରହିବାକୁ ପଡିଥିଲା । ୧୯୯୫ ମସିହା ନଭେମ୍ବର ମାସ ୧୨ ତାରିଖ ଦିନ ସେ ମାଲେରିଆ ଓ ଜଣ୍ଡିସ ବେମାରରେ ପିଡିତା ହେଲେ । ତାଙ୍କୁ ଭୋପାଲକୁ ଅଣାଯାଇ ଚିରାୟୁ ହସପିଟାଲରେ ଭର୍ତ୍ତି କଲେ । ୬ ଦିନ ଧରି ତାଙ୍କ ତାପମାତ୍ରା ୧୦୬ ଡିଗ୍ରୀରେ

ରହୁଥିଲା । ତାଙ୍କ ସିଷ୍ଟେରମାନେ ରାଣୀ ମାରିଆଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରିଥିଲେ ।

ନଭେମ୍ବର ମାସ ୨୬ ତାରିଖ ଦିନ ସିଷ୍ଟେର ରାଣୀ ମାରିଆଙ୍କ ଦର୍ଶନ ସେ ପାଇଲେ । ସେହିଦିନ ହିଁ ତାଙ୍କ ଅନ୍ୟ ଭଉଣୀ ଲୁସି ମଧ୍ୟ ଦର୍ଶନରେ ରାଣୀ ମାରିଆ ସେହି ଭଉଣୀଙ୍କ ଶର୍ଯ୍ୟାରେ ରହି ତାଙ୍କର ସେବା କରୁଥିବାର ଦେଖିଲେ । ସେହି ଦିନ ଠାରୁ ତାଙ୍କର colon cancer ସମ୍ପୂର୍ଣ୍ଣ ରୂପେ ସୁସ୍ଥ ହୋଇଗଲା । କେତେବର୍ଷ ପରେ ସେ ପରୀକ୍ଷା କରି ଜାଣି ପାରିଲେ ଯେ ତାଙ୍କର cancer ର କୌଣସି ଚିହ୍ନ ନାହିଁ ।

**ରାଣୀ ମାରିଆଙ୍କ କେତୋଟି ଉକ୍ତି:**

✸ "ମୁଁ କାହାକୁ ଭୟ କରେ ନାହିଁ, ଏପରିକି ମୃତ୍ୟୁକୁ ମଧ୍ୟ କାରଣ ମୋ ଠାରେ ପବିତ୍ର ଆତ୍ମାଙ୍କ ଶକ୍ତି ସକ୍ରିୟ ଅଛି"।

✸ "ଗରୀବ ଓ ନିଷ୍ପେସିତ ଲୋକମାନଙ୍କ ସେବା କରିବା ପାଇଁ ମୁଁ ଆହ୍ୱାନ ପାଇଛି, ଏହା ମୋର ଦୃଢ଼ ବିଶ୍ୱାସ । ସେମାନେ ଇଶ୍ୱରଙ୍କ ସନ୍ତାନ ଓ ମୋର ଭାଇ ଓ ଭଉଣୀମାନେ, ସୁତରାଂ ମୃତ୍ୟୁ ବରଣ କରିବା ପାଇଁ ସୁଦ୍ଧା ମୁଁ ପ୍ରସ୍ତୁତ" ।

✸ "ଲୋକଙ୍କର ସେବା ପାଇଁ ଯେଉଁମାନେ ଆହୁତ, ସେମାନେ ଯୀଶୁଙ୍କ ପରି ନିଜକୁ ଶୁନ୍ୟ କରିବା ଆବଶ୍ୟକ । ଆମର କାମର ଲକ୍ଷ୍ୟ କେବେହେଲେ ଆମର ନାମ ଓ ଗୌରବ ପାଇଁ ନୁହଁ"।

✸✸✸

# ପ୍ରଭୁଙ୍କର ସାଧୁ ଯୋହନ

## (୧୪୯୫-୧୫୫୦, ମାର୍ଚ୍ଚ ୮)

ପ୍ରଭୁଙ୍କର ସାଧୁ ଯୋହନଙ୍କ ବାସ୍ତବ ନାମ ଥିଲା ଜୁଆନ ସିଉଦାଦ । ପର୍ତ୍ତୁଗାଲର ମଣ୍ଟେମୋରୋ ନୋଭ ବନ୍ଦରରେ ୧୪୯୫ ମସିହା ମାର୍ଚ୍ଚ ମାସ ୮ ତାରିଖରେ ତାଙ୍କର ଜନ୍ମ । ୧୫୫୦ ମସିହା ମାର୍ଚ୍ଚ ମାସ ୮ ତାରିଖ ସ୍ପେଇନର ଗ୍ରାନାଡାରେ ମୃତ୍ୟୁବରଣ କରିଥିଲେ । ପୂଣ୍ୟପିତା ଅଷ୍ଟମ ଆଲେକଜାଣ୍ଡାର ୧୬୯୦ ମସିହା ଅକ୍ଟୋବର ୧୬ ତାରିଖ ଦିନ ତାଙ୍କୁ 'ସାଧୁ' ଘୋଷଣା କରିଥିଲେ । ହସପିଟାଲ ଓ ରୋଗୀମାନଙ୍କ ଇଷ୍ଟ ସାଧୁ ରୂପେ ମଣ୍ଡଳୀ ତାଙ୍କୁ ସମ୍ମାନ ଦିଏ ।

ଆଠ ବର୍ଷରୁ ହିଁ ପବିତ୍ର ଆତ୍ମାଙ୍କ ନିର୍ଦ୍ଦେଶ ଅନୁଯାୟୀ ନିଜ ଜୀବନରେ ନିଷ୍ପତି ନେବା ଆରମ୍ଭ କରିଥିଲେ । ହୃଦୟର ସ୍ୱର ଶୁଣି ସେ କାର୍ଯ୍ୟ କରୁଥିଲେ । ଅତିଶୀଘ୍ର ଯଦିଓ ସେ ନିଷ୍ପତି ନେଉଥାନ୍ତି, ତାହା ଠିକ୍ ବୋଲି ସେ ଭାବୁଥିଲେ । ଆଠ ବର୍ଷ ବୟସରେ ଜଣେ ଯାଜକଙ୍କର ବକ୍ତୃତାରେ ଅନୁପ୍ରାଣିତ ହୋଇ ଦିନେ ହଠାତ୍ ରାତ୍ରିରେ ସେହି ଯାଜକଙ୍କ ସହିତ ଚାଲିଗଲେ ଏବଂ କେବେହେଲେ ତାଙ୍କ ପିତା ମାତାଙ୍କ ପାଖକୁ ଫେରି ନ ଥିଲେ । ଯିବା ପଥରେ ପ୍ରତି ଗ୍ରାମରେ ସେମାନେ ଭିକ୍ଷା ମାଗୁଥିଲେ । ଶେଷରେ ସେ ବେମାର ପଡ଼ିଲେ । ଜଣେ ଧନଶାଳୀ ବ୍ୟକ୍ତି ତାଙ୍କୁ ସେବା କଲେ ଓ ପରେ ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ ।

୨୭ ବର୍ଷ ପର୍ଯ୍ୟନ୍ତ ସେହି ଧନୀ ବ୍ୟକ୍ତିର ମେଷ ଜଗାଳି ରୂପେ ସେ କାର୍ଯ୍ୟ କରିଥିଲେ । ଧନୀ ବ୍ୟକ୍ତି ଜଣକ ନିଜ ଝିଅକୁ ବିବାହ କରିବା ପାଇଁ ବାଧ୍ୟ କଲେ ଯାହାକୁ ସେ ନିଜର ଭଉଣୀ ବୋଲି ସମ୍ମାନ ଦେଉଥିଲେ । କିଛି ବର୍ଷ ପରେ ସେ ସ୍ପେଇନର ସୈନ୍ୟଦଳରେ ଯୋଗ ଦେଇ ଫ୍ରାନସ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ତାଙ୍କୁ ଯେତେବେଳେ ୨୨ ବର୍ଷ ହେଉଥାଏ, ପଦାତିକ ସୌନ୍ୟ ଦଳରେ ଯୋଗ ଦେଇ ଶାସକ ପଞ୍ଚମ ଚାର୍ଲସଙ୍କ ସପକ୍ଷ ନେଇ ଫ୍ରେଞ୍ଚମାନଙ୍କ ବିରୁଦ୍ଧରେ ଫନ୍ତରାବାଠାରେ ଯୁଦ୍ଧ କଲେ । ଏହାପରେ ତୁର୍କୀମାନଙ୍କ ବିରୁଦ୍ଧରେ ହଙ୍ଗେରୀଠାରେ ଯୁଦ୍ଧ କଲେ । ପ୍ରାୟ ୧୮ ବର୍ଷ ୟୁରୋପର ବିଭିନ୍ନ ସ୍ଥାନରେ ସୈନ୍ୟଦଳରେ ନିଯୁକ୍ତି ପାଇ କାମ କଲେ । ଦୀର୍ଘବର୍ଷ ଧରି ସୈନ୍ୟଦଳରେ ରହିବା ଯୋଗୁଁ ତାହାଙ୍କ ଧାର୍ମିକ

ବିଶ୍ୱାସରେ ଅବନତି ଘଟିଲା । ସେ ନିଜର ନୈତିକ ଜୀବନ ହରାଇଥିଲେ ଓ ଅନ୍ୟମାନଙ୍କ ତୁଳନାରେ ତାହାଙ୍କ ଜୀବନ କୌଣସି ମତେ ଉନ୍ନତି ନ ଥିଲା । ଏଣୁ ସେ ନିଜକୁ ଲଜ୍ଜାବୋଧ କରୁଥିଲେ । ନିଜର ବିଗତ ଜୀବନ ମନେ ପକାଇ ସେ ଦୁଃଖ ପ୍ରକାଶ କଲେ । ସୈନ୍ୟଦଳରେ ରହି ସେ ଶାରୀରିକ ଶକ୍ତି ଲାଭ କଲେ କିନ୍ତୁ ଆତ୍ମାରେ ସେ ଦୁର୍ବଳ ହେଲେ ।

ଗରୀବ ଓ ଦୁଃଖିଙ୍କ ପାଇଁ ତାଙ୍କର ହୃଦୟ ସବୁବେଳେ ଖୋଲା ଥାଏ । ତାଙ୍କର ତରବରିଆ ବ୍ୟବହାର ଯୋଗୁ କୌଣସି ଭିକାରୀ ତାଙ୍କ ପାଖକୁ ଯାଉ ନ ଥିଲେ କିନ୍ତୁ ଯିଏ ଯାଉଥିଲେ ସେମାନେ କିଛି ସାନ୍ତ୍ୱନା ଓ ଆଶ୍ୱସ୍ତି ଲାଭ କରୁଥିଲେ । ଦିନେ ସେ ଚୋର କରିବା ପାଇଁ ଘୋଡ଼ାରେ ଯାଉଥିବା ସମୟରେ ଘୋଡ଼ାରୁ ପଡ଼ି କ୍ଷତ ବିକ୍ଷତ ହୋଇଥିଲେ । ସେହି ସମୟରେ ଶତ୍ରୁମାନଙ୍କ ହସ୍ତରୁ ଅଳ୍ପକେ ବର୍ତ୍ତିଯାଇଥିଲେ । ଅସହାୟ ଅବସ୍ଥାରେ ତଳେ ପଡ଼ି ଭାବିଲେ ଯେ ସେ ଆଉ ବଞ୍ଚି ପାରିବେ ନାହିଁ । ସେହି ସମୟରେ ପିଲା ଦିନରେ ଶିକ୍ଷା କରିଥିବା ପ୍ରାର୍ଥନାଟି ତାଙ୍କ ପାଟିରୁ ବାହାରିଲା । ମାରୀୟାଙ୍କୁ ସେ ପ୍ରାର୍ଥନା କରିଥିଲେ ସେହି ପରିସ୍ଥିତିରୁ ତାଙ୍କୁ ଉଦ୍ଧାର କରିବା ପାଇଁ ।

ଦିନେ ତାଙ୍କୁ ଅନେକ ସମ୍ପତି ଠୁଳ କରି, ସେଗୁଡ଼ିକ ଜଗିବା ପାଇଁ କହି ତା ସାଙ୍ଗମାନେ ଚାଲିଗଲେ । ଯଦିଓ ଜନ ସେଗୁଡ଼ିକୁ ଚୋର କରିନାହିଁ ତଥାପି ତାଙ୍କୁ ସନ୍ଦେହ କଲେ । ତାଙ୍କୁ ଗୁଳି କରି ହତ୍ୟା କରିବା ପାଇଁ ସେମାନେ ଚିନ୍ତା କଲେ କିନ୍ତୁ ଜଣେ ସହନ ଶୀଳ ପୋଲିସ ଅଫିସର ଯୋଗୁ ତାଙ୍କୁ କ୍ଷମା ଦେଇଥିଲେ ଏବଂ ସେହି ବିପଦରୁ ସେ ଉଦ୍ଧାର ପାଇଥିଲେ । ସୈନ୍ୟଦଳରେ ରହି ଏହିସବୁ ଅନୁଭୂତି ତାଙ୍କ ମନରେ ବିତୃଷ୍ଣା ଭାବ ଜାତ କଲା ଓ ସେ ସ୍ଥିର କଲେ ସେଥିରୁ ମୁକ୍ତି ହୋଇ ଶାନ୍ତି ପାଇବା ପାଇଁ ।

ଜନ୍‌ଙ୍କୁ ସେହି ସମୟରେ ୪୦ ବର୍ଷ ହେଉଥାଏ । ହଙ୍ଗେରିରେ ତାଙ୍କ କର୍ତବ୍ୟ କରି ସୈନ୍ୟଦଳ ଯେତେବେଳେ ପରାସ୍ତ ହେଲେ, ସେମାନେ ଗାଲିସିଆରେ ପହଞ୍ଚିଲେ । କମ୍ପଷ୍ଟେଲା ସାଧୁ ଜେମସଙ୍କ ତୀର୍ଥସ୍ଥଳୀକୁ ସେ ପଦଯାତ୍ରା କଲେ । ସେଠାରେ ପହଞ୍ଚି ପାପସ୍ୱୀକାର କଲେ ଏବଂ କରିଥିବା ସମସ୍ତ ପାପ ପାଇଁ ଦୁଃଖ ପ୍ରକାଶ କରି ତାର କ୍ଷତିପୂରଣ ଦେବା ପାଇଁ ମନସ୍ଥ କଲେ । କ୍ଷମାର ଅନୁଭୂତି

ପାଇ ସେଠାରୁ ସେ ନିଜ ଗୃହକୁ ପ୍ରତ୍ୟାବର୍ତନ କଲେ । ତାଙ୍କ ମାମୁଙ୍କ ଠାରୁ ଶୁଣିବାକୁ ପାଇଲେ ଯେ ତାରି କଥା ଚିନ୍ତା କରି ତାଙ୍କ ମାଁ ମୃତ୍ୟୁବରଣ କରିଛନ୍ତି ଏବଂ ତାଙ୍କର ବାପା ଫ୍ରାନସିସକାନ ଆଶ୍ରମରେ ପ୍ରବେଶ କରି ନିଜ ଜୀବନ ଅତିବାହିତ କରୁଛନ୍ତି। ନିଜ ଯୋଗୁ ତାଙ୍କ ପିତା ମାତା ଯେ ମୃତ୍ୟୁବରଣ କରିଛନ୍ତି ଏହି ବିଷୟ ଚିନ୍ତା କରି ସେ ନିଜ ଦେଶ ପର୍ତୁଗାଲ ଛାଡ଼ି ସ୍ପେନକୁ ଯିବା ପାଇ ସ୍ଥିର କଲେ । ବର୍ତମାନ କିପରି ବଞ୍ଚିବ, ବୟସ ଯେ ତାର ଗଡ଼ି ଗଲାଣି କେଉଠି ବା ସେ କାମ କରିବ। ଶେଷରେ ପୁଣି ଥରେ ସେଭଲିର ଜଣେ ଧନୀ ଓ ଉପକାରୀ ମାଁଙ୍କର ମେଷ ଜଗିବା କାମରେ ନିଜକୁ ଉତ୍ସର୍ଗ କଲେ । ମେଷ ଜଗିବା ସମୟରେ ସେ ଏକାକୀ ପ୍ରାର୍ଥନା କରୁଥିଲେ ଏବଂ ଅତୀତର କଥା ସ୍ମରଣ କରି ସେ ଯେ ନିଜର ଜୀବନକୁ ବୃଥାରେ ବିତେଇଛନ୍ତି ଏବଂ ଅନେକଙ୍କର କ୍ଷତି କରିଛନ୍ତି ଏହାଚିନ୍ତା କରି ସେ କେବଳ ଘୃଣାର ପାତ୍ର ହି ହେବା ପାଇ ଯୋଗ୍ୟ ବୋଲି ନିଜକୁ ଭାବୁଥିଲେ । ନିଜକୁ ନିଜେ ସେ ଦାୟୀ କରୁଥିଲେ ନିଜର ଅପକର୍ମ ପାଇଁ । ଯେଉଁସବୁ ଅନ୍ୟାୟ କାମ ସେ କରିଛନ୍ତି ସେଇଥିପାଇଁ ଅନୁତପ୍ତ ହୋଇ ଅନ୍ୟର ମଙ୍ଗଳ କାମ କରି ନିଜର ବାକି ଜୀବନକୁ ବିତାଇବା ପାଇଁ ମନସ୍ଥ କଲେ ।

ମେଷ ଜଗାଳି କାମ ଛାଡ଼ି ଦେଇ ଜିବ୍ରାଲଟାର୍ ଯିବାକୁ ସେ ପ୍ରସ୍ତୁତ ହେଲେ। ସେହି ସମୟରେ ଜଣେ ପର୍ତୁଗୀଜର ଲୋକଙ୍କ ସହିତ ତାଙ୍କର ସାକ୍ଷାତ ହେଲା ଯାହାକୁ ନିଜର ଦେଶୀୟ ଲୋକ ବାସନ୍ଦ କରିଥିବା ହେତୁ ଅନ୍ୟତ୍ର ଯାଇ ଚେଉତାରେ ସପରିବାର ସହ ବାସ କରିବା ପାଇଁ ଯାଉଥିଲେ । ସେ ଥିଲେ ଜଣେ ନିରାଶା ବ୍ୟକ୍ତି ଏଣୁ ଜନ୍ ତାଙ୍କ ସଙ୍ଗରେ ଗଲେ ଓ ଚେଟୁଆରେ କିଛି କାମ ପାଇ ଯାହା ସେ ରୋଜଗାର କରୁଥିଲେ ସେହି ବ୍ୟକ୍ତି ତଥା ତାଙ୍କ ପରି ନିରାଶୟ ବ୍ୟକ୍ତିମାନଙ୍କୁ ସେବା କଲେ ।

ଧର୍ମାଞ୍ଚଳର ଯାଜକ ଯେତେବେଳେ ଜାଣିଲେ ଯେ ଜଣେ ନୂତନ ବ୍ୟକ୍ତି ତାଙ୍କ ଧର୍ମାଞ୍ଚଳକୁ ଆସିଛନ୍ତି, ତାଙ୍କ ବିଷୟରେ ସବୁ ଜାଣିଲା ପରେ ନିଜ ଦେଶକୁ ଫେରିଯିବା ପାଇଁ କହିଲେ । ଆଫ୍ରିକା ପରି ଦେଶରେ ତୁମ ପାଇଁ ଚଳିବା କଷ୍ଟକର ହେବ ବୋଲି ତାଙ୍କୁ ପ୍ରବର୍ତାଇଲେ । ପୁଣି ମୁସଲିମ ଧର୍ମାବଲମ୍ବୀମାନଙ୍କ ଉପସ୍ଥିତି ତୁମ ପାଇଁ ବିପଦ ଆଣିପାରେ । ସେହି ଯାଜକ ଜଣକ କହିଲେ ତୁମ ପରି ଅନେକେ

ସେମାନଙ୍କ ଦ୍ୱାରା ପ୍ରଲୋଭିତ ହୋଇ, ନିଜର ଧର୍ମ ତ୍ୟାଗ କରି ମୁସଲିମ ଧର୍ମ ଗ୍ରହଣ କରିଛନ୍ତି । ତୁମ୍ଭେ ଯଦି ସତର୍କ ନ ରୁହ ତେବେ ତୁମ୍ଭର ଦଶା ସେମାନଙ୍କ ଠାରୁ ଅଧିକ ବିପଦଜନକ ହେବ ବୋଲି ତାଙ୍କୁ ଜଣାଇଲେ । ଯାଜକ ଜଣଙ୍କର କଥା ଶୁଣି ପୁନଶ୍ଚ ସେ ନିଜ ଦେଶକୁ ଫେରିଯିବା ପାଇଁ ଇଚ୍ଛା ପ୍ରକାଶ କଲେ । ନିଜ ଦେଶକୁ ଫେରିଗଲା ପରେ ଦୁଇଟି ବିଷୟରେ ଧ୍ୟାନ ଦେବା ପାଇଁ ସେ ଚାହିଁଲେ । ପ୍ରଥମତଃ, ସେ ଯେପରି ଅନ୍ୟ ଦ୍ୱାରା ନ୍ୟାୟରୁ ବଞ୍ଚିତ ହୋଇଥିଲେ, ସେହିପରି ସେ କରିବେ ନାହିଁ ବରଂ ନ୍ୟାୟରୁ ବଞ୍ଚିତ ଲୋକମାନଙ୍କୁ ନ୍ୟାୟ ଦେବା ପାଇଁ ଲଢ଼େଇ କରିବେ । ଦ୍ୱିତୀୟତଃ ଅନ୍ୟମାନଙ୍କର ଉତମ କାର୍ଯ୍ୟ କରିବେ । ଏହି ଦୁଇଟି ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ପାଇଁ ଗୋଟିଏ ବ୍ୟବସାୟ କରିବା ପାଇଁ ସ୍ଥିର କଲେ । ପବିତ୍ର ଛବି ଏବଂ ଧାର୍ମିକ ପୁସ୍ତକ ଓ ବିଭିନ୍ନ ଧାର୍ମିକ ଉପକରଣ ଗୁଡ଼ିକ ଗାଁ କୁ ଗାଁ ନେଇ ବିକ୍ରି କରିବ । ଗ୍ରାହକଙ୍କୁ ପାଇଲା ପରେ ତାଙ୍କୁ ପୁଣି ସେହି ଉପକରଣ ଗୁଡ଼ିକର ଉଦ୍ଦେଶ୍ୟ ଏବଂ ତାହାର ବିଷୟ ବସ୍ତୁ ସେମାନଙ୍କୁ ନ ବୁଝେଇ ସେ ଛାଡ଼ୁ ନ ଥିଲେ । ଏହି ବ୍ୟବସାୟରେ ସେ ଗ୍ରାନାଦକୁ ପହଞ୍ଚିଲେ । ଯାତ୍ରା ପଥରେ ସେ ରାସ୍ତା କଡ଼ରେ ଗୋଟିଏ ଛୋଟ ଶିଶୁଟିକୁ ଦେଖିଲେ । ପରମ୍ପରା କୁହେ ସେହି ଛୋଟ ଶିଶୁଙ୍କ ଦେହରେ ବସ୍ତ୍ର ନ ଥିଲା, ପାଦରେ ଜୋତା ନ ଥିଲା । ଶିଶୁଟି ଜନ୍‌ଙ୍କୁ ବୋହି ନେବା ପାଇଁ ଅନୁରୋଧ କଲେ । ଜନ୍ ଶିଶୁଟିକୁ କାନ୍ଧରେ ବୋହି ନିଜର ଜିନିଷ ମଧ୍ୟ ବୋହି ଆଗକୁ ବଢ଼ିଲେ । ଜନ୍ ଅନୁଭବ କଲେ ଯେ ତାଙ୍କୁ ବହୁତ ଭାରି ଲାଗୁଛି । ଏଣୁ ରାସ୍ତାରେ ଝରଣାଟିଏ ଦେଖି ଶିଶୁଟିକୁ କହିଲା, ଆମ୍ଭେ ଏଠାରେ କିଛି ସମୟ ବିଶ୍ରାମ ନେବା । ଶିଶୁଟି କାନ୍ଧରୁ ଓହ୍ଲେଇ ଯାଇ ହଠାତ୍ ପରିବର୍ତ୍ତନ ହୋଇଗଲେ, କହିଲେ, "ଈଶ୍ୱରଙ୍କ ଜନ, ଗ୍ରାନାଦ ତୁମର କ୍ରୁଶ ହେବ"। ଏହା କହି ସେ ଅଦୃଶ୍ୟ ହୋଇଗଲେ । ୧୬୯୦ ମସିହାରେ ପ୍ରଭୁଙ୍କର ସାଧୁ ଯୋହନଙ୍କୁ 'ସାଧୁ' ପଦକୁ ଉନ୍ନୀତ କରାଗଲା । ୧୮୮୬ ମସିହାରେ ପୂଣ୍ୟପିତା ତ୍ରୟୋଦଶ ଲିୟ ପ୍ରଭୁଙ୍କର ସାଧୁ ଯୋହନଙ୍କୁ ହସପିଟାଲ ତଥା ରୋଗୀମାନଙ୍କ ଇଷ୍ଟ ସାଧୁ ରୂପେ ଘୋଷଣା କଲେ ।

**ପ୍ରଭୁଙ୍କର ସାଧୁ ଯୋହନଙ୍କ କେତୋଟି ଉକ୍ତି:**

✸ "ଯେତେ ପର୍ଯ୍ୟନ୍ତ ତୁମର ସମୟ ଅଛି, ତୁମର କର୍ମକୁ ଅବ୍ୟାହତ ରଖ୍ଧ ଯାହା ତୁମେ କରି ପାରିବ ସେହି ସମସ୍ତ ଉତମ କର୍ମ କର" ।

✸ "ଇଶ୍ୱରଙ୍କ ଦୟା ପ୍ରାପ୍ତ କରିବା ପାଇଁ ଯଦି ତୁମେ ଚାହଁ, ଯେଉଁ ପର୍ଯ୍ୟନ୍ତ ତୁମ ଶକ୍ତି ଅଛି ସେହି ପର୍ଯ୍ୟନ୍ତ ଉତମ କାର୍ଯ୍ୟ କରିବା ପାଇଁ କେବେ ଅବହେଳା କରିବ ନାହିଁ" ।

✸ "ଆମର ତଥା ପ୍ରତିବାସୀର ପାପ ପାଇଁ କ୍ରନ୍ଦନ କରି, ପ୍ରେମର ଦାସ ହେବା ପାଇଁ ତାଙ୍କ ଆଡ଼କୁ ଯିବା ପାଇଁ ହସ୍ତ ପ୍ରସାରି ସେ ଆମକୁ ଡାକନ୍ତି । ଜଳ ଯେପରି ଅଗ୍ନିକୁ ନିର୍ବାପିତ କରେ ଠିକ୍ ସେହିପରି ପ୍ରେମ ଆମର ପାପକୁ ନିର୍ବାପିତ କରେ" ।

✸✸✸

# ସାଧୁ ପାଟ୍ରିକ

## (୩୯୦-୪୬୧, ମାର୍ଚ୍ଚ ୧୭)

ବ୍ରିଟେନ୍‌ର  କାର୍ଲଆଏଲ ସହର ନିକଟବର୍ତ୍ତୀ ଗୋଟିଏ ଛୋଟିଆ ଗ୍ରାମ ବୋନାଭେନ ଟାବେର୍‌ନିଆଠାରେ ୩୯୦ ମସିହାରେ ପାଟ୍ରିକ ଜନ୍ମ ଗ୍ରହଣ କରିଥିଲେ । ସେ ନିଜକୁ ଜଣେ ରୋମୀୟ ଓ ବ୍ରିଟେନ ବାସୀ ବୋଲି ପରିଚୟ ଦିଅନ୍ତି । ଖ୍ରୀଷ୍ଟିୟାନ ପରିବାରରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା କାଲ୍‌ପୁର୍‌ନିୟୁସ ଥିଲେ ଜଣେ ଡିକେନ୍ (ଉପଯାଜକ) ଓ ଜେଜେବାପା ପୋଟିଉସ ଜଣେ ଯାଜକ ଥିଲେ । ଟୁର୍‌ର ସାଧୁ ମାର୍ଟିନଙ୍କ ଭାଣିଜି କଞ୍ଚେସା ଥିଲେ ପାଟ୍ରିକଙ୍କ ମାତା ।

ପାଟ୍ରିକ ଯଦିଓ ଖ୍ରୀଷ୍ଟିୟାନ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ଧର୍ମ ପ୍ରତି ତାଙ୍କର ସେତେ ଆଗ୍ରହ ନଥିଲା । ୧୫ ବର୍ଷ ବୟସରେ ସେ ଯେଉଁ ଗୁରୁତର ପାପ କରିଥିଲେ ସେଇଥି ପାଇଁ ସେ ସାରା ଜୀବନ ବିଳାପ କରୁଥିଲେ । ୧୬ ବର୍ଷ ବୟସ ହେବା ପର୍ଯ୍ୟନ୍ତ ସେ ପ୍ରଭୁଙ୍କ ବିଷୟରେ ଅଜ୍ଞ ଥିଲେ ଏବଂ ପ୍ରଭୁଙ୍କ ସ୍ୱର୍ଗୀୟ ପ୍ରେମ ପ୍ରତି ଅସଂବେଦନଶୀଳ ଥିଲେ । ତାଙ୍କୁ ଯେତେବେଳେ ୧୬ ବର୍ଷ ହେଉଥାଏ, ଆର୍ୟେଲାଣ୍ଡର ଅସଭ୍ୟ ବ୍ୟକ୍ତିମାନେ ପିତାଙ୍କର କ୍ରୀତଦାସ ମାନଙ୍କ ସହିତ ତାଙ୍କୁ ମଧ୍ୟ ଧରି କ୍ରୀତଦାସ ରୂପେ ନେଇଗଲେ । ୬ ବର୍ଷ ପର୍ଯ୍ୟନ୍ତ ଜଣେ କ୍ରୀତଦାସ ରୂପେ ଆର୍ୟେଲାଣ୍ଡରେ କାମ କଲେ ।

ଜଣେ ବ୍ରିଟେନ ରୋମୀୟ ଧନଶାଳୀ ବ୍ୟକ୍ତିଙ୍କର ପୁତ୍ର ହୋଇ କ୍ରୀତଦାସ ରୂପେ କାମ କରିବା ବହୁତ କଷ୍ଟସାଧ୍ୟ ଓ ଅପମାନଜନକ ଥିଲା । ତାର ମାଲିକର ପଶୁ ସମ୍ପଦର ଦାୟିତ୍ୱ ସେ ନେଇଥିଲେ । ଖରା, ବର୍ଷା, ଶୀତ କାକରରେ, ପାହାଡ ପର୍ବତରେ ଗାଇଗୋରୁଙ୍କୁ ଚରାଇବା, ସେମାନଙ୍କୁ ପାଣିଦେବା ଇତ୍ୟାଦି କାର୍ଯ୍ୟ ସେ କରୁଥିଲେ । ଭୋକ ଉପାସରେ ରହି ନିଜର ସମସ୍ତ ସୁଃଖକୁ ତ୍ୟାଗ କରି ଏହି ସବୁ କାର୍ଯ୍ୟ କରିବା ସହଜ ନ ଥିଲା । ତାଙ୍କୁ କ୍ରୀତଦାସ ରୂପେ ଧରି ନିଆଯିବାରୁ ପାଠପଢ଼ାରୁ ସେ ବଞ୍ଚିତ ହେଲେ । ଏଇଥି ପାଇଁ ସାରା ଜୀବନ ତାଙ୍କୁ ବିଳାପ କରିବାକୁ ପଡିଥିଲା ।

ଏହିପରି ଏକ ପ୍ରତିକୂଳ ଅବସ୍ଥା ଦେଇ ଗତି କରୁଥିବା ସମୟରେ ପ୍ରାର୍ଥନାରେ ସେ ପ୍ରଭୁଙ୍କ ଆଡକୁ ଦୃଷ୍ଟିପାତ କଲେ । ପ୍ରାର୍ଥନାରେ ନିଜ ସମୟକୁ ଉପଯୋଗ କଲେ । ଏପରିକି ରାତ୍ରି ସମୟରେ ସେ ଯେତେବେଳେ ଉଠି ଯାଆନ୍ତି, ପ୍ରଭୁଙ୍କଠାରେ ନିଜର ପ୍ରାର୍ଥନା ଉତ୍ସର୍ଗ କରନ୍ତି । ଅପରିଚିତ ସ୍ଥାନରେ ପୁଣି ବନ୍ଦୀ ହୋଇ କ୍ରୀତଦାସ ରୂପକ ଜୀବନ ଅତିବାହିତ କରିବା ତାଙ୍କ ପାଇଁ ପରେ ଆର୍ଶୀବାଦର ସମୟ ହୋଇଥିଲା ।

୬ ବର୍ଷର କ୍ରୀତଦାସ ଜୀବନ ବିତାଇବା ପରେ ପ୍ରଭୁ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ ଯେ ତାଙ୍କୁ ନିଜ ଘରକୁ ଫେରିଯିବା ପାଇଁ, ଜାହାଜ ପ୍ରସ୍ତୁତ ଅଛି । ଏଣୁ ସେ ନିଜ ମାଲିକ ଠାରୁ ପଳାୟନ କରି ପ୍ରାୟ ୨୦୦ ମାଇଲ ରାସ୍ତା ଅତିକ୍ରମ କରି ସମୁଦ୍ରକୂଳରେ ପହଞ୍ଚିଲେ । ସେଠାରେ ଥିବା ବିଜାତୀୟ ଦସ୍ୟୁମାନଙ୍କ ଯାହାଜରେ ସେ ପ୍ରବେଶ କଲେ । ଯାହାଜରେ ଯାତ୍ରା କରିବା ସମୟରେ ସେ ନିଜେ ପ୍ରାର୍ଥନା କରୁଥାନ୍ତି ଏବଂ ସେଠାରେ ଥିବା ବିଜାତୀୟ ନାବିକ ମାନଙ୍କୁ ପ୍ରାର୍ଥନା ବିଷୟରେ ଶିକ୍ଷା ଦେଉଥାନ୍ତି । ଦିନ ଦିନ ଯାତ୍ରା କରିବା ପରେ ସେମାନଙ୍କ ଲକ୍ଷ୍ୟସ୍ଥଳରେ ସେମାନେ ପହଞ୍ଚିଲେ । କିନ୍ତୁ ସମୁଦ୍ରକୂଳରେ ପହଞ୍ଚିବା ପରେ ପ୍ରାୟ ୨୮ ଦିନ ବିନା ଖାଦ୍ୟରେ, ନିର୍ଜନ ସ୍ଥାନ ଦେଇ ସେମାନଙ୍କୁ ମନୁଷ୍ୟ ବସତି ସ୍ଥାନ ଖୋଜିବାକୁ ପଡିଥିଲା । ସେହି ନାବିକମାନେ ଖାଦ୍ୟ ଅଭାବ ହେବାରୁ ସେମାନଙ୍କ କ୍ଷୁଧାରୁ ମୁକ୍ତି ପାଇବା ପାଇଁ ତାଙ୍କ ଦେବତାଙ୍କୁ ପ୍ରାର୍ଥନା କରିବା ପାଇଁ ପାଟ୍ରିକଙ୍କୁ କହିଲେ । ପାଟ୍ରିକ ସେମାନଙ୍କୁ କହିଲେ, ତୁମ୍ଭେ ଯଦି ସତ୍ୟ ପରମେଶ୍ୱରଙ୍କଠାରେ ବିଶ୍ୱାସ କରି ତାହାଙ୍କୁ ପ୍ରାର୍ଥନା କରିବ ସେ ନିଶ୍ଚୟ ତୁମର ପ୍ରାର୍ଥନା ଶୁଣିବେ । ସେମାନେ ଏକତ୍ର ପ୍ରାର୍ଥନା କରନ୍ତେ ସେହିଦିନ ଆଶ୍ଚର୍ଯ୍ୟଭାବେ ପରମେଶ୍ୱର ସେମାନଙ୍କୁ ବନ୍ୟ ମଧୁ ଦେଲେ ଏବଂ ସେମାନଙ୍କର ଖାଦ୍ୟ ନିମନ୍ତେ ପ୍ରଭୁ ଘୁଷୁରିପଲ ଯୋଗାଇଲେ । ସେମାନେ ମଧ୍ୟ ମନୁଷ୍ୟ ବାସ କରୁଥିବା ସ୍ଥାନରେ ପହଞ୍ଚ ସେଠାରେ ବସତି ସ୍ଥାପନ କଲେ । ଯେଉଁ ସ୍ଥାନରେ ପହଞ୍ଚିଲେ ତାହା ଚଷା ଯାଇଥିଲା । ଏହାପରେ ପୁଣି ଅନେକ ଦିନ ଭ୍ରମଣ କଲାପରେ ପାଟ୍ରିକ ନିଜ ଗୃହରେ ପହଞ୍ଚି ନିଜ ପିତା ଓ ମାତାଙ୍କୁ ଦେଖି ଅତ୍ୟଧିକ ଆନନ୍ଦିତ ହୋଇଥିଲେ ।

ପାଟ୍ରିକ ନିଜ ଗୃହରେ ଥିବା ସମୟରେ ବିଭିନ୍ନ ସ୍ୱପ୍ନ ଓ ଦର୍ଶନ ମାଧ୍ୟମରେ ଆର୍ୟେଲାଣ୍ଡ ଲୋକଙ୍କର ପରିବର୍ତ୍ତନ ନିମନ୍ତେ ପ୍ରଭୁ ତାଙ୍କୁ ଆହ୍ୱାନ କରୁଛନ୍ତି ତାହା

ସେ ଉପଲବ୍ଧ କରି ପାରିଥିଲେ । ପୁଣି ଥରେ ଦୁଇ ମାସ ତାଙ୍କୁ ବନ୍ଦୀ ଭାବରେ ରହିବାକୁ ପଡିଥିଲା । ବିଭିନ୍ନ ପ୍ରକାରର ଘାତ ପ୍ରତିଘାତର ସମ୍ମୁଖିନ ହୋଇ ଆର୍ୟେଲାଣ୍ଡ ଅଧିବାସୀମାନଙ୍କୁ ସୁସମାଚାର ପ୍ରଚାର କରି ସେମାନଙ୍କର ମନ ପରିବର୍ତନ କରିଥିଲେ । ୪୩୦ ମସିହାରେ ସେ ଆର୍ୟେଲାଣ୍ଡ ଛାଡି ଅନ୍ୟତ୍ର ମିଶନ କାର୍ଯ୍ୟ ପାଇଁ ଯାଇଥିଲେ । ପ୍ରଭୁଙ୍କର ସୁସମାଚାର ପ୍ରଚାର କାର୍ଯ୍ୟ ପାଇଁ ସାଧୁ ପାଟ୍ରିକଙ୍କୁ ବିଭିନ୍ନ ପ୍ରକାର ତାଡ଼ନା, ନିନ୍ଦା ସହ୍ୟ କରିବାକୁ ପଡିଥିଲା । ଭୋକ ଉପାସରେ, ବନ୍ଦୀଶାଳାରେ ଓ ନିଜ ଜୀବନରେ ବିପଦ ଥିବା ସତ୍ୱେ ସେ କେବେ ହେଲେ ପଛଘୁଞ୍ଚା ହୋଇନଥିଲେ । ନିଜ ପାପସ୍ୱୀକାର (Confession) ପୁସ୍ତକରେ ସେ ଏହିପରି ଲେଖନ୍ତି, "ପ୍ରଭୁ ମୋତେ ଏତେ ପରିମାଣରେ ଅନୁଗ୍ରହ ଦେଇଛନ୍ତି ମୁଁ ତାହାଙ୍କଠାରେ ଋଣୀ । ମୋ ଦ୍ୱାରା ଯେପରି ଅନେକେ ପ୍ରଭୁଙ୍କ ପାଖକୁ ଫେରି ଆସନ୍ତୁ ଏବଂ ଯେଉଁମାନେ ପ୍ରଭୁଙ୍କୁ ନୂତନ ଭାବେ ଗ୍ରହଣ କରିଛନ୍ତି, ସେମାନଙ୍କ ମଧ୍ୟରୁ ଯେପରି ଅନେକ ଯାଜକମାନେ ଅଭିଷିକ୍ତ ହୋଇ ପାରିବେ, ଏହା ହିଁ ମୋର କାମନା"।

ସାଧୁ ପାଟ୍ରିକ ୪୦ ବର୍ଷ ପର୍ଯ୍ୟନ୍ତ ଆର୍ୟେଲାଣ୍ଡରେ ରହି ତାହାଙ୍କର ପ୍ରଚାର, ଶିକ୍ଷା ଓ ବିଭିନ୍ନ ଆଶ୍ଚର୍ଯ୍ୟକର୍ମ ଦ୍ୱାରା ରାଜା, ରାଜକୁମାର, ରାଜକନ୍ୟା ତଥା ଅନେକ ଲୋକଙ୍କ ମନକୁ ପ୍ରଭୁଙ୍କ ଆଡକୁ ଆଣିପାରିଥିଲେ । ଅନେକ ଅନ୍ଧମାନେ ଦୃଷ୍ଟିଶକ୍ତି ପାଇଥିଲେ, ରୋଗାଗ୍ରସ୍ତ ଲୋକେ ସୁସ୍ଥତା ପାଇଥିଲେ ଏପରିକି ତାଙ୍କ ପ୍ରାର୍ଥନା ମାଧ୍ୟମରେ ନ ଜଣ ମୃତବ୍ୟକ୍ତି ଜୀବନ ପାଇଥିଲେ । ଆରମାଗ ଠାରେ ନିଜର ମୁଖ୍ୟକେନ୍ଦ୍ର ସ୍ଥାପନ କରି ସେ ଅନ୍ୟସ୍ଥାନ ଗୁଡିକୁ ଯାଇ ଧର୍ମ ପ୍ରଚାର କରୁଥିଲେ । ଯାଜକ ଓ ଧର୍ମାଧ୍ୟକ୍ଷମାନଙ୍କୁ ଅଭିଷିକ୍ତ କରୁଥିଲେ । ତାଙ୍କ ଦ୍ୱାରା ସାରା ଆର୍ୟେଲାଣ୍ଡରେ ଲୋକେ ଯୀଶୁଙ୍କୁ ବିଶ୍ୱାସ କଲେ ଏବଂ ସେହିଠାରୁ ଅନ୍ୟସ୍ଥାନ ମାନଙ୍କୁ ମିଶନାରୀ ମାନଙ୍କୁ ପଠାଗଲା । ୪୬୧ ମସିହା ମାର୍ଚ୍ଚ ମାସ ୧୭ ତାରିଖ ଦିନ ୭୧ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ । ତାଙ୍କୁ ଉଲଷ୍ଟେର ରେ କବର ଦିଆଗଲା ।

ଆର୍ୟେଲାଣ୍ଡରେ ପ୍ରବଳ ସାପ ବୃଦ୍ଧି ପାଉଥିଲା ଏବଂ ଅନେକଙ୍କୁ କାମୁଡି ଲୋକମାନଙ୍କର ପ୍ରାଣ ନାଶ କରୁଥାଏ । ଏହି ସମୟରେ ସାଧୁ ପାଟ୍ରିକଙ୍କୁ ଲୋକେ

ଅନୁରୋଧ କଲେ ପ୍ରଭୁଙ୍କଠାରେ ପ୍ରାର୍ଥନା କରିବା ପାଇଁ । ପାତ୍ରିକ ପ୍ରାର୍ଥନା କରନ୍ତେ ସମସ୍ତ ସାପ ଆର୍ୟେଲାଣ୍ଡରୁ ଅଦୃଶ୍ୟ ହୋଇଗଲା । କୁହାଯାଏ ବର୍ତମାନ ମଧ୍ୟ ସେହି ଅଞ୍ଚଳର ଗଛର ବକଳ ଦ୍ୱାରା ଅନେକ ଜିନିଷ ଗୁଡିକର ବିଷାକ୍ତରୁ ରକ୍ଷା କରାଯାଇପାରୁଛି । ବିଜାତୀୟମାନଙ୍କର ବିଶ୍ୱାସକୁ ସର୍ପ ସହିତ ତୁଳନା କରାଯାଏ । ଅର୍ଥାତ୍ ସେମାନଙ୍କର ମନ୍ଦ ଆଚରଣ, ଖରାପ ଜୀବନ ଶୈଳୀ, ଭ୍ରାନ୍ତ ଶିକ୍ଷାରୁ ସାଧୁ ପାତ୍ରିକ ସେମାନଙ୍କୁ ରକ୍ଷା କରି ଖ୍ରୀଷ୍ଟିୟାନ ଯୁଗର ନୂତନତା ଆଣିଦେଇ ପାରିଥିଲେ ।

ସାଧୁ ପାତ୍ରିକ ଆର୍ୟେଲାଣ୍ଡ ବାସୀଙ୍କୁ ତ୍ରିପତ୍ର ଉଦ୍ଭିଦ (Shamrock) ଦ୍ୱାରା ତ୍ରୈକ୍ୟ ପରମେଶ୍ୱରଙ୍କ ତତ୍ୱ ବିଷୟରେ ବୁଝାଇଥିଲେ । ଏହି ସାମ୍ରକ (ତ୍ରିପତ୍ର ଉଦ୍ଭିଦ) ଆର୍ୟେଲାଣ୍ଡ ଦେଶର ଜାତୀୟ ଚିହ୍ନ ଅଟେ ।

ସାଧୁ ପାତ୍ରିକ ଯେତେବେଳେ ପ୍ରଚାର ପାଇଁ ଯାଆନ୍ତି ସେ ନିଜ ହସ୍ତରେ ଗୋଟିଏ ପାଉଁଶିଆ ଯଷ୍ଟି ଧରି ଯାଆନ୍ତି, ଯାହାକୁ ସେ ଚାଲିବା ଯଷ୍ଟି ରୂପେ ବ୍ୟବହାର କରୁଥିଲେ । ଯେତେବେଳେ ସେ ପ୍ରଚାର କରୁଥାନ୍ତି ସେହି ସମୟରେ ଭୂମିକୁ ସେହି ଯଷ୍ଟିରେ ଆଘାତ କରୁଥାନ୍ତି । ସାଧୁ ପାତ୍ରିକ ସେହି ସ୍ଥାନରୁ ବିଦାୟ ନେବା ସମୟରେ ଯେଉଁ ସ୍ଥାନରୁ ସେ ଆଘାତ କରିଥିଲେ ସେହି ସ୍ଥାନରେ ଯଷ୍ଟିର ଚେର ବା ମୂଳ ବୃକ୍ଷ ଆକାର ବଢିଥିଲା ବୋଲି ଲୋକେ ବିଶ୍ୱାସ କରନ୍ତି ।

କୌଣସି ପୂଣ୍ୟପିତାଙ୍କ ଦ୍ୱାରା ଆନୁଷ୍ଠାନିକ ଭାବରେ ପାତ୍ରିକଙ୍କୁ ସାଧୁ ରୂପେ ଘୋଷଣା କରାଯାଇ ନାହିଁ,କିନ୍ତୁ ସବୁ ଖ୍ରୀଷ୍ଟ ମଣ୍ଡଳୀ ତାଙ୍କୁ ସାଧୁ ବୋଲି କହନ୍ତି ।

**ସାଧୁ ପାତ୍ରିକଙ୍କ କେତୋଟି ଉକ୍ତି:**

✸ ସାଧୁ ପାତ୍ରିକଙ୍କ ବିଶ୍ୱାସ ଏବଂ ତାହାଙ୍କ ଭରସା ଯାହା ପ୍ରଭୁଙ୍କଠାରେ ରଖିଥିଲେ ତାହା ସେ ଏକ ପଦ୍ୟ ମାଧ୍ୟମରେ ପ୍ରକାଶ କରନ୍ତି । "ଖ୍ରୀଷ୍ଟ ମୋର ଅନ୍ତରରେ ରୁହ, ଖ୍ରୀଷ୍ଟ ମୋ ପଛରେ ରୁହ, ଖ୍ରୀଷ୍ଟ ମୋ ସମ୍ମୁଖରେ ରୁହ, ଖ୍ରୀଷ୍ଟ ମୋ ପାର୍ଶ୍ୱରେ ରୁହ, ଖ୍ରୀଷ୍ଟ ମୋ ଠାରେ ବିଜୟୀ ହୁଅ, ଖ୍ରୀଷ୍ଟ ମୋତେ ସାନ୍ତ୍ୱନା ଦେଇ ପୁନରୁଦ୍ଧାର କର, ଖ୍ରୀଷ୍ଟ ମୋତେ ତଳରୁ ଉଠାଅ, ଖ୍ରୀଷ୍ଟ ମୋ ଉପରେ ରୁହ, ଖ୍ରୀଷ୍ଟ ମୋତେ ଅନୁସନ୍ଧାନ କର, ଖ୍ରୀଷ୍ଟ ମୋ ବିପଦରେ ରୁହ ଖ୍ରୀଷ୍ଟ ମୋତେ

ପ୍ରେମ କରୁଥିବା ସମସ୍ତଙ୍କ ହୃଦୟରେ ରୁହ, ଖ୍ରୀଷ୍ଟ ମୋର ବନ୍ଧୁ ଓ ଅପରିଚିତ ସମସ୍ତଙ୍କ ମୁଖରେ ପ୍ରକାଶିତ ହୁଅ"।

✸ "ପ୍ରଭୁଙ୍କର ଶକ୍ତି ଆମକୁ ଦିଗ୍‌ଦର୍ଶନ ଦେଉ, ଇଶ୍ୱରଙ୍କ ଜ୍ଞାନ ଆମକୁ ଶିକ୍ଷା ଦେଉ, ପ୍ରଭୁଙ୍କର ହସ୍ତ ଆମକୁ ସୁରକ୍ଷା ଦେଉ, ପ୍ରଭୁଙ୍କର ବାକ୍ୟ ଆମକୁ ପରିଚାଳନା କରୁ, ଆଜି ଓ ସର୍ବଦା ତୁମ୍ଭେ ଆମର ହୋଇ ରୁହ" ।

✸ "ମୋର ପରମେଶ୍ୱରଙ୍କଠାରେ ଏତିକି ପ୍ରାର୍ଥନା କରେ ଯେ ସେ ମୋତେ ଧୈର୍ଯ୍ୟ ଦିଅନ୍ତୁ ଯେପରି ମୁଁ ସାରା ଜୀବନ ମୋର ପ୍ରଭୁଙ୍କ ପାଇଁ ଜଣେ ବିଶ୍ୱସ୍ତ ସାକ୍ଷୀ ହୋଇ ରହି ପାରିବି"।



# ଓସ୍କାର ରୋମେର
# (୧୯୧୭-୧୯୮୦, ମାର୍ଚ୍ଚ ୨୪)

ଓସ୍କାର ଆରନୁଲ୍‌ଫଇ ଗାଲଦାମେଜଙ୍କ ଜନ୍ମ ହୋଇଥିଲା ୧୯୧୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଦକ୍ଷିଣ ଆମେରିକା ଏଲ ସାଲ୍‌ଭାଦରର ସିଉଦାଦ୍ ବାରିଅସଠାରେ । ୧୩ ବର୍ଷ ବୟସରେ ସାନ ମିଗୁଏଲସ୍ଥିତ ମାଇନର ସେମିନାରୀରେ ପ୍ରବେଶ କଲେ ଜଣେ କାଥଲିକ ଯାଜକ ହେବା ନିମନ୍ତେ । ତାଙ୍କ ପିତା ସାନ୍‌ଥୋସ ରୋମେରୋ ଓ ମାତା ଗୁଆଦାଲୁପେଦି ଯେଶୁ ଗାଲ୍‌ଦାମେଜ ଥିଲେ ଧର୍ମ ପରାୟଣ ବ୍ୟକ୍ତି । ଗ୍ରାଜୁଏସନ ଶେଷ କଲା ପରେ ଏଲ୍ ସାଲ୍‌ଭାଦରସ୍ଥିତ ନେସନାଲ ସେମିନାରୀରେ ଯୋଗ ଦେଇ ତାଙ୍କର ଅଧ୍ୟୟନ ଅବ୍ୟାହତ ରଖିଲେ ।

୧୯୪୧ ମସିହାରେ ସେ ଗ୍ରେଗରିଆନ ୟୁନିଭେରସିଟିରୁ ଲାଇସେନସିଏଟ (ସ୍ନାତକ ପୂର୍ବରୁ ଯେଉଁ ଅଧ୍ୟୟନ କରାଯାଏ) ଡିଗ୍ରି ହାସଲ କଲାପରେ ୧୯୪୨ ମସିହା ଏପ୍ରିଲ ମାସ ୪ ତାରିଖ ଦିନ ଯାଜକତା ଅଭିଷେକ ପ୍ରାପ୍ତ କଲେ । ଏହାପରେ ଇଟାଲୀରେ (Ascetical Theology) ସନ୍ନ୍ୟାସବ୍ରତ ଦେବଶାସ୍ତ୍ରରେ ଡକ୍ଟରେଟ ଉପାଧି ଲାଭ କରିଥିଲେ ।

ଯାଜକ ଅଭିଷେକ ପ୍ରାପ୍ତ କଲା ପରେ ଆନାମୋରସ ଧର୍ମାଞ୍ଚଳର ମୁଖ୍ୟ ଯାଜକ ରୂପେ କାର୍ଯ୍ୟ କଲେ । ଏହାପରେ ସାନ୍ ମିଗୁଏଲକୁ ବଦଳି ହୋଇ ସେଠାରେ ପ୍ରାୟ ୨୦ ବର୍ଷ ନିଜର ଦାୟିତ୍ୱ ନେଇ ସେବାକାର୍ଯ୍ୟ କରିଥିଲେ । ସାନ୍ ମିଗୁଏଲଠାରେ ବିଭିନ୍ନ ପ୍ରକାରର ସେବା କାର୍ଯ୍ୟ ଆରମ୍ଭ କରିଥିଲେ ।

ମଦ୍ୟପ ପାନ କରୁଥିବା ବ୍ୟକ୍ତି ମାନଙ୍କ ନିମନ୍ତେ ଗୋଟିଏ ଦଳ ଗଠନ କଲେ ଯାହାକୁ (Alcoholic Anonymous) ନାମ ମଦ୍ୟପ ବିହୀନ ଦଳ ବୋଲି କୁହାଯାଏ । ପ୍ରେରିତିକ ସେବା ସଂଘ ନାମକ ଅନ୍ୟ ଏକ ଦଳ ଗଠନ କରି ସେ ମଣ୍ଡଳୀକୁ ଉଜ୍ଜୀବିତ କରିଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ମହା ଭଜନାଳୟର ନିର୍ମାଣ କାର୍ଯ୍ୟରେ ନିଜର ଶ୍ରମ ଦାନ କରୁଥିଲେ । ଶାନ୍ତିର ରାଣୀ ମାରୀୟାଙ୍କ ପ୍ରତି ଭକ୍ତିଭାବ ବୃଦ୍ଧି କରିବାରେ ତାଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ ।

ଏଲ୍ ସାଲ୍‌ଭାଦରର ବିଭିନ୍ନ ଧର୍ମପ୍ରଦେଶକୁ ନେଇ ଗଠିତ ସେମିନାରୀରେ ରେକ୍ଟର ରୂପେ ସେ ନିଯୁକ୍ତି ପାଇଥିଲେ । ୧୯୬୬ ମସିହାରେ ଏଲ୍ ସାଲ୍‌ଭାଦର ଧର୍ମାଧ୍ୟକ୍ଷ ସମ୍ମିଳନୀର ସେକ୍ରେଟେରୀ ରୂପେ କାର୍ଯ୍ୟ କରିଥିଲେ । ଏହା ବ୍ୟତୀତ ମହା ଧର୍ମପ୍ରଦେଶ ଦ୍ୱାରା ପ୍ରକାଶିତ ଖବର କାଗଜ (Orientacion) ଓରିଏନ୍‌ଟାସିଅନର ସେ ଥିଲେ ନିର୍ଦ୍ଦେଶକ । ସେହି ସମୟରେ ଏହି ପତ୍ରିକାଟି ବିଶେଷ ଭାବରେ ରକ୍ଷଣଶୀଳ (Conservative View) ପ୍ରସଙ୍ଗମାନ ପ୍ରକାଶ କରୁଥାଏ । ୧୯୭୦ ମସିହାରେ ସାନ୍ ସାଲଭାଦରର ସହାୟକ ଧର୍ମାଧ୍ୟକ୍ଷ ରୂପେ ସେ ନିଯୁକ୍ତି ପାଇଥିଲେ ଏବଂ ୧୯୭୪ ମସିହାରେ ସାନ୍ତିଆଗୋ ଦି ମାରିଆ ନାମକ ଏକ ଗରୀବ ଗ୍ରାମାଞ୍ଚଳର ଧର୍ମାଧ୍ୟକ୍ଷ ହୋଇପାରିଥିଲେ । ୧୯୭୭ ମସିହା ଫେବୃୟାରୀ ମାସ ୨୩ ତାରିଖ ଦିନ ସାନ୍ ସାଲ୍‌ଭାଦର ମହା ଧର୍ମପ୍ରଦେଶର ମହା ଧର୍ମାଧ୍ୟକ୍ଷ ରୂପେ ନିଯୁକ୍ତି ପାଇଥିଲେ । ଯଦିଓ ସରକାର ଓସ୍କାର ରୋମେରୋଙ୍କ ମହାଧର୍ମାଧ୍ୟକ୍ଷ ପଦବୀକୁ ସ୍ୱାଗତ କରିଥିଲେ ତଥାପି ଅଧିକାଂଶ ଯାଜକମାନେ ତାଙ୍କ ସପକ୍ଷରେ ନ ଥିଲେ । କାରଣ ସେ ଥିଲେ ଜଣେ ନିଷ୍ଠାପର ପରିବର୍ତ୍ତନ ବିରୋଧି ମତବାଦୀ । ଏଣୁ ସେମାନଙ୍କର ଭୟ ଥିଲା ଯେ ସେ ସ୍ୱାଧିନ ଇଶଶାସ୍ତ୍ର ବିରୋଧି ମତ ପୋଷଣ କରିବେ ଯାହାକି ଗରୀବ ଜନତାଙ୍କ ନ୍ୟାୟ ପାଇବାର ବିପକ୍ଷ ହେବ । ଦିନେ ଅର୍ଥାତ ୧୯୭୭ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଫାଦେର ରୁତିଲଙ୍କୁ ହତ୍ୟା କରାଗଲା । ଯିଏ ଗରୀବମାନଙ୍କ ଉନ୍ନତୀ ନିମନ୍ତେ ସଂଗ୍ରାମ କରି ଅନ୍ୟାୟୀମାନଙ୍କ ଗୁଳିରେ ଶିକାର ହୋଇଥିଲେ । ଏହି ବିଷୟଟି ମହା ଧର୍ମାଧ୍ୟକ୍ଷ ଓସ୍କାରଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ସେ କହିଥିଲେ, "ଯେଉଁ କାର୍ଯ୍ୟ ସେ କରୁଥିଲେ ସେଇଥିପାଇଁ ଯଦିଓ ସେମାନେ ତାଙ୍କୁ ହତ୍ୟା କରିଛନ୍ତି ତେବେ ମୋତେ ମଧ୍ୟ ସେହି ରାସ୍ତା ଦେଇ ଚାଲିବାକୁ ପଡିବ" ।

ସରକାରଙ୍କୁ ସମର୍ଥନ କରୁଥିବା ସୈନ୍ୟଦଳ ଏବଂ ଯେଉଁ ଦଳ ଗୁଡିକ ଅନ୍ୟାୟ କାର୍ଯ୍ୟ ସପକ୍ଷରେ ଯୁକ୍ତି ବାଢୁଥିଲେ, ସେମାନଙ୍କର କାର୍ଯ୍ୟ କଳାପକୁ ସେ ପ୍ରତିରୋଧ କରୁଥିଲେ । ଏଲ୍ ସାଲ୍‌ଭାଦରରେ ଯେଉଁ ଅନ୍ତଯୁଦ୍ଧ ଦୀର୍ଘ ଦିନ ଧରି ଲାଗି ରହିଥିଲା ସେହି ହିଂସାକୁ ଦମନ କରିବାକୁ ଯାଇ ଓସ୍କାର ରୋମେରୋ

ସର୍ବଦା ଗରୀବମାନଙ୍କ ସପକ୍ଷରେ ଲଢେଇ କରୁଥିଲେ । ବିଭିନ୍ନ ରୂପେ ଅନ୍ୟାୟରେ ଅତ୍ୟାଚାରିତ ହେଉଥିବା ଗୋଷ୍ଠୀର ସ୍ୱର ଥିଲେ ଫାଦେର ଓସ୍କାର । ଚର୍ଚ୍ଚ ଦ୍ୱାରା ପ୍ରଚାରିତ ରେଡିଓ ଷ୍ଟେସନ YSAX ଏବଂ ସାପ୍ତାହିକ ଓରିଏନ ତାସିଅନ ପତ୍ରିକା ମାଧ୍ୟମରେ ଗରୀବ ଓ ନିଷ୍ପେସିତ ଲୋକମାନଙ୍କ ପ୍ରତି ଯେଉଁ ଦୁର୍ନୀତି କରାଯାଉଥିଲା ସେହି ନେତା ମାନଙ୍କର ହିଂସାତ୍ମକ କାର୍ଯ୍ୟ କଳାପ ବିରୁଦ୍ଧରେ ସେ ସ୍ୱର ଉତୋଳନ କରିଥିଲେ ।

ଓସ୍କାରଙ୍କ ଜନହିତକର କାର୍ଯ୍ୟ ସାରା ବିଶ୍ୱରେ ପ୍ରସାରିତ ହେବାକୁ ଲାଗିଲା । ୧୯୭୯ ମସିହାରେ ନୋବେଲ ଶାନ୍ତି ପୁରସ୍କାର ପାଇଁ ତାଙ୍କ ନାମ ବିବେଚିତ ହୋଇଥିଲା । ଲୁଭେନ୍‌ର କାଥଲିକ ୟୁନିଭେରସିଟି ଦ୍ୱାରା ତାଙ୍କୁ ସମ୍ମାନୀୟ ଡକ୍ଟରେଟ ଉପାଧି ଦିଆଯାଇଥିଲା ।

୧୯୮୦ ମସିହା ମାର୍ଚ୍ଚ ମାସ ୨୪ ତାରିଖ ଦିନ ଓପୁସଦେଇ ଦ୍ୱାରା ଆୟୋଜିତ କରାଯାଇଥିବା ଯାଜକମାନଙ୍କର ଗୋଟିଏ ଦିନର Recollection ରେ ସେ ଯୋଗ ଦେଇଥିଲେ । ସେହି ଦିନ ସଂଧ୍ୟା ସମୟରେ ହସପିଟାଲର ଚାପେଲ୍‌ରେ ଦିବ୍ୟଯଜ୍ଞ କରୁଥିବା ସମୟରେ ଜଣେ ବନ୍ଧୁକଧାରୀ ନାଲୀ କାର୍‌ରୁ ଓହ୍ଲେଇ ତାଙ୍କୁ ଗୁଳି କରିଥିଲେ । ଗୁଳିଟି ଆର୍ଚ୍ଚବିଶପଙ୍କ ହୃଦୟକୁ ଆଘାତ କରନ୍ତେ ସେ ସେଠାରେ ଟଳି ପଡି ମୃତ୍ୟୁ ବରଣ କଲେ । ସେ ନିଜେ କହିଥିଲେ, "ଏଲ୍ ସାଲ୍‌ଭାଦରର ଉତ୍‌ଥାନ ଓ ପରିତ୍ରାଣ ପାଇଁ ମୋର ଜୀବନ ଉତ୍ସର୍ଗ କରିବା ପାଇଁ ମୁଁ ପ୍ରସ୍ତୁତ" । ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟଙ୍କ ବ୍ୟକ୍ତିଗତ ପ୍ରତିନିଧି କାର୍ଡିନାଲ୍ ଏରନେଷ୍ଟୋ କୋରିପ୍ରିୟୋ ଆହୁମାଦା ଶବ ସତ୍କାର ସମୟରେ ଏହିପରି କହିଥିଲେ, "ରୋମେରୋଙ୍କ ରକ୍ତର ଫଳ ହେବ ଭ୍ରାତୃତ୍ୱ, ଶାନ୍ତି ଓ ପ୍ରେମ" ।

ଜଣେ ଯେଶୁଇଟ୍ ସଂଘର ଫାଦେର ଜନ୍ ଡିଏର କହିଥିଲେ, "ସାଲ୍‌ଭାଦୋର ଇତିହାସରେ ସବୁଠାରୁ ରୋମେରୋଙ୍କ ଶବ ସତ୍କାର ଥିଲା ବିରାଟ ପ୍ରଦର୍ଶନୀ । କିନ୍ତୁ କେତେକ କହନ୍ତି କେବଳ ସାଲ୍‌ଭାଦୋର ନୁହଁ ସାରା ଲାଟିନ୍ ଆମେରିକାର ଇତିହାସରେ ତାହା ଥିଲା ସର୍ବ ବୃହତ ଶବ ସତ୍କାର ପ୍ରଦର୍ଶନୀ" ।

ସାନ୍ ସାଲଭାଦାର ମହାଭଜନାଳୟରେ ତାଙ୍କୁ କବର ଦିଆଗଲା ୧୯୮୦ ମସିହା ମାର୍ଚ୍ଚ ମାସ ୩୦ ତାରିଖ ଦିନ । ଶବ ସତ୍କାର ପାଇଁ ସାରା ବିଶ୍ୱରୁ ପ୍ରାୟ

ଦୁଇ ଲକ୍ଷ ୫୦ ହଜାରରୁ ଉର୍ଦ୍ଧ ଲୋକମାନେ ସମବେତ ହୋଇଥିଲେ । ଶବ ସତ୍କାର ସମୟରେ ସରକାରଙ୍କ ନିରାପତା ବାହିନୀ  ବୋମ୍ ବିସ୍ଫୋରଣ କରିଥିଲେ, ଯେଉଁଥିରେ ପ୍ରାୟ ପଚାଶରୁ ଉର୍ଦ୍ଧ ବିଳାପକାରୀମାନେ ମୃତ୍ୟୁ ବରଣ କରିଥିଲେ । ବର୍ତମାନ ପର୍ଯ୍ୟନ୍ତ ସେହି ବନ୍ଧୁକ ଚାଳନା କରିଥିବା ଲୋକମାନଙ୍କୁ ଧରାଯାଇ ପାରିନାହିଁ ।

ଦ୍ୱିତୀୟ ଭାଟିକାନ ପରେ ଓସ୍କାର ରୋମେରୋ ଏଲ୍ ସାଲ୍ ଭାଦରର ପ୍ରଥମ ଶହୀଦ ରୂପେ ସମ୍ମାନିତ ହୁଅନ୍ତି ।

୧୯୮୩ ମସିହାରେ ପୂଣ୍ୟପିତା ଦ୍ୱିତୀୟ ଜନ୍ ପଲ୍ ପ୍ରଥମ ଥର ଏଲ୍ ସାଲ୍ଭାଦର ପରିଦର୍ଶନ କରିବା ସମୟରେ ରୋମେରୋଙ୍କ ସମାଧିସ୍ଥଳକୁ ଯାଇ ସେଠାରେ ପ୍ରାର୍ଥନା କରିଥିଲେ ଏବଂ ତାଙ୍କୁ ପ୍ରଶଂସା କରି କହିଥିଲେ, "ଜଣେ ଉତ୍ସାହୀ ଓ ସମ୍ମାନସ୍ପଦ ପାଳକ ଯିଏ ଏଲ୍ ସାଲ୍ଭାଦରରେ ହିଂସାକୁ ଦମନ କରିଥିଲେ"। ପୁଣି ସେ ଲୁବୁଲି ପାଳନ ଅବସରରେ ରୋମେରୋଙ୍କୁ "ସୁସମାଚାରର ଜଣେ ମହାନ୍ ସାକ୍ଷୀ" ବୋଲି ପ୍ରଶଂସା କରି କହିଥିଲେ, ।

୨୦୧୦ ମସିହା ଡିସେମ୍ବର ୨୧ ତାରିଖ ଦିନ ଜାତି ସଂଘ ରୋମେରୋଙ୍କ ଶହୀଦ ଦିବସ ମାର୍ଚ୍ଚ ୨୪ ତାରିଖକୁ ଆନ୍ତର୍ଜାତିକ ସତ୍ୟ ସମ୍ବନ୍ଧରେ ଜାଣିବା ଅଧିକାର ଦିବସ ରୂପେ ଘୋଷଣା କଲା । ୨୦୧୫ ମସିହା ମଇ ମାସ ୨୩ ତାରିଖ ଦିନ ପୂଣ୍ୟପିତା ଫ୍ରାନ୍ସିସ ରୋମେରୋଙ୍କୁ 'ଧନ୍ୟ' ବୋଲି ଘୋଷଣା କଲେ । ଏହି ଅବସରରେ ତାଙ୍କ ସମ୍ବନ୍ଧରେ ସେ କହିଥିଲେ, "ସେ ହେଉଛନ୍ତି ସେହି ସ୍ୱର ଯାହା ଆଜି ମଧ୍ୟ ପ୍ରତିଧ୍ୱନିତ ହୁଏ"। ୨୦୧୮ ମସିହା ଅକ୍ଟୋବର ୧୪ ତାରିଖ ଦିନ ପୂଣ୍ୟପିତା ଫ୍ରାନ୍ସିସ ତାଙ୍କୁ ରୋମରେ 'ସାଧୁ' ରୂପେ ଘୋଷଣା କଲେ ।

**ସାଧୁ ଓସ୍କାର ରୋମେରଙ୍କ କେତୋଟି ଉକ୍ତି:**

✸ "ସମସ୍ୟା ଓ ବିପଦକୁ ଯଦି ମଣ୍ଡଳୀ ଉତେଜିତ କରେ ନାହିଁ, ସୁସମାଚାର ଯଦି ଅସ୍ଥିର ରହେ ନାହିଁ, ପ୍ରଭୁଙ୍କର ବାକ୍ୟ ଯଦି ଚର୍ମ ଭିତରେ ପ୍ରବେଶ କରେ ନାହିଁ, ପ୍ରଭୁଙ୍କର ବାକ୍ୟ ଯଦି ସମାଜର ବାସ୍ତବ ରୂପ ବା ପାପକୁ ସ୍ପର୍ଶ କରେ ନାହିଁ, ତେବେ ତାହା କି ପ୍ରକାର ସୁସମାଚାର ଅଟେ" ।

✸ "ମନୁଷ୍ୟ ଓ ପରମେଶ୍ୱରଙ୍କ ପ୍ରତିମୂର୍ତ୍ତୀ ମଧ୍ୟରେ କୌଣସି ବିପରୀତ ବା ପ୍ରଭେଦ ନୁହେଁ । ଯଦି କେହି ମନୁଷ୍ୟକୁ ଅତ୍ୟାଚାର କରେ, ଅପମାନ ଦିଏ, ପୁଣି କ୍ରୋଧ କରେ, ସେ ପରମେଶ୍ୱରଙ୍କ ପ୍ରତିମୂର୍ତ୍ତୀକୁ କହି ତାହା କରେ କାରଣ ମନୁଷ୍ୟ ଓ ପରମେଶ୍ୱରଙ୍କ ପ୍ରତିମୂର୍ତ୍ତୀ ମଧ୍ୟରେ କୌଣସି ପ୍ରଭେଦ ନୁହେଁ" ।

✸ "ପ୍ରେମ ବିଷୟରେ ପ୍ରଚାର କରିବା ପାଇଁ କେବେ କ୍ଳାନ୍ତ ହୁଅ ନାହିଁ; ପୃଥିବୀକୁ ଜୟ କରିବା ପାଇଁ ତାହା ହିଁ ଏକ ଶକ୍ତି" ।

✸ "ପୁନରୁତ୍ଥାନ ବିନା ମୁଁ ମୃତ୍ୟୁକୁ ବିଶ୍ୱାସ କରେ ନାହି । ଯଦି ସେମାନେ ମୋତେ ହତ୍ୟା କରନ୍ତି, ଏଲ୍‌ସାଲ୍‌ଭାଦର ଲୋକଙ୍କ ମଧ୍ୟରେ ମୁଁ ପୁନର୍ବାର ଉଠିବି" ।



# ଲୁର୍ଦ୍ଦୁ ସାଧ୍ୱୀ ବେର୍ଣ୍ଣାଦିତା

## (୧୮୪୪-୧୮୭୯, ଏପ୍ରିଲ- ୧୬)

୧୮୪୪ ମସିହା ଜାନୁୟାରୀ ମାସ ୭ ତାରିଖରେ ଫ୍ରାନ୍ସ ନଗରୀରେ ବେର୍ଣ୍ଣାଦିତା ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଫ୍ରାନକୋଇସ ସୁବିରସ ଜଣେ କଳ ମାଲିକ ଥିଲେ ଓ ମାତା ଲୁୟିସାଙ୍କ  କାର୍ଯ୍ୟ ଥିଲା ଲୋକଙ୍କ ପୋଷାକ ସଫା କରିବା । ସେମାନଙ୍କର ୫ଟି ସନ୍ତାନ ମଧ୍ୟରୁ ବେର୍ଣ୍ଣାଦିତା ଥିଲେ ପ୍ରଥମ । ତାଙ୍କ ପରିବାର ବହୁତ ଗରୀବ ଥିଲା । ଆସ୍ମା ରୋଗରେ ବେର୍ଣ୍ଣାଦିତା ବହୁତ କଷ୍ଟ ପାଉଥିଲେ । ବେର୍ଣ୍ଣାଦିତାଙ୍କୁ ୧୪ ବର୍ଷ ହେବା ସମୟରେ ସେ ୮ ବର୍ଷର ପିଲା ପରି ଦେଖାଯାଉଥିଲେ । ତାରି ବୟସର ପିଲାମାନେ ଲେଖା ପଢ଼ା କରୁଥିଲେ କିନ୍ତୁ ବେର୍ଣ୍ଣାଦିତା କିଛି କରିପାରି ନ ଥିଲେ । ସାଙ୍ଗମାନେ ଦିବ୍ୟ ପ୍ରସାଦ ସଂସ୍କାର ଗ୍ରହଣ କରିଥିଲେ କିନ୍ତୁ ସେ ଗ୍ରହଣ କରି ନ ଥିଲେ । ପାଠ ପଢ଼ି ଦିବ୍ୟ ପ୍ରସାଦ ଗ୍ରହଣ କରିବାର ଯଦିଓ ତାର ଗଭୀର ଇଛା ଥିଲା ତଥାପି ସ୍ୱାସ୍ଥ୍ୟ ଠିକ୍ ନ ଥିବାରୁ ସେ କିଛି କରି ପାରି ନଥିଲେ ।

୧୮୫୮ ମସିହା ଫେବୃୟାରୀ ମାସ ୧୧ ତାରିଖ ଦିନର ଘଟଣା । ରାତି ସାରା ଝଡ଼ ତୋଫାନ ହୋଇ ଦିନ ତମାମ ପାଗଟି ଭଲ ନ ଥିଲା । ଜାଳେଣୀ କାଠ ସଂଗ୍ରହ କରିବା ପାଇଁ ଛୋଟ ଭଉଣୀ ଟନିଥି ଓ ତାରି ସାଙ୍ଗ ସହିତ ନିକଟତର ଜଙ୍ଗଲକୁ ଯାଇଥିଲେ । ଯେଉଁ ରାସ୍ତାରେ ସେମାନେ ଯାଉଥିଲେ ତାହା ସଂକୀର୍ଣ୍ଣ ଥିଲା ଏବଂ ସେହି ରାସ୍ତାଟି ସିଧା ପାହାଡ଼ ଦେଇ ଗୁମ୍ଫା ଥିବା ସ୍ଥାନଟିକୁ ପହଞ୍ଚୁଥିଲା । ସେହି ଗୁମ୍ଫା ସମ୍ମୁଖରେ ଯେଉଁ ଛୋଟ ନଦୀଟି ବହୁଥିଲା ତାକୁ ଗାଭେ ନଦୀ କୁହାଯାଏ । ନଦୀର ଅପର ପାର୍ଶ୍ୱରେ ଅନେକ ଗୁଡିଏ ଛୋଟ ବଡ଼ ପଥର ଗୁହାଗୁଡିକ ଥିଲା । ଲୁର୍ଦ୍ଦୁ ନଗରୀର ଲୋକମାନେ ସେହି ପର୍ବତରେ ଥିବା ଗୁମ୍ଫା ଗୁଡିକୁ ଦେଖି ଭୟ କରୁଥିଲେ । ଝଡ଼ ତୋଫାନ ହେଉଥିବା ଯୋଗୁଁ ଟନିଥି ଓ ତାରି ସାଙ୍ଗ ନିଜ ନିଜର ଯୋତା ବାହାର କରି ଆଗେ ନଦୀ ପାର ହେଲେ ।

ବେର୍ଣ୍ଣାଦିତା ପଛରେ ପଡ଼ିଗଲା । ଆସ୍ତେ ଆସ୍ତେ ନିଜର ଯୋତା ଖୋଲି ନଦୀ ପାରି ହେବା ସମୟରେ ହଠାତ୍ ଏକ ଶବ୍ଦ ଦ୍ୱାରା ସେ ଚମକି ପଡିଲେ । ସେହି ସ୍ଥାନର ଚତୁର୍ଦ୍ଦିଗରେ ସେ ଚାହିଁ ରହିଲେ କିନ୍ତୁ କିଛି ଜାଣି ପାରି ନ ଥିଲେ ।

ସେହି ଶବ୍ଦଟି ତାରି ସମ୍ମୁଖରେ ଥିବା ଗୋଟିଏ ଗୁମ୍ଫାରୁ ଆସୁଥିବାର ସେ ଅନୁଭବ କଲେ । ଗୋଲାପ ଫୁଲର ବୁଦା ଦ୍ୱାରା ଗୁମ୍ଫାର ପ୍ରବେଶ ଦ୍ୱାର ଢାଙ୍କି ହୋଇଥିଲା ଏବଂ ସେହି ବୁଦାର ଶୁଖିଲା ପତ୍ର ଓ ଶାଖା ଗୁଡିକ ଆଗକୁ ଓ ପଛକୁ ପବନ ଦ୍ୱାରା ହଲୁଥିଲା । ସେଥିରୁ ପୁଣି ଗୋଟିଏ ଉଜ୍ଜଳ ଆଲୋକ ଦୃଶ୍ୟମାନ ହେଲା ଓ ଜଣେ ଅପୂର୍ବ ସୁନ୍ଦରୀ ଯୁବତୀ ମହିଳାଙ୍କ ଛବି ସେ ଦେଖିବାକୁ ପାଇଲେ । ସେହି ମହିଳା ଜଣକ ଶୁଭ୍ର ବସ୍ତ୍ର ପରିଧାନ କରିଥିଲେ ଏବଂ ତାଙ୍କ ଅଣ୍ଟାରେ ନୀଳ ରଙ୍ଗର ଏକ ପୋଷାକ ବେଲ୍ଟ ପରି ଭିଡ଼ା ହୋଇଥିଲା । ତାଙ୍କର ଦୁଇଟି ଖାଲି ପାଦ ଉପରେ ହଳଦିଆ ରଙ୍ଗର ଗୋଲାପ ଫୁଲ ଶୋଭା ପାଉଥିଲା । ବେର୍ଣ୍ଣାଦିତା ସେହି ଭଦ୍ର ମହିଳା ଜଣକଙ୍କୁ ଅପଲକ ନୟନରେ ଚାହିଁ ରହିଥାନ୍ତି କିନ୍ତୁ ସେହି ମହିଳା ଜଣକ ତାଙ୍କୁ କିଛି କହିଲେ ନାହିଁ, କେବଳ ସ୍ମିତ ହସରେ ଚାହିଁ ରହିଲେ । ହଠାତ୍ ବେର୍ଣ୍ଣାଦିତା ଜାନୁପାତି ନିଜ ମୁଣିରେ ଧରିଥିବା ମାଳାଜପଟି ବାହାର କରି ପ୍ରାର୍ଥନା କରିବାକୁ ଲାଗିଲେ । ଭଦ୍ର ମହିଳା ଜଣକ ପୂନର୍ବାର ସ୍ମିତ ହସରେ ନିଜର ମାଳାଜପଟି ବାହାର କରି ବେର୍ଣ୍ଣାଦିତାଙ୍କୁ ନଦୀ ପାର ହୋଇ ତାଙ୍କ ନିକଟକୁ ଆସିବା ପାଇଁ ଠାର ଦେଲେ । ଏହାର କିଛି ମୁହୁର୍ତ୍ତପରେ ସେଠାରୁ ସେ ଅଦୃଶ୍ୟ ହୋଇଗଲେ, ବେର୍ଣ୍ଣାଦିତା କିନ୍ତୁ ସେଠାରୁ ଘୁଞ୍ଚି ପାରିଲେ ନାହିଁ । କିଛି ସମୟ ସବୁକିଛି ସ୍ତବ୍ଧ ହୋଇଗଲା । ପବନ ସ୍ଥିର ହେଲା । ଯେଉଁ ସ୍ଥାନରେ ବେର୍ଣ୍ଣାଦିତା ଦର୍ଶନ ପାଇଥିଲେ ସେହି ସ୍ଥାନରେ ହିଁ ତାଙ୍କ ଭଉଣୀ ତାଙ୍କୁ ଆଣ୍ଠୁପାତି ରହିଥିବାର ଦେଖିବାକୁ ପାଇଲେ । ଆସ୍ତେ ଆସ୍ତେ ବେର୍ଣ୍ଣାଦିତା ଠିଆ ହୋଇ ନିଜର ପୋଷାକ ଧରି କଷ୍ଟରେ ନଦୀ ପାର ହୋଇ ଘରକୁ ଫେରିଲା । ନୀରବରେ ସଂଗ୍ରହ କରିଥିବା ଜାଳେଣୀ କାଠ ଧରି ତୁହାକୁ ତୁହା ସେହି ଗୁମ୍ଫା ଆଡକୁ ଦୃଷ୍ଟିପାତ କରି ସେ ଘରକୁ ଫେରିଲେ । ବେର୍ଣ୍ଣାଦିତାଙ୍କ ଦୁଇ ଜଣ ସାଙ୍ଗ ତାଙ୍କ ଅସ୍ୱାଭାବିକ ମୁଖକୁ ଦେଖି ଦ୍ୱନ୍ଦରେ ପଡିଲେ । ଯେଉଁ ଦର୍ଶନ ସେ ପାଇଥିଲେ ତାହା ସେମାନଙ୍କୁ ଜଣାଇଥିଲେ କିନ୍ତୁ ତାଙ୍କ ଭଉଣୀ ଟନିଥି ଓ ତାରି ସାଙ୍ଗ ସେହି କଥାକୁ ବିଶ୍ୱାସ କଲେ ନାହିଁ, ଥଟାରେ ପରିହାସ କରି ହସିଲେ ।

ତାଙ୍କ ମାଁ ପିଲାମାନଙ୍କ ଅପେକ୍ଷାରେ ରହିଥାନ୍ତି । ସେମାନେ ଫେରିବାର ଡେରି ହେବାରୁ ସେ ବିଚଳିତ ହେଲେ । ଗୁମ୍ଫାରେ ବେର୍ଣ୍ଣାଦିତା ଯେଉଁ ଦର୍ଶନ ପାଇଲେ

ତାହା ମାଁଙ୍କୁ ଜଣାନ୍ତେ ସେ ଭୀଷଣ ରାଗି ଗଲେ ଏବଂ ତାହାଙ୍କୁ ଗାଳି କରିବାକୁ ଲାଗିଲେ । ବେର୍ଣ୍ଣାଦିତା କିନ୍ତୁ ଖୁସୀ ରହୁଥିଲେ କାରଣ ତାର ମନ ଓ ନୟନ ସର୍ବଦା ଦର୍ଶନ ପାଇଥିବା ସେହି ମହିଳାଙ୍କ ପ୍ରତି ଥିଲା । ତାଙ୍କ ଭାବନାରେ ରହି ଦିନ ସାରା ସେ ସମୟ ବିତାଉଥିଲେ । ରବିବାର ଦିନ ପୁଣି ଥରେ ସେହି ଗୁମ୍ଫାକୁ ଯିବା ପାଇଁ ତାଙ୍କ ମାଁଙ୍କୁ ଅନୁମତି ମାଗିଲେ ବହୁତ ଅନୁରୋଧ କରିବା ପରେ ତାଙ୍କ ମାଁ ଅନୁମତି ଦେଲେ ।

ବେର୍ଣ୍ଣାଦିତା କାହାକୁ ଏହି ବିଷୟ ଜଣାଇ ନଥିଲେ କିନ୍ତୁ ତାଙ୍କ ଭଉଣୀ ଟନିଥି କେତେ ଜଣଙ୍କୁ ତାହା କହିବାକୁ ଲାଗିଲେ । ବେର୍ଣ୍ଣାଦିତା ସେହି ଗୁମ୍ଫାକୁ ଯିବାର ଜାଣି ଅନେକ ପିଲାମାନେ ତାର ଅନୁସରଣ କଲେ । କିନ୍ତୁ ବେର୍ଣ୍ଣାଦିତା କାହାକୁ ନ ଅନାଇ ଆଗକୁ ବଢ଼ି ନଦୀ ପାର ହୋଇ ଯେଉଁ ସ୍ଥାନରେ ଦର୍ଶନ ପାଇଥିଲେ ସେହି ସ୍ଥାନରେ ଆଣ୍ଠୁପାତି ମାଳାଜପ ଆରମ୍ଭ କଲେ । ପ୍ରଥମେ ସେ କିଛି ଜାଣି ପାରିଲେ ନାହିଁ, କିନ୍ତୁ ଆସ୍ତେ ଆସ୍ତେ ଗୋଟିଏ ଉଜ୍ଜଳ ଆଲୋକ ଦେଖାଗଲା ଏବଂ ସେହି ଭଦ୍ର ମହିଳା ଆସି ସେହିଠାରେ ଉପସ୍ଥିତ ହେଲେ । ସେହି ସୁନ୍ଦରୀ ମହିଳାଙ୍କୁ ଦେଖି ବେର୍ଣ୍ଣାଦିତାଙ୍କ ମୁଖ ଆଲୋକିତ ହେଲା ଓ ସେ ଚିତ୍କାର କରି କହିବାକୁ ଲାଗିଲା 'ଏ ହେଉଛନ୍ତି ସେହି ମହିଳା' । ବେର୍ଣ୍ଣାଦିତାଙ୍କ ବିନା ଅନ୍ୟ କେହି ସେହି ଭଦ୍ର ମହିଳାଙ୍କୁ ଦେଖିପାରି ନ ଥିଲେ । ଟନିଥିଙ୍କ ସମେତ ଯେଉଁ ପିଲାମାନେ ସେଠାକୁ ଯାଇଥିଲେ ସେମାନେ ସମସ୍ତେ ବେର୍ଣ୍ଣାଦିତାଙ୍କୁ ନିରୀକ୍ଷଣ କରୁଥିଲେ । ବେର୍ଣ୍ଣାଦିତା ଆଣ୍ଠୁପାତି ଥିବା ସମୟରେ ତାଙ୍କର ପାଟି କାହା ସହିତ କଥା ହେଲା ଭଳି ଜଣା ପଡୁଥାଏ ଓ ତାଙ୍କର ମୁଖ ଆନନ୍ଦରେ ଭରି ଯାଇଥାଏ । ତାଙ୍କୁ ନିରୀକ୍ଷଣ କରୁଥିବା ପିଲାମାନେ ବେର୍ଣ୍ଣାଦିତାଙ୍କୁ ନିଜ ଆଡକୁ ଟାଣିବାକୁ ଚେଷ୍ଟା କଲେ ମଧ୍ୟ ତାଙ୍କୁ ଘୁଞ୍ଚାଇ ପାରୁ ନ ଥିଲେ । ତାଙ୍କର ଆଚାର ବ୍ୟବହାର ଦେଖି ସେମାନେ ଭୟ କଲେ ଓ ଦୌଡି ଯାଇ ତାଙ୍କ ମାଁଙ୍କୁ ଡାକିଲେ । କେତେଜଣ ପୁଣି ନିକଟରେ ଥିବା ମିଲରେ କାର୍ଯ୍ୟବ୍ୟସ୍ତ ଥିବା ତାଙ୍କ ପିତାଙ୍କୁ ଏହି ଘଟଣା ଜଣା କରିବା ପାଇଁ ଦୌଡି ଗଲେ । କଳ ମାଲିକର ପୁଅ ବେର୍ଣ୍ଣାଦିତାଙ୍କୁ ଭଲ ଭାବରେ ଜାଣିଥିଲେ । ଏଣୁ ସେ ଦୌଡି ଯାଇ ବେର୍ଣ୍ଣାଦିତାଙ୍କୁ ଆଣ୍ଠୁପାତି ନୀରବ ହୋଇ ରହିଥିବାର ଦେଖିବାକୁ ପାଇଲେ । ବେର୍ଣ୍ଣାଦିତାଙ୍କ ଚକ୍ଷୁ ସେହି ଭଦ୍ର ମହିଳାଙ୍କ ଉପରେ ସ୍ଥିର ହୋଇ ରହିବାର

ସେ ଦେଖିବାକୁ ପାଇଲେ । କିନ୍ତୁ ସେହି ଭଦ୍ର ମହିଳାଙ୍କୁ କେହି ଦେଖି ପାରୁ ନ ଥିଲେ । କଳ ମାଲିକର ପୁଅ ସେହି ମିଲ୍ ପାଖକୁ ତାଙ୍କ ମାଁଙ୍କ ସହିତ ଯିବା ପାଇଁ କହିଲା କିନ୍ତୁ ତାଙ୍କର କଥା ପ୍ରତି ସେ କୌଣସି ଧ୍ୟାନ ଦେଲେ ନାହିଁ । ସେହି ବାଳକ ଏବଂ ବେର୍ଣ୍ଣାଦିତାଙ୍କ ମାଁ ଝିଅଟିକୁ ଘରକୁ ଆଣି ରୋଷେଇ ଘରେ ଥିବା ଗୋଟିଏ ଚୌକିରେ ବସାଇଲେ । ସେହି ସମୟରେ ବେର୍ଣ୍ଣାଦିତା ଲୁହ ଝରାଇ କାନ୍ଦିବାକୁ ଲାଗିଲେ ଏବଂ ସେହି ସୁନ୍ଦରୀ ଭଦ୍ର ମହିଳାଙ୍କୁ ଦେଖିଥିବା ବିଷୟ ସେ ବର୍ଣ୍ଣନା କରିବାକୁ ଲାଗିଲା । ବେର୍ଣ୍ଣାଦିତାଙ୍କ ମାଁ ମାଡାମେ ସୁବିରିଉସ ରାଗିଯାଇ ତାଙ୍କୁ ପୁଣି ଖଟିଆରେ ଶୁଆଇବାକୁ ଚେଷ୍ଟା କଲେ । ସେହି ସମୟରେ ଏହି ଖବରଟି ଚାରିଆଡେ ବିସ୍ତାର ହେବାକୁ ଲାଗିଲା । ବେର୍ଣ୍ଣାଦିତାଙ୍କ ବିବରଣୀ ଶୁଣି ଲୋକେ ଆଶ୍ଚର୍ଯ୍ୟ ହେବାକୁ ଲାଗିଲେ ଓ ତାହାର ଅର୍ଥ କଣ ହୋଇପାରେ ବୋଲି ପରସ୍ପର କୁହାକୁହି ହେବାକୁ ଲାଗିଲେ । ତାଙ୍କ ପିତାମାତା ଏହି ବିଷୟ ପୁଣି କାହାରିକୁ ନ ଜଣାଇବା ପାଇଁ ଏବଂ ସେହି ଗୁମ୍ଫାକୁ ଯିବା ପାଇଁ ବାରଣ କଲେ । ତାଙ୍କ ପିତା ଓ ମାତାଙ୍କ ଆଦେଶ ବାଧ୍ୟ ହୋଇ ମାନିବାକୁ ପଡିଲା ।

ବେର୍ଣ୍ଣାଦିତାଙ୍କ ପଡୋଶୀ ମାଁ ମିଲେଟ ଥିଲେ ଜଣେ ଧନୀ ଶ୍ରେଣୀର ବିଧବା । ବେର୍ଣ୍ଣାଦିତାଙ୍କୁ ସେହି ଗୁମ୍ଫାରେ କଣ ସବୁ ଘଟିଥିଲା ସେହି ବିଷୟରେ ଜାଣିବା ପାଇଁ ମିଲେଟ ବେର୍ଣ୍ଣାଦିତାଙ୍କୁ ନିଜ ଘରକୁ ଡାକି ପଚାରିବା ପାଇଁ ଚାହିଁଲେ । କିନ୍ତୁ ବେର୍ଣ୍ଣଦିତା ସିଧା ସଳଖ ଗୁମ୍ଫା ନିକଟକୁ ଦୌଡି ଯାଇ ଆଣ୍ଠୁପାତି ସେହି ଭଦ୍ର ମହିଳାଙ୍କୁ ଚାହିଁ ବହୁତ ସମୟ ଧରି କିଛି କଥା କହିଲା ପରି ଜଣା ପଡୁଥାଏ । ବର୍ତମାନ ସେହି ଭଦ୍ର ମହିଳା ଯାହା କହୁଥିଲେ ତାହା ଅତି ପ୍ରାଞ୍ଜଳ ଓ ସ୍ପଷ୍ଟ ଥିଲା । ସେ କହିଲେ, ବେର୍ଣ୍ଣଦିତା ବର୍ତମାନ ତୁମେ ଲୁର୍ଦ୍ଦର ଯାଜକଙ୍କ ନିକଟକୁ ଯାଇ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ଗୋଟିଏ ଦେବାଳୟ ନିର୍ମାଣ କରିବା ପାଇଁ କୁହ, ସେ ପୁଣି ଆଦେଶ ଦେଲେ ଯେ ସେହି ଗୁମ୍ଫାକୁ ପୁଣି ୧୫ ଥର ତାଙ୍କୁ ଦର୍ଶନ କରିବା ପାଇଁ ସେ ଯିବେ । ସେ ପୁଣି ବେର୍ଣ୍ଣଦିତାଙ୍କୁ କହିଲେ, ତୁମଙ୍କୁ ଏହି ଜଗତରେ ଆନନ୍ଦ ଦେବା ପାଇଁ ମୁଁ ପ୍ରତିଶ୍ରୁତି ଦେଉନାହିଁ କିନ୍ତୁ ସେହି ଆନନ୍ଦ ସେ ପାଇବେ ଆଗାମୀ ଜଗତରେ । ଭଦ୍ର ମହିଳା ଜଣକ ଏହି ସବୁ କହି ଅଦୃଶ୍ୟ ହୋଇଗଲେ ପୁଣି ବେର୍ଣ୍ଣାଦିତା ସେଠାରୁ ଉଠି ପ୍ରସ୍ଥାନ କଲେ ।

ସେହି ଧନୀ ବିଧବା ଜଣକ ଉତ୍କଣ୍ଠାର ସହିତ ଯାହା ସବୁ ଘଟିଛି ତାହା ଜାଣିବା ପାଇଁ ବେର୍ଣ୍ଣାଦିତାଙ୍କୁ ପଚାରୁଥାନ୍ତି । ତାଙ୍କ ମାଁ ଜାଣିଲେ ଯେ ସେହି ଭଦ୍ର ମହିଳା ତାଙ୍କୁ ସେହି ସ୍ଥାନକୁ ଯିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ଏଣୁ ଯେତେଥର ତାଙ୍କୁ ସେଠାକୁ ନ ଯିବା ପାଇଁ କହିଲେ ମଧ୍ୟ କେମିତି ବା ସେ ସେହି ଭଦ୍ର ମହିଳାଙ୍କ ନିକଟକୁ ନ ଯିବ । ଯିଏ ଯାହା କହିଲେ ମଧ୍ୟ କେହି ମଧ୍ୟ ତାଙ୍କୁ ଅଟକାଇ ପାରୁ ନ ଥିଲେ । ରବିବାର ଦିନ ପୁଣି ସେହି ସ୍ଥାନରେ ପହଞ୍ଚି ଆଣ୍ଠୁପାତି ପ୍ରାର୍ଥନା କରିବାର ଲୋକେ ତାଙ୍କୁ ଦେଖିବାକୁ ପାଇଲେ । ଯେଉଁମାନେ ସେହି ସ୍ଥାନରେ ଥିଲେ ସେମାନେ ବେର୍ଣ୍ଣାଦିତାଙ୍କୁ 'କାହା ସହିତ କଥୋପକଥନ ହେଉଛନ୍ତି ବୋଲି ପଚାରିଥିଲେ' । ସେ କିନ୍ତୁ ଏତିକି କହିଥିଲେ ଯେ ସେ ଜଣେ ନାରୀଙ୍କୁ ଦର୍ଶନ କରିଛନ୍ତି ଓ ସେ ସମସ୍ତ ପାପୀ ମାନଙ୍କ ନିମନ୍ତେ ପ୍ରାର୍ଥନା କରିବା ପାଇଁ କହିଛନ୍ତି ।

ବେର୍ଣ୍ଣଦିତାଙ୍କ ଏହି ଘଟଣା ଚାରିଆଡେ ପ୍ରସାର ହେବାକୁ ଲାଗିଲା । ଜନତାଙ୍କ ମଧ୍ୟରେ କେବଳ ସେହି ବିଷୟ ଆଲୋଚନା ହେବା ଶୁଣି ସେଠିକାର ପୋଲିସ ବେର୍ଣ୍ଣାଦିତାଙ୍କୁ ଡକାଇ ଧମକ ଦେଇ ସେହି ଗୁମ୍ଫାକୁ ନ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ପରବର୍ତ୍ତୀ ଦିନ ପୁଣି ସ୍କୁଲ ଯିବା ପଥରେ ସେହି ଗୁମ୍ଫା ଆଡକୁ ସେ ଯାଇଥିଲେ । ତାଙ୍କ ପିତାମାତା ବେର୍ଣ୍ଣଦିତାଙ୍କ ସହିତ କଳହ କରିବା ପାଇଁ ଚାହିଁଲେ ନାହିଁ । ତା ରାସ୍ତାରେ ସେ ଯାଉ କହି ଚୁପ୍ ହୋଇ ରହିଲେ ।

ଫେବୃୟାରୀ ମାସ ୨୮ ତାରିଖ ପର୍ଯ୍ୟନ୍ତ ସେହି ଗୁମ୍ଫାକୁ ବେର୍ଣ୍ଣଦିତା ପ୍ରତିଦିନ ଯାଉଥିଲେ । ଆଣ୍ଠୁପାତି ପ୍ରାର୍ଥନା କରିବା ପରେ ସେଠାରୁ ଉଠି ସେହି ଗୁମ୍ଫା ଭିତରକୁ ପ୍ରବେଶ କରୁଥାନ୍ତି ପୁଣି ପଛକୁ ହଟି କାହା ସହିତ କଥା ହେଲା ଭଳି ଚାହାଣୀ ଦେଖାଉଥାନ୍ତି । କ୍ରୁଶ ଚିହ୍ନ କରି ନିଜ ଅଙ୍ଗୁଳିରେ ପାଣି ବାହାରିବା ପର୍ଯ୍ୟନ୍ତ ଭୂମିରେ ଖୋଳିବାକୁ ଲାଗିଲେ । କିଛି ସମୟ ପରେ ପ୍ରଥମେ ଗୋଳିଆ ପାଣି ବାହାରିଲା । ନିଜ ପାପୁଲିରେ ସେହି ପାଣି ନେଇ ସେ ପିଇବାକୁ ଆରମ୍ଭ କଲା ଏବଂ ସେହି ଗୁଳିଆ ପାଣି ଦ୍ୱାରା ନିଜ ମୁହଁକୁ ଧୋଇଲା । ସେହି ଝରଣା ନିକଟରେ ଥିବା ଘାସ ନେଇ ସେ ତାହାକୁ ଖାଇଲା । ସେ ଏହିସବୁ କରୁଥାନ୍ତି କିନ୍ତୁ ତାରି ଦୃଷ୍ଟି ଥିଲା ସେହି ଗୁମ୍ଫା ଆଡକୁ । ଯାହା କଲେ ମଧ୍ୟ ତାରି ମନ ପ୍ରାଣ ସେହି ଭଦ୍ର ମହିଳାଙ୍କ ପ୍ରତି ହିଁ ଥିବାର ଜଣା ପଡୁଥିଲା । ଯେଉଁ ଛୋଟ ଗର୍ତ୍ତ ନିଜ ହାତରେ ଖୋଳିଥିଲେ ତାହା

ଧିରେ ଧିରେ ଏକ ବଡ ଝରଣା ହୋଇଗଲା । ଏହି ଘଟଣା ପୂର୍ବରୁ କେହି ହେଲେ ସେହି ଝରଣା ପ୍ରତି ଦୃଷ୍ଟି ଦେଇ ନ ଥିଲେ । ଆସ୍ତେ ଆସ୍ତେ ସେହି ଝରଣାର ଅଲୌକିକ କର୍ମ ଚାରିଆଡେ ବିସ୍ତାର ହେବାକୁ ଲାଗିଲା । ଜଣେ ଅନ୍ଧ ବ୍ୟକ୍ତି ସେହି ଜଳରେ ମୁହଁ ଧୋଇ ଦୃଷ୍ଟିଶକ୍ତି ଲାଭ କରିଥିଲେ । ଜଣେ ମାଁର ହସ୍ତ ସଂକୁଚିତ ହୋଇଥିଲା କିନ୍ତୁ ସେହି ଜଳରେ ଗାଧୋଇବା ମାତ୍ରେ ତାରି ହସ୍ତ ସୁସ୍ଥତା ଲାଭ କଲା । ଗୁମ୍ଫାରେ ଧିରେ ଧିରେ ହଜାର ହଜାର ଲୋକଙ୍କ ସଂଖ୍ୟା ବଢୁଥାଏ । ପୋଲିସ ଏବଂ ସୈନିକମାନେ ବେର୍ଣ୍ଣାଦିତାଙ୍କୁ ସେହି ବିପୁଳ ଜନତାଙ୍କଠାରୁ ସୁରକ୍ଷା ଦେବାକୁ ପଡ଼ିଥିଲା ।

ବେର୍ଣ୍ଣାଦିତା ସ୍କୁଲ ଯିବା ଆରମ୍ଭ କଲେ । ପରିବାରରେ ତାର ଭାଇ ଓ ଭଉଣୀମାନଙ୍କୁ ଯତ୍ନ ନେବା ସାଥେ ସାଥେ ଲୁଗା ସଫା କରିବା, ରୋଷେଇ କରିବା ଇତ୍ୟାଦି ତାର କାର୍ଯ୍ୟ ଥିଲା । ଏହି ସବୁ କାର୍ଯ୍ୟ ସତ୍ତ୍ୱେ ଗୁମ୍ଫାକୁ ଯିବା ପାଇଁ ସେ ସର୍ବଦା ତତ୍ପର ଥିଲେ । ଯଦିଓ ଆସ୍ମା ରୋଗ ପାଇଁ ଚିନ୍ତିତ ଥିଲେ ତଥାପି ତାଠାରୁ ଅଧିକ ଚିନ୍ତିତ ଥିଲେ ଦିବ୍ୟ ପ୍ରସାଦରେ ଯୀଶୁଙ୍କୁ ଗ୍ରହଣ କରିବା ପାଇଁ ।

ଧର୍ମାଞ୍ଚଳର ମୁଖ୍ୟ ଯାଜକଙ୍କ ପାଇଁ ସେହି ଭଦ୍ର ମହିଳା କିଛି ସନ୍ଦେଶ ଦେଇଥିଲେ । ସେହି ସନ୍ଦେଶ ଥିଲା, ଯେଉଁ ସ୍ଥାନରେ ଦେବାଳୟ ନିର୍ମାଣ କରାଯିବ ସେହି ସ୍ଥାନରୁ ଗୋଟିଏ ଶୋଭାଯାତ୍ରା ଆରମ୍ଭ କରାଯାଉ । ଏହି ସନ୍ଦେଶଟି ମୁଖ୍ୟ ଯାଜକଙ୍କୁ ଜଣାଇବା ବେର୍ଣ୍ଣାଦିତାଙ୍କ ପାଇଁ ବହୁତ କଷ୍ଟକର ଥିଲା କାରଣ ସେହି ଯାଜକ ବେର୍ଣ୍ଣାଦିତାଙ୍କ ଅନୁଭୂତି ଘଟଣା ଶୁଣିବା ପାଇଁ ଅନିଚ୍ଛୁକ ଥିଲେ । ଏଣୁ ଦ୍ୱିତୀୟଥର ତାଙ୍କ ପାଖକୁ ଯାଇ ସେହି ସନ୍ଦେଶ ଦେବା ପାଇଁ ଦ୍ୱିଧାବୋଧ କରୁଥିଲେ । ତଥାପି ସାହାସର ସହିତ ଫାଦେରଙ୍କ ବସାକୁ ଯାଇ ଦ୍ୱାରକୁ ଆଘାତ କଲେ । ମୁଖ୍ୟ ଯାଜକ କେବଳ ଜାଣିବାକୁ ଚାହୁଁଥିଲେ ସେହି ଭଦ୍ର ମହିଳା ଜଣକ କିଏ । ଏଣୁ ଯାଜକ ତାଙ୍କୁ କହିଲେ, ତୁମକୁ ଯଦି ସେ ପୁନର୍ବାର ଦେଖା ଦିଅନ୍ତି ତେବେ ତାଙ୍କ ନାମ ପଚାରିବ ଓ କିଛି ସଙ୍କେତ ମାଗିବ ତେବେ ଶୋଭାଯାତ୍ରା କରିବା ବିଷୟ ସେ ଚିନ୍ତା କରିବେ ।

ସେହି ଦିନ ଥିଲା ମାର୍ଚ୍ଚ ମାସ ୪ ତାରିଖ, ଲୁର୍ଦ୍ଦ ନଗରରେ ହେଉଥିଲା ବଜାର ଦିନ, ଲୋକଙ୍କର ସମାଗମ ହୋଇଥିଲା ପୁଣି ବେର୍ଣ୍ଣାଦିତାଙ୍କ ପାଇଁ ଥିଲା

ଗୁମ୍ଫାକୁ ଯିବାର ଶେଷ ପରିଦର୍ଶନ । ଅନେକଙ୍କର ଆଶା ଥିଲା ଯେ ସେହିଦିନ ସେହି ଭଦ୍ର ମହିଳା କିଛି ସନ୍ଦେଶ ପାଇବେ । କିନ୍ତୁ ଜନତା କେବଳ ବେର୍ଣ୍ଣାଦିତାଙ୍କୁ ସେହି ଗୁମ୍ଫା ସମ୍ମୁଖରେ ଜାନୁପାତ କରିବା ଓ ତାଙ୍କ ଦୃଷ୍ଟି ସେହି ଗୁମ୍ଫା ଆଡ଼କୁ ନିକ୍ଷେପ କରି ସତେ ଯେମିତି କାହାରି ସହିତ କଥା ହେଉଥିବା ଦୃଶ୍ୟ ସେମାନେ ଦେଖିବାକୁ ପାଇଥିଲେ ।

ମାର୍ଚ୍ଚ ମାସ ୨୫ ତାରିଖ, ଯୀଶୁଙ୍କ ଅବତାର ରହସ୍ୟ ପର୍ବଦିନ ଥିଲା । ଅତି ଭୋରରୁ ବେର୍ଣ୍ଣାଦିତା ସେହି ଗୁମ୍ଫାକୁ ହାତରେ ଲଣ୍ଠନ ଧରି ପହଞ୍ଚିବା କ୍ଷଣି ଦେଖିଲେ ଯେ ସେହି ଭଦ୍ର ମହିଳା ତାଙ୍କ ଅପେକ୍ଷାରେ ଅଛନ୍ତି । ବେର୍ଣ୍ଣାଦିତା ସେହି ଭଦ୍ର ମହିଳାଙ୍କୁ କହିଲେ ଯେ, "ତାଙ୍କୁ ଦେଖି ସେ ବହୁତ ଆନନ୍ଦିତ ଏବଂ ସେ ତାଙ୍କୁ ସ୍ନେହ କରନ୍ତି, ଏବଂ ପୁଣି ଥରେ ଅନୁରୋଧ କଲେ ତାଙ୍କ ପରିଚୟ ଦେବା ପାଇଁ" । ତୃତୀୟ ଥର ପଚାରନ୍ତେ ସେହି ଭଦ୍ର ମହିଳା ଉତର ଦେଇ କହିଲେ, "ମୁଁ ପବିତ୍ର ବିମଳ ଗର୍ଭ ସମ୍ଭବ" । ବେର୍ଣ୍ଣାଦିତା ସେହି ଶବ୍ଦଟି କେବେ ଶୁଣି ନ ଥିଲା ଏଣୁ ସେ ବୁଝି ପାରିଲାନି । ସେହି ଶବ୍ଦଟି ମନେ ରଖିବା ପାଇଁ ବାରମ୍ବାର ଆବୃତି କରୁଥାନ୍ତି । ଶେଷରେ ସେ ଯାଇ ମୁଖ୍ୟ ଯାଜକଙ୍କୁ ଜଣାଇଲା ଏବଂ ଭଦ୍ର ମହିଳାଙ୍କ ପରିଚୟ ଦେଲା । ଯାଜକ ଜଣକ ବର୍ତମାନ ବେର୍ଣ୍ଣାଦିତାଙ୍କ କଥାଟିକୁ ବିଶ୍ୱାସ କଲେ । ବର୍ତମାନ ସମସ୍ତେ ଜାଣିପାରିଲେ ଯେ ସେହି ଭଦ୍ର ମହିଳା ଜଣକ ହେଉଛନ୍ତି ପ୍ରଭୁ ଯୀଶୁଙ୍କ ମାତା ମାରୀୟା । ଆସ୍ତେ ଆସ୍ତେ ଜନତାଙ୍କ ସମାଗମ ବଢୁଥାଏ । ପୋଲିସ କର୍ମଚାରୀମାନେ ଦିନ ରାତି ଗୁମ୍ଫା ଚାରିଆଡେ ପହରା ଦେବାକୁ ଲାଗିଲେ । ତାଙ୍କୁ ଭୟଭୀତ ଦେଖାଇ ପୋଲିସ କର୍ମଚାରୀମାନେ କହିବାକୁ ଲାଗିଲେ ଯେ ସେ ଜଣେ ପାଗଳି ।

ବେର୍ଣ୍ଣାଦିତା ଚାହିଁଥିଲେ ହୁଏତ ଅର୍ଥ ପାଇଁ ଏହାକୁ ଗୋଟିଏ ବ୍ୟାବସାୟ ଭାବେ ନେଇଥାନ୍ତେ କିନ୍ତୁ ସତ୍ୟକୁ କେହି ଲୁଚାଇ ରଖି ପାରିବେ ନାହିଁ । ଧର୍ମାଧ୍ୟକ୍ଷ, ଯାଜକ ଓ ବିଭିନ୍ନ ଶ୍ରେଣୀର ଲୋକମାନେ ଆସି ତାଙ୍କୁ ବିଭିନ୍ନ ପ୍ରଶ୍ନ ପଚାରୁଥାନ୍ତି । କେତେଜଣ ତାଙ୍କୁ ଆଶୀର୍ବାଦ କରିବା ପାଇଁ କହୁଥାନ୍ତି ତ ଆଉ କେତେକ ତାଙ୍କୁ ସ୍ପର୍ଶ କରିବା ପାଇଁ ଚେଷ୍ଟା କରୁଥାନ୍ତି । କିଛି ବିଶ୍ୱାସୀମାନେ ପବିତ୍ର ବସ୍ତୁ ଗୁଡିକୁ ଆଶୀର୍ବାଦ କରିବା ପାଇଁ ତାଙ୍କ ନିକଟକୁ ଆସୁଥିଲେ । ବେର୍ଣ୍ଣାଦିତା ଏହି ସବୁ ଦେଖି ବିରକ୍ତ ହେଉଥିଲେ ।

ଏହି ସମୟରେ ସେ ସ୍କୁଲ ଯିବା ଆରମ୍ଭ କଲେ ଏବଂ ସିଷ୍ଟରମାନଙ୍କ ଦ୍ୱାରା ପରିଚାଳିତ ହଷ୍ଟେଲରେ ରହୁଥିଲେ । ତାଙ୍କ ପ୍ରତି ସିଷ୍ଟରମାନଙ୍କ ଦୟା ଥିଲା । ଦିନେ ହଠାତ୍ ସେ ବେମାର ପଡିଲେ । ସିଷ୍ଟରମାନେ ତାଙ୍କ ପିତା ଓ ମାତାଙ୍କୁ ଡକାଇଲେ । ନିଶ୍ୱାସ ନେବାରେ ସେ କଷ୍ଟ ଅନୁଭବ କରୁଥିଲେ । ଗୁମ୍ଫା ନିକଟରେ ଥିବା ସେହି ଝରଣା ପାଣି ପିଇବା ପାଇଁ ସେ ଇଛା ପ୍ରକାଶ କଲେ । ସେହି ପାଣି ପିଇବା ମାତ୍ରେ ସେ ସୁସ୍ଥତା ଲାଭ କଲେ ।

**ସେବାଭଗ୍ନୀ ହେବା ପାଇଁ ଆହ୍ୱାନ:**

ଦିନେ ନେଭେର୍ସର ଧର୍ମାଧ୍ୟକ୍ଷ ଲୁର୍ଦ୍ଦରେ ଥିବା ସିଷ୍ଟରମାନଙ୍କ ଗୃହକୁ ପରିଦର୍ଶନ କରି ବେର୍ଣ୍ଣାଦିତାଙ୍କୁ ସାକ୍ଷାତ କରିବା ପାଇଁ ଇଛା କଲେ । ସିଷ୍ଟରମାନେ ବିଶପଙ୍କୁ ରୋଷେଇ ଗୃହକୁ ନେଲେ ଯେଉଁଠାରେ ବେର୍ଣ୍ଣାଦିତା ବିଶପଙ୍କ ପାଇଁ ଭୋଜନ ପ୍ରସ୍ତୁତ କରୁଥିଲେ । ବିଶପ ବେର୍ଣ୍ଣାଦିତା ପାଇଥିବା ଦର୍ଶନ ବିଷୟ ଜାଣିବା ପାଇଁ ଇଛା କଲେ । ବେର୍ଣ୍ଣାଦିତାଙ୍କ ଠାରୁ ସବୁ ବିଷୟ ଜାଣିବା ପରେ ସେ ବିଶ୍ୱାସ କଲେ ଓ ତାଙ୍କୁ ବୟସ ପଚାରିଲେ । ସେ କହିଲେ ତାଙ୍କ ବୟସ ୧୯ ବର୍ଷ । ପୁଣି ବିଶପ ପଚାରିଲେ, ସେବାଭଗ୍ନୀ ହେବା ପାଇଁ ସେ ଇଛା କରନ୍ତି କି ? ବେର୍ଣ୍ଣାଦିତା ଉତର ଦେଇ କହିଲେ, ସେ କୌଣସି ସମ୍ଭ୍ରାନ୍ତ ପରିବାରର ବ୍ୟକ୍ତି ନୁହନ୍ତି, ସେ ବହୁତ ଗରୀବ ପୁଣି ସେ ମୁର୍ଖ ଥିବାରୁ କୌଣସି କନ୍‌ଭେଣ୍ଟ ତାଙ୍କୁ ଗ୍ରହଣ କରିବ ନାହି । କିନ୍ତୁ ବିଶପ ତାଙ୍କୁ ଉତ୍ସାହିତ କରି କହିଲେ, ତୁମେ ଚେଷ୍ଟା କରିପାର । ଦିନେ ବେର୍ଣ୍ଣାଦିତା ସେହି ସଂଘର ସିଷ୍ଟରମାନଙ୍କୁ ନିଜର ଇଛା ପ୍ରକାଶ କରିଥିଲେ । ବେର୍ଣ୍ଣାଦିତାଙ୍କ ଅନୁରୋଧକୁ ସେମାନେ ସ୍ୱାଗତ କଲେ ଏବଂ ୧୮୬୫ମସିହାରେ ସେ ପଷ୍ଟୁଲାଣ୍ଟ ଭାବେ କନ୍‌ଭେଣ୍ଟରେ ପ୍ରବେଶ କଲେ । କନ୍‌ଭେଣ୍ଟରେ ପ୍ରାର୍ଥନା କରିବା ପାଇଁ ସେ ସୁଯୋଗ ପାଇଲେ । କିନ୍ତୁ ସବୁବେଳେ ତାର ମନ ସର୍ବଦା ଗୁମ୍ଫାରେ ଥାଏ । ପ୍ରାୟ ଅଧିକାଂଶ ସମୟ ଗୁମ୍ଫାକୁ ଯିବା ପାଇଁ ଇଛା ହେଉଥାଏ । ଏହା ବ୍ୟତୀତ ଅନେକ ଲୋକମାନେ ଲୁର୍ଦ୍ଦକୁ ଆସି ତାଙ୍କୁ ସାକ୍ଷାତ କରିବା ପାଇଁ ଚାହୁଁଥିଲେ । ଏଣୁ କନ୍‌ଭେଣ୍ଟ ଅଧିକାରୀମାନେ ବେର୍ଣ୍ଣାଦିତାଙ୍କୁ ନେଇ ନେଭେରସକୁ ଗଲେ । ଲୁର୍ଦ୍ଦଠାରୁ ନେଭେର୍‌ସକୁ ଦୁଇଦିନର ଯାତ୍ରା । ଜୁଲାଇ ମାସରେ ସେ ସେଠାରେ ପହଞ୍ଚିଲେ ।

ନେଭେର୍ସର କନ୍‌ଭେଣ୍ଟ ଗୋଟିଏ ଦୁର୍ଗ ପରି ଥିଲା । କନ୍‌ଭେଣ୍ଟ ଭିତରେ ବହୁତ ନୀରବ ଓ ସୁରକ୍ଷା ସେ ଅନୁଭବ କଲେ । ଅନେକ ସିଷ୍ଟରମାନେ ବାସ କରୁଥିବାର ଦେଖି ସେ ଭୟ କରୁଥିଲେ । ବେର୍ଣ୍ଣାଦିତା ଯେଉଁ ଦର୍ଶନ ପାଇଥିଲେ ସେହି ଦର୍ଶନ କନ୍‌ଭେଣ୍ଟର ନୋଭିସମାନଙ୍କ ଅଧିକାରୀ ତାଙ୍କୁ ପଚାରିଥିଲେ । କିନ୍ତୁ ସେହିଦିନ ବେର୍ଣ୍ଣାଦିତାଙ୍କ ସାକ୍ଷ୍ୟ ଶୁଣିବା ପାଇଁ ଆଖ ପାଖ କନ୍‌ଭେଣ୍ଟର ଅନେକ ସିଷ୍ଟରମାନେ ଜମା ହୋଇଥିଲେ । ବେର୍ଣ୍ଣାଦେତାଙ୍କୁ ନୋଭିସ ପଦକୁ ଉନ୍ନୀତ କରାଗଲା । ବେର୍ଣ୍ଣାଦିତାଙ୍କ ପରି ଜଣେ କୃଷକ ପରିବାରରୁ କିପରି କନ୍‌ଭେଣ୍ଟରେ ପ୍ରବେଶ କରି ପାରିଲେ ଏହା ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । ନୋଭିସମାନଙ୍କ ଅଧିକାରୀ ବିଭିନ୍ନ ଭାବରେ ବେର୍ଣ୍ଣାଦେତାଙ୍କୁ ଅପମାନ ଓ ନିର୍ଯ୍ୟାତନା ଦେବା ପାଇଁ ସୁଯୋଗ ଖୋଜୁଥିଲେ । ସେହି ସମୟରେ ପ୍ରାୟ ଅଧିକାଂଶ ସିଷ୍ଟରମାନେ ସମ୍ଭ୍ରାନ୍ତ ପରିବାରରୁ ହେଉଥିଲେ । କୃଷକ ପରିବାରରୁ କିପରି ଜଣେ ସିଷ୍ଟର ହୋଇ ପାରିଲା ଏବଂ କିପରି ତା ସହିତ ବ୍ୟବହାର କରିବାକୁ ପଡିବ ତାହା ସେହି ଅଧିକାରୀ ସିଷ୍ଟର ଜାଣି ପାରି ନ ଥିଲେ ।

**ବେର୍ଣ୍ଣାଦିତା ପ୍ରଥମ ବ୍ରତ ନିଅନ୍ତି:**

ବେର୍ଣ୍ଣାଦିତା ଗୁରୁତର ଭାବେ ବେମାର ପଡିବାରୁ ସମସ୍ତେ ଭାବିଲେ ସେ ମୃତ୍ୟୁବରଣ କରିପାରନ୍ତି । ଏଣୁ ନେଭେରସର ବିଶପଙ୍କୁ ଡକାଗଲା । ବିଶପ ବେର୍ଣ୍ଣାଦିତାଙ୍କୁ ସେବାଭଗ୍ନୀ ହେବା ପାଇଁ ଅନୁମତି ଦେଲେ । ବେର୍ଣ୍ଣାଦିତା ଜଣେ ସେବାଭଗ୍ନୀ ହୋଇ ପାରିଲେ ଏବଂ ପୁନର୍ବାର ଆଶ୍ଚର୍ଯ୍ୟଭାବେ ସୁସ୍ଥତା ଲାଭ କରିଥିଲେ । ତାଙ୍କ ସୁସ୍ଥ ହେବାର ଖବର ପାଇ ମାଦେର ଜେନେରାଲ ଓ ନୋଭିସମାନଙ୍କ ଅଧିକାରୀ ବ୍ୟତୀତ ସମସ୍ତେ ଆନନ୍ଦିତ ହେଲେ । ବ୍ରତ ନେବା ଦିନ ସେମାନେ ଯେଉଁ ସ୍ଥାନକୁ ଯିବେ ତାହା ଘୋଷଣା କରାଗଲା କିନ୍ତୁ ବେର୍ଣ୍ଣାଦିତା କେଉଁଠିକି ଯିବେ ତାହା ଘୋଷଣା କରାଗଲା ନାହିଁ । ଯେତେବେଳେ ବେର୍ଣ୍ଣାଦିତାଙ୍କୁ ନିଯୁକ୍ତି ଦିଆଗଲା ନାହିଁ, ଉପସ୍ଥିତ ଥିବା ବିଶପଙ୍କୁ ବହୁତ ଦୁଃଖ ଲାଗିଲା । ମାଦେର ଜେନେରାଲଙ୍କୁ ତାଙ୍କ ବିଷୟରେ ପଚାରନ୍ତେ ସେ କହିଲେ, ବେର୍ଣ୍ଣାଦିତା କୌଣସି କାର୍ଯ୍ୟ ପାଇଁ ଉପଯୁକ୍ତ ନୁହଁନ୍ତି ଏଣୁ ତାଙ୍କୁ ଗୋଟିଏ ଛୋଟ ଚିକିତ୍ସାଳୟରେ ପଠାଯିବ । ସବୁବେଳେ ସେ ବେମାର ପଡନ୍ତି ଏଣୁ ସେହି ପରି ସ୍ଥାନରେ ପଠାଇଲେ

ତାଙ୍କୁ ଘର ପରି ଲାଗିବ । ସେହି ଚିକିତ୍ସାଳୟରେ ପ୍ରଥମେ ସଫା ସୁତୁରା କଲା ପରେ ରୋଗୀମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିବ ।

**ଚିକିତ୍ସାଳୟରେ ନର୍ସ କାମ କରନ୍ତି:**

ହସପିଟାଲ ଦାୟିତ୍ୱରେ ଥିବା ସିଷ୍ଟେର ଜଣକ ବେର୍ଣ୍ଣାଦିତାଙ୍କ କାର୍ଯ୍ୟ ଦେଖି ସନ୍ତୁଷ୍ଟ ହେଲେ । ଯଦିଓ ସେହି ସିଷ୍ଟେର ପ୍ରଶାସନରେ କଡା ଥିଲେ ତଥାପି ବେର୍ଣ୍ଣଦିତାଙ୍କ ବ୍ୟବହାର, କାର୍ଯ୍ୟ ଦେଖି ସେ ଅବାକ ହୋଇଗଲେ । ବେର୍ଣ୍ଣାଦିତା ନିଜେ ରୋଗୀ ଥିବାରୁ ସେ ରୋଗୀମାନଙ୍କ ହୃଦୟର କଥା ବୁଝି ପାରୁଥିଲେ । ହସପିଟାଲରେ କିଛିଦିନ କାର୍ଯ୍ୟ କଲାପରେ ନୋଭିସମାନଙ୍କୁ ଶିକ୍ଷା ଦେବା ପାଇଁ ତାଙ୍କୁ କୁହାଗଲା । ନୋଭିସମାନଙ୍କ ଦ୍ୱାରା ମଧ୍ୟ ସେ ଆଦୃତ ହୋଇପାରିଥିଲେ । ନିଜେ ରୋଗରେ କଷ୍ଟ ପାଉଥିଲେ ମଧ୍ୟ ତାଙ୍କ ମୁଖ ସର୍ବଦା ତେଜୀୟାନ ହୋଇ ରହୁଥିଲା । ଦିନକୁ ଦିନ ତାଙ୍କ ଆସ୍ମା ରୋଗ ବଢ଼ି କାଶ ଓ ଅଣ୍ଟା ଧରିବାରୁ ଡାକ୍ତରମାନେ ମତ ଦେଲେ ଯେ ସେଠାରେ ତାଙ୍କ କାର୍ଯ୍ୟ କରିବା ଠିକ୍ ହେବ ନାହିଁ ।

ଚର୍ଚ୍ଚର ସାକ୍ରିଷ୍ଟିରେ କାର୍ଯ୍ୟ କରିବା ପାଇଁ ତାଙ୍କୁ ଦାୟିତ୍ୱ ଦିଆଗଲା । ସେହି ସମୟରେ ବେର୍ଣ୍ଣାଦିତାଙ୍କ ବୟସ ୩୦ ବର୍ଷ ତଥାପି ଉଚ୍ଚତାରେ ସେ କମ୍ ଥିବାରୁ ଛୋଟ ପିଲା ପରି ସେ ଦେଖାଯାଉଥିଲେ । ସାକ୍ରିଷ୍ଟିର କାମ ଥିଲା ଯଜ୍ଞ ପୋଷାକ ଗୁଡିକୁ ସଫା କରି ରଖିବା, ଫୁଲ ଦ୍ୱାରା ବେଦୀକୁ ସାଜସଜା କରିବା ଇତ୍ୟାଦି । ଏହି କାର୍ଯ୍ୟ ଗୁଡିକ ସହଜ ଥିବାରୁ ବେର୍ଣ୍ଣାଦିତାଙ୍କୁ ବିଶ୍ରାମ ନେବା ପାଇଁ ସମୟ ମିଳୁଥିଲା । ସାକ୍ରିଷ୍ଟିରେ କିଛି ପ୍ରାଇଭେସି ନ ଥିବାରୁ ଟିକିଏ ଅସୁବିଧା ହେଉଥିଲା । ଅନେକ ଲୋକ ତାଙ୍କୁ ଦେଖିବା ପାଇଁ ଆସୁଥିଲେ କିନ୍ତୁ ସେ ଦେଖା ଦେଉ ନଥିଲେ । ଯେଉଁ ସିଷ୍ଟେରଙ୍କ ସହ ସେ କାମ କରୁଥିଲେ ସେ ମଧ୍ୟ ବେର୍ଣ୍ଣାଦିତାଙ୍କ କାର୍ଯ୍ୟରେ ଖୁସୀ ଥିଲେ । ଯାହା ଜାଣୁ ନ ଥିଲେ ସେହି ସିଷ୍ଟେର ଜଣକ ତାଙ୍କୁ ଶିଖାଉଥିଲେ । ସଫା କଲା ପରେ ଝାଡୁଣୀଟିକୁ କବାଟର କୋଣରେ ରଖିବା ପାଇଁ ତାଙ୍କୁ ବତାଉଥିଲେ । ବାସ୍ତବରେ ବେର୍ଣ୍ଣାଦିତା ଥିଲେ ସେହି ଝାଡୁଣୀ ଯାହାକୁ କୁମାରୀ ମାରୀୟା କିଛି ସମୟ ପାଇଁ ବ୍ୟବହାର କରି ସେହି କବାଟର କୋଣରେ ରଖିଥିଲେ, ଯେଉଁଠାରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ରହିବାକୁ ପଡିଥିଲା ।

**ଶେଷ ସମୟ:**

ତାଙ୍କ ଜୀବନର ଶେଷ ସମୟରେ ପ୍ରାୟ ଶଯ୍ୟାରେ ତାଙ୍କୁ ରହିବାକୁ ପଡିଥିଲା । ତାଙ୍କ ଶଯ୍ୟାର ପାର୍ଶ୍ୱରେ ଗୋଟିଏ ବଡ କ୍ରୁଶ ଝୁଲାଇବା ପାଇଁ ସେ ଅନୁରୋଧ କରିଥିଲେ । ୩୫ ବର୍ଷ ବୟସରେ ଅର୍ଥାତ ୧୮୭୯ ମସିହା ଏପ୍ରିଲ ମାସ ୧୬ ତାରିଖ ଦିନ ପାସ୍କା ପର୍ବ ପରେ ସେ ମୃତ୍ୟୁ ବରଣ କରିଥିଲେ । ସେ ନୀରବରେ ଅନ୍ୟକୁ କଷ୍ଟ ନ ଦେଇ ହସ ହସ ମୁହଁରେ ମୃତ୍ୟୁ ବରଣ କରିଥିଲେ । କିଛିଦିନ ପରେ ତାଙ୍କ ଶରୀରକୁ କନ୍‌ଭେଣ୍ଟର ସାଧୁ ଯୋସେଫଙ୍କ ଦେବାଳୟ ନିକଟରେ ସ୍ଥାପିତ କରାଯାଇଥିଲା । ୧୯୩୩ ମସିହା ଡିସେମ୍ବର ୮ ତାରିଖ ଦିନ ପୁଣ୍ୟପିତା ଏକାଦଶ ପୀଉସ ବେର୍ଣ୍ଣାଦେତାଙ୍କୁ ସାଧ୍ୱୀ ରୂପେ ଘୋଷଣା କଲେ । ଶାରିରୀକ ବେମାରୀମାନଙ୍କ ସେ ଅଟନ୍ତି ଇଷ୍ଟ ସାଧ୍ୱୀ । ଏପ୍ରିଲ ମାସ ୧୬ ତାରିଖରେ ତାଙ୍କ ପର୍ବ ପାଳନ କରାଯାଏ ।

**ଲୁର୍ଦ୍ଦୁ ସାଧ୍ୱୀ ବେର୍ଣ୍ଣାଦିତାଙ୍କ କେତୋଟି ଉକ୍ତି:**

✸ "ପ୍ରତ୍ୟେକ ମୁହୂର୍ତ୍ତ ମୁଁ ପ୍ରେମରେ ବିତାଇବି । ଯିଏ ପ୍ରେମ କରେ ସେ ନିଜର ଦୁଃଖକୁ ଭୁଲିଯାଏ, ବାସ୍ତବରେ ସେ ଅନ୍ୟକୁ ପ୍ରେମ କରେ । ମୋର ପ୍ରକୃତ ଗୃହ ସ୍ୱର୍ଗ ପାଇଁ ସବୁ କିଛି ମୁଁ କରି ପାରିବି । ସେହିଠାରେ ମୋର ମାଁଙ୍କୁ ଗୌରବାନ୍ୱିତ ଥିବାର ଦେଖିବି । ସମ୍ପୂର୍ଣ୍ଣ ନିରାପଦରେ ଯୀଶୁଙ୍କ ଆନନ୍ଦରେ ମୁଁ ମୋ ମାଁଙ୍କ ସହିତ ଆନନ୍ଦିତ ହେବି" ।

✸ "ହେ ଯୀଶୁ, ହଜାର ଥର ମୁଁ ମୃତ୍ୟୁବରଣ କରିବି ପଛେ ତୁମ୍ଭଙ୍କୁ କେବେ ଅବିଶ୍ୱସ୍ତ ହେବି ନାହିଁ, ପ୍ରତିଦିନ ପରୀକ୍ଷା ଓ ଯନ୍ତ୍ରଣା ପାଇଁ ଅଭିଯୋଗ ନ କରି, ନିଜକୁ ମୃତ୍ୟୁବରଣ କରିବି । ମୋର କର୍ମ କରିବି, ଯନ୍ତ୍ରଣା ପାଇବି ଏବଂ ତାଙ୍କ ହୃଦୟକୁ କେହି ସାକ୍ଷ୍ୟ ନ ଦେଲେ ମଧ୍ୟ ମୁଁ ପ୍ରେମ କରିବି । ଯିଏ ନିଜର ପ୍ରିୟତମ ପାଇଁ ଯନ୍ତ୍ରଣା ଭୋଗିବା ପାଇଁ ପ୍ରସ୍ତୁତ ନୁହନ୍ତି, କିମ୍ବା ସମସ୍ତ କାର୍ଯ୍ୟରେ ତାଙ୍କ ଇଚ୍ଛାକୁ ପୂର୍ଣ୍ଣ କରିବା ପାଇଁ ପ୍ରସ୍ତୁତ ନୁହନ୍ତି ସେମାନେ ସେହି ପ୍ରିୟତମର ବନ୍ଧୁ ହେବା ପାଇଁ ଯୋଗ୍ୟ ନୁହନ୍ତି । କାରଣ ଏହି ମର୍ତ୍ତ୍ୟରେ କଷ୍ଟ ବିନା ପ୍ରେମ ନ ଥାଏ" ।

✸ "ଯନ୍ତ୍ରଣା ପାଉଥିବା ଆତ୍ମାମାନଙ୍କୁ ପବିତ୍ର ଦିବ୍ୟଯଜ୍ଞ, ଆଲୋକ ଓ ପ୍ରେମରେ ସେମାନଙ୍କୁ ସ୍ନାନ କରାଏ" । ଏଣୁ ସେହି ଆତ୍ମା ଗୁଡ଼ିକ ପ୍ରଶଂସା କରି ଏହି ପରି କହନ୍ତି,"ସମସ୍ତ ପୀଡ଼ିତ ବ୍ୟକ୍ତିମାନେ ମୋ ନିକଟକୁ ଆସ ମୁଁ ତୁମକୁ ସୁସ୍ଥ ପ୍ରଦାନ କରିବି" ।

✸ "ଧନ୍ୟା କୁମାରୀ ମାରୀୟା ଗୋଟିଏ ଛାଞ୍ଚୁଣୀ ପରି ମୋତେ ବ୍ୟବହାର କରି, ପୁଣି ମୋତେ ନିଜ ସ୍ଥାନରେ ରଖିଲେ" ।



## ସିଏନାର ସାଧ୍ୱୀ କାଥାରିନା
## (୧୩୪୭-୧୩୮୦, ଏପ୍ରିଲ୍ ୨୯)

ଇଟାଲୀ ଦେଶର ସିଏନା ନଗରରେ ୧୩୪୭ ମସିହା ମାର୍ଚ୍ଚ ମାସ ୨୫ ତାରିଖରେ କାଥାରିନା ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଜାକମ ଓ ମାତା ଲାପା ବେନିନ୍‌କାସାଙ୍କର ୨୫ଟି ସନ୍ତାନ ମଧ୍ୟରୁ କାଥାରିନା ଥିଲେ କନିଷ୍ଠା । ଛୋଟରୁ କାଥାରିନା ଧାର୍ମିକ ପରିବେଶରେ ବଢିଥିଲେ । ତାଙ୍କୁ ଯେତେବେଳେ ୫ ବର୍ଷ ବୟସ ହୋଇଥାଏ ସେ 'ନମସ୍ତେ ମାରୀୟା' ପ୍ରାର୍ଥନା ଭକ୍ତିର ସହ ଆବୃତି କରୁଥିଲେ । ନିଜ ଘରର ଶିଡ଼ି ଦ୍ୱାରା ଯେତେବେଳେ ସେ ତଳକୁ ଓ ଉପରକୁ ଯାଆନ୍ତି, ଶିଡ଼ିର ପ୍ରତ୍ୟେକ ପାହାଚରେ ଆଣ୍ଠୁପାତି ସେହି ପ୍ରାର୍ଥନା କରୁଥିଲେ । ନିରୋଳା ଭାବରେ ଏକାକୀ ପ୍ରାର୍ଥନା କରିବାର ଇଚ୍ଛା ଥିଲେ ମଧ୍ୟ ସେ ତାହା କରିପାରୁ ନଥିଲେ କାରଣ ପରିବାରର ସଭ୍ୟ ସଂଖ୍ୟା ବଡ଼ ଥିବାରୁ କୌଣସି ଏପରି କୋଠରୀ ଶୂନ୍ୟ ନ ଥିଲା । ଯେତେବେଳେ ସେ କୌଣସି କୋଠରୀ ବନ୍ଦ କରି ପ୍ରାର୍ଥନା କରନ୍ତି ତାଙ୍କ ମାଁ ଗାଳି ଦିଅନ୍ତି । କାଥାରିନାଙ୍କୁ ଘରର ଅନ୍ୟ କାମ କରିବା ପାଇଁ ତାଙ୍କ ମାଁ ସବୁବେଳେ କହୁଥାନ୍ତି । ଏଣୁ ଘର ସଫା କରିବା, ଲୁଗା ଧୋଇବା, ବାସନ ମାଜିବା ଏବଂ ରୋଷେଇ କରିବା ଇତ୍ୟାଦି କାମରେ ସେ ସଦାବେଳେ ଲିପ୍ତ ରହୁଥାନ୍ତି । କାଥାରିନା ଦେଖିବାକୁ ବହୁତ ସୁନ୍ଦର ଥିଲେ । ତାଙ୍କ ପିତା ଓ ମାତାଙ୍କ ଇଚ୍ଛା ଥିଲା ତାଙ୍କୁ ବିବାହ କରାଇ ଦେବା । କିନ୍ତୁ ଛୋଟରୁ କାଥାରିନା ଜଣେ ସେବାଭଗ୍ନି ହୋଇ ରହିବା ପାଇଁ ତାଙ୍କର ଗଭୀର ଇଚ୍ଛା ଥିଲା । କାଥାରିନାଙ୍କ ମନକୁ ଭୁଲାଇବା ପାଇଁ ତାଙ୍କ ବାପା ଓ ମା' ଘରେ ପାର୍ଟି କରି ବିଭିନ୍ନ ପୁଅମାନଙ୍କୁ ଘରକୁ ନିମନ୍ତ୍ରଣ କରୁଥିଲେ । କାଥାରିନା ବାପା, ମା'ଙ୍କ ଏହିପରି ମନୋଭାବ ଜାଣି ଦିନେ ନିଜର ସୁନ୍ଦର କେଶକୁ କାଟି ପକାଇଲେ । ସିଏନାରେ କୌଣସି ସ୍ତ୍ରୀ ଛୋଟ କେଶ ରଖନ୍ତି ନାହିଁ । ଏହା ପରିବାର ପାଇଁ ଅପମାନଜନକ ଥିଲା । ଶେଷରେ କାଥାରିନାଙ୍କ ପିତା ଓ ମାତା ତାଙ୍କ କଥାରେ ରାଜି ହେଲେ । ୧୬ ବର୍ଷ ବୟସରେ କାଥାରିନା ଦମନିକାନ୍ ସଂଘର ତୃତୀୟ Order ରେ ପ୍ରବେଶ କଲେ । ସେମାନଙ୍କୁ ଧଳା ଓ କଳା ରଙ୍ଗର ପୋଷାକ

ଦିଆଗଲା । ଦାରିଦ୍ର୍ୟ ଜୀବନ, ବିଶପ୍‌ଙ୍କ ପ୍ରତି ଆଜ୍ଞାବହତା ଏବଂ ବିବାହ ନ କରି ପବିତ୍ରତା ଜୀବନଯାପନ କରିବା ପାଇଁ ସେ ସଂକଳ୍ପ ନେଲେ । ଅବଶ୍ୟ କନ୍‌ଭେଣ୍ଟରେ ରହିବା ପରିବର୍ତ୍ତେ ସେମାନଙ୍କ ଘରେ ରହି ନିଜର ଆଧ୍ୟାତ୍ମିକ ଜୀବନ ବିତାଇବାକୁ ପଡ଼ିଥିଲା । ୬ବର୍ଷ ବୟସରେ ତେରେସା ଦର୍ଶନରେ ଯୀଶୁଙ୍କୁ ତାଙ୍କ ଗୌରବମୟ ସିଂହାସନରେ ବସି ତାଙ୍କୁ ଆଶୀର୍ବାଦ ଦେବାର ଦୃଶ୍ୟ ଦେଖିଥିଲେ । ସେହିଦିନଠାରୁ ତେରେସା ସାଧୁମାନଙ୍କର ପ୍ରାର୍ଥନା ଏବଂ ତ୍ୟାଗମୟ ଜୀବନକୁ ଅନୁକରଣ କରୁଥିଲେ । ନିଜର ସତୀତ୍ୱକୁ ପ୍ରଭୁଙ୍କଠାରେ ଉତ୍ସର୍ଗ କରିଥିଲେ । କାଥାରିନା ବହି ପଢ଼ି ପାରୁ ନଥିଲେ କିମ୍ବା ଲେଖି ଜାଣୁ ନଥିଲେ । ଏଣୁ ଯାହା ଗୀର୍ଜାରେ ପ୍ରଭୁଙ୍କର ବାକ୍ୟ ଶୁଣୁଥିଲେ, ତା ଉପରେ ଧ୍ୟାନ କରି ପ୍ରାର୍ଥନାରେ ସମୟ ବିତାଉଥିଲେ । କାଥାରିନାଙ୍କୁ ଯେତେବେଳେ ୨୧ ବର୍ଷ ହୋଇଥାଏ, ସେ ଦର୍ଶନରେ ଯୀଶୁଙ୍କୁ ଓ ତାଙ୍କ ମାଁଙ୍କୁ ଦେଖିପାରିଥିଲେ । ସେମାନେ ଦୁହେଁ କାଥାରିନାଙ୍କ ଅଙ୍ଗୁଳିରେ ବିବାହର ଚିହ୍ନପରି ଗୋଟିଏ ମୁଦ୍ରିକା ପିନ୍ଧାଇ ଦେଇଥିଲେ । ସେହି ସମୟରେ କାଥାରିନା ଅନୁଭବ କଲେ ଯେ ସେ ସବୁଦିନ ପାଇଁ ସମ୍ପୂର୍ଣ୍ଣ ଭାବରେ ଯୀଶୁଙ୍କର ହୋଇ ରହିବେ । ଯୀଶୁ ସେହି ଦର୍ଶନ ମାଧ୍ୟମରେ ତାଙ୍କ ଗୃହରେ ନ ରହି ବାହାରେ ଲୋକଙ୍କର ସେବା କରିବା ପାଇଁ ପ୍ରେରଣା ଦେଲେ, ଯେପରି ସେମାନେ ଜାଣିପାରିବେ ପ୍ରଭୁ କେତେ ସେମାନଙ୍କୁ ଭଲ ପାଉଛନ୍ତି । ସେହି ସମୟରୁ କାଥାରିନା ଦମନିକାନ୍ ସଂଘର ତୃତୀୟ Order ରେ ଯୋଗଦେଇ ହସ୍ପିଟାଲ୍‌ରେ ରୋଗୀମାନଙ୍କର ଯତ୍ନ ନେଲେ । ଯେଉଁମାନେ ମରିବାକୁ ଯାଉଥିଲେ, ସେମାନଙ୍କୁ ପ୍ରଭୁଙ୍କ ବିଷୟରେ ଏବଂ ସ୍ୱର୍ଗ ବିଷୟରେ କହୁଥିଲେ । ବନ୍ଦୀଶାଳାକୁ ଯାଇ ଯେଉଁମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥାଏ, ସେମାନଙ୍କୁ ସାକ୍ଷାତ କରୁଥିଲେ । ସେମାନଙ୍କ ମଧ୍ୟରୁ ସମସ୍ତେ ଦୋଷୀ ନ ଥିଲେ । କେତେକ ନିରୀହ ବ୍ୟକ୍ତି ଅନ୍ୟାୟର ଶିକାର ହେଉଥିଲେ । ଦିନେ ଜଣେ ନିରୀହ ବ୍ୟକ୍ତି ଯାହାଙ୍କୁ ଅନ୍ୟାୟରେ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁ ଦଣ୍ଡ ଦେବା ପାଇଁ ଆଦେଶ ଦିଆଯାଇଥିଲା, ସେ ଅନୁଭବ କଲେ ଯେ ପ୍ରଭୁ ମଧ୍ୟ ତାଙ୍କୁ ପରିତ୍ୟାଗ କରିଛନ୍ତି । କାଥାରିନା ତାଙ୍କ ସହିତ ବହୁତ ସମୟ କଥା ହେଲେ ଏବଂ ତାଙ୍କ ପାଇଁ ପ୍ରାର୍ଥନା କଲେ । କାଥାରିନା ବିଚାରକଙ୍କ ନିକଟରେ ସେହି

ବ୍ୟକ୍ତି ପାଇଁ ନିବେଦନ କଲେ, ତଥାପି ବିଚାରକ ଶୁଣିଲେ ନାହିଁ । ଶେଷରେ ସେହି ବ୍ୟକ୍ତିଟି ଅନୁଭବ କଲେ ମନୁଷ୍ୟ ଅନ୍ୟ ପ୍ରତି ଯେତେ ଅନ୍ୟାୟ କଲେ ମଧ୍ୟ ପ୍ରଭୁ ସଦାବେଳେ ଦୟା ଓ ନ୍ୟାୟଶୀଳ ଅଟନ୍ତି । କାଥାରିନାଙ୍କଠାରୁ ମଧ୍ୟ ସେହି ପ୍ରଭୁ ସଦାବେଳେ ଦୟା ଓ ନ୍ୟାୟଶୀଳ ଅଟନ୍ତି । କାଥାରିନାଙ୍କଠାରୁ ସେହି ବ୍ୟକ୍ତି ଶୁଣିପାରିଲେ ଯେ ଯୀଶୁଙ୍କୁ କିପରି ଅନ୍ୟାୟ ଭାବରେ ସେମାନେ ଦୋଷୀ ସାବ୍ୟସ୍ତ କରିଥିଲେ ଏବଂ ଯୀଶୁ ଆମକୁ ପାପରୁ ମୁକ୍ତ କରିବା ପାଇଁ କ୍ରୁଶ ଗ୍ରହଣ କରିଥିଲେ । କାଥାରିନା ସହିତ ସେହି ବ୍ୟକ୍ତିଟି ପ୍ରାର୍ଥନା କରି ଯୀଶୁଙ୍କ ସହିତ ସ୍ୱର୍ଗରେ ରହିବା ପାଇଁ ଅଭିଳାଷ ପୋଷଣ କଲେ । ଯେଉଁଦିନ ସେହି ବ୍ୟକ୍ତି ମୃତ୍ୟୁବରଣ କଲେ, କାଥାରିନା ତାଙ୍କ ପାଖରେ ଥିଲେ ।

ଯଦିଓ କାଥାରିନା ପାଠ ପଢ଼ି ନ ଥିଲେ କିଅବା ସ୍କୁଲ୍‌କୁ ମଧ୍ୟ ଯାଇ ପାରିନଥିଲେ ସେ ଜଣେ ବିଜ୍ଞ ବ୍ୟକ୍ତି ଥିଲେ । ଲୋକମାନଙ୍କ ମଧ୍ୟରେ କିଅବା ସହର ମଧ୍ୟରେ ଯଦି କୌଣସି ବିଷୟ ନେଇ ଅଶାନ୍ତିର ବାତାବରଣ ସୃଷ୍ଟି ହୁଏ, କାଥାରିନାଙ୍କୁ ସେହି ବିଷୟରେ ସମାଧାନ କରିବା ପାଇଁ ଡାକୁଥିଲେ । ସହରର ଦାୟିତ୍ୱରେ ଥିବା ମେୟର, ବିଶପ୍ ତଥା ରାଜନୈତିକ ବ୍ୟକ୍ତିମାନେ ବିଭିନ୍ନ ତର୍କ ବିତର୍କ ପରେ ସେହି ବିଷୟର ଶେଷ ସିଦ୍ଧାନ୍ତ ନେବା ପାଇଁ କାଥାରିନାଙ୍କ ସାହାଯ୍ୟ ଲୋଡୁଥିଲେ । କାଥାରିନା ଯାହା କହୁଥିଲେ ପ୍ରଭୁଙ୍କ ବିଷୟରେ ଅଥବା ପ୍ରାର୍ଥନା ବିଷୟରେ ସେମାନେ ଲେଖି ରଖିଥିଲେ । ଅନେକ ସମୟରେ ଯଦିଓ ସେ ପ୍ରାର୍ଥନା କରୁଥିଲେ ତଥାପି ଅନୁଭବ କରୁଥିଲେ ଯେ ପ୍ରଭୁ ତାଙ୍କଠାରୁ ଦୂରରେ ଅଛନ୍ତି । ଏପରିକି ଦମନିକାନ୍ ସଂଘ ଛାଡ଼ିବା ପାଇଁ ତାଙ୍କ ମନରେ ପ୍ରଲୋଭନ ଆସୁଥାଏ । ଦିନେ ଏକାକୀ ଚାପେଲ୍‌ରେ ରହି ପ୍ରାର୍ଥନା କରିବା ସମୟରେ ଈଶ୍ୱରଙ୍କ ଉପସ୍ଥିତି ସେ ଅନୁଭବ କଲେ । ସେ ଚିତ୍କାର କରି ପ୍ରଭୁଙ୍କୁ କହିଲେ; ହେ ପ୍ରଭୁ ତୁମ୍ଭେ କେଉଁଠାରେ ଅଛ ମୁଁ ଯେତେବେଳେ ଏହି ପ୍ରକାର ଭୟଙ୍କର ଭାବନା ଏବଂ ଅନ୍ୟାନ୍ୟ ଚିନ୍ତା ମଧ୍ୟ ଦେଇ ଗତି କରୁଛି ? ଏହାପରେ ପ୍ରଭୁ ତାଙ୍କୁ କହିଲେ କାଥାରିନା ଏହି ସମୟଗୁଡ଼ିକରେ ମୁଁ ତୁମ ହୃଦୟରେ ଅଛି । ଏହି ପରିସ୍ଥିତିରେ ପ୍ରତ୍ୟେକ ଦିନ ଆଗକୁ ବଢ଼ିବା ପାଇଁ ମୁଁ ତୁମ୍ଭଙ୍କୁ ସାହସ ଏବଂ ଶକ୍ତି ଯୋଗାଉଥିଲି । ହଠାତ୍ କାଥାରିନା ବୁଝି ପାରିଲେ ଯେ ପ୍ରଭୁ ଗୋଟିଏ ସ୍ଥାନରେ କିମ୍ବା ଅନ୍ୟ

ସ୍ଥାନରେ ରହନ୍ତି ନାହିଁ । ସଫଳତାରେ ବା ଉତମତାରେ ଅନୁଭବ ସହିତ ତାଙ୍କୁ ଆମେ ଚିହ୍ନିତ କରିପାରିବା ନାହିଁ କିନ୍ତୁ ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ପ୍ରତି ପରିସ୍ଥିତିରେ ସବୁବେଳେ ସେ ଆମକୁ ସାହାଯ୍ୟ କରନ୍ତି । ଈଶ୍ୱରଙ୍କ ସହିତ ନିକଟତର ହେବା ପାଇଁ ଏବଂ ତାଙ୍କର ସ୍ୱର୍ଗୀୟ ଉପସ୍ଥିତିକୁ ସର୍ବଦା ଅନୁଭବ କରିବା ପାଇଁ ଆମ ହୃଦୟରେ ତାଙ୍କ ପାଇଁ ଗୋଟିଏ ନିରୋଳା ସ୍ଥାନ ତିଆରି କରିବା ଉଚିତ୍ । ଯେକୌଣସି ସ୍ଥାନରେ ଆମ୍ଭେ ତାଙ୍କୁ ଅଟକାଇ ପାରିବା, ବାର୍ତାଳାପ କରିପାରିବା ଏବଂ ପ୍ରେମ କରି ପାରିବା । କାଥାରିନା ତାଙ୍କର ଏହି ଅନୁଭବଟିକୁ ଅନ୍ୟମାନଙ୍କ ଆଗରେ ପ୍ରକାଶ କଲେ । ଯେହେତୁ ସେମାନେ ସର୍ବଦା କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ ଏବଂ ଗୀର୍ଜାକୁ ଯିବା ପାଇଁ ସମୟ ଦେଉ ନଥିଲେ, ଏହି ପ୍ରକାର ଅନୁଭବଟି ସେମାନଙ୍କ ହୃଦୟକୁ ସ୍ପର୍ଶ କରିଥିଲା ।

କାଥାରିନା ମଧ୍ୟ ଅନୁଭବ କରିଥିଲେ ଯେ ପ୍ରଭୁଙ୍କ ପାଇଁ ଏହି ପ୍ରକାର ନିରୋଳା ସ୍ଥାନ ପ୍ରସ୍ତୁତ କରିବାକୁ ହେଲେ ଆମକୁ ଉତମ ଜୀବନଯାପନ କରିବାକୁ ହେବ । ଏହାର ଅର୍ଥ ଆମ ବ୍ୟବସାୟରେ ସଚ୍ଚୋଟତା, ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ବିଶ୍ୱସ୍ତତା, ଅନ୍ୟମାନଙ୍କ ସହିତ ଭଦ୍ରତା ଏବଂ ପ୍ରତ୍ୟେକ କ୍ଷେତ୍ରରେ ଯୀଶୁଙ୍କ ପରି କାର୍ଯ୍ୟ କରିବାକୁ ପଡ଼ିବ । କାଥାରିନାଙ୍କ ଏହି ଶିକ୍ଷାରେ ଆକୃଷ୍ଟ ହୋଇ ଅନେକେ ନିଜର ପାପ ସ୍ୱୀକାର କରି ମନ ପରିବର୍ତନ କଲେ ।

ସେହି ସମୟରେ ପୁଣ୍ୟପିତା ଏକାଦଶ ଗ୍ରେଗରି (ଫ୍ରାନ୍ସ ଦେଶର ବ୍ୟକ୍ତି) ରୋମ୍‌ରେ ନ ରହି ଫ୍ରାନ୍‌ସର ରାଜାମାନଙ୍କ ଆଦେଶରେ ଆଭିଗ୍‌ନନ ଯାଇ ରହିଲେ । ଏହି ପରିସ୍ଥିତି ଖ୍ରୀଷ୍ଟିଆନମାନଙ୍କୁ ବିଚଳିତ କଲା । ଭାଟିକାନ୍‌କୁ ଫେରିବା ପାଇଁ ପୁଣ୍ୟପିତା ଗ୍ରେଗରିଙ୍କ ସାହସ ନଥିଲା । କାଥାରିନାଙ୍କୁ କୁହାଗଲା ଯେ, ସେ ଫ୍ରାନ୍‌ସ ଯାଇ ପୁଣ୍ୟ ପିତାଙ୍କୁ ଫେରି ଆସିବା ପାଇଁ ଉପଦେଶ ଦିଅନ୍ତୁ । କାଥାରିନା ଫ୍ରାନ୍‌ସ ଯାଇ ପୁଣ୍ୟପିତାଙ୍କୁ ଅନୁରୋଧ କଲେ ଏପରିକି ତାଙ୍କୁ ଉତ୍ସାହ ଏବଂ ଗାଳି ମଧ୍ୟ ଦେଇ କହିଲେ; 'ହେ ପିତା ଇଟାଲୀ ସହିତ ଶାନ୍ତି ସ୍ଥାପନ କର, ଯୁଦ୍ଧ ନୁହଁ, ଖଣ୍ଡା ଏବଂ ସୈନିକ ନେଇ ନୁହଁ, ବରଂ କ୍ରୁଶ ଏବଂ ପବିତ୍ର ମେଷ ଶାବକ ନେଇ ରୋମ୍‌କୁ ଫେରିଯାଅ' । ପୁଣ୍ୟପିତା ଗ୍ରେଗରୀ ମନ ପରିବର୍ତନ କଲେ ଏବଂ କାର୍ଡିନାଲ୍ ହେବା ସମୟରେ ସେ ଯେଉଁ ଶପଥ ନେଇଥିଲେ ତାହା

କାଥାରିନା ତାଙ୍କୁ ସ୍ମରଣ କରାଇ ଦେଲେ, ଯାହା କେହି ଜାଣି ନଥିଲେ । ସେ ନିଜେ ଶପଥ ନେଇଥିଲେ ଯଦି ସେ ପୁଣ୍ୟ ପିତା ହୁଅନ୍ତି, ତେବେ ନିଶ୍ଚୟ ରୋମକୁ ହିଁ ପୁଣ୍ୟପିତା ଫେରିଆସିବେ । ଶେଷରେ ରୋମକୁ ଫେରି ଆସିବା ପାଇଁ ପୁଣ୍ୟପିତା ନିଷ୍ପତି ନେଲେ । ଏହି ଖବର ଶୁଣି ଫ୍ରାନ୍ସରେ ରାଜା ଏବଂ ଅନ୍ୟମାନେ କାଥାରିନାଙ୍କୁ ଘୃଣା କଲେ । ପୁଣ୍ୟ ପିତା ଗ୍ରେଗରୀଙ୍କ ନିଷ୍ପତିରେ ତାଙ୍କ ପିତା ତାଙ୍କ ସାମନାରେ ଚଟାଣରେ ପଡ଼ି ତାଙ୍କୁ ଆଭିଗନ୍ ଛାଡ଼ି ନ ଯିବା ପାଇଁ ଅନୁନୟ କଲେ । ପୁଣ୍ୟ ପିତା ଏକାଦଶ ଗ୍ରେଗରୀଙ୍କ ମୃତ୍ୟୁ ପରେ ତାଙ୍କ ସ୍ଥାନରେ ପୁଣ୍ୟପିତା ଷଷ୍ଠ ପାଉଲଙ୍କୁ ନିର୍ବାଚିତ କରାଗଲା । ସେ ମଣ୍ଡଳୀରେ କିଛି ସଂସ୍କାର ଆଣିବା ପାଇଁ ଚେଷ୍ଟା କଲେ, କିନ୍ତୁ ତାଙ୍କର କ୍ରୂର ବ୍ୟବହାରରେ ଫ୍ରାନ୍ସର କାର୍ଡିନାଲମାନେ ସନ୍ତୁଷ୍ଟ ନ ଥିଲେ । ମଣ୍ଡଳୀର କେନ୍ଦ୍ରସ୍ଥଳୀ ଯେ ରୋମ୍ ହେବ, ସେଥିରେ ଫ୍ରାନ୍ସର କାର୍ଡିନାଲ ପୁଣ୍ୟପିତା ଷଷ୍ଠ ଉର୍ବାନଙ୍କୁ ଅସ୍ୱୀକାର କଲେ ଏବଂ ଫ୍ରାନ୍ସକୁ ଫେରିଯାଇ ଆଭିଗନ୍‌ରେ ତାଙ୍କ ପ୍ରତିଦ୍ୱନ୍ଦ୍ୱି ଅନ୍ୟ ଜଣେ ଫ୍ରାନ୍ସର କାର୍ଡିନାଲ୍‌ଙ୍କୁ ଅଷ୍ଟମ କ୍ଲେମେନ୍ତ ପୁଣ୍ୟପିତା ରୂପେ ନିର୍ବାଚିତ କଲେ । ସମସ୍ତେ କାଥାରିନାଙ୍କୁ ନିନ୍ଦା କଲେ କାରଣ ସେ ଆଭିଗନରୁ ପୁଣ୍ୟପିତାଙ୍କୁ ରୋମକୁ ନେଇ ଆସିଥିଲେ । ଦିନକୁ ଦିନ କାଥାରିନାଙ୍କ ଶରୀର ଦୁର୍ବଳ ହୋଇଆସିଲା । ଦିନେ ଯୀଶୁଙ୍କୁ କ୍ରୁଶରେ ଯାତନା ପାଉଥିବା ଦୃଶ୍ୟ ସେ ଦେଖିବାକୁ ପାଇଲେ । ହଠାତ୍ ଯୀଶୁଙ୍କ ହସ୍ତ, ପାଦ ଏବଂ ହୃଦୟରୁ ଉଜ୍ଜ୍ୱଳ କିରଣ ଆସିବା ସେ ଦେଖିଲେ ଏବଂ କାଥାରିନା ସେହି କ୍ରୁଶ ଯନ୍ତ୍ରଣା ନିଜେ ଅନୁଭବ କଲେ । ସେ ଅନୁଭବ କଲେ ନିଜ ଶରୀର ହସ୍ତ ଓ ପାଦରେ ଯୀଶୁଙ୍କୁ ଦିଆଯାଇଥିବା କଣ୍ଟାର ଯନ୍ତ୍ରଣା ।

୩୩ ବର୍ଷ ବୟସରେ କାଥାରିନା ଯୀଶୁଙ୍କର ଅନ୍ୟଏକ ଦର୍ଶନ ପାଇଲେ । ଏହି ଦୃଶ୍ୟଟି ଅଧିକ କଷ୍ଟଦାୟକ ଥିଲା । ଯୀଶୁ କାଥାରିନାଙ୍କୁ ନିଜର ହୃଦୟ ଏବଂ ରକ୍ତ ତାଙ୍କ ମଣ୍ଡଳୀ ଉପରେ ଢାଳି ଦେଉଛନ୍ତି । କାଥାରିନା ତାଙ୍କ ଶିକ୍ଷାରେ କହନ୍ତି, 'ଦିବ୍ୟ ପ୍ରସାଦ ତାଙ୍କ ପାଇଁ କେବଳ ଆଧ୍ୟାତ୍ମିକ nourishment ନଥିଲା, ବରଂ ଅନନ୍ତ ଜୀବନ ପାଇଁ ପୃଥିବୀରେ ବାସ କରିବା ପାଇଁ ଏହି ଖାଦ୍ୟ ତାଙ୍କୁ ଯଥେଷ୍ଟ ସାହାଯ୍ୟ ଦେଉଥିଲା । ଦିବ୍ୟ ପ୍ରସାଦ ଭୋଜନ ଦ୍ୱାରା ଆମ୍ଭେ ସବୁ ପ୍ରକାର କଷ୍ଟକୁ ସମ୍ମୁଖୀନ ହେବାପାଇଁ ଏହା ଶକ୍ତି ଯୋଗାଇଥାଏ' ।

ଏପରିକି ତାଙ୍କ ମୃତ୍ୟୁ ପୂର୍ବରୁ ରାଜନୈତିକ ସ୍ତରରେ ରୋମର ସରକାର ଏବଂ ପୁଣ୍ୟପିତା ଷଷ୍ଠ ଉର୍ବାନଙ୍କ ମଧ୍ୟରେ ପୁନର୍ମିଳନ କରାଇ ପାରିଥିଲେ । ୧୩୭୪ ମସିହାରେ ଇଟାଲୀରେ ଯେଉଁ ଭୟଙ୍କର ମହାମାରୀ ରୋଗ ବ୍ୟାପିଥିଲା, ସେହି ସମୟରେ ଅନେକେ କାଥାରିନାଙ୍କ ମଧ୍ୟସ୍ଥତାରେ ପ୍ରାର୍ଥନା କରି ଆରୋଗ୍ୟ ଲାଭ କରିଥିଲେ । ୧୪୬୧ ମସିହାରେ ପୁଣ୍ୟପିତା ଦ୍ୱିତୀୟ ପୀୟୂଷ ତାଙ୍କୁ ସାଧ୍ୱୀରୂପେ ଘୋଷଣା କରିଥିଲେ ଏବଂ ପୁଣ୍ୟପିତା ଷଷ୍ଠ ପାଉଲ ୧୯୭୦ରେ ତାଙ୍କୁ ମଣ୍ଡଳୀର ଧାର୍ମିକ ପଣ୍ଡିତ ଆଖ୍ୟା ଦେଇ ସମ୍ମାନିତ କରିଛନ୍ତି । ସାଧ୍ୱୀ କାଥାରିନା ସିଏନାଙ୍କ ସାହସିକତା, ପବିତ୍ରତା ଏବଂ ମଣ୍ଡଳୀର ଏକତା ନିମନ୍ତେ ଯେଉଁ କାର୍ଯ୍ୟ କରିଛନ୍ତି ତାହା ଆମ ସମସ୍ତଙ୍କ ପାଇଁ ସର୍ବଦା ଏକ ଜୀବନ୍ତ ଆଦର୍ଶ ।

**ସିଏନାର ସାଧ୍ୱୀ କାଥାରିନାଙ୍କ କେତୋଟି ଉକ୍ତି :**

* "ପ୍ରେମ ଦ୍ୱାରା ହିଁ ମନୁଷ୍ୟର ହୃଦୟକୁ ଆକର୍ଷଣ କରାଯାଇ ପାରିବ" ।
* "ଯାହାକୁ ଜଣେ ପ୍ରେମ କରେ ତାହାକୁ ପ୍ରେମ ହିଁ ପରିବର୍ତ୍ତନ କରେ" ।
* ପ୍ରଭୁ କାଥାରିନାଙ୍କୁ କହନ୍ତି "ପ୍ରେମ ବିନା ଆତ୍ମା ବଞ୍ଚି ପାରିବ ନାହିଁ । ସେ ସବୁବେଳେ ପ୍ରେମ କରିବାକୁ ଚାହେଁ କାରଣ ପ୍ରେମ ଉପାଦାନରେ ହିଁ ତାଙ୍କୁ ସୃଷ୍ଟି କରାଯାଇଛି ଏବଂ ପ୍ରେମରେ ମୁଁ ତାଙ୍କୁ ସୃଷ୍ଟି କରିଛି" ।



## ସାଧୁ ଯୋସେଫ (ମଇ ୧)

ସୁସମାଚାରରୁ ସାଧୁ ଯୋସେଫଙ୍କ ଜୀବନୀ ଆମ୍ଭେ କେବଳ ଏତିକି ଜାଣୁ ଯେ, ସେ ଥିଲେ ରାଜା ଦାଉଦଙ୍କ ବଂଶଧର ; ବେଥେଲିହିମର ଅଧିବାସୀ । ଗାଲିଲୀର ନାଜାରେଥରେ ସେ ନିଜର ଜୀବିକା ଅର୍ଜନ କରୁଥିଲେ । ବୃତିରେ ସେ ଥିଲେ ଜଣେ ବଢ଼େଇ । ମାଥ୍ୟୁ ଲିଖିତ ସୁସମାଚାରରେ ଯୀଶୁଙ୍କୁ ବଢ଼େଇର ପୁତ୍ର ବୋଲି ଉଲ୍ଲେଖ କରାଯାଇଛି (ମାଥ୍ୟୁ ୧୩:୫୫) । ସାଧୁ ମାର୍କ ସୁସମାଚାରରେ ଯୀଶୁଙ୍କୁ ଜଣେ ବଢେଇ ରୂପେ ସମ୍ବୋଧନ କରିଛନ୍ତି । ଗ୍ରୀକ୍ ଭାଷାରେ ବଢ଼େଇ ଶବ୍ଦକୁ (Tekton) ଟେକଟନ୍ ବୋଲି ଅନୁବାଦ କରାଯାଇଛି ଯାହାର ଅର୍ଥ ହେଲା ଜଣେ ନିପୁଣ କାରିଗର ଯିଏ ହୋଇପାରେ ପଥର କାରିଗର କିଅବା କାଠର କାରିଗର କିଅବା ମେଟଲ୍ ବସ୍ତୁର ଜଣେ କାରିଗର । ଲାଟିନ୍ ଚର୍ଚ୍ଚର ଧର୍ମପିତାମାନଙ୍କ ମତରେ, ବିଶେଷ ଭାବରେ ସାଧୁ ହିଲାରୀଙ୍କ ଅନୁଯାୟୀ ସାଧୁ ଯୋସେଫ ଏବଂ ଯୀଶୁ ଥିଲେ ବୃତିରେ ଜଣେ କମାର ବା ଲୌହକାର । ଧର୍ମତତ୍ୱବିତ W.F. Albright ଏବଂ C.S Mann ଏହି ଶବ୍ଦ (Tekton) କୁ ଶିଳ୍ପୀ ଯନ୍ତ୍ରୀ ଅର୍ଥରେ ବୁଝନ୍ତି । ସେମାନଙ୍କ ମତରେ ଯୋସେଫ ଏବଂ ଯୀଶୁ ହୋଇପାରନ୍ତି ଜଣେ ଜାହାଜ ତିଆରି କାରିଗର । ଦ୍ୱିତୀୟ ଶତାବ୍ଦୀର ମଣ୍ଡଳୀର ଧର୍ମପିତା ସାଧୁ ଜଷ୍ଟିନଙ୍କ ମତରେ ଯୀଶୁ ଥିଲେ ଜଣେ ବଢ଼େଇ ଏବଂ ଜୁଆଳି ଓ ଲଙ୍ଗଳ ତିଆିର କରିବା ଥିଲା ତାଙ୍କ ବୃତି ।

ମାରୀୟାଙ୍କୁ ଯେତେବେଳେ ତିନି ବର୍ଷ ହୋଇଥିଲା ତାଙ୍କ ପିତା ଯୋଆକିମ ଏବଂ ମାତା ଆନ୍ନା ପ୍ରଭୁଙ୍କର ସେବା ନିମନ୍ତେ ତାଙ୍କୁ ମନ୍ଦିରରେ ଉତ୍ସର୍ଗ କରିଥିଲେ । ତାଙ୍କୁ ଯେତେବେଳେ ୧୪ ବର୍ଷ ହୋଇଥିଲା ମନ୍ଦିରର ମହାଯାଜକ ସମସ୍ତ ଝିଅଙ୍କୁ ନିଜ ନିଜ ଗୃହକୁ ଫେରି ବିବାହ ଜୀବନ ଆରମ୍ଭ କରିବା ପାଇଁ କହିଥିଲେ । ଅନ୍ୟ ଝିଅମାନେ ଗୃହକୁ ଫେରିଗଲେ, କିନ୍ତୁ ମାରୀୟା ଗୃହକୁ ଫେରିଯିବା ପାଇଁ ମନା କରିଥିଲେ କାରଣ ସେ ଜାଣି ପାରିଥିଲେ ଯେ ତାଙ୍କ ପିତା ଓ ମାତା ତାଙ୍କୁ ପ୍ରଭୁଙ୍କ ସେବା ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି, ପୁଣି ସେ ନିଜର କୁମାରୀତ୍ୱକୁ ପ୍ରଭୁଙ୍କ ନିମନ୍ତେ ସମର୍ପଣ କରିଥିଲେ ।

ମହାଯାଜକଙ୍କ ପ୍ରାର୍ଥନା ଦ୍ୱାରା ପ୍ରଭୁ ତାଙ୍କୁ ପ୍ରକାଶ କରିଥିଲେ ଯେ

ଦାଉଦଙ୍କ ବଂଶଧରରୁ ଯେଉଁମାନେ ଅବିବାହିତ ସେମାନେ ଗୋଟିଏ ଗୋଟିଏ ଡାଳର ଶାଖା ଦେବାଳୟର ବେଦୀକୁ ନେଇ ଆସିବେ । ଯାହାର ଡାଳର ଶାଖାରେ ଫୁଲ ଫୁଟିବ ଏବଂ ପବିତ୍ର ଆତ୍ମା କପୋତ ରୂପେ ଆସି ସେଠାରେ ଅବସ୍ଥାନ କରିବେ, ଭାବବାଦୀ ଯିଶାୟଙ୍କ ଅନୁଯାୟୀ ସେହି ବ୍ୟକ୍ତି ହିଁ ମାରୀୟାଙ୍କ ବର ରୂପେ ଯୋଗ୍ୟ ବିବେଚିତ ହେବେ । ଯୋସେଫ ଯଦିଓ ସେହି ଶାଖା ନେଇ ଆସିଲେ ତଥାପି ତାଙ୍କର ସାହସ ନ ଥିଲା ବେଦୀ ସାମନାରେ ସେହି ଡାଳ ଶାଖାଟିକୁ ରଖିବା ପାଇଁ କାରଣ ନିଜକୁ ସେ ମାରୀୟାଙ୍କଠାରୁ ବୟସରେ ବୃଦ୍ଧ ବୋଲି ବିଚାର କଲେ । କିନ୍ତୁ ଯେତେବେଳେ ସେ ଡାଳର ଶାଖାଟିକୁ ବେଦୀ ସମ୍ମୁଖରେ ରଖିଲେ, ସେହି ଶାଖା ପଲ୍ଲବିତ ହେଲା ଏବଂ କପୋତ ଆସି ସେଠାରେ ଅବସ୍ଥାନ କଲା ।

ଏହାପରେ ଯୋସେଫ୍ ନିଜ ଗୃହ ବେଥଲିହିମକୁ ଫେରିଗଲେ ଏବଂ ବିବାହ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କଲେ । ମାରୀୟା ମଧ୍ୟ ନିଜ ଗୃହ ନାଜାରେଥକୁ ଫେରିଗଲେ । ଯେତେବେଳେ ମାରୀୟା ଗୃହରେ ଥିଲେ, ସେହି ସମୟରେ ଈଶ୍ୱରଙ୍କ ମାତା ହେବା ପାଇଁ ପ୍ରଭୁଙ୍କର ଦୂତ ତାଙ୍କୁ ସନ୍ଦେଶ ଦେଲେ ।

ମାଥ୍ୟୁଙ୍କ ସୁସମାଚାର ଅନୁଯାୟୀ ଯୋସେଫଙ୍କୁ ଜଣେ ନ୍ୟାୟପରାୟଣ ବ୍ୟକ୍ତି ରୂପେ ଉପସ୍ଥାପନ କରାଯାଇଛି । ମାରୀୟାଙ୍କ ଗର୍ଭଧାରଣ ବିଷୟ ଜାଣିବା ପରେ ଯୋସେଫଙ୍କ ମନରେ ସନ୍ଦେହ ଜାତ ହେଲା । ଯୀହୁଦୀମାନଙ୍କ ନିୟମ ଅନୁଯାୟୀ ଏହି ବିଷୟରେ ଯାଜକଙ୍କୁ ଅବଗତ କରାଇବା ତାଙ୍କର କର୍ତ୍ତବ୍ୟ ଥିଲା । ସେହି ପ୍ରକାର ବ୍ୟକ୍ତିମାନଙ୍କୁ ପ୍ରସ୍ତରାଘାତ କରି ମୃତ୍ୟୁଦଣ୍ଡ ଦେବା ଯୀହୁଦୀମାନଙ୍କ ନିୟମ ଥିଲା । ଯୋସେଫ୍ କିନ୍ତୁ ମାରୀୟାଙ୍କ ପ୍ରତି ତାହା କଲେ ନାହିଁ । ମାରୀୟାଙ୍କ ପ୍ରତି ତାଙ୍କର ଦୟା ନିୟମର ପରିଧି ବାହାରେ ଯାଇଥିଲା । ସେ ଦ୍ୱନ୍ଦ୍ୱରେ ପଡ଼ିଲେ ଏବଂ ନିଷ୍ପତି ନେବା ପୂର୍ବରୁ ପ୍ରଭୁ ତାଙ୍କୁ ସନ୍ଦେଶ ଦେଇ ତାଙ୍କ ଯୋଜନା ପ୍ରକାଶ କଲେ । ଈଶ୍ୱରଙ୍କ ଯୋଜନାରେ ନିଜକୁ ସାମିଲ୍ କଲାପରେ ମଧ୍ୟ ଯୋସେଫଙ୍କ ଜୀବନରେ ଅନେକ ପରୀକ୍ଷା ଆସିଥିଲା । ରାଜା ହେରୋଦ ଯୀଶୁଙ୍କୁ ମାରିବା ପାଇଁ ଯେତେବେଳେ ଛୋଟ ଶିଶୁମାନଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଲେ ପ୍ରଭୁ ପୁନର୍ବାର ସ୍ୱପ୍ନରେ ସନ୍ଦେଶ ଦେଇ ଶିଶୁ ଯୀଶୁଙ୍କର ଜୀବନକୁ

ରକ୍ଷା କରିପାରିଥିଲେ । ବେଥେଲିହିମରୁ ମିଶର ଦେଶ ପ୍ରାୟ ୬୪୦ କିଲୋମିଟର, ପାହାଡ଼ ଉପତ୍ୟକା ଏବଂ ମରୁଭୂମି ଦେଇ ସେମାନଙ୍କୁ ପ୍ରାୟ ୩୦ ଦିନ ଯାତ୍ରା କରିବାକୁ ପଡ଼ିଥିଲା । ମିଶର ଦେଶର ହେଲିଓ ପୋଲିସ୍ ପରବର୍ତ୍ତୀ ସମୟରେ ମେମଫିସ୍ ନାମରେ ନାମିତ ଯାହା ବର୍ତ୍ତମାନର କାଇରୋ, ସେଠାରେ ୭ବର୍ଷ ସେମାନଙ୍କୁ ରହିବାକୁ ପଡ଼ିଥିଲା ।

ଯୀଶୁଙ୍କୁ ଯେତେବେଳେ ୧୨ ବର୍ଷ ହୋଇଥିଲା ମାରୀୟା ଏବଂ ଯୋସେଫ ପାସ୍କା ପର୍ବ ପାଳନ ନିମନ୍ତେ ତାଙ୍କୁ ଜେରୁସାଲେମକୁ ନେଇ ଆସିଥିଲେ । ଯଦିଓ ସେମାନେ ଗରୀବ ଥିଲେ ତଥାପି ଧାର୍ମିକ ରୀତି ପାଳନ କରିବା ନିମନ୍ତେ ତାଙ୍କ ପାଇଁ ଆର୍ଥିକ ପ୍ରତିବନ୍ଧକ ନଥିଲା । ପର୍ବ ପରେ ଯୀଶୁ ହଜିଥିବା ସମୟରେ ଯୋସେଫ ଓ ମାରୀୟା ଦୁହେଁ ତାଙ୍କୁ ଖୋଜି ଖୋଜି ମନ୍ଦିରରେ ପାଇଥିଲେ । ଏହି ଘଟଣା ପରେ ଯୋସେଫଙ୍କ ବିଷୟରେ ସୁସମାଚାରରେ କିଛି ଦେଖିବାକୁ ପାଉନାହୁଁ ହୁଏତ, ଯୀଶୁ ପ୍ରଚାର କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ମୃତ୍ୟୁବରଣ କରିଥାଇପାରନ୍ତି । ମଇ ମାସ ୧ ତାରିଖକୁ ସାରା ବିଶ୍ୱ ଶ୍ରମିକ ଦିବସ ରୂପେ ପାଳନ କରିଥାଏ । କାଥଲିକ ଖ୍ରୀଷ୍ଟ ବିଶ୍ୱାସୀମାନେ ଏହି ଦିବସରେ ସାଧୁ ଯୋସେଫଙ୍କ ପର୍ବ ପାଳନ କରି ତାଙ୍କୁ ଜଣେ ଆଦର୍ଶ ଶ୍ରମିକ ଭାବେ ଭକ୍ତି ଓ ସମ୍ମାନ ଦେଇଥାନ୍ତି । ୧୯୫୫ ମସିହା ମଇ ମାସ ୧ ତାରିଖ ଦିନ ଇଟାଲୀର କାଥଲିକ ଶ୍ରମିକ ସଂଘ ସାଧୁ ପିତର ଗୀର୍ଜାର ପ୍ରାଙ୍ଗଣରେ ସମାବେଶ ହେବା ଅବସରରେ ପୁଣ୍ୟପିତା ଦ୍ୱାଦଶ ପୀୟୂଷ ଏହି ଦିବସଟିକୁ ସାଧୁ ଯୋଷେଫଙ୍କ ପର୍ବ ଦିବସ ରୂପେ ଆନୁଷ୍ଠାନିକ ଭାବେ ଆରମ୍ଭ କରିଥିଲେ । ସାଧୁ ଯୋଷେଫଙ୍କୁ ଶ୍ରମିକମାନଙ୍କ ଇଷ୍ଟ ସାଧୁ ରୂପେ ଘୋଷଣା କରି କହିଥିଲେ, "ସାଧୁ କୁଟୁମ୍ବ ପରିବାରର ମୁଖ୍ୟ ସାଧୁ ଯୋଷେଫ, ବୃତିରେ ଜଣେ ବଢ଼େଇ । ଯାହାକୁ ପ୍ରଭୁ ତାଙ୍କରି ଅନୁଗ୍ରହରେ ଯୀଶୁଙ୍କର ପାଳକ ପିତା ରୂପେ ନିର୍ବାଚିତ କରିଛନ୍ତି । ସେ ଜଣେ ପାଳକ, ରକ୍ଷକଏବଂ ପିତା ଭାବରେ ତୁମ ମଧ୍ୟରେ ଅଛନ୍ତି । ସେ ନୀରବ ଅଟନ୍ତି କିନ୍ତୁ ତାହାଙ୍କ ଶୁଣିବାର ଶକ୍ତି ପ୍ରଖର ଅଟେ । ଆମ ତ୍ରାଣକର୍ତ୍ତାଙ୍କ ହୃଦୟ ପ୍ରତି ତାଙ୍କର ମଧ୍ୟସ୍ଥତା ପ୍ରାର୍ଥନା ଅତି ଶକ୍ତିଶାଳୀ ଅଟେ । ପୁରାତନ ନିୟମର ସମସ୍ତ ସାଧୁଙ୍କଠାରୁ ଯୋସେଫଙ୍କ ପବିତ୍ରତା ଅତି ଉଚ୍ଚରେ । ପୂର୍ବଜମାନଙ୍କର

ପୂଣ୍ୟତାର ସମ୍ପୂର୍ଣ୍ଣତା ଏବଂ ଶୀର୍ଷତା ସାଧୁ ଯୋସେଫଙ୍କ ଠାରେ ପରିଲକ୍ଷିତ ହୁଏ । ଆବ୍ରାହମଙ୍କ ପରି ବିଶ୍ୱାସ ଓ ଆଜ୍ଞାବହତାର ସେ ଥିଲେ ଆଦର୍ଶ, ଇଶାକଙ୍କ ପରି ପ୍ରାର୍ଥନା ଓ ଦର୍ଶନର ନମୁନା, ଯାକୁବଙ୍କ ପରି ଧୈର୍ଯ୍ୟ ଏବଂ ତ୍ୟାଗପୂର୍ଣ୍ଣ ବ୍ୟକ୍ତି ଏବଂ ମିଶରର ଯୋସେଫଙ୍କ ପରି ପବିତ୍ରତାରେ ପରିପୂର୍ଣ୍ଣ ଥିଲେ । ସାଧୁ ଯୋସେଫ୍ ଯିଏ ଦାଉଦଙ୍କ ବଂଶଧର, ତାହାଙ୍କ ପରି ସେ ପ୍ରାର୍ଥନାରେ ରାଜକୀୟ ମାଧ୍ୟସ୍ଥତା କରନ୍ତି । ମିଶରର ରାଜା ଫାରୋ ଦେଶରେ ଦୁର୍ଭିକ୍ଷ ପଡ଼ିବାରୁ, ସେଠିକାର ନିରୀହ ବ୍ୟକ୍ତିମାନଙ୍କୁ ଯୋସେଫଙ୍କ ନିକଟକୁ ପଠାଇଥିଲେ । ସେ କହିଲେ, Ite ad Joseph ଅର୍ଥାତ୍ ଯୋସେଫଙ୍କ ନିକଟକୁ ଯାଅ । ମିଶରର ଯୋଷେଫଙ୍କ ସାହାଯ୍ୟ ଲୋଡ଼ି, ତାଙ୍କଠାରୁ ଶସ୍ୟ ସଂଗ୍ରହ କର ଓ ସେଥିରେ ତୁମର ଜୀବନ ରକ୍ଷା ହୋଇପାରିବ । ଆମ୍ଭେ ସମସ୍ତେ ଖ୍ରୀଷ୍ଟିଆନ ଦୃଢତାର ସହିତ ଏହି ନୂତନ ଯୋସେଫଙ୍କ ନିକଟକୁ ଯିବା, ଯାହାଙ୍କ ତତ୍ତ୍ୱାବଧାନରେ ଯୀଶୁ ବଢ଼ିଲେ ସେ ଆମର ସମସ୍ତ ଆଧ୍ୟାତ୍ମିକ ଆବଶ୍ୟକତାକୁ ପୂରଣ କରିବେ ।

ସାଧୁ ଯୋସେଫ୍‌ଙ୍କ ପର୍ବ ପାଳନ କରି ଆମ୍ଭେ କାର୍ଯ୍ୟର ପବିତ୍ରତା ଉପରେ ଧ୍ୟାନ ଦେଉ । ମନୁଷ୍ୟର ଶ୍ରମ ଈଶ୍ୱରଙ୍କ ସୃଷ୍ଟି କାର୍ଯ୍ୟକୁ ତ୍ୱରାନ୍ୱିତ କରି ରଖିଥାଏ । ଆମର ସଚ୍ଚୋଟ କାର୍ଯ୍ୟ ଦ୍ୱାରା ଆମ୍ଭେ ଯେ କେବଳ ନିଜର ଜୀବିକା ଉପାର୍ଜନା କରୁ ତାହା ନୁହେଁ, ଆମ୍ଭେ ନିଜକୁ ପବିତ୍ରତା ରଖି ଈଶ୍ୱରଙ୍କୁ ପ୍ରଶଂସା କରୁ । ମନୁଷ୍ୟର ଶ୍ରମ ଈଶ୍ୱରଙ୍କ ଗୌରବ । ଯୀଶୁ ଯେପରି ନିଜକୁ ପିତାଙ୍କ ନିକଟରେ ଉତ୍ସର୍ଗ କରନ୍ତି, ଆମ୍ଭେ ନୈବେଦ୍ୟ ଦ୍ୱାରା ସୃଷ୍ଟିର ସମସ୍ତ ଉପାଦାନକୁ ଈଶ୍ୱରଙ୍କ ନିକଟରେ ଉତ୍ସର୍ଗ କରି ତାହାଙ୍କର ଅନୁଗ୍ରହ ଭିକ୍ଷା କରିବା ।

***

# ମଲକାଇର ସାଧୁ ଦାମିଆନ୍

## (୧୮୪୦-୧୮୮୯, ମଇ ୧୦)

ୟୁରୋପର ବେଲଜିୟମ ଦେଶର ତ୍ରେମେଲୋ ଗ୍ରାମରେ ୧୮୪୦ ମସିହା ଜାନୁୟାରୀ ୩ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ଫାଦେର ଦାମିଆନ୍ । ତାଙ୍କ ପିତା ଫ୍ରାନ୍‌ସିସ୍ ଡେ ଭୁଷ୍ଟର ଥିଲେ ଜଣେ ମକା ବ୍ୟବସାୟୀ ଓ ମାତା କାଟୋ ୱଟେର୍‌ସ ଗୃହର ରକ୍ଷଣ ବେକ୍ଷଣ କରୁଥିଲେ । ଫାଦେର ଦାମିଆନଙ୍କ ଦୀକ୍ଷାସ୍ନାନ ନାମ ଥିଲା ଯୋସେଫ ଓ ଡକା ନାମ ଥିଲା 'ଜେଫ୍'। ଜଣେ ବଣିକ ଭାବରେ ତାଙ୍କ ପିତା ଫ୍ରାନ୍‌ସିସ୍ ଅଧିକାଂଶ ସମୟରେ ବାହାରେ ରହୁଥିଲେ ମଧ୍ୟ ମାଁ ପିଲାମାନଙ୍କ ପଢ଼ା ପ୍ରତି ଦୃଷ୍ଟି ଦେଉଥିଲେ । ତାଙ୍କ ପିତା ଓ ମାତା ଦୁହେଁ କାଥଲିକ ବିଶ୍ୱାସରେ ଦୃଢ଼ୀଭୂତ ଥିଲେ । ଛୋଟରୁ ହିଁ ଦାମିଆନ୍ ଗରୀବମାନଙ୍କ ପ୍ରତି ହୃଦୟରେ ଦୟାଭାବ ଥିଲା । ନିଜର ଖାଦ୍ୟକୁ ଅନ୍ୟମାନଙ୍କ ସହିତ ବାଣ୍ଟୁଥିଲେ । ଅନ୍ୟମାନଙ୍କ ସହିତ ଅତି ସହଜରେ ସେ ମିଶି ପାରୁଥିଲେ । ଯଦିଓ ଛୋଟ ସମୟରେ ସେ ଚଗଲାମି ପ୍ରକୃତିର ଥିଲେ ତଥାପି ସେ ଥିଲେ ଜଣେ ଚତୁର ପିଲା ।

୧୮୫୩ ମସିହାରେ ଜେଫ୍ ପ୍ରାଥମିକ ଶିକ୍ଷା ସମାପ୍ତ କରିଥିଲେ । ସେହି ବର୍ଷରେ ହିଁ ତାଙ୍କ ଭାଇ ଅଗୁଷ୍ଟେ ସେମିନାରୀରେ ଯୋଗ ଦେଇଥିଲେ । ବଡ଼ ଭାଇଙ୍କୁ ଅନୁକରଣ କରି ଜେଫ୍ ମଧ୍ୟ ଯାଜକ ହେବା ପାଇଁ ପ୍ରେରଣା ପାଇଥିଲେ । ପିତାଙ୍କ ଇଚ୍ଛା ଥିଲା ଯେ ଜେଫ୍ ତାଙ୍କର ବ୍ୟବସାୟକୁ ଆଗେଇ ନେବ । ଜେଫ୍‌ଙ୍କ ଅନ୍ତସ୍ୱର ଏତେ ଶକ୍ତିଶାଳୀ ଥିଲା ଯେ ପିତା ପୁଅର ଇଚ୍ଛାକୁ ସ୍ୱୀକାର କରିଥିଲେ ।

ବ୍ରାଇନେ ଲେ କମ୍‌ଟେ ରେ ନିଜର କଲେଜ ଅଧ୍ୟୟନ ଶେଷ କରି ଲୁଭେନସ୍ଥିତ ଯୀଶୁ ଓ ମାରୀୟା ପବିତ୍ର ସଂଘରେ ଜଣେ ନୋଭିସ୍ ରୂପେ ପ୍ରବେଶ କରିଥିଲେ । ପ୍ରଥମ ବ୍ରତ ନେବା ସମୟରେ ନିଜର ନାମକୁ ବଦଳାଇ ବ୍ରଦେର ଦାମିଆନ୍ ନାମ ରଖିଥିଲେ । ନିଜ ଭାଇଙ୍କ ପରି ଜଣେ ଉତମ ଯାଜକ ହେବା ପାଇଁ ତାଙ୍କର ଇଚ୍ଛା ଥିଲା କିନ୍ତୁ ତାଙ୍କ ଅଧିକାରୀମାନଙ୍କ ମତ ଅନୁଯାୟୀ ପଢ଼ାରେ ସେ ଦୁର୍ବଳ ଥିଲେ । ନିଜ ଭାଇଙ୍କଠାରୁ ଲାଟିନ ଶିକ୍ଷା କରିବା ପରେ ଅଧିକାରୀମାନଙ୍କ ମନ ପରିବର୍ତ୍ତନ ହୋଇଥିଲା ଓ ତାଙ୍କୁ ଯାଜକ ହେବା ପାଇଁ

ସୁଯୋଗ ଦିଆଯାଇଥିଲା । ଧାର୍ମିକ ଅଧ୍ୟୟନ କରିବା ସମୟରେ ସାଧୁ ଫ୍ରାନ୍ସିସ୍ ଜେଭିୟେରଙ୍କ ଛବି ସମ୍ମୁଖରେ ସେ ପ୍ରାର୍ଥନା କରୁଥିଲେ । ସେ ଜଣେ ବିଖ୍ୟାତ ମିଶିନାରୀ ଥିଲେ । ଏଣୁ ତିନି ବର୍ଷ ପରେ ପ୍ରଭୁ ତାଙ୍କ ପ୍ରାର୍ଥନା ଶୁଣିଥିଲେ ।

ହାୱାଲି ସରକାର ଯେଉଁ ନିୟମ ପ୍ରଣୟନ କରିଥିଲେ ତାହାଦ୍ୱାରା ସେହି ରୋଗର ପ୍ରତିକାର କରାଯାଇ ପାରୁଥିଲା । ଯେଉଁମାନେ କୁଷ୍ଠ ରୋଗରେ ଆକ୍ରାନ୍ତ ହେଉଥିଲେ ସେମାନଙ୍କ ପାଇଁ ସହରର ଦୂରରେ ଉପନିବେଶ ନିର୍ମାଣ କରାଯାଇ ସେମାନଙ୍କୁ ଥଇଥାନ କରାଯାଉଥିଲା । ହଜାର ହଜାର କୁଷ୍ଠରୋଗୀମାନେ ସେମାନଙ୍କ ପରିବାରରୁ ଅଲଗା ହୋଇ ଏକ ଦୁର୍ଦ୍ଦଶାପୂର୍ଣ୍ଣ ଜୀବନ ଯାପନ କରୁଥିଲେ। ଯଦିଓ ସରକାର ସେମ୍ୟାନଙ୍କୁ ଖାଦ୍ୟ ଯୋଗାଉଥିଲେ, ସ୍ୱାସ୍ଥ୍ୟସେବା ପ୍ରତି ସେମାନଙ୍କର ଦୃଷ୍ଟି ନ ଥିଲା । ସରକାରଙ୍କ ଅନୁଯାୟୀ କୁଷ୍ଠରୋଗୀମାନେ ଚାଷ କରି ସେଥିରୁ ଯାହା ଉତ୍ପାଦନ ହୁଏ ସେଥିରୁ ସେମାନଙ୍କୁ ଚଳିବା ପାଇଁ କୁହାଯାଉଥିଲା। କିନ୍ତୁ ବାସ୍ତବରେ ତାହା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ନଥିଲା । କାରଣ ସେମାନେ ଯେଉଁ ପରିବେଶରେ ରହୁଥିଲେ ଏବଂ ରୋଗର ପ୍ରକୃତି ଅନୁସାରେ ସରକାରଙ୍କ ନିର୍ଦ୍ଦେଶ ଠିକ୍ ନ ଥିଲା, ଯାହାରି ଫଳରେ ଯେଉଁମାନେ ପ୍ରାୟ ଭଲ ଥିଲେ ସେମାନେ ଯଥାକ୍ରମେ ଅଳସ ହେବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ମଦ୍ୟପାନ ଓ ଅନୈତିକ କାର୍ଯ୍ୟ ବୃଦ୍ଧି ପାଇବାକୁ ଲାଗିଲା

ବେମାର ଯୋଗୁଁ ତାଙ୍କ ଭାଇ ଅଗଷ୍ଟେ ହାୱାଲିକୁ ଯାତ୍ରା କରି ପାରି ନ ଥିଲେ । ଏଣୁ ଦାମିଆନ୍‌ଙ୍କୁ ତାଙ୍କ ସ୍ଥାନ ନେବାକୁ ପଡିଥିଲା ।

ଜଣେ ମିଶିନାରୀ ଭାବେ ୧୮୬୪ ମସିହା ମାର୍ଚ୍ଚ ମାସ ୧୯ ତାରିଖରେ ସେ ହନୋଲୁଲ୍ ବନ୍ଦରରେ ପହଞ୍ଚିଲେ । ସେଠାରେ ସେ ୧୮୬୪ ମସିହା ମଇ ମାସ ୨୧ ତାରିଖରେ ଯାଜକାଭିଷେକ ପ୍ରାପ୍ତ କରିଥିଲେ । ପରବର୍ତୀ ବର୍ଷରେ ହାୱାଲି ଦ୍ୱୀପର କୋହାଲାରେ ବଦଳି ହୋଇଥିଲେ ।

ହାୱାଲିର ବିଭିନ୍ନ ଧର୍ମାଞ୍ଚଳରେ କାର୍ଯ୍ୟ କରିବା ପରେ ସେ ଅନୁଭବ କଲେ ଯେ ସେଠାରେ ସ୍ୱାସ୍ଥ୍ୟ ସେବାର ଆବଶ୍ୟକ ରହିଛି । ସେଠିକାର ଅଧିବାସୀମାନେ ସଂକ୍ରାମକ ସର୍ଦ୍ଦି ଜ୍ୱର, ଯୌନବ୍ୟାଧି ରୋଗ ଏବଂ ଅନ୍ୟାନ୍ୟ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ସେମାନଙ୍କ ମଧ୍ୟରୁ ଅନେକେ ମୃତ୍ୟୁବରଣ କରୁଥିଲେ । କୁଷ୍ଠରୋଗ ଦ୍ୱାରା

ମଧ୍ୟ ଅନେକେ କଷ୍ଟ ପାଉଥିବାର ଫାଦେର ଦାମିଆନ୍ ଅନୁଭବ କଲେ । ସେହି ସମୟରେ କୁଷ୍ଠରୋଗ ଅଧିକ ସଂକ୍ରମିତ ହେଉଥିଲା ଏବଂ ସେଥିରୁ ମୁକ୍ତି ଲାଭ କରିବା ଅସମ୍ଭବ ବୋଲି ଲୋକଙ୍କର ଧାରଣା ଥିଲା (ବର୍ତ୍ତମାନର ଚିନ୍ତାଧାରା ସେହି ପରି ନୁହଁ) । ବର୍ତ୍ତମାନ ପ୍ରାୟ ୯୫ ଭାଗ ଲୋକମାନଙ୍କଠାରେ ପ୍ରତିରୋଧ ଶକ୍ତି ରହିଅଛି ।

ଫାଦେର ଦାମିଆନ୍‌ଙ୍କ ପ୍ରଥମ କାର୍ଯ୍ୟ ଥିଲା ଗୋଟିଏ ଦେବାଳୟ ନିର୍ମାଣ କରି ଧର୍ମାଞ୍ଚଳ ପ୍ରତିଷ୍ଠା କରିବା । ସାଧ୍ୱୀ ଫିଲିମିନାଙ୍କ ନାମରେ ସେ ଏକ ଧର୍ମାଞ୍ଚଳ ପ୍ରତିଷ୍ଠା କରି ପାରିଥିଲେ । ଫାଦେର ଦାମିଆନ୍‌ଙ୍କ ଭୂମିକା କେବଳ ଯାଜକୀୟ କାର୍ଯ୍ୟ କରିବା ନୁହଁ, ସେ ରୋଗୀ ସେବା କରିବା ଯଥା କୁଷ୍ଠରୋଗୀମାନଙ୍କ 'ଘା' ସବୁକୁ ସଫା କରି ପଟି ବାନ୍ଧୁଥିବା କାର୍ଯ୍ୟ ମଧ୍ୟ କରୁଥିଲେ । ସେମାନଙ୍କ ଶଯ୍ୟାକୁ ସଜାଇ ରଖୁଥିଲେ, ସେମାନଙ୍କ ପାଇଁ ଗୃହ ନିର୍ମାଣ କଲେ ଏବଂ ଶବ ପେଟି ତିଆରି କରି କବର ଖୋଳୁଥିଲେ । ସେଠାରେ ପହଞ୍ଚିବାର ଛ ମାସ ପରେ ନିଜ ଭାଇ ଫାଦେର ପାମ୍ଫାଇଲଙ୍କୁ ଏହିପରି ଲେଖିଥିଲେ, "ସମସ୍ତ କୁଷ୍ଠରୋଗୀ ଯେପରି ଖ୍ରୀଷ୍ଟଙ୍କୁ ଲାଭ କରିବେ ସେଥିପାଇଁ ମୁଁ ନିଜେ କୁଷ୍ଠରୋଗରେ ଆକ୍ରାନ୍ତ ହେବା ପାଇଁ ପ୍ରସ୍ତୁତ ଅଛି" ।

ଫାଦେର ଦାମିଆନ୍‌ଙ୍କ ଉପସ୍ଥିତି ସେଠିକାର ଅଧିବାସୀମାନଙ୍କ ପାଇଁ ଆଶୀର୍ବାଦ ଥିଲା । ତାଙ୍କ ନେତୃତ୍ୱରେ ଛୋଟ ଘର ଗୁଡିକୁ ରଙ୍ଗ ଦିଆଗଲା । ସ୍କୁଲ ଘର ଗୁଡିକୁ ଆରମ୍ଭ କରାଗଲା ଓ କୃଷି ଜାତୀୟ କାର୍ଯ୍ୟ ଗୁଡିକୁ ସଂଗଠନ କରାଗଲା । ସେଠିକାର ଲୋକମାନଙ୍କ ଅନୁରୋଧ କ୍ରମେ ଫାଦେର ଦାମିଆନ୍‌ଙ୍କୁ ମୋଲକାଇରେ ରହିବାକୁ ପଡିଥିଲା ।

କଲୋନିରେ ବାସ କରୁଥିବା ଲୋକଙ୍କର ଆଧ୍ୟାତ୍ମିକ ଆବଶ୍ୟକତା ମେଣ୍ଟାଇବା ପାଇଁ ଧର୍ମାଧ୍ୟକ୍ଷ ଲୁଇସ ମାଇଗ୍ରେଟ ଅନୁଭବ କଲେ ଜଣେ ଯାଜକଙ୍କର ଉପସ୍ଥିତି । ଅବଶ୍ୟ ବିଶପ ଜାଣି ପାରିଲେ ଯେ ସେଠାକୁ କାହାକୁ ପଠାଇବା ଅର୍ଥ ନିଜର ଜୀବନକୁ ବଳିଦେବା ସହ ସମାନ । ଏଣୁ ଆଜ୍ଞାବହତା ନାମରେ କାହାକୁ ସେହି ସ୍ଥାନକୁ ପ୍ରେରଣ କରିବା ଠିକ୍ ନୁହଁ ବୋଲି ସେ ଅନୁଭବ କଲେ । ଏଣୁ ସେ ଚାହୁଁଥିଲେ ଯଦି କେହି ସ୍ୱତଃ ପ୍ରବୃତ ହୋଇ ସେଠାକୁ ଯିବାକୁ ଚାହାଁନ୍ତି ତେବେ

ତାହା ବିଚାର କରି ନିଷ୍ପତି ନିଆଯିବ । ଚାରିଜଣ ଯାଜକ ପ୍ରାର୍ଥନା କରି ନିଷ୍ପତି ନେଲେ ଯେ ସେମାନେ ସେହି ସ୍ଥାନକୁ ଯାଇ ସେବା କାର୍ଯ୍ୟ କରିବେ । ଧର୍ମାଧ୍ୟକ୍ଷ ଚାହିଁଲେ ଯେ ସେମାନେ ଜଣକ ପରେ ଜଣେ ପାଳି କରି କଷ୍ଟ ପାଉଥିବା ଲୋକମାନଙ୍କର ସେବା କରିବେ । ଫାଦେର ଦାମିଆନ୍ ହେଉଛନ୍ତି ପ୍ରଥମ ଯିଏ ସ୍ୱେଚ୍ଛାକୃତ ଭାବେ ସେବା କରିବା ପାଇଁ ଆଗେଇ ଆସିଥିଲେ । ୧୮୭୩ ମସିହା ମଇ ମାସ ୧୦ ତାରିଖରେ କୁଷ୍ଠରୋଗୀମାନେ ବାସ କରୁଥିବା କାଲାଉପାପା ନାମକ ଏକ ସ୍ଥାନରେ ପହଞ୍ଚିଲେ । ଧର୍ମାଧ୍ୟକ୍ଷ ମାଇଗ୍ରେଟ ସେଠାରେ ବାସ କରୁଥିବା ପ୍ରାୟ ୮୧୬ ଜଣ କୁଷ୍ଠୀମାନଙ୍କୁ ଫାଦେର ଦାମିଆନ୍‌ଙ୍କ ପରିଚୟ ପ୍ରଦାନ କରିଥିଲେ ।

୧୮୮୪ ମସିହାରେ ଗାଧୋଇବା ସମୟରେ ସେ ନିଜର ଗୋଡ଼ଟିକୁ ଗରମ ପାଣିରେ ବୁଡ଼ାଇବା ଦ୍ୱାରା ତାଙ୍କ ଚର୍ମରେ ଫୋଟକା ହେଲା କିନ୍ତୁ ସେ କିଛି ଅନୁଭବ କରି ନ ଥିଲେ । ପରେ ସେ ଜାଣିବାକୁ ପାଇଲେ ଯେ ସେ ନିଜେ କୁଷ୍ଠରୋଗରେ ଆକ୍ରାନ୍ତ ହୋଇଛନ୍ତି । ନିଜେ ଆକ୍ରାନ୍ତ ହୋଇଥିବା ଜାଣି ସୁଦ୍ଧା ସେ ଆହୁରି ଅଧିକ ସେମାନଙ୍କ ନିମନ୍ତେ କାମ କରିବାକୁ ଲାଗିଲେ ।

ଜାପାନ ଦେଶରୁ ଜଣେ ବିଶିଷ୍ଟ କୁଷ୍ଠରୋଗ ଚିକିତ୍ସକ ମାସାନାଓ ଗୋଟୋ ୧୮୮୫ ମସିହାରେ ହନଲୁଲୁକୁ ଆସି ଫାଦେର ଦାମିଆନ୍‌ଙ୍କୁ ଚିକିତ୍ସା କରିଥିଲେ। ହାୱାଇଆନ ମାନଙ୍କ ମଧ୍ୟରେ ସେ ଜଣେ ଉତମ ଚିକିତ୍ସକ ରୂପେ ଜଣାଶୁଣା ଥିଲେ । ତାଙ୍କ ଚିକିତ୍ସା ପରେ ଫାଦେର ଦାମିଆନ୍ କିଛି ମାତ୍ରାରେ ଆଶ୍ୱସ୍ତି ଅନୁଭବ କରିଥିଲେ ।

ଫାଦେର ଦାମିଆନ୍ ନିଜ ଜୀବନର ଶେଷ ସମୟରେ ବହୁତ ସକ୍ରିୟ ରୂପେ ସେବା କାର୍ଯ୍ୟକୁ ଜାରି ରଖିଥିଲେ । ତାଙ୍କର କାର୍ଯ୍ୟ ଦେଖି ବାହାର ଦେଶରୁ କିଛି ସାହାଯ୍ୟ ସେ ପାଇଥିଲେ । ତାଙ୍କୁ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ତାଙ୍କ ସହିତ ଥିଲେ ଜଣେ ଯାଜକ, ଜଣେ ସୈନିକ, ଜଣେ ପୁରୁଷ ନର୍ସ ଏବଂ ଜଣେ ସେବାଭଗ୍ନୀ ।

ଫାଦେର ଦାମିଆନ୍‌ଙ୍କ ଆହାତ ହାତକୁ ଟେକି ରଖିବା ପାଇଁ ବେକରୁ ଝୁଲୁଥିବା ପଟି ପୁଣି ପାଦରେ ବନ୍ଧା ହୋଇଥିବା ପଟି ଦ୍ୱାରା ଘୋଷାରି ହୋଇ

ଚାଲୁଥିବା ସମୟରେ ସେ ଜାଣିଲେ ଯେ ତାଙ୍କ ସମୟ ସନ୍ନିକଟ । ୧୮୮୯ ମସିହା ମାର୍ଚ୍ଚ ୨୩ ତାରିଖରୁ ସେ ସମ୍ପୂର୍ଣ୍ଣ ରୂପେ ଶଯ୍ୟାଶାୟୀ ହେଲେ । ମାର୍ଚ୍ଚ ୩୦ ତାରିଖରେ ସର୍ବ ସାଧାରଣ ଭାବେ ପାପ ସ୍ୱୀକାର କରି ନିଜ ବ୍ରତକୁ ନବୀକରଣ କରିଥିଲେ । ଏପ୍ରିଲ ମାସ ୧ ତାରିଖରେ ଦିବ୍ୟପ୍ରସାଦ ଗ୍ରହଣ କରି ଏପ୍ରିଲ ମାସ ୨ ତାରିଖ ଦିନ ଅନ୍ତିମ ସଂସ୍କାର ଦିଆଯାଇଥିଲା । ୧୮୮୯ ମସିହା ଏପ୍ରିଲ ମାସ ୧୫ ତାରିଖ ଦିନ ସକାଳ ୮ ଘଣ୍ଟା ସମୟରେ କୁଷ୍ଠରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ମୃତ୍ୟୁ ବେଳକୁ ତାହାଙ୍କ ବୟସ ଥିଲା ୪୯ ବର୍ଷ । ମୋଲକାଇ ପହଞ୍ଚିବା ପରେ ଯେଉଁ କିଆବୁଦା ମୂଳେ ପ୍ରଥମେ ଫାଦେର ଦାମିଆନ୍ ଆଶ୍ରୟ ନେଇଥିଲେ ସେହି ସ୍ଥାନରେ ତାଙ୍କୁ ସମାଧି ଦିଆଗଲା । ହଜାର ହଜାର ଲୋକେ ସମବେତ ହୋଇଥିଲେ ଏବଂ ସେହି ଫିଲୋମିନା ଧର୍ମାଞ୍ଚଳରେ ଦିବ୍ୟଯଜ୍ଞ ଦ୍ୱାରା ତାଙ୍କୁ ଅନ୍ତିମ ବିଦାୟ ଦିଆ ଯାଇଥିଲା ।

ଫାଦେର ଦାମିଆନ୍‌ଙ୍କ ପବିତ୍ରତା ଦ୍ୱାରା ତାଙ୍କ ମାଧ୍ୟସ୍ଥତାରେ ଯେଉଁ ଦୁଇଟି ଅଲୌକିକ ଘଟଣା ଘଟିଥିଲା ତାହାକୁ ଆଧାର କରି ତାଙ୍କୁ ସାଧୁତା ପଦରେ ଉନ୍ନୀତ କରାଯାଇଥିଲା ।

ପ୍ରଥମ ଘଟଣାଟି ହେଲା ଫ୍ରାନ୍ସ ଦେଶର ଜଣେ ସେବାଭଗ୍ନୀ, ସିମ୍ପ୍ଲିସିଆ ହୁୟେ, ଅନ୍ତନଳୀରେ ଘା ହୋଇ ଗଭୀର ଯନ୍ତ୍ରଣା ପାଉଥିଲେ । ଏହି ଅବସ୍ଥାରେ ସେ ସମାନସ୍ପଦ ଫାଦେର ଦାମିଆନ୍‌ଙ୍କ ମାଧ୍ୟସ୍ଥତାରେ ନବୀନା ପ୍ରାର୍ଥନା କଲେ । ମୃତ୍ୟୁ ଶଯ୍ୟାରେ ଶାୟିତ ସିମ୍ପ୍ଲିସିଆ ସୁସ୍ଥତା ପାଇଁ ଫାଦେର ଦାମିଆନ୍‌ଙ୍କ ମାଧ୍ୟସ୍ଥତାରେ ବିନତି କରନ୍ତେ ରୋଗର ସମସ୍ତ ଲକ୍ଷଣ ଏବଂ ବ୍ୟଥାରୁ ସେ ସୁସ୍ଥତା ଲାଭ କଲେ ।

ଅନ୍ୟ ଘଟଣାଟି ହେଲା ଆଇୟାରେ ବାସ କରୁଥିବା ଜଣେ ୭୯ ବର୍ଷ ବୟସ୍କ ଅବସରପ୍ରାପ୍ତ ସ୍କୁଲ ଶିକ୍ଷୟତ୍ରୀ ଯାହାଙ୍କ ବାମ ଜଂଘରେ ଗୋଟିଏ ଆବୁ ବାହାରି ସେଥିରୁ ତାହା କ୍ୟାନସେରରେ ପରିଣତ ହୋଇଯାଇଥିଲା । ସେ ନିଜର ସିଷ୍ଟେରମାନଙ୍କୁ କାଲଉପାପାରେ ଥିବା ଫାଦେର ଦାମିଆନ୍‌ଙ୍କ ସମାଧିକୁ ତାଙ୍କୁ ନେବା ପାଇଁ ଅନୁରୋଧ କରିଥିଲେ, ଯେପରି ସେଠାରେ ସେ ତାଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରିବେ । ହନଲୁଲୁଷ୍ଟାର ବୁଲେଟିନରେ ନିଜର ସାକ୍ଷ୍ୟ ଦେଇ ସେ କହନ୍ତି

ମୁଁ ତାଙ୍କଠାରେ ପ୍ରାର୍ଥନା କଲି ଯେପରି ସେ ମୋ ପାଇଁ ପ୍ରଭୁଙ୍କଠାରୁ ସୁସ୍ଥତା ଆଣିଦେବେ ।

ଡାକ୍ତର ଓ୍ୱାଲ୍‌ଟର ଚାଙ୍ଗ ୧୯୯୮ ମସିହାରେ କହିଥିଲେ, "ଏହି ପ୍ରକାର କ୍ୟାନସର କ୍ୱଚିତ ଦେଖାଯାଏ । ଏହା ଦୁଇଟି lung (ଫୁସ୍‌ଫୁସ୍)କୁ ବିସ୍ତାର କରିଛି । ମୁଁ କିଛି କରି ପାରିବି ନାହିଁ । ସର୍ଜରି ହେବା ଅସମ୍ଭବ" । ଏହାପରେ କାଲାଉପାପାକୁ ଯାଇ ସେଠାରେ ଦିବ୍ୟଯଜ୍ଞରେ ଯୋଗ ଦେଇ ଦିବ୍ୟପ୍ରସାଦରେ ପ୍ରଭୁଙ୍କୁ ଗ୍ରହଣ କରି ଫାଦେର ଦାମିଆନ୍‌ଙ୍କ ସମାଧିରେ ପ୍ରାର୍ଥନା କଲେ । ଡାକ୍ତର ଚାଙ୍ଗ ପ୍ରତି ମାସ ମୋର ଫୁସ୍‌ଫୁସ୍‌ର ଛବିଟି ନେଉଥାନ୍ତି । ପ୍ରତି ମାସରେ ତାହା ସଂକୁଚିତ ହେବାକୁ ଲାଗିଲା । ପୁଣି ଚାରି ମାସ ପରେ ସମ୍ପୂର୍ଣ୍ଣ ଭାବରେ ତାହା ଅଦୃଶ୍ୟ ହୋଇଗଲା । ଏହାପରେ ୧୯୯୫ ମସିହାରେ ତାଙ୍କୁ ଧନ୍ୟ ବୋଲି ଘୋଷଣା କରାଗଲା ।

୧୯୭୭ ମସିହାରେ ପୂଣ୍ୟପିତା ଷଷ୍ଠ ପାଉଲ ଫାଦେର ଦାମିଆନ୍‌ଙ୍କୁ 'ସମ୍ମାନସ୍ପଦ' ରୂପେ ଘୋଷଣା କରିଥିଲେ । ୧୯୯୫ ମସିହା ଜୁନ ୪ ତାରିଖରେ ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟ ତାଙ୍କୁ 'ଧନ୍ୟ' ବୋଲି ଘୋଷଣା କଲେ । ୨୦୦୯ ମସିହା ଅକ୍ଟୁବର ୧୧ ତାରିଖ ଦିନ ପୂଣ୍ୟପିତା ବେନେଦିକ୍ଟ ଷୋଡଦଶଙ୍କ ଦ୍ୱାରା ସେ ସାଧୁ ପଦକୁ ଉନ୍ନୀତ ହୋଇଥିଲେ । ମଇ ମାସ ୧୦ ତାରିଖରେ ସାଧୁ ଦାମିଆନ୍‌ଙ୍କ ପର୍ବ ସାର୍ବଜନୀନ ଭାବେ ପାଳନ କରାଯାଏ । ହାଓ୍ୱାଇରେ ତାଙ୍କ ପର୍ବ ଏପ୍ରିଲ ମାସ ୧୫ ତାରିଖ ଦିନ ପାଳନ କରାଯାଇଥାଏ ।

ମହାତ୍ମାଗାନ୍ଧୀ ଓ ସ୍କଟଲାଣ୍ଡର ଜଣେ ପ୍ରସିଦ୍ଧ ଲେଖକ ରୋବର୍ଟ ଲୁଇସ ଷ୍ଟିଭେନସନ ଦୁହେଁ ସାଧୁ ଦାମିଆନ୍‌ଙ୍କ ଉଚ୍ଚ ପ୍ରଶଂସକ ଅଟନ୍ତି । ଫାଦେର ଦାମିଆନ୍‌ଙ୍କୁ 'କୁଷ୍ଠୀମାନଙ୍କ ପ୍ରେରିତ' ରୂପେ ସମ୍ମାନିତ କରାଯାଏ ।

**ଫାଦେର ଦାମିଆନ୍‌ଙ୍କ କେତୋଟି ଉକ୍ତି:**

✸ "ତୁମର ସମସ୍ତ ଭାବନା ଓ ଅଭିଳାଷକୁ ସ୍ୱର୍ଗାନୁମୁଖି କର । ସବୁଦିନ ସକାଶେ ସେଠାରେ ସ୍ଥାନ ପାଇବା ପାଇଁ କଠିନ ପରିଶ୍ରମ କର" ।

✸ "ଯୀଶୁଙ୍କୁ ସମସ୍ତଙ୍କ ନିକଟରେ ପହଞ୍ଚାଇବା ପାଇଁ କୁଷ୍ଠୀମାନଙ୍କ ସହିତ ମୁଁ ନିଜକୁ କୁଷ୍ଠୀ କରିଅଛି" ।

"ସଂସ୍କାର ବିନା ମୋ ପରି ସ୍ଥାନରେ ରହିବା ବଡ଼ ଅସହ୍ୟ ଅଟେ" ।

* "ଯାହାଙ୍କର ଘା ପୂଜ ମାଛିରେ ପୂର୍ଣ୍ଣ ହୋଇଥାଏ ପୁଣି ସେମାନଙ୍କ

* ଅନ୍ତିମ ସମୟରେ ପାପସ୍ୱୀକାର କରିବା ପାଇଁ ମୋ ନିକଟକୁ ଆସନ୍ତି, ସେମାନଙ୍କର ନିକଟବର୍ତ୍ତୀ ହେବା ପାଇଁ ମୁଁ ଘୃଣା କରେ ନାହିଁ । ଏହାଦ୍ୱାରା ମୋର ଦୈନନ୍ଦିନ କାର୍ଯ୍ୟର ଧାରଣା ତୁମେ ଜାଣି ପାରିବ" ।

## ସାଧ୍ୱୀ କରୋନା (ମଇ ୧୪)

ସାରା ବିଶ୍ୱରେ କରୋନା ଜୀବାଣୁ ଯେପରି ଆତଙ୍କ ଓ ଭୟ ସୃଷ୍ଟି କରିଛି, ତାହା ଆମ ମନରେ ସର୍ବଦା ଛାପି ହୋଇ ରହିବ । ଏହି ପ୍ରକାର ପରିସ୍ଥିତିର ସମ୍ମୁଖିନ ହୋଇ ଜଣେ କାଥଲିକ ଖ୍ରୀଷ୍ଟିୟାନ ଭାବେ ପ୍ରଶ୍ନ ଆସେ, ଏପରି କେହି ସାଧୁ ବା ସାଧ୍ୱୀ ଅଛନ୍ତି ଆମ ପରମ୍ପରାରେ ଯାହାଙ୍କ ମାଧ୍ୟସ୍ଥତାରେ ଆମ୍ଭେ କରୋନା ମହାମାରୀରୁ ରକ୍ଷା ପାଇବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରି ପାରିବା ?

ଆଜକୁ ପ୍ରାୟ ୧୮୦୦ ବର୍ଷ ପୂର୍ବେ ରୋମୀୟମାନଙ୍କ ଦ୍ୱାରା ଜଣେ ସାଧ୍ୱୀ ତାଡନା ପାଇ ମୃତ୍ୟୁ ବରଣ କରିଥିଲେ, ଯାହାଙ୍କ ନାମ ଥିଲା "କରୋନା" । ଲାଟିନ ଭାଷାରେ କରୋନାର ଅର୍ଥ ହେଲା 'ମୁକୁଟ' । ପଶ୍ଚିମ ଜର୍ମାନୀର ଆହେନ ମହାଦେବାଳୟରେ ସାଧ୍ୱୀ କରୋନାଙ୍କ ଅସ୍ଥିର କିଛି ଅଂଶ ସ୍ମୃତି ରୂପେ ରଖାଯାଇଅଛି । ନବମ ଶତାବ୍ଦୀର ଏହି ବିଶାଳ ମହାଦେବାଳୟରେ ରୋମୀୟ ଶାସକ ଚାର୍ଲମାନଙ୍କୁ ୮୧୪ ମସିହାରେ କବର ଦିଆଯାଇଛି । ଏହି ମହାଦେବାଳୟରେ ଜର୍ମାନୀର ଅନେକ ଜଣାଶୁଣା ରାଜା ଓ ରାଣୀମାନଙ୍କୁ ମୁକୁଟ ପ୍ରଦାନ କରାଯାଇଛି । ଏହି ସ୍ଥାନଟି ବର୍ତ୍ତମାନ ଏକ ବିଖ୍ୟାତ ତୀର୍ଥସ୍ଥାନ ରୂପେ ପରିଚିତ ।

୯୯୭ ମସିହାରେ ରାଜା ଦ୍ୱିତୀୟ ଅଟୋ ଆହେନ୍‌କୁ ସାଧ୍ୱୀ କରୋନାଙ୍କ କିଛି ସ୍ମୃତି ନେଇ ଆସିଥିଲେ । ପ୍ରଥମତଃ ସେହି ସ୍ମୃତିକୁ ମହାଦେବାଳୟର ଭିତର ଚଟାଣରେ ଥିବା ସମାଧିରେ ବହୁ ବର୍ଷ ପର୍ଯ୍ୟନ୍ତ ରଖାଯାଇଥିଲା । କେବଳ ବିଂଶ ଶତାବ୍ଦୀରେ ସେହି ସ୍ଥାନରୁ ମହାମାରୀ ରୋଗର ନିବାରଣ ପାଇଁ ବାହାର କରାଯାଇ ବର୍ତ୍ତମାନ ମହାଦେବାଳୟର ମୂଖ୍ୟ ସ୍ଥାନରେ ତାହା ରଖାଯାଇଅଛି । ବର୍ତ୍ତମାନ ବାଭାରିଆ ଓ ଅଷ୍ଟ୍ରିଆର କେତୋଟି ସ୍ଥାନରେ ସାଧ୍ୱୀ କରୋନାଙ୍କ ପ୍ରତି ବିଶ୍ୱାସୀମାନଙ୍କ ଭକ୍ତିଭାବ ରହିଅଛି । ସେହି ଦେଶରେ ସାଧ୍ୱୀ କୋରନାଙ୍କୁ

ସାଧାରଣତଃ ମାଂସ ଜଟାଳୀ, ଶିକାରୀ ଓ ବିଶେଷ ଭାବରେ ଆର୍ଥିକ ଅନାଟନ ଦେଇ ଗତି କରୁଥିବା ବ୍ୟକ୍ତିମାନଙ୍କର ଇଷ୍ଟ ସାଧ୍ୱୀ ରୂପେ ସେ ପରିଚିତ । ମଣ୍ଡଳୀର କେତେକ ପ୍ରତିନିଧିମାନଙ୍କ ମତରେ ହଇଜା ରୋଗରୁ ମୁକ୍ତ ପାଇବା ପାଇଁ କେତେକ ବିଶ୍ୱାସୀମାନେ ସାଧ୍ୱୀ କରୋନାଙ୍କଠାରେ ନିବେଦନ କରନ୍ତି ।

ଉତର ଇଟାଲୀର ଆଞ୍ଜୁଠାରେ ସାଧ୍ୱୀ କୋରନା ଏବଂ ସାଧୁ ଭିକ୍ଟୋରଙ୍କ ନାମରେ ଉତ୍ସର୍ଗୀକୃତ ଗୋଟିଏ ଦେବାୟଳରେ ମହାମାରୀର ଇଷ୍ଟସାଧ୍ୱୀ ରୂପେ ସେମାନଙ୍କୁ ସମ୍ମାନ ଦିଅନ୍ତି । ସେହି ଦେବାଳୟରେ କରୋନାଙ୍କ ସ୍ମୃତି ରଖାଯିବା ବିଷୟ କୁହାଯାଏ । ଅନ୍ୟ କେତେଜଣ ଗବେଷକଙ୍କ ମତରେ ସାଧ୍ୱୀ କରୋନା ବର୍ତ୍ତମାନର ସିରିଆ ନିବାସୀ ଥିବା କହନ୍ତି । ଦର୍ଶନରେ ଦୁଇଟି ମୁକୁଟ ସେ ଦେଖିଥିଲେ, ଗୋଟିଏ ନିଜ ପାଇଁ ଏବଂ ଅନ୍ୟଟି ସାଧୁ ଭିକ୍ଟୋରଙ୍କ ପାଇଁ । ଏଣୁ ଶିଳ୍ପୀମାନେ ସେହି ଦୁହିଁଙ୍କ ଛବିଟିକୁ ଦେବାୟଳ ଗୁଡ଼ିକରେ ଚିତ୍ରଣ କରିଛନ୍ତି । ଏହି ଦର୍ଶନ ଅନୁଯାୟୀ ତାଙ୍କ ନାମ କରୋନା ଦିଆଯାଇଛି । ଚତୁର୍ଥ ଶତାବ୍ଦୀର ଡିକେନ୍ ଆଣ୍ଟିଅକଙ୍କ ଅନୁଯାୟୀ ସାଧ୍ୱୀ କରୋନା ନିଜର ବିଶ୍ୱାସକୁ ସମସ୍ତଙ୍କ ସାମନାରେ ସ୍ୱୀକାର କରିଥିଲେ ଏବଂ ରୋମୀୟ ସୈନିକ ସାଧୁ ଭିକ୍ଟୋରଙ୍କୁ ତାହାଙ୍କ ବିଶ୍ୱାସ ନିମନ୍ତେ ତାଡ଼ନା ଦେଇ ମୃତ୍ୟୁଦଣ୍ଡ ଦେବାକୁ ଯିବା ସମୟରେ ସାଧ୍ୱୀ କରୋନା ତାଙ୍କୁ ଆଶ୍ୱାସନା ଦେଇଥିଲେ । ଏହାପରେ ସାଧ୍ୱୀ କରୋନାଙ୍କୁ ଦୁଇଟି ବଙ୍କା ତାଳଗଛ ମଧ୍ୟରେ ଦୌଡିରେ ବାନ୍ଧି ଝୁଲାଇ ଦିଆଯାଇଥିଲା ଯାହାରି ଫଳରେ ତାଳଗଛ ଦୁଇଟି ଭାଙ୍ଗି ଯାଇଥିଲା ଓ ତାଙ୍କ ଶରୀରରୁ ପୁଳା ପୁଳା ହୋଇ ମାଂସ ବାହାରି ଥିଲା । କୁହାଯାଏ କେତେବର୍ଷ ପରେ ଆଶ୍ଚର୍ଯ୍ୟ ଭାବେ ସେହି ଦୁଇଟି ତାଳ ଗଛ ବହୁତ ଉଚ୍ଚ ହୋଇ ବଢ଼ିଥିଲା । ସାଧୁ ଭିକ୍ଟୋରଙ୍କୁ ସାନ୍ତ୍ୱନା ଦେବାରୁ ତାଙ୍କୁ ମାରି ଦିଆଗଲା ବୋଲି କେତେକ ଗବେଷକ ମତ ଦିଅନ୍ତି । ଅନ୍ୟ କେତେକଙ୍କ ମତରେ ୧୬ ବର୍ଷୀୟା କରୋନା, (ଷ୍ଟେଫାନିଆ) ନିଜ ଭିଣୋଇ, ଭିକ୍ଟୋରଙ୍କୁ ତାଡ଼ନା ଓ ମୃତ୍ୟୁଦଣ୍ଡ ଦେବା ସମୟରେ ସାନ୍ତ୍ୱନା ଓ ଉସାହ ଦେଇଥିବା ବିଷୟ କହନ୍ତି ।

ଦ୍ୱିତୀୟ ଶତାବ୍ଦୀରେ ସାଧ୍ୱୀ କରୋନା ଓ ସାଧୁ ଭିକ୍ଟୋର ଦୁହେଁ ରୋମୀୟ ସୈନିକଙ୍କ ଦ୍ୱାରା ଶହୀଦ ହୋଇଥିଲେ । କେଉଁ ସ୍ଥାନରେ ସେମାନେ ଶହୀଦ

ହୋଇଥିଲେ ତାହା ସଠିକ୍ ଭାବରେ କହି ହୁଏ ନାହିଁ । ଅଧିକାଂଶ ସୁତ୍ରରୁ ଜଣାଯାଏ ଯେ ସେ ସିରିଆରେ ଶହୀଦ ହୋଇଥିଲେ । ଅନ୍ୟ କେତେକ କହନ୍ତି ସେ ଦାମାସ୍କସ୍‌ରେ, ପୁଣି ଆଉ କେତେକ କହନ୍ତି ଆଣ୍ଟିଅକ୍ ।

ଅନେକ ଐତିହାସିକଙ୍କ ମତରେ ଶାସକ ମାର୍କୁସ ଆଉରେଲିଉସଙ୍କ ଶାସନ ସମୟରେ ସେହି ଦୁଇଜଣ ଶହୀଦ ହୋଇଥିଲେ । ଇଟାଲୀର ଆଞ୍ଜୁ ଯେଉଁଠାରେ ସାଧ୍ୱୀ କରୋନା ଏବଂ ସାଧୁ ଭିକ୍ଟୋରଙ୍କ ସ୍ମୃତି ରଖାଯାଇଛି, ତାହା ଏକ ପବିତ୍ର ତୀର୍ଥସ୍ଥାନ ରୂପେ ମାନ୍ୟତା ପ୍ରାପ୍ତ କରିଛି । ସାଧୁ ଭିକ୍ଟୋରଙ୍କ ଆଖିକୁ ବାହାର କରିବା ସମୟରେ ବିଶ୍ୱାସରେ ଦୃଢ଼ ରହିବା ପାଇଁ କରୋନା ଭିକ୍ଟୋରଙ୍କୁ ଉତ୍ସାହ ଦେଇଥିଲେ ।

କାଥଲିକ ଧର୍ମ ମଣ୍ଡଳୀର ଶହୀଦମାନଙ୍କ ଇତିହାସରେ କରୋନା ବା ମୁକୁଟ ପରି ଦୃଶ୍ୟମାନ ହୋଇଥିବା ଜୀବାଣୁ ତଥା ସାଧ୍ୱୀ କରୋନାଙ୍କୁ ଯେଉଁଭଳି ଭାବରେ ତାଡ଼ନା ଦିଆଯାଇଛି, ତାହାକୁ ଲକ୍ଷ୍ୟ କରି ବିଶ୍ୱାସୀମାନେ ସାଧ୍ୱୀ କରୋନାଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା ଭିକ୍ଷା କରନ୍ତି ଯେପରି ସେମାନେ କରୋନା ରୋଗରୁ ମୁକ୍ତି ପାଇ ପାରିବେ ।

ସାଧ୍ୱୀ କରୋନାଙ୍କ ବ୍ୟତୀତ ମଣ୍ଡଳୀରେ ଅନ୍ୟାନ୍ୟ ସାଧୁସାଧ୍ୱୀମାନେ ଅଛନ୍ତି ଯେଉଁମାନଙ୍କୁ ବିଭିନ୍ନ ପ୍ରକାର ରୋଗ ଏବଂ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା ପାଇବା ପାଇଁ ବିଶ୍ୱାସୀମାନେ ପ୍ରାର୍ଥନା କରିଥାନ୍ତି :

**ସାଧୁ ଯୁଡଙ୍କୁ** ବିଶ୍ୱାସୀମାନେ ହତାଶା ଓ ନିରାଶ ପରିସ୍ଥିତିରେ ତାହାଙ୍କ ପ୍ରାର୍ଥନା ଭିକ୍ଷା କରିଥାନ୍ତି ।

ଚର୍ମ ରୋଗ କିମ୍ବା ଯେ କୌଣସି ଡିଆଁ ରୋଗରୁ ରକ୍ଷା ପାଇବା ପାଇଁ ଇଜିପ୍ଟର **ସାଧୁ ଆନ୍ତୋଣୀଙ୍କ**ଠାରେ ପ୍ରାର୍ଥନା କରନ୍ତି ।

ପାନ୍‌ଡେମିକ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିମାନଙ୍କର ଇଷ୍ଟ ସାଧୁ ହେଉଛନ୍ତି **ସାଧୁ ଏଡମଣ୍ଡ** ।

**ସାଧ୍ୱୀ ମାରିଆନା କୋପେ** ହେଉଛନ୍ତି ଅଜାତି ମାନଙ୍କ ଇଷ୍ଟ ସାଧ୍ୱୀ ।

ହାୱାଲିରେ କୁଷ୍ଠ ରୋଗରେ ଆକ୍ରାନ୍ତ ବ୍ୟକ୍ତିମାନେ **ସାଧୁ ଦାମିଆନଙ୍କୁ** ପ୍ରାର୍ଥନା କରିଥିଲେ ।

**ସାଧୁ ବ୍ଲେଇଜ, ସାଧୁ ଖ୍ରୀଷ୍ଟଫର ଏବଂ ସାଧ୍ୱୀ ମାର୍ଗରେଟଙ୍କୁ** ହଠାତ୍ ମୃତ୍ୟୁ ବରଣ କରୁଥିବା ଏବଂ ମହାମାରୀ ଦ୍ୱାରା ଆକ୍ରାନ୍ତ ହୋଇଥିବା ବ୍ୟକ୍ତିମାନଙ୍କ ଇଷ୍ଟ ସାଧୁ ଓ ସାଧ୍ୱୀ ରୂପେ ସମ୍ମାନୀତ ହୁଅନ୍ତି ।

ବସନ୍ତ ରୋଗରେ ପ୍ରପୀଡିତ ତଥା ମଦ୍ୟପମାନଙ୍କ ଇଷ୍ଟ ସାଧୁ ହେଉଛନ୍ତି ସାଧୁ **ମାଥିଆସ** ।

ଆୟେରଲାଣ୍ଡର ୧୫ ବର୍ଷୀୟ ଝିଅ **ସାଧ୍ୱୀ ଡିମ୍ପାନା** ଆବେଗତା ଜନିତ ରୋଗରେ ପୀଡ଼ିତ ବ୍ୟକ୍ତିମାନଙ୍କ ଇଷ୍ଟ ସାଧ୍ୱୀ ଅଟନ୍ତି ।

ଯେଉଁ ସାଧୁସାଧ୍ୱୀମାନେ ମହାମାରୀ ସମୟରେ ଜନତାର ସେବା କରିଛନ୍ତି ଓ ଯାହାଙ୍କୁ ବିଶ୍ୱାସୀମାନେ ନିବେଦନ କରିଛନ୍ତି ସେମାନଙ୍କ ନାମ ନିମ୍ନରେ ଦିଆଯାଇଛି:

୧. ନୟନର ସାଧୁ ଗୋଡେବେର୍ଟା (୭୦୦ ଶତାବ୍ଦୀରେ)
୨. ଇଟାଲୀର ସାଧୁ ରକ୍ (୧୪୦୦ ଶତାବ୍ଦୀ)
୩. ମିଲାନ୍‌ର ସାଧୁ ଚାର୍ଲସ ବୋରୋମିଓ (୧୬୦୦ ଶତାବ୍ଦୀ)
୪. ଇଂଲଣ୍ଡର ସାଧୁ ହେନେରୀ ମୋର୍ସ (୧୭୦୦ ଶତାବ୍ଦୀ)
୫. ଜେନୋଆର ବିଧବା ଧନଶାଳୀ ସାଧ୍ୱୀ ଭେରଜିନିଆ ସେନ୍ତୁରିଆନ୍ (୧୭୦୦ ଶତାବ୍ଦୀ)
୬. ଆର୍ଜେଣ୍ଟିନାର ସାଧୁ ଯୋସ୍‌ବ୍ରୋଖେର (୧୯୦୦ ଶତାବ୍ଦୀ)
୭. କେରଳରେ ସାଧୁ ସେବାସ୍ତିଆନ୍‌ଙ୍କୁ ମହାମାରୀ ରୋଗରୁ ରକ୍ଷା ପାଇବା ପାଇଁ ପ୍ରାର୍ଥନା କରନ୍ତି ।



# କାସିଆର ସାଧ୍ୱୀ ରିତା

## (୧୩୮୧-୧୪୫୭, ମଇ ୨୨)

ରିତାଙ୍କ ପିତା ଆନ୍ତୋଣୀୟ ଓ ମାତା ଥିଲେ ଆମାତା ଫେରିଲୋଟି । ଦୁହେଁ ଉଦାରଶୀଳ ଓ ଶାନ୍ତି ପ୍ରିୟ ବ୍ୟକ୍ତି ରୂପେ ସେହି ଅଞ୍ଚଳରେ ସୁପରିଚିତ ଓ ସମ୍ମାନିତ ଥିଲେ । ସେମାନଙ୍କର ଗୋଟିଏ ମାତ୍ର ଝିଅ ରିତା ଜନ୍ମ ହୋଇଥିଲେ କାସିଆ ନଗରର ଉଚ୍ଚ ପର୍ବତ ଘେରା ରୋକାପୋରେନା ଗ୍ରାମ ଯାହା ସମୁଦ୍ର ପତନଠାରୁ ପ୍ରାୟ ୭୧୦ ମିଟର ଉଚ୍ଚତାରେ ଅବସ୍ଥିତ । ବିବାହର ୧୨ ବର୍ଷ ପରେ ତାଙ୍କ ପିତା ଓ ମାତା ପ୍ରଭୁଙ୍କ ଅନୁଗ୍ରହ ଦ୍ୱାରା ରିତାଙ୍କୁ ଜନ୍ମ ଦେଇଥିଲେ । ରିତାଙ୍କ ମାଁ ଥିଲେ ଜଣେ ପ୍ରାର୍ଥନାଶୀଳ ବ୍ୟକ୍ତି । ଏଣୁ ଝିଅର ଜନ୍ମରେ ସେ ଅନୁଭବ କଲେ ସତେ ଯେମିତି ଜଣେ ଦୂତ ଆସି ତାଙ୍କୁ ମାର୍ଗାରିତା ନାମ ଦେବା ପାଇଁ ପ୍ରେରଣା ଦେଇଛନ୍ତି । ଏଣୁ ଝିଅର ନାମ 'ମାର୍ଗାରିତା' ଦିଆଗଲା ଯାହାର ଅର୍ଥ ଲାଟିନ ଭାଷାରେ 'ମୁକ୍ତା'। ଯଦିଓ ସେମାନେ ଧନଶାଳୀ ନ ଥିଲେ ତଥାପି ସେମାନଙ୍କର ଚାଷ କରି ବଞ୍ଚିବା ପାଇଁ କିଛି ଖଣ୍ଡ ଜମି ଥିଲା । ସେମାନେ ନ୍ୟାୟ ଓ ଶାନ୍ତିରେ ଅନ୍ୟ ଲୋକମାନଙ୍କର ବିଭିନ୍ନ ସମସ୍ୟାକୁ ସମାଧାନ କରି ପାରୁଥିଲେ ।

ଚତୁର୍ଦ୍ଦଶ ଶତାବ୍ଦୀରେ କାସିଆରେ ଦୁଇଟି ଦଳ ମଧ୍ୟରେ ସର୍ବଦା ଝଗଡ଼ା ଲାଗି ରହିଥାଏ । ଗୋଟିଏ ଦଳ ପୂଣ୍ୟ ପିତାଙ୍କ ସପକ୍ଷରେ ଯାହାଙ୍କୁ ଗୁଏଲଫେଓ କୁହାଯାଏ ଓ ଅନ୍ୟ ଦଳଟି ଶାସକଙ୍କ ସପକ୍ଷ ଥିଲେ ଯାହାଙ୍କୁ ଘିବେଲାଇନ୍‌ସ ବୋଲି କୁହାଯାଉଥାଏ । ଏହି ଦୁଇ ଦଳ ମଧ୍ୟରେ ଅଧିକାଂଶ ସମୟରେ ହିଂସା, ବିବାଦ ଓ ଗଣ୍ଡଗୋଳ ଲାଗି ରହିଥାଏ । ଏହିପରି ସମୟରେ ରିତାଙ୍କ ପିତା ଓ ମାତାଙ୍କ ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା ।

ରିତାଙ୍କ ବାଲ୍ୟାବସ୍ଥା ଅତି ରହସ୍ୟମୟ ଥିଲା । ତାଙ୍କ ପିତା ଓ ମାତା ଯେତେବେଳେ କାମ କରିବା ପାଇଁ ବାହାରକୁ ଯାଆନ୍ତି, ରିତାଙ୍କୁ ଗୋଟିଏ ଟୋକେଇରେ ବୋହି ନେଉଥାନ୍ତି । ସେହି ଟୋକେଇରେ ଶୁଆଇ ଦେଇ ସେମାନେ କାମରେ ଲାଗି ପଡ଼ନ୍ତି । ଦିନକର ଘଟଣା ତାଙ୍କ ପିତାମାତା ଗୋଟିଏ ଗଛ ତଳେ ଟୋକେଇ ଭିତରେ ରିତାଙ୍କୁ ଶୁଆଇ ଦେଇ ଜମିରେ କାମ କରୁଥିଲେ । ସେହି ସମୟରେ ମହୁମାଛି ତାରି ଚାରିପଟେ ଘେରି ରହିଥିଲେ ମଧ୍ୟ କେହି ତାଙ୍କୁ କାମୁଡ଼ି

ନ ଥିଲେ । କେତେକ ମହୁମାଛି ରିତାଙ୍କ ଛୋଟ ପାଟି ଭିତରେ ପଶି କିଛି ମହୁ ରଖି ଚାଲି ଯାଇଥିଲେ । ସେହି ସମୟରେ ଜଣେ କୃଷକ ନିଜର ଭାଙ୍ଗି ଯାଇଥିବା ହାତକୁ ଚିକିତ୍ସା କରିବା ପାଇଁ ସେହି ରାସ୍ତା ଦେଇ କାସିଆକୁ ଯାଉଥିଲେ । ସେ ଏହି ଦୃଶ୍ୟଟି ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏବଂ ସେହି ମହୁମାଛିକୁ ଘଉଡ଼ାଇବା ପାଇଁ ଚେଷ୍ଟା କରିବା ସମୟରେ ସେ ଅନୁଭବ କଲେ ଯେ ଆଘାତ ହୋଇ ରକ୍ତ ଝରୁଥିବା ସେହି ହାତଟି ସମ୍ପୂର୍ଣ୍ଣ ରୂପେ ସୁସ୍ଥ ହୋଇ ଯାଇଛି । ରୋକାପୋରେନା ତଥା ଆଖପାଖ ଅଞ୍ଚଳର ଲୋକେ ଏହି ଘଟଣା ଶୁଣି କହିବାକୁ ଲାଗିଲେ ଯେ ଏହା ଏକ ବିରଳ ଚମତ୍କାର ଘଟଣା । ବାଲ୍ୟକାଳରୁ ହିଁ ରିତା ପ୍ରାର୍ଥନାମୟ ଓ ସରଳ ଜୀବନ ଯାପନ କରୁଥିଲେ ଏବଂ ନିଜ ପିତା ଓ ମାତାଙ୍କୁ ଭକ୍ତି କରୁଥିଲେ । ତାରି ଯୌବନ ବୟସରୁ ପିତାଙ୍କ ଅନୁରୋଧ କ୍ରମେ ପ୍ରାର୍ଥନା କରିବା ପାଇଁ ଗୋଟିଏ ଛୋଟ କୋଠରୀ ନିର୍ମାଣ କରିଥିଲେ । ଯେତେବେଳେ ସେ ଚାହୁଁଥିଲେ ସେତେବେଳେ ନିକଟରେ ଥିବା ସାଧ୍ୱୀ ମାଗ୍‌ଦାଲେନା ଆଶ୍ରମକୁ ଯାଉଥିଲେ ଯେଉଁଠାରେ ନିଜ ସମ୍ପର୍କୀୟ ଭଉଣୀ ଜଣେ ସେବାଭଗ୍ନୀ ରୂପେ କାର୍ଯ୍ୟ କରୁଥିଲେ । ବେଳେବେଳେ ସାଧୁ ଅଗଷ୍ଟିନ ଚର୍ଚ୍ଚକୁ ମଧ୍ୟ ସେ ଯାଉଥିଲେ । ବିଶ୍ୱସ୍ତ ସୂତ୍ରରୁ ଜଣାଯାଏ ଯେ ଯେତେବେଳେ ନିଜ କୋଠରୀରେ ପ୍ରାର୍ଥନା କରିବାକୁ ଯାଆନ୍ତି ସ୍ୱର୍ଗରୁ ଦୂତ ସେହି ସ୍ଥାନକୁ ଆସୁଥାନ୍ତି । ଏହି ସାକ୍ଷ୍ୟଟି ରିତାଙ୍କ ସାଧୁ ପ୍ରକ୍ରିୟା ହେବା ସମୟରେ କୁହାଯାଇଥିଲା ।

ସେହି ପ୍ରାର୍ଥନା କୋଠରୀର ଗୋଟିଏ ଛୋଟ କଣାରେ ଦୂତଙ୍କର ଆତ୍ମା ପ୍ରବେଶ କରୁଥିଲା ବୋଲି କୁହାଯାଏ । ଏଣୁ ସେହି ନିର୍ଦ୍ଦିଷ୍ଟ ସ୍ଥାନକୁ "ଦୂତଙ୍କର ଝରକା" ବୋଲି ନାମ ଦେଇଥିଲେ । ଅନେକ ବର୍ଷ ପରେ ଯେଉଁମାନେ ନୂଆରେ ସେଠାରେ ବାସ କରୁଥିଲେ ସେମାନେ କହନ୍ତି ଯେ ସେହି ଝରକାଟିକୁ ବନ୍ଦ କରିବା ଅସମ୍ଭବ ଥିଲା, କାରଣ ପ୍ରତିଦିନ ସଂଧ୍ୟାରେ ତାହା ବନ୍ଦ କଲେ ସକାଳ ସମୟରେ ସେମାନେ ଖୋଲା ଥିବାର ଦେଖିବାକୁ ପାଉଥିଲେ । ଧାର୍ମିକ ଶିକ୍ଷା ବ୍ୟତୀତ ଯେଉଁସବୁ ଛବି ରିତା ବାସ କରୁଥିବା ଗୃହରେ ଅଙ୍କନ କରାଯାଇଛି ସେଥିରୁ ପ୍ରମାଣ ମିଳେ ଯେ ରିତା ଲେଖା ପଢ଼ା ଜାଣୁଥିଲେ ।

ଯୌବନ ସମୟରୁ ହିଁ ରିତାଙ୍କ ଇଚ୍ଛା ଥିଲା ଜଣେ ସେବାଭଗ୍ନୀ ହୋଇ ପ୍ରଭୁଙ୍କଠାରେ ନିଜର ଆତ୍ମାକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିବା ପାଇଁ । କିନ୍ତୁ ରିତାଙ୍କୁ ସୁରକ୍ଷା ଓ ଉତମ ଭବିଷ୍ୟତ ଦେବା ପାଇଁ ତାଙ୍କ ପିତା ଓ ମାତା କାସିଆର ଜଣାଶୁଣା ଜଣେ ଧନୀ ଯୁବକଙ୍କ ସହିତ ବିବାହ କରିବା ପାଇଁ ଚାହିଁଥିଲେ । ସେହି ଯୁବକଙ୍କର ନାମ ଥିଲା ପାଓଲୋ ମାନ୍‌ସିନି । ପିତା ଓ ମାତାଙ୍କ ଇଚ୍ଛାକୁ ସେ ଅବମାନନା କରି ପାରିଲେ ନାହିଁ । ସେହି ଯୁବକ ଜଣକ ଥିଲେ ଜଣେ ମିଲିଟାରୀ ଅଫିସର, ଯିଏ ଯୋଦ୍ଧା ରୂପେ ସେହି ସମୟର ଘିବେଲାଇନ୍ ଦଳର (ପୂଣ୍ୟପିତାଙ୍କ ବିପକ୍ଷ ଦଳର) ନେତୃତ୍ୱ ନେଉଥିଲେ । ୧୪ ବର୍ଷ ବୟସରେ ନିଜର ଅନିଚ୍ଛା ସତ୍ତ୍ୱେ ସେ ପାଓଲୋଙ୍କ ସହିତ ବିବାହ କରିଥିଲେ । ବିବାହର ପ୍ରଥମ ପର୍ଯ୍ୟାୟରେ ସେହି ଦୁହିଁଙ୍କର ସମ୍ପର୍କ ଭଲ ନ ଥିଲା କାରଣ ପାଓଲୋ ଥିଲେ ଆବେଗପ୍ରବଣ ବ୍ୟକ୍ତି ଏବଂ ଅନ୍ୟମାନଙ୍କ କହିବା ଅନୁଯାୟୀ ସେ ଥିଲେ ଜଣେ ଉଗ୍ର ଓ ରୁକ୍ଷ ସ୍ୱଭାବର ବ୍ୟକ୍ତି ଯାହାଙ୍କ କଥାରେ ଲୋକେ ଭୟଭୀତ ହେଉଥିଲେ ।

ପିତା ଓ ମାତାଙ୍କ ବିୟୋଗ ପରେ ରିତାଙ୍କ ଆନନ୍ଦମୟ ଜୀବନର ପରିସମାପ୍ତି ହୋଇଥିଲା । ତଥାପି ତାଙ୍କ ରୁକ୍ଷ ସ୍ୱାମୀଙ୍କୁ ଯେଭଳି ଯତ୍ନ ନେଉଥିଲେ ତାହା ରିତାଙ୍କ ସାହାସର ପରିଚୟ ପ୍ରକାଶ କରେ । ଯଦିଓ ରିତାଙ୍କ ସ୍ୱାମୀ ନିଷ୍ଠୁର ବ୍ୟକ୍ତି ଥିଲେ ତଥାପି ରିତାଙ୍କ ସେବା, ପ୍ରେମ ଓ ଉତମ ବ୍ୟବହାର ଦ୍ୱାରା ସେ ପରିବର୍ତନ ହେଲେ ଓ ସମାଜରେ ଲୋକେ ତାଙ୍କୁ ସମ୍ମାନ ଦେବାକୁ ଆରମ୍ଭ କଲେ ।

୧୩୯୨ ମସିହାରେ ରିତା ଓ ପାଓଲୋ ଜାଆଁଳା ପୁଅ ଓ ଝିଅଙ୍କୁ ଜନ୍ମ ଦେଲେ । ପୁଅର ନାମ ଜାନ ଯାକୋମ୍ ଓ ଝିଅର ନାମ ପାଓଲୋ ମାରିଆ ରଖିଲେ । ସେ ଦୁହେଁ ରିତାଙ୍କ ପ୍ରାର୍ଥନା ଦ୍ୱାରା ଉତମ ରୂପେ ବଢ଼ିବାକୁ ଲାଗିଲେ । ରିତା ଓ ପାଓଲୋ ପ୍ରାୟ ୧୫ ବର୍ଷ ପର୍ଯ୍ୟନ୍ତ ନିଜ ପୁତ୍ର ଓ କନ୍ୟାଙ୍କ ସହ ଖୁସୀରେ ଦିନ କାଟୁଥିଲେ । ସେହି ସମୟରେ କାସିଆରେ ଦୁଇ ଦଳ ମଧ୍ୟରେ ସର୍ବଦା ସଂଘର୍ଷ ଲାଗି ରହୁଥିଲା । ଗୁଏଲଫେଓ ଦଳଟି ଘିବେଲାଇନ୍‌ସ ବିରୁଦ୍ଧରେ, ସମ୍ଭ୍ରାନ୍ତ ଓ ମଧ୍ୟବିତ ଶ୍ରେଣୀର ଲୋକେ ସାଧାରଣ ଲୋକଙ୍କ ବିରୁଦ୍ଧରେ, ପରିବାର ମଧ୍ୟରେ ବିଦ୍ରୋହ, ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ଯୁଦ୍ଧ, ରାଜନୈତିକ ପ୍ରତିବାଦ ଇତ୍ୟାଦି ଲାଗି ରହିଥାଏ । ପାଓଲୋ ଯିଏ ସର୍ବଦା ଯୁଦ୍ଧ ଅସ୍ତ୍ରଶସ୍ତ୍ର ନେଇ ଶତ୍ରୁ ବିରୁଦ୍ଧରେ

ଇଚ୍ଛେଇ କରୁଥିଲେ ସେ ବର୍ତ୍ତମାନ ନିଜ ସ୍ତ୍ରୀ ରିତାର ବ୍ୟବହାରରେ ପରିବର୍ତ୍ତନ ହୋଇଯାଇଛନ୍ତି । ୧୪୦୫ ମସିହାରେ, ଦିନେ ପାଓଲୋ ମାଞ୍ଚିନି ରାତ୍ରି ସମୟରେ ନିଜ ଘରକୁ ଫେରୁଥିବା ସମୟରେ ରେମୋଲିଦା ଉପତ୍ୟକା ନିକଟରେ ବିଦ୍ରୋହୀମାନେ ପୂର୍ବରେ ଘଟିଥିବା ଘଟଣାକୁ କେନ୍ଦ୍ର କରି ତାଙ୍କୁ ହତ୍ୟା କରିଥିଲେ । ଯଦିଓ ରିତା ସେହି ହତ୍ୟାକାରୀର ପରିଚୟ ପାଇଥିଲେ ତଥାପି ସେ ନିଜର ପିଲାମାନଙ୍କୁ ଜଣାଇଲେ ନାହିଁ । ସେ ଚାହିଁଲେ ନାହିଁ ଯେ ତାଙ୍କ ପିଲାମାନେ ତାଙ୍କ ପିତାଙ୍କ ହତ୍ୟାକାରୀଙ୍କୁ ପ୍ରତିଶୋଧ ନେବେ । ଯୀଶୁ ଯେପରି ନିଜର ହତ୍ୟାକାରୀମାନଙ୍କୁ କ୍ଷମା ଦେଇଥିଲେ ସେହିପରି ରିତା ନିଜ ସ୍ୱାମୀର ହତ୍ୟାକାରୀମାନଙ୍କୁ କ୍ଷମା ଦେଇଥିଲେ ।

ଏହି ଘଟଣାର ପରବର୍ତ୍ତୀ ବର୍ଷ ଅର୍ଥାତ ୧୪୦୬ ମସିହାରେ ରିତାଙ୍କ ଦୁଇଟି ଜାଆଁଳା ସନ୍ତାନ ଜାନ୍‌ଯାକୋମ ଏବଂ ପାଓଲୋ ମାରିଆ ଏକ ଭୟଙ୍କର ମହାମାରୀ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ ।

**ରିତାଙ୍କ ଆଶ୍ରମ ଜୀବନ:**

ନିଜର ସ୍ୱାମୀ ତଥା ପୁଅ ଓ ଝିଅଙ୍କୁ ହରାଇ ଦୁଃଖରେ ପ୍ରାୟ ବହୁତ ବର୍ଷ ସେ ଏକାକୀ ପ୍ରାର୍ଥନାମୟ ଜୀବନ ବିତାଉଥିଲେ । ଶେଷରେ ସେ ସ୍ଥିର କଲେ ଯେ ସେ ନିଜର ଜୀବନକୁ ପ୍ରଭୁଙ୍କଠାରେ ଉତ୍ସର୍ଗ କରିବେ । ଏଣୁ କାସିଆସ୍ଥିତ ଅଗଷ୍ଟିନ ସଂଘର ସେବାଭଗ୍ନୀ ହେବା ପାଇଁ ସେ ନିଷ୍ପତି ନେଲେ ।

ଅଗଷ୍ଟିନ ସଂଘର ସେବାଭଗ୍ନୀମାନଙ୍କ ନିକଟକୁ ଯାଇ ନିଜର ଇଚ୍ଛା ପ୍ରକାଶ କଲେ । କିନ୍ତୁ ସେହି ସିଷ୍ଟେରମାନେ ତାଙ୍କୁ ମନା କରିଦେଲେ କାରଣ ସେମାନେ ଭୟ କଲେ ଯେ ତାଙ୍କୁ ସଂଘରେ ଗ୍ରହଣ କଲେ ତାଙ୍କ ସଂଘର ନାମ ଚାଲିଯିବ । ତାର ଉପସ୍ଥିତି ହୁଏତ ତାଙ୍କ ପରିବାର ମଧ୍ୟରେ ଥିବା କନ୍ଦଳ ଯୋଗୁଁ ସଂଘ ପ୍ରତି ଆଞ୍ଚ ଆସିପାରେ । ରିତା ଭାବିଲେ ଯଦି ପରିବାର କନ୍ଦଳ ବା ଶତ୍ରୁତା ଯୋଗୁଁ ତାଙ୍କୁ କନ୍‌ଭେଣ୍ଟରେ ଗ୍ରହଣ କରାଯାଉ ନାହିଁ, ତେବେ ସେ ଚେଷ୍ଟା କଲେ ନିଜର ପରିବାରର ଆତ୍ମୀୟମାନଙ୍କ ସହିତ ତାଙ୍କ ସ୍ୱାମୀର ହତ୍ୟାକାରୀମାନଙ୍କ ମଧ୍ୟରେ ପୁନର୍ମିଳନ କରିବା ପାଇଁ । ଧର୍ଯ୍ୟର ସହ ବହୁତ ବର୍ଷ ଅପେକ୍ଷା କରିବା ପରେ ପୁଣି

ଥରେ ଅନୁରୋଧ କରିଥିଲେ ତାଙ୍କୁ ସଂଘରେ ପ୍ରବେଶ କରିବା ପାଇଁ । କିନ୍ତୁ ତିନି ଥର ତାଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନା କରାଯାଇଥିଲା ।

ପ୍ରତିଦିନ ନିର୍ଦ୍ଦିଷ୍ଟ ସ୍ଥାନରେ ଅର୍ଥାତ ପଥର ବା ସ୍କିଓପ (ଯାହା ରୋକାପୋରେନା ଗ୍ରାମର ୧୦୦ ମିଟର ଉଚ୍ଚରେ ଅବସ୍ଥିତ) ସ୍ଥାନକୁ ଯାଇ ସେ ପ୍ରାର୍ଥନା କରୁଥାନ୍ତି । ଦିନକର ଘଟଣା, ସେହି ପଥର ଉପରେ ରହି ବିଳମ୍ବିତ ରାତ୍ରିରେ ପ୍ରାର୍ଥନା କରିବା ସମୟରେ ଦର୍ଶନ ମାଧ୍ୟମରେ ସେ ତାଙ୍କର ତିନି ଜଣ ଇଷ୍ଟ ସାଧୁମାନଙ୍କୁ (ସାଧୁ ଅଗଷ୍ଟିନ, ସାଧୁ ଯୋହନ ବାପ୍ତିସ୍ତା ଏବଂ ତୋଲେଣ୍ଟିନର ସାଧୁ ନିକୋଲା) ଦର୍ଶନ ପାଇଥିଲେ । ଏହି ତିନି ଜଣ ସାଧୁ ସେହି ଅଗଷ୍ଟିନ ଚର୍ଚ୍ଚରେ ସମ୍ମାନିତ ହୁଅନ୍ତି, ଯେଉଁଠି ରିତା ବାଲ୍ୟକାଳରୁ ସେଠାକୁ ପ୍ରାର୍ଥନା କରିବା ପାଇଁ ଯାଉଥିଲେ । ସେହି ଚର୍ଚ୍ଚର ଝରକା ଓ ଦ୍ୱାର ଗୁଡିକ ଯଦିଓ ଅତି ଯତ୍ନ ସହକାରେ ବନ୍ଦ କରାଯାଇଥିଲା ତଥାପି ତହିଁ ଆରଦିନ ସେହି ଚର୍ଚ୍ଚରେ ସିଷ୍ଟେରମାନେ ରିତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ରିତା ସବୁ ଘଟଣା ଗୁଡିକ ସିଷ୍ଟେରମାନଙ୍କୁ ପ୍ରକାଶ କରିବା ପରେ ଅତି ଆନନ୍ଦରେ ସେମାନେ ତାଙ୍କ ସଂଘରେ ଯୋଗ ଦେବା ପାଇଁ ସ୍ୱାଗତ କରିଥିଲେ । ରିତାଙ୍କ ଧୈର୍ଯ୍ୟ ଏବଂ ଦୁଇଟି ପରିବାର ଯଥା ଆତ୍ମୀୟ ଓ ସ୍ୱାମୀର ହତ୍ୟାକାରୀଙ୍କ ମଧ୍ୟରେ ପୁନର୍ମିଳନ କରିବା ପାଇଁ ଯେଉଁ ପ୍ରୟାସ ଜାରି ରଖିଥିଲେ ତାହା ପୂର୍ଣ୍ଣ ହେଲା ।

ଜଣେ ଝିଅ, ଜଣେ ସ୍ତ୍ରୀ, ଜଣେ ମାଁ ଓ ଜଣେ ବିଧବା ରୂପେ ଜୀବନର ବିଭିନ୍ନ ଅନୁଭୂତି ପାଇ ସେ ଅଗଷ୍ଟିନ ସଂଘର ସିଷ୍ଟେର ହୋଇ ପାରିଥିଲେ । ଅଗଷ୍ଟିନ ସଂଘର ସେବାଭଗ୍ନୀ ହୋଇ ଅତି ସରଳ ଓ ନମ୍ର ଜୀବନ ବିତାଇଲେ । କନ୍‌ଭେଣ୍ଟର ଅନ୍ୟ ସିଷ୍ଟେରମାନଙ୍କ ପାଇଁ ସେ ଥିଲେ ଆଦର୍ଶ । ରିତାଙ୍କ ଆଜ୍ଞାବହତା ଓ ନମ୍ରତାକୁ ପରୀକ୍ଷା କରିବା ପାଇଁ ଅଧିକାରୀ ସିଷ୍ଟେର ଆବେସ ଗୋଟିଏ ଶୁଖିଲା ଡାଳକୁ ଦିନକୁ ଦୁଇଥର ବର୍ଷସାରା ପାଣି ଦେବା ପାଇଁ କହିଲେ । ଗୋଟିଏ ବର୍ଷ ମଧ୍ୟରେ ସେହି ଶୁଖିଲା ଡାଳଟି କଅଁଳ ହୋଇ ବଢ଼ିଲା ଓ ସେଥିରୁ ବହୁତ ଫଳ ଫଳିଲା ।

ଆଶ୍ରମର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ, ଯେଉଁଠାରେ ଉପଦେଶ ଦିଆଯାଉଥିଲା, ତାରି ସମ୍ମୁଖରେ ଏହି ଦ୍ରାକ୍ଷା ଗଛଟି ରୋପଣ କରାଯାଇଛି । ଏହି ବୃକ୍ଷକୁ 'ବିସ୍ମୟକର ବୃକ୍ଷ' ବୋଲି ନାମ ଦିଆଯାଇଛି । ଏହି ଗଛର ଶାଖା ଗୁଡିକୁ ରୋଷେଇ କରି

ବେମାରୀମାନଙ୍କୁ ଖାଇବାକୁ ଦିଆଯାଏ । ଅନେକେ ତାହା ସେବନ କରି ସୁସ୍ଥତା ଲାଭ କରିଛନ୍ତି । ଅନ୍ୟ ସିଷ୍ଟରମାନଙ୍କ ସହିତ ସେ ଗରୀବ, ଅସୁସ୍ଥ ଓ ବୃଦ୍ଧ ବୃଦ୍ଧାମାନଙ୍କୁ ପରିଦର୍ଶନ କରୁଥିଲେ ଏବଂ ସେମାନଙ୍କ ପାଇଁ ଖାଦ୍ୟ ଓ ବସ୍ତ୍ର ଯୋଗାଉଥିଲେ । ଏଣୁ କାସିଆର ସମସ୍ତ ଅଧିବାସୀମାନେ ତାଙ୍କୁ ପ୍ରେମ କରୁଥିଲେ । ନିଜର ଓ ଅନ୍ୟର ପାପ ମୋଚନ ନିମନ୍ତେ ସେ କଠୋର ତପସ୍ୟା, ଉପବାସ ଓ ପ୍ରାୟଶ୍ଚିତ କରୁଥିଲେ । ଯୀଶୁଙ୍କ ଯାତନାରେ ସହଭାଗୀ ହେବା ପାଇଁ ନିଜ ଶରୀରକୁ ଚାବୁକ ଦ୍ୱାରା ପ୍ରହାର କରୁଥିଲେ ।

୧୪୪୨ ମସିହାରେ, ପବିତ୍ର ଶୁକ୍ରବାର ଦିନ ଫ୍ରାନସିସ ସଂଘର ମାକାର ଯାଜକ ଜାକୋମଙ୍କ ପ୍ରେରଣାମୂକ ପ୍ରଚାର ବିଶେଷ ଭାବରେ ଯୀଶୁଙ୍କ ସପ୍ତବାଣୀ ଉପରେ ଯେଉଁ ବିଷୟ କହିଥିଲେ ତାହା ରିତାଙ୍କ ଆତ୍ମାକୁ ସ୍ପର୍ଶ କରିଥିଲା । ସେ କହିଥିଲେ ଯେ ଯୀଶୁଙ୍କ ପାଇଁ ସବୁଠାରୁ ଅଧିକ ଦୁଃଖ ତାଙ୍କର ଯାତନା ନ ଥିଲା କିନ୍ତୁ ଶିଷ୍ୟମାନେ ଯେଉଁଭଳି ତାଙ୍କୁ ପରିତ୍ୟାଗ କରିଥିଲେ । ଏହା ଶୁଣିଲା ପରେ ସେ ନିଜ କୋଠରୀକୁ ଫେରି ଆସି ଯୀଶୁଙ୍କ କ୍ରୁଶବିଦ୍ଧରେ ସହଭାଗୀ ହେବା ପାଇଁ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ଠିକ୍ ସେହି ସମୟରେ ଯୀଶୁଙ୍କର ସେହି କଣ୍ଟକ ମୁକୁଟରୁ ଗୋଟିଏ କଣ୍ଟା ଆସି ତାଙ୍କ କପାଳକୁ ଆଘାତ କଲା ଓ ସେଠାରୁ ରକ୍ତ ଝରିବାକୁ ଲାଗିଲା । ତାହା ସ୍ଥାୟୀ Stigma (ଯୀଶୁଙ୍କ ଉପସ୍ଥିତିର ଚିହ୍ନ) ହୋଇ ରହିଲା ।

ପବିତ୍ର ସପ୍ତାହର ଶନିବାର ଦିନ ତାଙ୍କ କପାଳର ସେହି ଚିହ୍ନଟି କନ୍‌ଭେଣ୍ଟର ସିଷ୍ଟରମାନେ ଦେଖିବାକୁ ପାଇଲେ । ରିତାଙ୍କ ମୁଖ ଆନନ୍ଦରେ ଶୋଭା ପାଉଥିବାର ସେମାନେ ଅନୁଭବ କଲେ । ସେମାନେ ଜାଣିବାକୁ ଚାହିଁଲେ କିପରି ତାଙ୍କ କପାଳରେ ଅନବରତ ରକ୍ତ ଝରୁଛି । ସିଷ୍ଟର ରିତା ସବୁ ଘଟଣାଟି ବୁଝାଇ ଦେଲେ । ଏହାପରେ ଚର୍ଚ୍ଚର ନୀତି ନିୟମକୁ ସମ୍ମାନ ଦେଇ ରିତାଙ୍କ ବିଷୟରେ ସଂଘର ଅଧିକାରୀମାନେ ଜାଣିବା ପାଇଁ ଚାହିଁଲେ । ସବୁ ବିଷୟ ଟିକିନିଖି ସେମାନେ ଅଧ୍ୟୟନ କଲେ । ଯେଉଁ ସ୍ଥାନରେ ରକ୍ତ ବାହାରୁଥାଏ ସେହି 'ଘା' ଟି ଶୁଖୁ ନ ଥିବାରୁ ସେଥିରେ ଖରାପ ଗନ୍ଧ ବାହାରୁଥାଏ । ଏଣୁ ରିତାଙ୍କୁ ବାହାରେ ନ ଯାଇ ନିଜ କୋଠରୀ ଭିତରେ ରହିବାକୁ କୁହାଗଲା । ରିତାଙ୍କ ସେହି ରକ୍ତ ଚିହ୍ନ ଖବରଟି ଚାରିଆଡ଼େ

ବିସ୍ତାରିତ ହେବାକୁ ଲାଗିଲା । ପୂଣ୍ୟପିତା ଅଷ୍ଟମ ଉର୍ବାନଙ୍କ ନେତୃତ୍ୱରେ ସାଧୁ ପ୍ରକ୍ରିୟା ଆରମ୍ଭ କରାଗଲା । କିଛି ସମୟ ପରେ ସେହି ଚିହ୍ନଟି ଅଦୃଶ୍ୟ ହୋଇଗଲା ।

୧୪୩୫ ମସିହାରେ ସାଧ୍ୱୀ ମାରିଆ ମାଦାଲେନ ଆଶ୍ରମରୁ କେତେଜଣ ସିଷ୍ଟେରମାନେ ରୋମକୁ ତୀର୍ଥଯାତ୍ରା କରିବା ଉଦ୍ଦେଶ୍ୟରେ ପ୍ରସ୍ତୁତି ହେଉଥିଲେ । ରିତା ସେମାନଙ୍କ ସହିତ ରୋମକୁ ଯିବା ପାଇଁ ନିଜର ଇଚ୍ଛା ପ୍ରକାଶ କଲେ । କିନ୍ତୁ ରକ୍ତ ଝରିବା ସ୍ଥାନର ଖରାପ ଗନ୍ଧ ଯୋଗୁଁ ତାଙ୍କୁ ଯିବା ପାଇଁ ମନା କରାଗଲା । କିନ୍ତୁ କେତେଜଣ ସିଷ୍ଟେର ଔଷଧ ଦୋକାନକୁ ଯାଇ ଗୋଟିଏ ଅଇଣ୍ଟମେଣ୍ଟ ଆଣିଲେ ଓ ରିତାଙ୍କ କପାଳରେ ଲେପନ କଲେ । ଅତି ଶୀଘ୍ର ସେହି କପାଳର 'ଘା' ଟି ଶୁଖିଗଲା ଓ ସେଥିରୁ ଫୁଲର ବାସନା ଚାରିଆଡେ ମହକିବାକୁ ଲାଗିଲା ଏବଂ ରିତା ରୋମକୁ ସିଷ୍ଟେରମାନଙ୍କ ସହିତ ତୀର୍ଥଯାତ୍ରା କରି ପାରିଥିଲେ । ସେଠାରୁ ଫେରିବା ପରେ ସିଷ୍ଟେର ରିତାଙ୍କ ସେହି 'ଘା' ଟି ପୁଣିଥରେ ଖୋଲିଗଲା, ଯାହାରି ଫଳରେ ରିତାଙ୍କୁ ପୁଣି ଆଶ୍ରମରେ ଭର୍ତି କରାଗଲା । ପ୍ରାୟ ଚାରିବର୍ଷ ସେ ଖଟିଆରେ ପଡ଼ି ରହି ଯନ୍ତ୍ରଣା ଅନୁଭବ କଲେ । ଯଦିଓ ସେ କଷ୍ଟ ପାଉଥିଲେ ତଥାପି କାସିଆବାସୀ ତଥା ସିଷ୍ଟେରମାନଙ୍କ ସେବା ଓ ପ୍ରେମ ଦ୍ୱାରା ସେହି ଯନ୍ତ୍ରଣାଟିକୁ ସେ ଭୁଲି ଯାଉଥିଲେ ।

ଦିନକର ଘଟଣା, ମରିବା ପୂର୍ବରୁ ରିତା ନିଜ ସମ୍ପର୍କୀୟଙ୍କୁ ଡକାଇ ନିଜର ଶେଷ ଇଚ୍ଛା ପ୍ରକାଶ କରି କହିଲେ, "ତୁମେ ଆଶ୍ରମକୁ ଯାଇ ମୁଁ ରୋପଣ କରିଥିବା ବଗିଚାରୁ ଦୁଇଟି ସ୍ୱାଦ ବିଶିଷ୍ଟ ଡିମିରି ଫଳ ଏବଂ ସୁବାସିତ ଗୋଲାପ ଫୁଲ ନେଇ ଆସିବ" । ସେହି ସମ୍ପର୍କୀୟ ଜଣକ ରିତାଙ୍କ ଶେଷ ଇଚ୍ଛା ପୂରଣ କରିବା ପାଇଁ ବାହାରି ପଡିଲେ । ଯଦିଓ ଶୀତ ଦିନ, ରାସ୍ତା ଗୁଡିକ ବରଫରେ ପୂର୍ଣ୍ଣ ତଥାପି ସେ ରୋକାପୋରେନା ଯାଇ ଗୋଟିଏ ପତ୍ରହୀନ ଡିମିରି ଗଛରୁ ଦୁଇଟି ଫଳ ଏବଂ ବରଫ ମଧ୍ୟରେ ଗୋଟିଏ ସୁନ୍ଦର ଗୋଲାପ ଫୁଲ ତୋଳି ରିତାଙ୍କ ପାଖକୁ ଫେରିଲା । ସେହି ବିଧବା ମାଁ ଓ ସିଷ୍ଟେର ହେଉଛନ୍ତି ରିତା ଯିଏ ଦିନେ 'କଣ୍ଟା ଓ ଫୁଲର ସାଧ୍ୱୀ' ହୋଇ ପାରିଥିଲେ । ଏଣୁ ତାଙ୍କ ପର୍ବ ଦିନ ତାଙ୍କର ଭକ୍ତ ଓ ଭକ୍ତାଙ୍କୁ ଫୁଲ ବଣ୍ଟାଯାଏ ।

ଚାରିମାସ ପରେ ଅର୍ଥାତ ୧୪୪୭ ମସିହା ମଇମାସ ୨୨ ତାରିଖରେ ସେ ମୃତ୍ୟୁବରଣ କଲେ । କୁହାଯାଏ ତାଙ୍କ ମୃତ୍ୟୁ ସମୟରେ, ଶରୀରରୁ ମଧୁର

ସୁଗନ୍ଧ ନିର୍ଗତ ହେବା ସେମାନେ ଅନୁଭବ କରିଥିଲେ ଏବଂ ତାଙ୍କ 'ଘା' ରୁ ଛୋଟ ଝରଣାଟି ବାହାରିଥିଲା । ରିତାଙ୍କୁ କବର ଦେବା ସମୟରେ ରିତାଙ୍କ ଆଶ୍ଚର୍ଯ୍ୟ କର୍ମ ଶୁଣି ଚାରିଆଡୁ ଲୋକେ ଜମା ହେଲେ ତାଙ୍କୁ ବିଦାୟ ଦେବା ପାଇଁ । ମହୁମାଛି ଗୁଡିକ ଆସି କନ୍‌ଭେଣ୍ଟର ଚତୁର୍ଦ୍ଦିଗରେ ଘେରିଗଲେ ।

ବର୍ତମାନ ତାଙ୍କ ଶରୀରଟିକୁ ସାଧ୍ୱୀ ରିତା ଆଶ୍ରମରେ ରଖାଯାଇଛି । ୧୦ ବର୍ଷ ପରେ ଅର୍ଥାତ ୧୪୫୭ ମସିହାରେ ଆନୁଷ୍ଠାନିକ ଭାବେ ଅନୁସନ୍ଧାନ କରିବା ପାଇଁ ସ୍ପଲେତୋ ଧର୍ମପ୍ରଦେଶର ଧର୍ମାଧ୍ୟକ୍ଷଙ୍କ ଅନୁମତି କ୍ରମେ ତାଙ୍କ କବରଟିକୁ ଖୋଲା ଯାଇଥିଲା, କିନ୍ତୁ ଶରୀରଟି କୌଣସି ମତେ ନଷ୍ଟ ହୋଇ ନ ଥିଲା ବୋଲି କୁହାଯାଏ । ଶବପେଟି ତଥା ତାହାରି ଚତୁର୍ଦ୍ଦିଗରେ ଧାର୍ମିକ ଚିତ୍ରମାନ ଅଙ୍କନ କରାଯାଇଛି ।

ରିତାଙ୍କ ସାଧ୍ୱୀ ହେବା ପ୍ରକ୍ରିୟା ଅକ୍ଟୋବର ମାସ ୧୯ରୁ ଆରମ୍ଭ ହୋଇ ୧୬୨୬ ଜୁଲାଇ ମଧ୍ୟରେ ପୂଣ୍ୟପିତା ସପ୍ତମ ଉର୍ବାନଙ୍କ ଦ୍ୱାରା ଆନୁଷ୍ଠାନିକ ଭାବରେ ଆରମ୍ଭ ହୋଇଥିଲା । ତିନିଶହ ବର୍ଷ ପରେ ୧୯୦୦ ମସିହା ମଇ ମାସ ୨୪ ତାରିଖ ଦିନ ତାଙ୍କୁ ସାଧ୍ୱୀ ରୂପେ ଘୋଷଣା କରାଗଲା । ସେହି ସମୟର ପୂଣ୍ୟପିତା ଅଷ୍ଟମ ଲିୟନେ ରିତାଙ୍କୁ ଉମ୍ବ୍ରିଆର ମୁକ୍ତା ବୋଲି ନାମ ଦେଇଥିଲେ । ରିତାଙ୍କ ପ୍ରତି ଭକ୍ତି କେବଳ ଇଟାଲୀରେ ସିମୀତ ହୋଇ ରହି ନାହିଁ କିନ୍ତୁ ସ୍ପେଇନ, ପର୍ତୁଗାଲ, ଲାଟିନ ଆମେରିକା, ଫିଲିପାଇନ ଇତ୍ୟାଦି ରାଷ୍ଟ୍ରରେ ବିଶ୍ୱାସୀମାନଙ୍କ ଭକ୍ତି ବଢ଼ିବାରେ ଲାଗିଛି ।

**ସାଧ୍ୱୀ ରିତାଙ୍କ କେତୋଟି ଉକ୍ତି:**

✸ "ନିଜ ଆତ୍ମାରେ ଶାନ୍ତି ଅନୁଭବ କରନ୍ତୁ, ତେବେ ସ୍ୱର୍ଗ ଓ ମର୍ତ୍ୟର ଶାନ୍ତି ତୁମ ସହିତ ରହିବ" ।

✸ "ହେ ମୋର ଯୀଶୁ, ତୁମର ଯନ୍ତ୍ରଣାରେ ସହଭାଗୀ ହେବା ପାଇଁ, ତୁମ ମୁକୁଟର ଅତି କମ୍‌ରେ ଗୋଟିଏ କଣ୍ଟା ମୋତେ ଦିଅ" ।

✸ "ହେ ପରମ ପବିତ୍ର ଯୀଶୁ ଦିବ୍ୟ ହୃଦୟ, ସମସ୍ତ ପବିତ୍ରତାରେ ଧୈର୍ଯ୍ୟର ସହିତ ରହିବା ପାଇଁ ମୋର ହୃଦୟକୁ ସାହାଯ୍ୟ କର" ।

✸ ✸ ✸

# ସାଧୁ ଫିଲିପ ନେରି
## (୧୫୧୫-୧୫୯୫, ମଇ ୨୬)

୧୫୧୫ ମସିହା ଜୁଲାଇ ୨୧ ତାରିଖରେ ଇଟାଲୀ ଦେଶର ଫ୍ଲୋରେନ୍‌ସରେ ଫିଲିପ ଜନ୍ମ ଗ୍ରହଣ କରିଥିଲେ । ଛୋଟରୁ ସମସ୍ତଙ୍କ ସେ ପ୍ରିୟ ଥିଲେ । ସେ ଜଣେ ଉତମ ଓ ରହସ୍ୟମୟ ଚରିତ୍ରର ବ୍ୟକ୍ତିଥିଲେ । ୧୮ ବର୍ଷ ବୟସରେ ତାଙ୍କର ଜଣେ ସମ୍ପର୍କୀୟ ବ୍ୟକ୍ତିଙ୍କ ଘରକୁ ସେ ଯାଇଥିଲେ । ସେହି ବ୍ୟକ୍ତି ଜଣକ ଥିଲେ ବହୁତ ଧନଶାଳୀ । ସେ ବାସ କରୁଥିଲେ ଇଟାଲୀର କାସିନୋରେ ଏବଂ ତାଙ୍କର କୌଣସି ସନ୍ତାନ ନ ଥିବାରୁ ଫିଲିପଙ୍କୁ ତାଙ୍କ ସମ୍ପତିର ଉତରାଧିକାରୀ ହେବା ପାଇଁ ସେ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଫିଲିପଙ୍କର ଆହ୍ୱାନ ତାହା ନ ଥିଲା । ୧୫୩୬ ମସିହାରେ କୌଣସି ଯୋଜନା ନ ଥାଇ ସେ ରୋମକୁ ଯାଇଥିଲେ । ରୋମର ଜଣେ ବ୍ୟକ୍ତି ତାଙ୍କ ଘରର ଗୋଟିଏ ବଖରା ତାଙ୍କୁ ରହିବା ପାଇଁ ଦେଇଥିଲେ । ସେହି ବ୍ୟକ୍ତିର ସର୍ତ ଥିଲା ଯେ ସେ ତାହାର ପିଲାମାନଙ୍କୁ ଘରୋଇ ଶିକ୍ଷା ଦେବ । ଅନ୍ୟ ସମୟରେ ସେ ନିଜର ପାଠ୍ୟ ପୁସ୍ତକ ପଢ଼ିବା ସାଥେ ସାଥେ ପ୍ରାର୍ଥନା ଓ ନିରୋଳା ଜୀବନ ବିତାଉଥିଲେ । ସେ କେବଳ ଗୋଟିଏ ଓଳି ହିଁ ସ୍ୱଳ୍ପ ଭୋଜନ କରୁଥିଲେ । ଛୋଟିଆ ରୋଟି ଖଣ୍ଡିକ, ଅଲିଭ ଓ ଜଳ ଥିଲା ତାଙ୍କର ଖାଦ୍ୟ । ସେ ଖୁବ କମ୍ ସମୟ ଚଟାଣରେ ଶୟନ କରୁଥିଲେ ।

ଆସ୍ତେ ଆସ୍ତେ ସେ ବାସ କରୁଥିବା ପାଖା ପାଖି ରାସ୍ତା କୋଣ ଗୁଡ଼ିକୁ ଯାଇ ଅନ୍ୟମାନଙ୍କ ସହିତ ବିଭିନ୍ନ ବିଷୟରେ ବାର୍ତାଳାପ କରୁଥିଲେ । ଅନ୍ୟମାନଙ୍କ ସହିତ ବାର୍ତାଳାପ କରିବା ସମୟରେ ସେ ପଚ୍ଚାରୁଥାନ୍ତି, "ଭାଇମାନେ, କେବେ ଆମର ଉତମ କାର୍ଯ୍ୟ ଆରମ୍ଭ କରିବା" ? ପ୍ରଭୁଙ୍କର କୃପାରୁ ଅନେକେ ଗରୀବମାନଙ୍କୁ ସାହାଯ୍ୟ, ରୋଗୀମାନଙ୍କୁ ସେବା ଓ ଶିକ୍ଷା ଦେବା ପାଇଁ ଆଗଭର ହୋଇ ସେହି ଉତମ କାର୍ଯ୍ୟ ଆରମ୍ଭ କରିଥିଲେ । ରୋମରେ ତୀର୍ଥଯାତ୍ରୀମାନଙ୍କୁ ସହାୟତା ଦେବା ପାଇଁ "ପବିତ୍ର ତ୍ରୈକ୍ୟ" ନାମରେ ଏକ ସମାଜ ସେ ପ୍ରତିଷ୍ଠା କଲେ । ୧୫୩୮ ଓ ୧୫୩୯ ମସିହା ମଧ୍ୟରେ ଯେଉଁ ଦୁର୍ଭିକ୍ଷ ଘଟିଥିଲା, ସେହି ସମୟରେ ଅନେକ ରୋଗୀମାନଙ୍କୁ ସେବା କରି ସେମାନଙ୍କୁ ସହାୟତା ପ୍ରଦାନ କରିଥିଲେ । ରୋମର ବିଭିନ୍ନ ଗୀର୍ଜା ଓ କାଟାକୁମ୍ବ (ଭୂମି ତଳେ ରହି ପ୍ରାର୍ଥନା କରିବା ସ୍ଥାନ) ଗୁଡିକୁ

ଯାଇ ପ୍ରାର୍ଥନରେ ବହୁତ ସମୟ ବିତାଉ ଥିଲେ । ୧୫୪୪ ମସିହା ପେନ୍ତେକସ୍ତ ପର୍ବଦିନ ଯେତେବେଳେ ସେ ପବିତ୍ର ଆତ୍ମାଙ୍କୁ ପ୍ରାର୍ଥନା କରୁଥିଲେ, ସେ ଅନୁଭବ କଲେ ଯେ ଗୋଟିଏ ବର୍ତ୍ତୁଳାକାର ଅଗ୍ନି ଆସି ତାଙ୍କ ହୃଦୟକୁ ଆଘାତ କଲା । ଏହା ପରେ ସେହି ସ୍ଥାନଟି ଫୁଲି ଯାଇ ସେ ଜ୍ୱର ଅନୁଭବ କଲେ କିନ୍ତୁ ବ୍ୟଥା ନ ଥିଲା । ମୃତ୍ୟୁ ପରେ ତାଙ୍କର ଶରୀରକୁ ପରୀକ୍ଷା କରିବା ଦ୍ୱାରା ଜଣା ପଡିଲା ଯେ ତାଙ୍କର ବକ୍ଷସ୍ଥଳର ଦୁଇଟି ପଞ୍ଜରି ହାଡ ଭାଙ୍ଗି ଯାଇଥିଲା ଏବଂ ତୋରଣ ତୁଲ୍ୟ ସେହି ଜାଗାରେ ମାଂସ ବଢ଼ିଥିଲା । ଯାଜକ ହେବା ପାଇଁ ତାଙ୍କ ଆଧ୍ୟାତ୍ମିକ ଗୁରୁଙ୍କ ଦ୍ୱାରା ସେ ପ୍ରେରଣା ପାଇଥିଲେ । ୧୫୫୧ ମସିହାରେ ସେ ଯାଜକ ଅଭିଷେକ ପ୍ରାପ୍ତ କଲେ । ଯାଜକ ଭାବେ ପାପସ୍ୱୀକାର ଓ ଦିବ୍ୟଯଜ୍ଞ ସଂସ୍କାରର ସେ ପ୍ରେରିତ ହୋଇ ପାରିଥିଲେ । ନିଜ କୋଠରୀରେ ଯୁବକମାନଙ୍କୁ ଏକତ୍ର କରି ସେ ସୁସମାଚାର ବିଷୟରେ  ସେମାନଙ୍କୁ ଶିକ୍ଷା ଦେଉଥିଲେ ଏବଂ ସେମାନଙ୍କ ସହିତ ପ୍ରାର୍ଥନା ଓ ସଂଗୀତ ଗାନ କରି ଆନନ୍ଦ ଓ ଖୁସୀର ସମୟ ବିତାଉଥିଲେ । ସେମାନଙ୍କ ମଧ୍ୟରେ ହସ ଓ ଖେଳର ବାତାବରଣ ସୃଷ୍ଟି କରି ମନ୍ଦ ଚିନ୍ତା ଓ ବିଭିନ୍ନ ପ୍ରକାରର ପ୍ରଲୋଭନରୁ ସେମାନଙ୍କୁ ଦୂରେଇ ରଖୁଥିଲେ । ଏଣୁ ଫିଲିପଙ୍କ କୋଠରୀକୁ ଖ୍ରୀଷ୍ଟିୟାନ ମାନଙ୍କ ଆନନ୍ଦର ଗୃହ ବୋଲି କହୁଥିଲେ ।

ଫ୍ରାନସିସ ଜେଭିୟରଙ୍କ ଗୋଟିଏ ମିଶନ ବିବରଣୀର ପତ୍ର ଦ୍ୱାରା ସେ ଏତେ ଆକର୍ଷିତ ହୋଇଥିଲେ ଯେ, ସେ ତାଙ୍କ ସଂଘରେ ଯୋଗ ଦେଇ ପୂର୍ବ ଦେଶକୁ ଯାଇ ଖ୍ରୀଷ୍ଟଙ୍କ ପାଇଁ ନିଜର ରକ୍ତ ଦେବା ପାଇଁ ପ୍ରସ୍ତୁତ ଥିଲେ । କିନ୍ତୁ ଜଣେ ସିସ୍ତେରସିଆନ ସନ୍ୟାସୀଙ୍କ ଉପଦେଶ ପାଇ ରୋମରେ ହି ରହି କାର୍ଯ୍ୟ କରିବା ପାଇଁ ମନସ୍ଥ କଲେ । ଆଜି ରୋମର ଜଣେ ପ୍ରେରିତ  ରୂପେ ସେ ପରିଚିତ । ୧୬୨୨ ମସିହାରେ ଫ୍ରାନ୍ସିସ ଜେଭିୟେରଙ୍କ ସହିତ ଏକାଦିନରେ ସେମାନଙ୍କୁ ସାଧୁ ରୂପେ ଘୋଷଣା କରାଗଲା ।

ଫିଲିପଙ୍କ କାର୍ଯ୍ୟ ଦେଖି କେତେଜଣ ଯାଜକ  ତାଙ୍କ ସହିତ ହାତ ମିଳାଇ ଆଧ୍ୟାତ୍ମିକତାର ପ୍ରେରିତ ରୂପେ ରୋମରେ ସେମାନଙ୍କର ସେବା କାର୍ଯ୍ୟ ଆରମ୍ଭ କଲେ । ୧୫୭୫ ମସିହାରେ ପୂଣ୍ୟପିତା ଗ୍ରେଗରୀ ତ୍ରୟୋଦଶ ଫାଦେର ଫିଲିପଙ୍କ ଦ୍ୱାରା ପ୍ରତିଷ୍ଠିତ ସମାଜକୁ ସ୍ୱୀକାର କରିଥିଲେ । ସେହି ସମାଜର ନାମ ଥିଲା

ଚେରେଟରି ଏହାର ଅର୍ଥ ବକ୍ତୃତା ଦେବାରେ ଦକ୍ଷତା ସମାଜ । ଫାଦେର ଫିଲିପ ସଂଘର ପ୍ରଥମ ଅଧିକାରୀ ରୂପେ ନିଯୁକ୍ତି ପାଇଥିଲେ । ଫିଲିପ ଅନୁଭବ କରିଥିଲେ ଯେ ଆଜି ମଣ୍ଡଳୀରେ ବିଭିନ୍ନ ସଂଘ ରହିଅଛି ଏବଂ ସେ ଅନ୍ୟ ଏକ ସଂଘ ଆରମ୍ଭ କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ଏଣୁ ତାଙ୍କ ଦ୍ୱାରା ସ୍ଥାପିତ ସମାଜ ହେବ ସ୍ୱାଧୀନ ଯାଜକ ସମାଜ ଯେଉଁମାନେ ବ୍ରତ ନ ନେଇ କିନ୍ତୁ ଅଳ୍ପ କେତେକ ନିୟମ ଦ୍ୱାରା ପରିଚ୍ଛଳିତ ହୋଇ ସମ୍ପୁର୍ଣ୍ଣ ରୂପେ ସେଥିପ୍ରତି ବିଶ୍ୱସ୍ତ ରହିବେ ।

ପ୍ରଭୁ ଫିଲିପଙ୍କୁ ବିଭିନ୍ନ ପ୍ରକାରର ଆଧ୍ୟାତ୍ମିକ ବରଦାନ ଦେଇଥିଲେ । ଭବିଷ୍ୟତ ବାଣୀ କହିବା ଏବଂ ଆତ୍ମା ଗୁଡ଼ିକ ଚିହ୍ନିବାର ଦାନ ସେ ପାଇଥିଲେ । ତାଙ୍କ ଜୀବନର ଶେଷ ସମୟରେ ସେ ଏକା ଦିବ୍ୟଯଜ୍ଞ କରୁଥିଲେ କାରଣ ରହସ୍ୟମୟ ଅନୁଭୂତି ଦ୍ୱାରା ସେ ଯେଉଁ ପରମ ଆନନ୍ଦ ଲାଭ କରୁଥିଲେ ତାହା ପ୍ରାୟ ଦୁଇ ତିନି ଘଣ୍ଟା ସମୟ ଲାଗୁଥିଲା । ୧୫୯୫ ମସିହା ମଇ ମାସ ୨୬ ତାରିଖ, ଯୀଶୁଙ୍କର ଶରୀର ଓ ରୁଧିରର ପର୍ବ ଦିନ, ରକ୍ତସ୍ରାବ ବେମାର ଦ୍ୱାରା ଅସୁସ୍ଥ ହୋଇ ପ୍ରାଣତ୍ୟାଗ କରିଥିଲେ ।

ରୋମରେ ପ୍ରାୟ ୬୦ ବର୍ଷ ସେ କାମ କଲେ । ଲୋକଙ୍କ ଉଦାସୀନତା ଏବଂ ମନ୍ଦତା ଦେଖି ସେ ବିଚ୍ଛର କରୁ ନ ଥିଲେ କିମ୍ବା ସେମାନଙ୍କୁ ସମାଲୋଚନା କରୁ ନ ଥିଲେ  ବରଂ ମନ୍ଦତାକୁ ଉତ୍ତମତା ଦ୍ୱାରା ଜିଣିବା ପାଇଁ ସେ ପ୍ରୟାସ କରୁଥିଲେ । ଲୋକମାନଙ୍କର ଭ୍ରାନ୍ତ ମନକୁ ବଦଳାଇ ପବିତ୍ରତା ଓ ସତ୍ୟତା ପ୍ରତି ଆକର୍ଷିତ ହେବା ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ଗଭୀର ବିଷୟ  ଗୁଡ଼ିକ ସାଧାରଣତ, ସରଳ ଓ ହାସ୍ୟରସ ଭାବରେ ସେ ଶିକ୍ଷା ଦେଉଥିଲେ ।  ଜନ୍ ହେନେରୀ କାର୍ଡିନାଲ୍ ନିଉମ୍ୟାନ ତାଙ୍କର ଜଣେ ଅତି ପ୍ରୀୟ ଶିଷ୍ୟ ଥିଲେ । ଆଧ୍ୟାତ୍ମିକ ପରାମର୍ଶ ନିମନ୍ତେ ବିଭିନ୍ନ ବ୍ୟକ୍ତିମାନେ ତାଙ୍କ ନିକଟକୁ ଆସୁଥିଲେ । ଲୋୟାଲାର ସାଧୁ ଇଗ୍ନାସିୟସ ଏବଂ ଚାର୍ଲସ ବରୋମିୟ ତାଙ୍କ ପ୍ରିୟ ବନ୍ଧୁ ଥିଲେ । କ୍ଷମତା ପ୍ରତି ତାଙ୍କର ବିଲ୍‌କୁଲ ଲୋଭ ନ ଥିଲା ।

୧୬୧୫ମସିହାରେ ନେରିଙ୍କୁ ପୂଣ୍ୟପିତା ପଞ୍ଚମ ପାଉଲ "ଧନ୍ୟ" ବୋଲି ଘୋଷଣା କଲେ । ୧୬୨୨ ମସିହାରେ ପୂଣ୍ୟପିତା ପଞ୍ଚଦଶ ଗ୍ରେଗରୀ ତାଙ୍କୁ "ସାଧୁ" ପଦକୁ ଉନ୍ନୀତ କଲେ ।

ସାଧୁ ପିତର ଓ ପାଉଲଙ୍କ ପରେ ରୋମର ତୃତୀୟ ପ୍ରେରିତ ହେଉଛନ୍ତି ଫିଲିପ ନେରି । ହାସ୍ୟକରମାନଙ୍କର ଇଷ୍ଟ ସାଧୁ ଅଟନ୍ତି ଫିଲିପ ନେରୀ । ଫିଲିପ ତିନି ଜଣ ଯୁବକଙ୍କ ବିଷୟରେ ଭବିଷ୍ୟତ ବାଣୀ ଶୁଣାଇ ଥିଲେ । ସେ କହିଥିଲେ ସେହି ତିନି ଜଣ ଯୁବକମାନେ କରିସିକା ଯିବେ ଏବଂ ସମୁଦ୍ରର ମଧ୍ୟଭାଗରେ ବୁଡ଼ି ରୋମ୍‌ର ସମୁଦ୍ର ତଟରେ ମୃତ୍ୟୁ ହୋଇ ତାଙ୍କ ମର ଶରୀର ପହଞ୍ଚିବ, ଯେଉଁଠାରେ ସେମାନଙ୍କର ମର ଶରୀର ଜୀବନ ପାଇବ । ତାଙ୍କ କଥା ପ୍ରକାରେ ବାସ୍ତବରେ ତାହା ଘଟିଥିଲା ।

ଫିଲିପଙ୍କ ଉପସ୍ଥିତି ଲୋକେ ସମାନ ସମୟରେ ଦୁଇଟି ସ୍ଥାନରେ ଦୃଶ୍ୟମାନ ହେବାର ଦେଖି ପାରୁଥିଲେ । ଦିନେ ଜଣେ ଯୁବକ ସମୁଦ୍ରରେ ବୁଡ଼ି ଯାଉଥିଲା, ହଠାତ୍ ଫିଲିପ ନେରି ସେଠାରେ ଦୃଶ୍ୟମାନ ହୋଇ ତାଙ୍କୁ ଉଦ୍ଧାର କରିଥିଲେ । ରାଜକୀୟ ପରିବାରର ଜଣେ ଯୁବକ ଫାଦର ନେରୀଙ୍କ ସହିତ ସର୍ବଦା ପାପ ସ୍ୱୀକାର କରୁଥାନ୍ତି । ଦିନେ ଯୁବକ ଜଣକ ମୃତ ଶଯ୍ୟାରେ ଥିଲେ ଏବଂ ସେ ଫାଦର ନେରୀଙ୍କୁ ଡକାଇଲେ । ଫାଦର ନେରୀ ଦିବ୍ୟ ଯଜ୍ଞରେ ଥିଲେ ଏଣୁ ସେ ଶୀଘ୍ର ପହଞ୍ଚିପାରି ନ ଥିଲେ । ଦିବ୍ୟଯଜ୍ଞ ପରେ ନେରୀ ଯାଇ ରାଜ ଦରବାରେ ପହଞ୍ଚିଲେ । ରାଜ ପରିବାର ସମସ୍ତ ସଦସ୍ୟ ସେହି ଯୁବକର ଚତୁର୍ଦ୍ଦିଗରେ ଠିଆ ହୋଇ କ୍ରନ୍ଦନ କରୁଥିଲେ । ମୃତ୍ୟୁ ପୂର୍ବରୁ ଯୁବକ ଜଣକ ଶେଷ ପାପ ସ୍ୱୀକାର କରିବା ପାଇଁ ଇଚ୍ଛା ପ୍ରକାଶ କଲେ ।

ପବିତ୍ର ଜଳରେ ଫାଦର ନେରୀ ତାଙ୍କୁ ଆଶୀର୍ବାଦ କଲେ ଏବଂ ସେହି ଟୋପାଏ ପବିତ୍ର ଜଳକୁ ତାଙ୍କ ଓଠରେ ସ୍ପର୍ଶ କରାଇ "ପଲ୍ ପଲ୍" ବୋଲି ଡାକିଲେ । ଚକ୍ଷୁ ଖୋଲି ଯୁବକ କହିଲେ, "ଫାଦରେ ମୁଁ ଗୋଟିଏ ପାପ ଭୁଲି ଯାଇଥିଲି ଏବଂ ପାପଟିକୁ ଜଣାଇବା ପାଇଁ ଆପଣଙ୍କୁ ବହୁତ ଖୋଜିଲି" । ଫାଦର ନେରୀ ସମସ୍ତଙ୍କୁ ଗୃହରୁ ବାହାରି ଯିବା ପାଇଁ କହିଲେ ଏବଂ ତାଙ୍କ ପାପ ସ୍ୱୀକାର ଶୁଣିଲେ । ପାପସ୍ୱୀକାର ପରେ ଫାଦର ଯୁବକଙ୍କୁ ପଚାରିଲେ, ବର୍ତ୍ତମାନ ତୁମେ କଣ ମରିବା ପାଇଁ ପ୍ରସ୍ତୁତ ? ଯୁବକଟି କହିଲା,"ହଁ ଫାଦର କାରଣ ମୁଁ ଜାଣୁଛି ବର୍ତ୍ତମାନ ମୁଁ ସ୍ୱର୍ଗକୁ ଯାଉଛି" ଫାଦେର ନେରୀ କହିଲେ " ମୁଁ ତୁମ୍ଭଙ୍କୁ ଆଶୀର୍ବାଦ କରୁଛି, ତୁମ୍ଭେ ଶାନ୍ତିରେ ଯାଅ" । ମୃତ୍ୟୁ ବରଣ କରିବା ସମୟରେ ସେ ଶାନ୍ତିରେ ବିଦାୟ ନେଇଥିଲେ ।

### ସାଧୁ ଫିଲିପଙ୍କ କେତୋଟି ଉକ୍ତି:

* " ଅଧୋମୁଖୀ ବ୍ୟକ୍ତିଙ୍କ ଅପେକ୍ଷା ଆନନ୍ଦ ହୃଦୟ ବ୍ୟକ୍ତି ଅତି ସହଜରେ ଶୁଦ୍ଧ ହୋଇଥାନ୍ତି" ।
* "ପ୍ରତ୍ୟେକ ଦିନକୁ ଜୀବନର ଶେଷଦିନ ଭାବି ଉତମ କାର୍ଯ୍ୟ କରିବା ହେଉଛି ମରଣ ପାଇଁ ସବୁଠାରୁ ଉତମ ପ୍ରସ୍ତୁତି" ।
* "ଅସୁସ୍ଥତା ଓ ସମସ୍ୟା ମଧ୍ୟରେ ନିଜର ଖୁସୀକୁ ସଞ୍ଚୟ କରି ରଖିବା ଉତମ ଆତ୍ମାର ଚିହ୍ନ" ।

✸✸✸

# ସାଧ୍ୱୀ ମାରୀୟାମ୍ ତ୍ରେସିଆ
# (୧୮୭୬ – ୧୯୨୬, ଜୁନ୍ ୮)

ଭାରତର କେରଳ ରାଜ୍ୟସ୍ଥିତ ତ୍ରିଚୁର ଜିଲ୍ଲାର ପୁଥେନଚିରା ଗ୍ରାମରେ ମାରିୟାମ୍ ତ୍ରେସିଆ ୧୮୭୬ ମସିହା ଏପ୍ରିଲ ମାସ ୨୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଥମା ଏବଂ ମାତା ଥାଣ୍ଡା ଚିରାମେଲାଙ୍କ ପାଞ୍ଚୋଟି ସନ୍ତାନ ମଧ୍ୟରୁ ସେ ଥିଲେ ପରିବାରର ତୃତୀୟ । ମାରୀୟାମ୍ ତ୍ରେସିଆଙ୍କ ଦୁଇ ଭାଇ ଓ ଦୁଇ ଭଉଣୀ ଥିଲେ । ଏକଦା ତାହାଙ୍କ ପରିବାରର ବହୁତ ସମ୍ପତି ଥିଲା କିନ୍ତୁ ତାହାଙ୍କ ଜେଜେ ବାପାଙ୍କ ୭ ଜଣ ଝିଅ ମାନଙ୍କ ବିବାହ ପାଇଁ ଯୌତୁକ ଦେଇ ସମସ୍ତ ଜମିବାଡ଼ିକୁ ବିକ୍ରି କରିବାକୁ ପଡିଥିଲା । ଆର୍ଥିକ ସମସ୍ୟାକୁ ଭୁଲିବାକୁ ଯାଇ ତ୍ରେସିଆଙ୍କ ପିତା ଓ ତାହାଙ୍କ ଭାଇ ମଦ୍ୟପାନ କରିବା ଆରମ୍ଭ କଲେ ।

ପରିବାରର ଦାରିଦ୍ରତା ଏବଂ ମଦ୍ୟପାନ ସେମାନଙ୍କ ଜୀବନରେ କଠିନ ପରିସ୍ଥିତି ସୃଷ୍ଟି କଲା । ଅସୁସ୍ଥତା, ପିଲାମାନଙ୍କ ଶିକ୍ଷାରେ ବାଧା ଏବଂ ଧାର୍ମିକ ଶିକ୍ଷାର ଅଭାବ ପରି ବିଭିନ୍ନ ସମସ୍ୟା ମଧ୍ୟ ଦେଇ ଗତି କରିବାର ଅନୁଭୂତି ବ୍ୟକ୍ତିଗତ ଭାବରେ ତ୍ରେସିଆ ଜାଣି ପାରିଥିଲେ । ତ୍ରେସିଆଙ୍କୁ ୧୨ ବର୍ଷ ହେଉଥିବା ବେଳେ ନିଜର ମାତାଙ୍କ ମୃତ୍ୟୁ ତାଙ୍କ ପାଇଁ ବହୁତ ଦୁଃଖ ଦାୟକ ଥିଲା । ମାତାଙ୍କ ମୃତ୍ୟୁ ପରେ ତ୍ରେସିଆଙ୍କ ସ୍କୁଲ ଯିବା ବନ୍ଦ ହୋଇଗଲା । ତରୁଣ ବୟସରୁ, ମାରୀୟାଙ୍କ ପ୍ରତି ତାହାଙ୍କର ଗଭୀର ଭକ୍ତି ଥିଲା । ବିଭିନ୍ନ ସମୟରେ ସେ ମାଳାଜପ କରୁଥିଲେ ଓ ଉପବାସ ରହୁଥିଲେ । ଧର୍ମାଞ୍ଚଳର ଗରୀବ, ଦୁଃସ୍ଥ ଓ ଅବହେଳିତ ମାନଙ୍କର ସେବା ସେ କରୁଥିଲେ । ତିନି ଜଣ ବନ୍ଧୁଙ୍କ ସହିତ ଗୋଟିଏ ପ୍ରାର୍ଥନା ଦଳ ଗଠନ କରି ଧର୍ମାଞ୍ଚଳର ଗରୀବ ପରିବାର ଗୁଡ଼ିକ ପରିଦର୍ଶନ କରୁଥିଲେ । ସମାଜରେ ପ୍ରଚଳିତ ନିମ୍ନ ବର୍ଗ ବା ଅଛୁଆ ଲୋକମାନଙ୍କ ପାଖକୁ ମଧ୍ୟ ସେ ଯାଉଥିଲେ । ଦରିଦ୍ର ଥିଲେ ମଧ୍ୟ ସେ ନିଜେ କାମ କରି ଦରିଦ୍ରମାନଙ୍କ ଯତ୍ନ ନେଉଥିଲେ ।

୧୯୦୩ ମସିହାରେ ଗୋଟିଏ ପ୍ରାର୍ଥନା ଗୃହ ବା ଧ୍ୟାନ କେନ୍ଦ୍ର ସ୍ଥାପନ କରିବା ପାଇଁ ଧର୍ମାଧ୍ୟକ୍ଷଙ୍କୁ ଅନୁମତି ମାଗିଥିଲେ କିନ୍ତୁ ଧର୍ମାଧ୍ୟକ୍ଷ ମନା କରିଦେଇଥିଲେ । ନୂତନ ସଂଘଟି ଆରମ୍ଭ କରିବା ପରିବର୍ତ୍ତେ ଯେଉଁ ସଂଘ ଗୁଡ଼ିକ ରହିଅଛି, ସେଥିରେ

ଯୋଗ ଦେବା ପାଇଁ ପରାମର୍ଶ ଦେଇଥିଲେ । ମାରୀୟାମ ତ୍ରେସିଆ ଗୋଟିଏ ପରେ ଗୋଟିଏ ବିଭିନ୍ନ ସଂଘରେ ଯୋଗ ଦେଉଥିଲେ କିନ୍ତୁ କୌଣସି ସଂଘ ତାଙ୍କ ପାଇଁ ଉପଯୁକ୍ତ ନୁହେଁ ବୋଲି ସେ ମନେ କଲେ । ଶେଷରେ ୧୯୧୩ ମସିହାରେ ତାହାଙ୍କ ଧର୍ମାଧ୍ୟକ୍ଷ ଅର୍ଥାତ୍ ତ୍ରିଚୁର୍‌ର ଧର୍ମାଧ୍ୟକ୍ଷ ଜନ୍ ମେନାଚେରୀ ଗୋଟିଏ ପ୍ରାର୍ଥନା ଗୃହ ନିର୍ମାଣ କରିବା ପାଇଁ ଅନୁମତି ଦେଇଥିଲେ ।

୧୯୧୪ ମସିହା ମଇ ମାସ ୧୪ ତାରିଖରେ ପବିତ୍ର ପରିବାର ସଂଘ ସ୍ଥାପନ ହୋଇଥିଲା । ଏହି ସଂଘର ମୁଖ୍ୟ କାର୍ଯ୍ୟ ଥିଲା ପରିବାର ସେବା । ମାରିୟାମ୍ ତ୍ରେସିଆ ପବିତ୍ର ପରିବାର ସଂଘଟିକୁ ଯୀଶୁ, ମାରୀୟା ଓ ଯୋସେଫଙ୍କ ହସ୍ତରେ ସମର୍ପଣ କରି ତାହାଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରି ସଂଘଟିକୁ ଆଗକୁ ବଢାଇବା ପାଇଁ ପ୍ରୟାସ ଜାରି ରଖିଥିଲେ ।

ମାରୀୟା ତ୍ରେସିଆ ପ୍ରଭୁଙ୍କଠାରୁ ଅନେକ ବରଦାନ ପାଇଥିଲେ, ସେଗୁଡିକ ହେଲା-ସୁସ୍ଥ କରିବାର, ଆଶ୍ଚର୍ଯ୍ୟ କର୍ମର, ଭବିଷ୍ୟତ ବାଣୀ ଇତ୍ୟାଦି । ଏହା ବ୍ୟତୀତ ପ୍ରାର୍ଥନାରେ ନିମଗ୍ନ ରହି ସେ ପରମେଶ୍ୱରଙ୍କ ସହିତ ଯୋଡ଼ି ରହି ଅପାର ଆନନ୍ଦ ଅନୁଭବ କରୁଥିଲେ । ମାଧ୍ୟାକର୍ଷଣ ଶକ୍ତିକୁ ଉପେକ୍ଷା କରି ଶୂନ୍ୟରେ କ୍ରୁଶ ରୂପରେ ଭାସିବା ଭଳି ଆଶ୍ଚର୍ଯ୍ୟ କର୍ମମାନ ଦେଖିବା ପାଇଁ ବିଶ୍ୱାସୀମାନେ ପ୍ରତ୍ୟେକ ଶୁକ୍ରବାର ଦିନ ତାଙ୍କ ସ୍ଥାନକୁ ଆସୁଥିଲେ । ନିଜ ଶରୀରରେ ମଧ୍ୟ ଯୀଶୁଙ୍କ କ୍ରୁଶର ରକ୍ତ ବାହାରିବା (stigma)ସେ ଅନୁଭବ କରିଥିଲେ କିନ୍ତୁ ତାହା କାହାକୁ ପ୍ରକାଶ କରିନଥିଲେ ।

ଶୟତାନ ଦ୍ୱାରା ସେ ଅନେକ ସମୟରେ ଆଘାତ ପ୍ରାପ୍ତ ହୋଇଥିଲେ । ଶୟତାନକୁ ବାହାର କରିବାର ମଣ୍ଡଳୀରେ ଯେଉଁ ବରଦାନ ଅଛି ସେହି ଦାନକୁ ନମ୍ରତାର ସହିତ ସେ ସ୍ୱୀକାର କରୁଥିଲେ । ଯେଉଁ ପ୍ରଲୋଭନ ରୂପକ କଷ୍ଟ ସେ ପାଉଥିଲେ ସେଗୁଡ଼ିକୁ ଗ୍ରହଣ କରୁଥିଲେ ।

ମାରିୟାମ ତ୍ରେସିଆଙ୍କ ଦିଗ୍ ଦର୍ଶନ ଦ୍ୱାରା ଧର୍ମ ସଂଘଟି କ୍ରମଶ ବୃଦ୍ଧି ପାଇବାକୁ ଲାଗିଲା । ସଂଘଟି ଆରମ୍ଭ ହେବାର ୧୨ ବର୍ଷ ମଧ୍ୟରେ ସେ ତିନୋଟି ନୂତନ କନ୍‌ଭେଣ୍ଟ, ଦୁଇଟି ସ୍କୁଲ, ଦୁଇଟି ଛାତ୍ରାବାସ, ଗୋଟିଏ ଅଧ୍ୟୟନ ଗୃହ ଏବଂ ଗୋଟିଏ ଅନାଥ ଆଶ୍ରମ ଖୋଲିପାରିଥିଲେ ।

ମାରିୟା ତ୍ରେସିଆଙ୍କ ୨୪ ବର୍ଷ ଜୀବନ ମଧ୍ୟରେ ଫାଦେର ଯୋସେଫ୍ ତାହାଙ୍କ ଆଧ୍ୟାତ୍ମିକ ନିର୍ଦ୍ଦେଶକ ଥିଲେ । ସାମାଜିକ ଏବଂ ଆଧ୍ୟାତ୍ମିକ ଦିଗରେ ସେ ତାହାଙ୍କୁ ସହାୟତା କରିଥିଲେ, ଯାହାଙ୍କର ସମାଧି ମଧ୍ୟ ମାରିୟାମ ତ୍ରେସିଆଙ୍କ ସମାଧି ନିକଟରେ ରଖାଯାଇଅଛି ।

ଆଜି ସାରା ବିଶ୍ୱରେ ବିଶେଷ ଭାବରେ କେରଳ, ଉତର ଭାରତ, ଜର୍ମାନି, ଇଟାଲୀ ଓ ଘାନା ୭ଟି ପ୍ରଭିନ୍ସରେ ବିଭକ୍ତ କରାଯାଇ ପ୍ରାୟ ୨୦ଟି କନଭେଣ୍ଟରେ ଦୁଇ ହଜାରରୁ ଅଧିକ ବ୍ରତ ଗ୍ରହଣ କରିଥିବା ସିଷ୍ଟରମାନେ ସେବା କାର୍ଯ୍ୟରେ ଲିପ୍ତ ରହିଛନ୍ତି ।

୧୯୨୬ ମସିହା ଜୁନ୍ ୮ ତାରିଖ, ୫୦ ବର୍ଷ ବୟସରେ ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କ ମୃତ୍ୟୁ ପରେ ଅନେକ ଆଶ୍ଚର୍ଯ୍ୟକର୍ମ ଗୁଡିକ ଘଟିଥିଲା । ତାଙ୍କ ମର ଶରୀରକୁ କୁରିକାଟୁସେରି କନଭେଣ୍ଟରେ ରଖାଯାଇଛି । ବର୍ତମାନ ଏହି ସ୍ଥାନଟି ମୂଖ୍ୟ ତୀର୍ଥ କେନ୍ଦ୍ର ରୂପେ ସାଜିଛି । ୨୦୦୦ ମସିହା ଏପ୍ରିଲ ୯ ତାରିଖରେ ପୂଣ୍ୟପିତା ଯୋହନ ପଲ ଦ୍ୱିତୀୟ ମାରିୟା ତ୍ରେସିଆଙ୍କୁ 'ଧନ୍ୟ' ରୂପେ ଘୋଷଣା କରିଥିଲେ ।

**ଆଶ୍ଚର୍ଯ୍ୟକର୍ମ :**

ମାଥ୍ୟୁ ଡି ପେଲିସେରିଙ୍କ ଜନ୍ମଗତ ଯୋଡ଼ି ରହିଥିବା ଗୋଡ଼ ଓ ପାଦ (Congenital club feet)

୧୯୫୬ ମସିହାରେ ମାଥ୍ୟୁ ଜନ୍ମ ଗ୍ରହଣ କରିଥିଲେ । ମାଥ୍ୟୁଙ୍କୁ ଯେତେବେଳେ ୧୪ ବର୍ଷ ହୋଇଥିଲା, ତାଙ୍କ ପରିବାର ୩୩ ଦିନ ଧରି ଉପବାସ ସହିତ ନିରନ୍ତର ପ୍ରାର୍ଥନା କରୁଥିଲେ ପୁଅର ସୁସ୍ଥତା ପାଇଁ । ୧୯୭୦ ମସିହା ଅଗଷ୍ଟ ୨୧ ତାରିଖ ଦିନ ସକାଳୁ ଉଠିବା ପରେ ଦେଖନ୍ତି ଯେ ତାଙ୍କ ଗୋଡ଼ ସିଧା ହୋଇ ଯାଇଛି । ଏହାପରେ ପୁଣି ୩୯ ଦିନ ଉପବାସ କରି ସିଷ୍ଟର ତ୍ରେସିଆଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରନ୍ତେ ତାହାଙ୍କ ବାମ ଗୋଡ଼ ମଧ୍ୟ ସୁସ୍ଥ ହୋଇଯାଇଛି ।

ଅନ୍ୟ ଏକ ଆଶ୍ଚର୍ଯ୍ୟ କର୍ମ ହୋଇଥିଲା ୨୦୦୯ ମସିହାରେ । ଖ୍ରୀଷ୍ଟଫୋର ନାମକ ଜଣେ ପିଲାର ଜନ୍ମଠାରୁ ତାର (lung) ଠିକ୍ ଭାବରେ ବୃଦ୍ଧି ହୋଇ ନ ଥିଲା । Lung ରେ ତିନୋଟି କଣା ଥିଲା । ପ୍ରଶ୍ୱାସ ନେବାରେ ବହୁତ କଷ୍ଟ ଅନୁଭବ

କରୁଥିଲା । ଡାକ୍ତରମାନେ ଆଶା ଛାଡ଼ି ଦେଇଥିଲେ । ଖ୍ରୀଷ୍ଟଫୋରଙ୍କ ଆଈମା ଧନ୍ୟା ମାରିଆମ ତ୍ରେସିଆଙ୍କ ଗୋଟିଏ ରେଲିକ (ସ୍ମୃତି ଚିହ୍ନ) ଆଣି ହସ୍ପିଟାଲ୍‌ରେ ତାଙ୍କ ଶଯ୍ୟା ପାର୍ଶ୍ୱରେ ରଖି ପ୍ରାର୍ଥନା କଲେ ଏବଂ ସେ ସୁସ୍ଥତା ଲାଭ କଲେ ।

**ମାରିଆ ତ୍ରେସିଆଙ୍କ ଉପଦେଶ:**

**ଦରିଦ୍ରତା**

"ଯଦିଓ ତୁମେ ଜଗତରେ ବାସ କରୁଛ ତଥାପି ତୁମ୍ଭେ ଜଗତର ନୁହଁ । ଯେତେବେଳେ ତୁମ୍ଭେ ଦେଖ ଯେ ଅନ୍ୟମାନଙ୍କ ପାଖରେ ବହୁତ ମୂଲ୍ୟବାନ ଜିନିଷ ଅଛି, ସେଗୁଡ଼ିକୁ ପାଇବା ପାଇଁ ଅଭିଳାଷ କର ନାହିଁ କିମ୍ବା ସେଗୁଡ଼ିକୁ ନଷ୍ଟ କର ନାହିଁ"। Exhortation- 93

"ପ୍ରତ୍ୟକଙ୍କର ଆବଶ୍ୟକତା ଅନୁସାରେ ଜିନିଷ ଗୁଡ଼ିକ ଅଣାଗଲା ପରେ, ବଳକା ଜିନିଷଗୁଡ଼ିକୁ ଅନାବନା ରଖିବ ନାହିଁ" । (Exh.-92)

"ପ୍ରତ୍ୟକଙ୍କର ଆବଶ୍ୟକତାକୁ ନିଜର ଅଧିକାରୀଙ୍କୁ ଗୁପ୍ତରେ ଜଣାଇବ" । (Exh.-94)

"ଯଦିଓ ତୁମର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରାଯାଏ ତଥାପି ଆନନ୍ଦିତ ହୁଅ"। (Exh.-94)

"ଯେତେବେଳେ ତୁମର ଅନୁରୋଧକୁ ଅନୁମତି ଦିଆଯାଇନାହିଁ, ଆନନ୍ଦ ଓ ସନ୍ତୁଷ୍ଟତା ସହ ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଅ" । (Exh.-97)

"ଯାହା ବି ଜାଗତିକ ଜିନିଷ ଆମର ଆବଶ୍ୟକ ନିମନ୍ତେ ପାଇଥାଉ, ସେଗୁଡ଼ିକୁ ଈଶ୍ୱରଙ୍କ ଦାନ ରୂପେ ଗ୍ରହଣ କରି ତାଙ୍କୁ କୃତଜ୍ଞତା ଜଣାଇବା । ସେଗୁଡ଼ିକୁ ଯତ୍ନ ସହକାରେ ବ୍ୟବହାର କରିବା । ଯଦିଓ ଦରିଦ୍ରତାର କଷ୍ଟକୁ ଅନୁଭବ କରିବାକୁ ହୁଏ, ତାହାକୁ ଆନନ୍ଦର ସହିତ ଗ୍ରହଣ କରିବା ଓ ଜାଗତିକ ବିଷୟଠାରୁ ଦୂରରେ ରହିବା" ।

**ଧାର୍ମିକ ଜୀବନ ଓ ଅଧିକାରୀମାନଙ୍କ ପ୍ରତି କର୍ତ୍ତବ୍ୟ:**

"ଧାର୍ମିକ ଜୀବନ ବିଶ୍ୱାସ ଉପରେ ଆଧାରିତ । ଏହି ଧାର୍ମିକ ଜୀବନର ପ୍ରଯୁଜ୍ୟତା ଅନ୍ୟମାନେ ବୁଝି ପାରିବେ ନାହିଁ। ଅଧିକାଂଶ ହୁଏତ ଭାବି ପାରନ୍ତି ଯେ ଏହି ବ୍ରତ ନେବା ଜୀବନ ଗୋଟିଏ ମୂର୍ଖାମି ଅଟେ । ସ୍ୱାଧିନତା ଜୀବନ ବିତାଇବାର ଅଭିଳାଷ ମନୁଷ୍ୟ ପାଇଁ ପ୍ରାକୃତିଗତ ଅଟେ, କିନ୍ତୁ ଜଣେ ଉତ୍ସର୍ଗୀକୃତ ବ୍ୟକ୍ତି ଯିଏ ଆଜ୍ଞାବଦ୍ଧତାର ବ୍ରତ ନେଇଥାଏ ସେ ନିଜର ସ୍ୱାଧିନତାକୁ ଅଧିକାରୀଙ୍କ ନିକଟରେ ସାବ୍ୟସ୍ତ କରିଥାଏ । ଜଣେ ଉତ୍ସର୍ଗୀକୃତ ବ୍ୟକ୍ତି ପାଇଁ ପ୍ରତ୍ୟେକ ନିଷ୍ପତିରେ

ଅଧିକାରୀମାନଙ୍କ ମାଧ୍ୟମରେ ଇଶ୍ୱରଙ୍କ ଇଚ୍ଛା ପ୍ରକାଶ ହୋଇଥାଏ । ଜଣେ ଅଧିକାରୀଙ୍କ ପ୍ରତିଭା, ସଦ୍‌ଗୁଣ ଓ ସଫଳତା ଆମ୍ଭେ ତାହାଙ୍କର ଆଜ୍ଞାବହତା ହେବା ତାହା ନୁହେଁ ବରଂ ସେମାନେ ଯେ ଇଶ୍ୱରଙ୍କ ପ୍ରତିନିଧି ତାହା ହିଁ ଆମକୁ ତାହାଙ୍କର ଆଜ୍ଞାବହତା ହେବା ପାଇଁ ପ୍ରବର୍ତ୍ତାଇବା ଆବଶ୍ୟକ । ସୁତରାଂ ଅଧିକାରୀମାନଙ୍କ ପ୍ରତି ଆମର ପ୍ରେମ, ସମ୍ମାନ ଓ ଖୋଲା ମନୋଭାବ ରହିବା ଆବଶ୍ୟକ" ।

"ଅଧିକାରୀମାନଙ୍କ ଆଦେଶକୁ ଉତମ ଚିନ୍ତାଧାରାରେ ମାନ୍ୟ କର; ସେମାନଙ୍କୁ ନିଜର ହୃଦୟ ଖୋଲି କୁହ । ଯାହା ତୁମ୍ଭେ କହିବ ତାହାହିଁ ସେମାନେ ଜାଣିବେ ନଚେତ ତୁମର ମନକୁ ଜାଣିବା ପାଇଁ ତାହାଙ୍କର ଅନ୍ୟ କୌଣସି ପନ୍ଥା ନାହି । ଅଧିକାରୀମାନଙ୍କ ବିରୁଦ୍ଧରେ କିଛି କହିବ ନାହି । ଯାହା ଆମ୍ଭେ କରୁଛୁ ସେ ସବୁ ଯଦି ଇଶ୍ୱର ଜାଣନ୍ତି ତେବେ ଅଧିକାରୀମାନଙ୍କୁ ଲୁଚାଇବା କିଛି ଆବଶ୍ୟକ ନାହିଁ"।

"ଅଧିକାରୀମାନଙ୍କ ସଂଶୋଧନକୁ ନମ୍ରତା ଓ କୃତଜ୍ଞତା ସହ ଗ୍ରହଣ କରିବ। ଯାହା ତୁମେ କରିଛ ତାହା ନ୍ୟାୟ ବୋଲି ପ୍ରମାଣିତ କରିବା ପାଇଁ ଚେଷ୍ଟା କରିବ ନାହିଁ" ।

"ତୁମର ଭୂଲ୍‌କୁ ଯେତେବେଳେ ଅଧିକାରୀମାନେ ଇଙ୍ଗିତ କରନ୍ତି ତାହାକୁ ସ୍ୱୀକାର କର ଏବଂ ସେହି ଭୂଲ୍ ପାଇଁ ପ୍ରାୟଶ୍ଚିତ କର । ଅଧିକାରୀମାନେ ତୁମ୍ଭକୁ ସଂଶୋଧନ କଲାବେଳେ ଅନ୍ୟ କେହି ମୋ ବିଷୟରେ ଜଣାଇଛନ୍ତି ବୋଲି ଭାବିବା ଠିକ୍ ନୁହଁ । ତୁମ୍ଭକୁ ସଂଶୋଧନ କଲାବେଳେ ତୁମର ଭୁଲକୁ ସ୍ୱୀକାର କର । ତାହା ଠିକ୍ ନୁହଁ ବୋଲି ଯୁକ୍ତି ବାଢ଼ନାହିଁ। ଯାହା ଆମ୍ଭେ କରିନାହୁଁ କିମ୍ବା ଜାଣିନାହୁଁ ସେଇଥି ପାଇଁ ଯଦି କେହି ଆମକୁ ଦୋଷୀ ବୋଲି କହନ୍ତି, ତେବେ ବିନା ଯୁକ୍ତିତର୍କରେ କିମ୍ବା ଗୁଣୁଗୁଣୁ ନ ହୋଇ ସ୍ୱୀକାର କର । (Exh.- ୯୮,୯୯,୧୦୭) ।

"ମାଁ କହନ୍ତି, ନିୟମ ଜଣଙ୍କର ସ୍ୱାଧିନତାକୁ ଭଙ୍ଗ କରେ ନାହି କିନ୍ତୁ ତାହାଙ୍କର ଲକ୍ଷ୍ୟକୁ ପହଞ୍ଚାଇବାରେ ସାହାଯ୍ୟ କରେ, ଏଣୁ ସେହି ନିୟମକୁ ପ୍ରେମର ସହ ମାନିବା ଆବଶ୍ୟକ । ଯତ୍ନ ସହକାରେ ନିୟମ ଗୁଡିକୁ ପାଳନ କର । ଯଦି ନିୟମ ଭଙ୍ଗ କର ତେବେ ସାମୂହିକ ଭାବେ ସ୍ୱୀକାର କର । ସଂଘର ସମସ୍ତ ସାମୂହିକ କାର୍ଯ୍ୟ ଗୁଡିକୁ ଠିକ୍ ସମୟରେ କର । ମନ ବିନୋଦନ ସମୟରେ ଅନ୍ୟ ଆଡ଼େ ନ ଯାଇ ସମସ୍ତଙ୍କ ସହିତ ରହିବା ଆବଶ୍ୟକ" ।
(Exh.-୯୯,୧୦୧,୧୦୨)

# ପାଦୁଆର ସାଧୁ ଆନ୍ତୋଣୀ

## (୧୧୯୫-୧୨୩୧, ଜୁନ୍ ୧୩)

ୟୁରୋପର ପର୍ତ୍ତୁଗାଲ ଅନ୍ତର୍ଗତ ଲିସବନ୍ ସହରରେ ପାଦୁଆର ସାଧୁ ଆନ୍ତୋଣୀ ୧୧୯୫ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଦୀକ୍ଷା ସ୍ନାନ ନାମ ଥିଲା ଫେର୍ଡ଼ିନାନ୍ଦ । ଫ୍ରାନ୍‌ସିସ୍‌କାନ୍ ସଂଘରେ ପ୍ରବେଶ କଲାପରେ ତାଙ୍କୁ ସମସ୍ତେ ଆନ୍ତୋଣୀ ବୋଲି ଡାକିଲେ । ପ୍ରଥମେ ସାଧୁ ଆନ୍ତୋଣୀ ଅଗଷ୍ଟିନ୍ ସଂଘର ସଭ୍ୟ ଥିଲେ । ନିଜ ସମ୍ପର୍କୀୟମାନଙ୍କଠାରୁ ଦୂରେଇ ରହିବା ପାଇଁ ସେ କୋଇମ୍ବାଠାରେ ୮ ବର୍ଷ ଅଧ୍ୟୟନ କରି ଧର୍ମଗ୍ରନ୍ଥ ଓ ଧର୍ମତତ୍ତ୍ୱରେ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ । ୫ଜଣ ଫ୍ରାନସିସ୍‌କାନ ସନ୍ନ୍ୟାସୀମାନେ ପ୍ରଭୁଙ୍କର ବାକ୍ୟ ପ୍ରଚାର ପାଇଁ ମରୋକ ଯିବା ପଥରେ ସେମାନେ ସେଠାରେ ବିଶ୍ରାମ ନେଇଥିଲେ । ପହଞ୍ଚିବାର କେତେ ଦିନ ପରେ ସେମାନେ ମୁରବାସୀମାନଙ୍କ ଦ୍ୱାରା ନିହତ ହେଲେ । ସେହି ପାଞ୍ଚ ଜଣ ସନ୍ନ୍ୟାସୀମାନଙ୍କର ମରଶରୀରର କିଛି ଅଂଶ କୋଇମ୍ବାକୁ ଅଣାଯାଇଥିଲା । ସେମାନଙ୍କ ଜୀବନରେ ଅନୁପ୍ରାଣିତ ହୋଇ ଆନ୍ତୋଣୀ ସେମାନଙ୍କ ପରି ଖ୍ରୀଷ୍ଟଙ୍କ ପାଇଁ ନିଜ ଜୀବନ ଦେବା ପାଇଁ ପ୍ରସ୍ତୁତ ହେଲେ । ଏହି ଉଦ୍ଦେଶ୍ୟ ନେଇ ଆନ୍ତୋଣୀ ଫ୍ରାନ୍‌ସିସ୍‌କାନ୍ ସଂଘରେ ଯୋଗ ଦେଇଥିଲେ । ଅଧିକାରୀଙ୍କଠାରୁ ଅନୁମତି ପାଇ ଆନ୍ତୋଣୀ ମରୋକ ଆଡ଼କୁ ଗତି କଲେ, କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ଭଲ ନ ରହିବାରୁ ଫେରିବାକୁ ବାଧ ହେଲେ । ଫେରିବା ସମୟରେ ସେମାନଙ୍କ ଜାହାଜଟି ଝଡ଼ ତୋଫାନ ଦ୍ୱାରା ସିସିଲି ଉପକୂଳବର୍ତ୍ତୀ ମେସିନାରେ ଆସି ପହଞ୍ଚିଲା । ଆନ୍ତୋଣୀ ଶେଷରେ ଇଟାଲୀରେ ବାସ କରୁଥିବା ଫ୍ରାନ୍‌ସିସ୍‌କାନ୍ ସଂଘରେ ଯୋଗ ଦେଇ ଫର୍ଲିର Hospice (ମାନସିକ ରୋଗରେ ଆକ୍ରାନ୍ତ) ବ୍ୟକ୍ତିମାନଙ୍କ ମଧ୍ୟରେ କାର୍ଯ୍ୟ କଲେ ।

ଆନ୍ତୋଣୀଙ୍କ ବ୍ୟକ୍ତିତ୍ୱ ଏବଂ ଅନ୍ତର୍ନିହିତ କଳା ଆସ୍ତେ ଆସ୍ତେ ଅନ୍ୟମାନଙ୍କଠାରେ ପ୍ରକାଶ ପାଇଲା । ଦିନକର ଘଟଣା । ଫର୍ଲିରେ ଯାଜକତା ଅଭିଷେକ ଉତ୍ସବରେ ବାକ୍ୟ ପ୍ରଚାର ପାଇଁ ଯେଉଁ ବ୍ୟକ୍ତିଙ୍କୁ ଦାୟିତ୍ୱ ଦିଆଯାଇଥିଲା,

ସେ ପହଞ୍ଚି ପାରିଲେ ନାହିଁ । ଶେଷରେ ଧର୍ମ ସଂଘର ଅଧିକାରୀ ଫାଦେର ପ୍ରଭିନ୍‌ସିଆଲ୍ ଆନ୍ତୋଣୀଙ୍କୁ ପ୍ରଚାର କରିବା ପାଇଁ ନିର୍ଦ୍ଦେଶ ଦେଲେ । ଯୁବକ ଆନ୍ତୋଣୀ ଏହିପରି ଭାବରେ ପ୍ରଚାର କଲେ ଯେ, ତାଙ୍କ ପ୍ରଚାରରେ ସମସ୍ତେ ମନ୍ତ୍ରମୁଗ୍ଧ ହୋଇଥିଲେ । ଆନ୍ତୋଣୀଙ୍କ ଜ୍ଞାନର ପ୍ରତିଭା ଜାଣି ତାଙ୍କୁ ଉଚ୍ଚ ଅଧ୍ୟୟନ ପାଇଁ ସୁଯୋଗ ଦିଆଯାଇଥିଲା । ନିଜର ଅଧ୍ୟୟନ ଶେଷ ପରେ ଆନ୍ତୋଣୀ ପ୍ରଭୁଙ୍କ ପ୍ରଚାର କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିୟୋଜିତ କରି ଫ୍ରାନ୍ସ ଏବଂ ଇଟାଲୀରେ ଅନେକଙ୍କୁ ପ୍ରଭୁଙ୍କ ଆଡ଼କୁ ଟାଣି ଆଣି ପାରିଥିଲେ । ଦିନେ ଫ୍ରାନ୍ସର ବେର୍ଜେସଠାରେ ବିଶପ୍‌ମାନଙ୍କ ସମ୍ମିଳନୀ (Synod) ରେ ଆନ୍ତୋଣୀଙ୍କୁ ପ୍ରଚାର କରିବାର ସୁଯୋଗ ଦିଆଗଲା । ଆର୍ଚ୍ଚବିଶପ ସାଇମନ ଡି ସୁଲେ ସେହି ସମ୍ମିଳନୀକୁ ପରିଚାଳନା କରିଥିଲେ । ଆନ୍ତୋଣୀ ଆର୍ଚ୍ଚ ବିଶପ ସାଇମନ ଡି ସୁଲେଙ୍କୁ କହିଲେ, ହେ ଯଷ୍ଟି ଧାରଣ କରିଥିବା ପାଳକ, ତୁମକୁ ମୁଁ ବର୍ତ୍ତମାନ ପ୍ରଚାର କରିବାକୁ ଯାଉଛି । ଏହିପରି କହି ବିଶପଙ୍କ ସମସ୍ତ ତ୍ରୁଟି ଦର୍ଶାଇ ଦେଇଥିଲେ । ଧର୍ମଗ୍ରନ୍ଥରୁ ପ୍ରଭୁଙ୍କର ବାକ୍ୟକୁ ସେ ଏହିପରି ଭାବରେ ବ୍ୟାଖ୍ୟା କରିଥିଲେ ଯେ ଆର୍ଚ୍ଚ ବିଶପଙ୍କର ଭୁଲ୍‌କୁ ହୃଦୟଙ୍ଗମ କରି କାନ୍ଦିବାକୁ ଲାଗିଲେ । ପ୍ରଚାର ପରେ ସାଧୁ ଆନ୍ତୋଣୀଙ୍କଠାରେ ପାପ ସ୍ୱୀକାର କରି ସେ ଜଣେ ଆଦର୍ଶ ପାଳକ ରୂପେ ନିଜର ଜୀବନ ଅତିବାହିତ କରିଥିଲେ । ଆନ୍ତୋଣୀ ପ୍ରଚାର କାର୍ଯ୍ୟ ସମୟରେ ଗୋଟିଏ ସହରରେ ପହଞ୍ଚିଲେ, ଯେଉଁଠାରେ ମଣ୍ଡଳୀର ଶିକ୍ଷାକୁ ଲୋକେ ଅଗ୍ରାହ୍ୟ କରି ନିଜ ଇଚ୍ଛା ଅନୁଯାୟୀ ଜୀବନଯାପନ କରୁଥିଲେ । ବହୁତ ଦିନ ଧରି ଆନ୍ତୋଣୀ ସେଠାରେ ରହି ପ୍ରଭୁଙ୍କର ବାକ୍ୟ ପ୍ରଚାର କଲେ । ପ୍ରଭୁଙ୍କ ବାକ୍ୟ ଶୁଣିବା ପରିବର୍ତ୍ତେ ସେଠିକାର ଲୋକେ ତାଙ୍କୁ ପରିହାସ କଲେ । ସେମାନଙ୍କ କଠୋର ହୃଦୟ ଜାଣିପାରି ଦୁଃଖରେ ଆନ୍ତୋଣୀ ନିକଟରେ ଥିବା ନଦୀକୂଳକୁ ଯାଇ ପ୍ରଚାର କଲେ । ସେଠାରେ ତାଙ୍କୁ ପରିହାସ କରିବା ପାଇଁ କେହି ନ ଥିଲେ । ତାଙ୍କ ପ୍ରଚାରରେ ନଦୀରେ ଥିବା ମାଛଗୁଡ଼ିକ ନଦୀ କୂଳରେ ଜମା ହୋଇ ତାଙ୍କ ପ୍ରଚାର ଶୁଣିବାକୁ ଲାଗିଲେ । ଯେତେବେଳେ ଆନ୍ତୋଣୀ ଯୀଶୁଙ୍କ ନାମ ଧରି ତାଙ୍କ ପ୍ରଶଂସା କରୁଥିଲେ, ମାଛଗୁଡ଼ିକ ଯୀଶୁଙ୍କ ନାମ ଶୁଣିବା ମାତ୍ରେ ମୁଣ୍ଡ ନୁଆଁଇ ଆକାଶ ଉପରକୁ ଟେକିଦେଇଥିଲେ । ଏହି ଦୃଶ୍ୟ ଦେଖି

ଆନ୍ତୋଣୀ ନିଜେ ନ କାନ୍ଦି ରହି ପାରିନଥିଲେ ଏବଂ କହିଥିଲେ, 'ଏହି ସହରର କଠୋର ବ୍ୟକ୍ତିମାନଙ୍କ ଅପେକ୍ଷା ଜଳରେ ଥିବା ମାଛଗୁଡ଼ିକ ପ୍ରଭୁଙ୍କୁ ଅଧିକ ସମ୍ମାନ ଦେଇଥାନ୍ତି' । ଏହି ଆଶ୍ଚର୍ଯ୍ୟ ଘଟଣା ଦେଖିଥିବା ଲୋକମାନେ ଅନୁତାପ କରି ମନ ପରିବର୍ତ୍ତନ କଲେ ଏବଂ ଯୀଶୁଙ୍କର ଶିକ୍ଷା ଶୁଣିବା ପାଇଁ ଅଧିକ ଆଗ୍ରହ ପ୍ରକାଶ କରିଥିଲେ ।

ଅନେକ ସମୟରେ ସାଧୁ ଆନ୍ତୋଣୀ ହସ୍ତରେ ଯୀଶୁଙ୍କୁ ଧରିଥିବା ମୂର୍ତ୍ତି ଆମ୍ଭେ ଦେଖିଥାଉ । କାହିଁକି ଆନ୍ତୋଣୀଙ୍କୁ ଏହିପରି ଚିତ୍ରଣ କରାଯାଇଛି ? ଦିନକର ଘଟଣା, ସାଧୁ ଆନ୍ତୋଣୀ ପ୍ରଚାର କାର୍ଯ୍ୟ ଶେଷ ପରେ ତାଙ୍କ ବନ୍ଧୁଙ୍କ ଘରେ ବିଶ୍ରାମ ନେଇଥିଲେ । ରାତ୍ରି ଭୋଜନ ଶେଷ ପରେ ଆନ୍ତୋଣୀ ନିଜ କୋଠରିକୁ ଗଲେ । କିଛି ସମୟ ପରେ ସେହି ବନ୍ଧୁ ଜଣକ ଦେଖିଲେ ଯେ, ଅତି ଉଜ୍ଜ୍ୱଳ କିରଣ ଆନ୍ତୋଣୀ ରହୁଥିବା କୋଠରୀର ଦ୍ୱାର ଭିତରେ ଝଲସି ଯାଉଛି । ଦ୍ୱାରର ଚାବି ଦିଆଯାଉଥିବା ଛୋଟିଆ ଫାଙ୍କରେ ସେ ଦେଖିଲେ ଯେ ଯୀଶୁ ସାଧୁ ଆନ୍ତୋଣୀଙ୍କ ଦୁଇଟି ପୁସ୍ତକ ଉପରେ ଠିଆ ହୋଇଛନ୍ତି । ଏହି ଦୃଶ୍ୟ ଦେଖି ତାଙ୍କ ବନ୍ଧୁ ହୃଦୟରେ ତୃପ୍ତି ଅନୁଭବ କରିଥିଲେ ଏବଂ ଆନନ୍ଦରେ ବିଭୋର ହୋଇଥିଲେ । ଯେତେବେଳେ ଯୀଶୁ ଅଦୃଶ୍ୟ ହେଲେ, ସାଧୁ ଆନ୍ତୋଣୀ କବାଟ ଖୋଲିଲେ ଏବଂ ତାଙ୍କ ବନ୍ଧୁଙ୍କୁ ଏହି ଦୃଶ୍ୟ କାହାକୁ ନ କହିବା ପାଇଁ କହିଲେ । ଗ୍ରାମ ଗ୍ରାମ ବୁଲି ପ୍ରଚାର କରିବା ଦ୍ୱାରା ତାଙ୍କ ଶରୀର ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲା । ତାଙ୍କ ଶରୀର ଫୁଲିବାକୁ ଲାଗିଲା ଏବଂ ନିଃଶ୍ୱାସ ଓ ପ୍ରଶ୍ୱାସ ନେବାରେ ସେ କଷ୍ଟ ଅନୁଭବ କରିଥିଲେ । ତାଙ୍କ ଜୀବନର ଶେଷ ସମୟରେ ସେ ପାଦୁଆରେ ରହିବାକୁ ଇଚ୍ଛା ପ୍ରକାଶ କରିଥିଲେ । ମରିବା ପୂର୍ବରୁ ପାପ ସ୍ୱୀକାର କରି ମେରୀଙ୍କ ସଂଗୀତ ଗାନ କରି ଶେଷ ନିଃଶ୍ୱାସ ତ୍ୟାଗ କଲେ । ୧୨୩୧ ମସିହା ଜୁନ୍ ୧୩ ତାରିଖରେ ୩୬ ବର୍ଷ ବୟସରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କ ମୃତ୍ୟୁରେ ଇଟାଲୀବାସୀ ସେ ଯେ ଜଣେ ପର୍ତ୍ତୁଗୀଜ, ଏହା ଭୁଲିଯାଇ ପାଦୁଆର ଆନ୍ତୋଣୀ ବୋଲି କହିବାକୁ ଲାଗିଲେ । ଆନ୍ତୋଣୀର ସହଚରମାନେ ତାଙ୍କୁ hammer of the Hertics ବା ପ୍ରଭୁଙ୍କ ଶିକ୍ଷାର ବିରୋଧୀମାନଙ୍କ ମାର୍ତ୍ତାଲି ଏବଂ Living Arc of the Covenant ଅର୍ଥାତ୍ ଈଶ୍ୱରଙ୍କ ସନ୍ଧିର ଜୀବନ୍ତ

ସିନ୍ଦୁକ ବୋଲି କହୁଥିଲେ । ସେ ଥିଲେ ସମାଜର ଅବହେଳିତମାନଙ୍କ ବନ୍ଧୁ ଏବଂ କ୍ଷମତା ଲୋଭୀମାନଙ୍କ ଶତ୍ରୁ । ଲମ୍ବାର୍ଦ୍ଦିରେ ଯେଉଁ ବ୍ୟକ୍ତିମାନେ ଗରିବମାନଙ୍କୁ ଟଙ୍କା ଦେଇ ଅଧିକ ଲାଭ ଆଦାୟ କରୁଥିଲେ ଏବଂ ଋଣ ପରିଶୋଧ କରି ନ ପାରିଲେ ବନ୍ଦୀଶାଳାକୁ ପଠାଉଥିଲେ ସେମାନଙ୍କ ବିରୁଦ୍ଧରେ ସେ ପ୍ରଚାର କଲେ । ଏହିପରି ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତୋଳନ କରିବା ଜାଣି ପାଦୁଆରେ ୧୨୩୧, ମାର୍ଚ୍ଚ ୧୫ ତାରିଖରେ ଏକ ନିୟମ କରାଗଲା, ଯାହାଦ୍ୱାରା ଋଣଗ୍ରସ୍ତ ବ୍ୟକ୍ତିମାନଙ୍କୁ ବନ୍ଦିଶାଳାକୁ ପଠାଇବା ବନ୍ଦ କରାଗଲା । ଆନ୍ତୋଣୀଙ୍କ ମୃତ୍ୟୁର ୩୨ ବର୍ଷ ପରେ ତାଙ୍କ ମର ଶରୀରକୁ ପାଦୁଆରେ ନିର୍ମିତ ନୂତନ ଗୀର୍ଜାକୁ ସ୍ଥାନାନ୍ତରିତ କରାଗଲା । ଯଦିଓ ତାଙ୍କ ଶରୀର ସମ୍ପୂର୍ଣ୍ଣ ରୂପେ କ୍ଷୟ ହୋଇଛି, ତଥାପି ତାଙ୍କ ଜିହ୍ୱା ଅକ୍ଷୟ ଏବଂ ସତେଜ ଥିଲା । ବର୍ତମାନ ପର୍ଯ୍ୟନ୍ତ ସେହି ଜିହ୍ୱାକୁ ପାଦୁଆର ବଡ଼ ଗୀର୍ଜାରେ ରଖାଯାଇଛି । ଏହା ପ୍ରମାଣ କରାଇ ଦିଏ ଯେ ସାଧୁ ଆନ୍ତୋଣୀ ପ୍ରଭୁଙ୍କ ବାକ୍ୟ ପ୍ରଚାର କରି ସେ ଆଜି ଲୋକଙ୍କ ହୃଦୟରେ ଜୀବିତ ଅଛନ୍ତି । ସାଧୁ ବନାଭେନ୍ତୁର, ଯିଏ ସେହି ସମୟର ଫ୍ରାନ୍ସିସ୍କାନ୍ ସଂଘର ଜେନେରାଲ୍ ଥିଲେ । ଆନ୍ତୋଣୀଙ୍କ ଜିହ୍ୱାକୁ ହାତରେ ଧରି ଘୋଷଣା କରି କହିଥିଲେ 'ଏହି ଜିହ୍ୱା ଯାହା କେବେ ଈଶ୍ୱରଙ୍କର ପ୍ରଶଂସାରୁ ବିରତ ନଥିଲା, ଯାହା ନିରନ୍ତର ଈଶ୍ୱରଙ୍କ ପ୍ରଶଂସା କରିବା ପାଇଁ ଶିକ୍ଷା ଦେଲା ବର୍ତମାନ ଆମ୍ଭେ ସ୍ୱଚକ୍ଷୁରେ ଦେଖୁ ଯେ ସେ ଈଶ୍ୱରଙ୍କ ସମ୍ମୁଖରେ କେତେ ମୂଲ୍ୟବାନ୍ ଥିଲେ' । ସାଧୁ ଆନ୍ତୋଣୀଙ୍କ ମାଧ୍ୟମରେ ପ୍ରଭୁ ଅନେକ ଆଶ୍ଚର୍ଯ୍ୟ କର୍ମ କରିଛନ୍ତି । ତାଙ୍କ ମୃତ୍ୟୁର ବର୍ଷଟିଏ ମଧ୍ୟରେ ତାଙ୍କୁ ସାଧୁ ରୂପେ ଘୋଷଣା କରାଗଲା । ୧୯୪୬ ମସିହାରେ ପୁଣ୍ୟପିତା ଦ୍ୱାଦଶ ପୀୟୂଷ ତାଙ୍କୁ ମଣ୍ଡଳୀର ଧର୍ମ ପଣ୍ଡିତ ରୂପେ ଘୋଷଣା କରିଥିଲେ ।

## ପାଦୁଆର ସାଧୁ ଆନ୍ତୋଣୀ

✸ "ଶବ୍ଦଠାରୁ କାର୍ଯ୍ୟ ଅଧିକ କଥା କହେ । ତୁମର ଶବ୍ଦ ଶିକ୍ଷା ଦେଉ, ତୁମର କାର୍ଯ୍ୟ କଥା କହୁ" ।

✸ "ବିଶ୍ୱାସର ଆତ୍ମା ପ୍ରେମ । ପ୍ରେମକୁ ଜୀବନ୍ତ ରଖ, ପ୍ରେମ ବିନା ବିଶ୍ୱାସ ମୃତ" ।

✸ "ଶରୀରର ଜୀବନ ଆତ୍ମା ଅଟେ । ଆତ୍ମାର ଜୀବନ ପରମେଶ୍ୱର ଅଟନ୍ତି" ।

# ସାଧ୍ୱୀ ଜେର୍‌ମାଇନ୍ କଉସିନ୍ (ଜୁନ୍ ୧୫)

ଦକ୍ଷିଣ ଫ୍ରାନ୍ସର ଟାଉଲସ୍ ସହରରୁ ଦଶମାଇଲ୍ ଦକ୍ଷିଣ ଦିଗକୁ ଏକ ଛୋଟ ଗ୍ରାମ ପିବ୍ରାକ୍ ଅବସ୍ଥିତ । କୃଷି ଓ ମେଷପାଳନ ଏହି ଗ୍ରାମବାସୀଙ୍କର ମୁଖ୍ୟ ଜୀବିକା । ଏହି ଗ୍ରାମରେ ଜଣେ ଧର୍ମପରାୟଣା ମହିଳା ମେରୀ ଓ ତାଙ୍କ ସ୍ୱାମୀ ଲୁରାଣ୍ଡ କଉସିନ୍ ବାସ କରୁଥିଲେ । ଲୁରାଣ୍ଡ ଜଣେ କୃଷକ ଥିଲେ ଓ ତାଙ୍କର ଚାଳିଶ ଏକର ଜମି ଥିଲା । ସେହି ଜମିରେ ତାଙ୍କର ମେଣ୍ଢାପଲ ରଖି ଲୁରାଣ୍ଡ ଲାଳନପାଳନ କରୁଥିଲେ । ମେଷପାଳନ ଥିଲା ତାଙ୍କ ଆୟର ମୁଖ୍ୟ ପନ୍ଥା । ତେବେ ସେ ଜଣେ ସ୍ୱଚ୍ଛଳ ଚାଷୀ ଥିଲେ । କିଛି ବର୍ଷ ପାଇଁ ସେ ଗ୍ରାମର ମୁଖିଆ ଥିଲେ । ତାଙ୍କ ସମୟରେ ଗ୍ରାମରେ ଉପୁଜିଥିବା ବିଭିନ୍ନ ବିବାଦର ସେ ସଫଳ ସମାଧାନ କରିପାରିଥିଲେ ।

୧୫୭୯ ମସିହାରେ ଏହି ପରିବାରରେ ଗୋଟିଏ ଝିଅ ଜନ୍ମଗ୍ରହଣ କରିଥିଲେ । ତାହାକୁ ଜେର୍‌ମାଇନ୍ କଉସିନ୍ ନାମରେ ଦୀକ୍ଷିତ କରାଯାଇଥିଲା । ଜନ୍ମରୁ ଜେର୍‌ମାଇନ୍‌ଙ୍କର ଡାହାଣ ହାତଟି ବିକୃତ ଥିଲା ଏବଂ ସେ ଗଳା ନଳୀ ଫୁଲା ରୋଗ ଭୋଗୁଥିଲେ । ତାଙ୍କର ମାଁ, ମେରୀ ଜଣେ ଧର୍ମନିଷ୍ଠା ମହିଳା ଥିଲେ । ଗରିବ ଓ ଅଭାବୀ ଲୋକଙ୍କ ପ୍ରତି ତାଙ୍କର ଭାରି ଦୟା ଥିଲା । ଜେର୍‌ମାଇନ୍‌ଙ୍କ ଶାରୀରିକ ଅକ୍ଷମତା ସତ୍ତ୍ୱେ ତାଙ୍କ ମା ତାଙ୍କୁ ଗଭୀର ସ୍ନେହ କରୁଥିଲେ ଓ ଜେର୍‌ମାଇନ୍‌ଙ୍କୁ ପାଞ୍ଚବର୍ଷ ହୋଇଥିବା ବେଳେ ମେରୀ ପରଲୋକ ଗମନ କଲେ । ଜେର୍‌ମାଇନ୍‌ଙ୍କର କୋମଳ ହୃଦୟ ମା'ର ସ୍ନେହ ପାଇବାକୁ ବ୍ୟାକୁଳିତ ହେଉଥିଲା ।

ତାଙ୍କର ବାପା ଭାବିଲେ ଯେ, ସେ ଯଦି ବିବାହ କରନ୍ତି ତାଙ୍କର ଦ୍ୱିତୀୟ ପତ୍ନୀ ଛୋଟ ଝିଅଟିର ଦେଖାଶୁଣା କରିବ । କିନ୍ତୁ ବାସ୍ତବରେ ତାହର ବିପରୀତ ହେଲା । ସାବତ ମା' ଜେର୍‌ମାଇନ୍‌ଙ୍କୁ ଜମାରୁ ଭଲ ପାଇଲେ ନାହିଁ । ସେ ଯେତେଦୂର ସମ୍ଭବ ଜେର୍‌ମାଇନ୍‌ଙ୍କ ପ୍ରତି ନିଷ୍ଠୁର ଆଚରଣ କଲେ ଓ ତାଙ୍କୁ ଯଥେଷ୍ଟ ଖାଦ୍ୟ ଖାଇବାକୁ ଦେଲେ ନାହିଁ । ଜେର୍‌ମାଇନ୍ ଅବହେଳା ଓ ପାତର ଅନ୍ତରର ଶିକାର ହେଲେ । ଦିନକୁ ଦିନ ଜେର୍‌ମାଇନ୍‌ଙ୍କର ଜୀବନ ଅସହ୍ୟ ହେବାକୁ ଲଗିଲା ।

ସ୍ନେହ ପ୍ରେମ ପାଇଁ ବ୍ୟାକୁଳିତ ଜେରମାଇନ୍ ନିଜର ସାବତ ଭାଇ ଭଉଣୀଙ୍କ ସହ ଖେଳିବାକୁ ଚାହୁଁଥିଲେ । କିନ୍ତୁ ତାଙ୍କର ସାବତ ମା ଗଳା ଘା ରୋଗ ସଂକ୍ରମଣର ବାହାନାରେ ତାଙ୍କୁ ଖେଳିବାକୁ ଅନୁମତି ଦେଉନଥିଲେ । ଘରଠାରୁ ଦୂରରେ ଜେରମାଇନ୍‌ଙ୍କୁ ରଖିବାକୁ ଓ କେବେ ତାଙ୍କୁ ଘରେ ପୁରାଇ ନ ଦେବାକୁ ସେ ନିଜର ସ୍ୱାମୀଙ୍କୁ ପ୍ରଭାବିତ କରିଥିଲେ । ଏଭଳି ଅବସ୍ଥାରେ ପିଲାଟିବେଳୁ ଜେରମାଇନ୍ ମେଷ ପାଳିକା ଭାବେ ନିଯୁକ୍ତି ହୋଇଥିଲେ । ଦିନବେଳା ତାଙ୍କ ମେଷମାନଙ୍କୁ ଦେଖାଶୁଣା କରିବା ସହ ନିଜ ଆବଶ୍ୟକତା ମୁତାବକ ରୁଟି ପାଇବା ପାଇଁ ପଶମ ଗୁନ୍ଥିବାକୁ ପଡୁଥିଲା । ସାବତ ମା ଚାହୁଁଥିବା ପରିମାଣର ପଶମ ଗୁନ୍ଥି ନ ପାରିଲେ ତାଙ୍କୁ ମାଡ଼ ଖାଇବାକୁ ପଡୁଥିଲା । ଦିନେ ଅସାବଧାନତା ବଶତଃ ଏକ ଛୋଟ ଭୁଲ୍ କରିଦେବାରୁ ନିଷ୍ଠୁର ସାବତ ମାଁ ତାଙ୍କ ଦେହରେ ଗରମ ପାଣି ଢାଳି ଦେଇଥିଲେ । ଏହିଭଳି ଜୀବନ ସାଧାରଣତଃ ମନଗଢ଼ା କାହାଣୀ ଗୁଡ଼ିକରେ ଶୁଣିବାକୁ ମିଳିଥାଏ, କିନ୍ତୁ ଜେରମାଇନ୍‌ଙ୍କ ଜୀବନରେ ଏହାଥିଲା ନିଛକ ବାସ୍ତବତା । ଶୀତ ଋତୁରେ ପ୍ରବଳ ଶୀତର ପ୍ରକୋପର ମୁକାବିଲା ପାଇଁ ତାଙ୍କୁ କୌଣସି ଶୀତବସ୍ତ୍ର ଦିଆଯାଉ ନଥିଲା । ମୋଟାମୋଟି ସେ ନିଜକୁ ଖୁବ୍ ଏକୁଟିଆ ମନେ କରୁଥିଲା । ଜଣେ ବାର ବର୍ଷର ବାଳିକା ପକ୍ଷରେ ଏକାନ୍ତ ବାସ୍ କରିବା ଖୁବ୍ ଅସହ୍ୟ । କିନ୍ତୁ ଜେରମାଇନ୍ ନିଜର ଏକାନ୍ତବାସର ଯନ୍ତ୍ରଣାରୁ ମୁକ୍ତି ପାଇଁ ଈଶ୍ୱରଙ୍କ ପାଖରେ ନିଜକୁ ସମର୍ପିତ କରିଦେଲେ । ସେ ନିଜର ସମସ୍ତ ସ୍ନେହ ଓ ପ୍ରେମ ଈଶ୍ୱରଙ୍କୁ ସମର୍ପିତ କଲେ । ମେଣ୍ଢା ଚରାଉଥିବାବେଳେ ପ୍ରକୃତି ଓ ସୁନ୍ଦର ଫୁଲ ମଧ୍ୟରେ ଈଶ୍ୱରଙ୍କର ସତା ଉପଲବ୍ଧ କରୁଥିଲେ । ସକଳ ସୃଷ୍ଟି ପାଇଁ ସେ ସୃଷ୍ଟିକାରୀଙ୍କ ପ୍ରଶଂସା କରୁଥିଲେ । ନଦୀରେ ପ୍ରବାହିତ ଜଳ ଓ ମେଷମାନଙ୍କ ମଧ୍ୟରେ ସେ ଈଶ୍ୱରଙ୍କୁ ଅନୁଭବ କରୁଥିଲେ । ଲୋକଙ୍କୁ ମେଷମାନଙ୍କ ଭଳି ଶାନ୍ତି ଓ ମଧୁର ଜୀବନ ପ୍ରଦାନ ପାଇଁ ସେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ।

ରାତ୍ରିରେ ସେ ମେଣ୍ଢାଶାଳରେ ମେଷମାନଙ୍କ ସହ ଶୋଉଥିଲେ । ଶୃଙ୍ଖଳା ଅଙ୍ଗୁର ଲତା ଶାଖାଗୁଡ଼ିକ ଥିଲା ତାଙ୍କର ଶେଯ । ତେଣୁ ପିଲାଟି ବେଳୁ ଧୈର୍ଯ୍ୟ ଓ ବିନୟ ଭାବ ସେ ଶିକ୍ଷାକରି ପାରିଥିଲେ । କିନ୍ତୁ ଈଶ୍ୱରଙ୍କର ସତାକୁ

ଓ ଆଧ୍ୟାତ୍ମିକ ବିଷୟଗୁଡ଼ିକୁ ଅନୁଭବ କରିବାର ଯେଉଁ ଅଦ୍ୱିତୀୟ ଗୁଣ ତାଙ୍କ ପାଖରେ ରହିଥିଲା ତାହା ତାଙ୍କର ଏକାନ୍ତ ଜୀବନକୁ ଆଲୋକ ଓ ଆଶୀର୍ବାଦ ଲାଭ କରିବାର ଏକ ମାଧ୍ୟମରୂପେ ପରିଣତ କରିପାରିଥିଲା । ତାଙ୍କର ମୁଖ ଓ ହୃଦୟରେ ଈଶ୍ୱରୀୟ ଭାବ ପ୍ରଦର୍ଶିତ ହେଉଥିଲା ତେଣୁ ଲୋକମାନେ ତାଙ୍କ ନିକଟକୁ ଆକର୍ଷିତ ହୋଇ ଆସୁଥିଲେ ।

ପ୍ରଭୁ ଯୀଶୁଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଓ ବିଶ୍ୱାସ ରହିଥିଲା । ପବିତ୍ର ଧର୍ମ ସଂସ୍କାର ଓ ମାତା ମେରୀଙ୍କ ପ୍ରତି ଗଭୀର ଅନୁରକ୍ତି ଥିଲା । ସେ ପ୍ରତିଦିନ ପବିତ୍ର ଦିବ୍ୟ ଯଜ୍ଞରେ ଯୋଗ ଦେଉଥିଲେ । ଚର୍ଚ୍ଚର ଘଣ୍ଟା ବାଜିବା ମାତ୍ରେ ସେ ଦିବ୍ୟଯଜ୍ଞ ପାଇଁ ମେଷପଲକୁ ଈଶ୍ୱରଙ୍କ ହସ୍ତେ ଛାଡ଼ିଦେଇ ଗୀର୍ଜାକୁ ଯାଉଥିଲେ । ଯଦିଓ ମେଷ ଚରାଉଥିବା ସ୍ଥାନ ଜଙ୍ଗଲ ନିକଟରେ ଥିଲା ଓ ସେଠାରେ ହେଟା ବାଘ ଭୟ ରହିଥିଲା ତଥାପି ଜେର୍‌ମାଇନ୍ ପ୍ରାର୍ଥନା କରୁଥିବା ସମୟରେ ତାଙ୍କ ମେଷ ଗୁଡ଼ିକର କୌଣସି କ୍ଷତି ହୋଇନଥିଲା ।

ଯିଶୁଙ୍କର ମାତା ମେରୀଙ୍କ ପ୍ରତି ତାଙ୍କର ପ୍ରଗାଢ ଭକ୍ତି ରହିଥିଲା । ଜପମାଳାକୁ ସେ ସର୍ବଦା ନିଜ ପାଖରେ ରଖୁଥିଲେ । ଜପମାଳାଟି ତାଙ୍କର ଏକମାତ୍ର ବନ୍ଧୁ ଭଳି ଥିଲା । ପ୍ରତିଦିନ ସେ ଜପମାଳା ଧରି ଜପ କରୁଥିଲେ । କିନ୍ତୁ ଏ ଜପମାଳାଟି ତାଙ୍କୁ କିଏ ଦେଇଥିଲା ? ଏକ ଦଉଡ଼ିରେ ୫୩ଟି ଗଣ୍ଠି ପକାଇ ସେ ଜପମାଳାଟି ନିଜେ ପ୍ରସ୍ତୁତ କରିଥିଲେ । ଦୁଇଟି ସାଧାରଣ କାଠବାଡ଼ିକୁ ନେଇ ସେ କ୍ରୁଶଟିଏ ପ୍ରସ୍ତୁତ କରିଥିଲେ । ଏଭଳି ସରଳ ଓ ନିଷ୍କପଟ ଜୀବନ ଈଶ୍ୱରଙ୍କ ନିକଟରେ ବହୁ ମୂଲ୍ୟବାନ ହୋଇଥିଲା । 'ଦୂତଙ୍କ ସମ୍ବାଦ' ପ୍ରତି ତାଙ୍କର ଏତେ ପ୍ରଗାଢ଼ ଭକ୍ତି ରହିଥିଲା ଯେ ଘଣ୍ଟା ବାଜିବା ମାତ୍ରେ ସେ ଆଣ୍ଠୁପାତି ପ୍ରାର୍ଥନାରେ ଲାଗି ପଡୁଥିଲେ ।

ଜେର୍‌ମାଇନ୍ ଗରିବ ଶିଶୁମାନଙ୍କ ସହ କଥାବାର୍ତ୍ତା କରିବାକୁ ଭଲ ପାଉଥିଲେ । ଯେତେବେଳେ ସେ ସମୟ ଓ ସୁଯୋଗ ପାଉଥିଲେ ଗ୍ରାମର ଶିଶୁମାନଙ୍କୁ ଏକତ୍ରିତ କରି ପ୍ରଭୁ ଯୀଶୁ ଓ ମାତା ମେରୀଙ୍କର ପ୍ରେମ ସମ୍ପର୍କରେ ଶିକ୍ଷା ଦେଉଥିଲେ । ସେ କୌଣସି ଶିକ୍ଷାଲାଭ କରି ନଥିଲେ ମଧ୍ୟ ଯେଉଁ ସବୁ ପବିତ୍ର ଉପଦେଶ ସେ ଶ୍ରବଣ କରୁଥିଲେ ତାକୁ ମନେରଖି ପାରୁଥିଲେ । ଧର୍ମ

ସଂବନ୍ଧିତ ଅନେକ କାହାଣୀ ତାଙ୍କ ସ୍ମୃତି ମଧ୍ୟରେ ରହିଥିଲା । ଏସବୁ କାହାଣୀକୁ ସେ ଶିଶୁମାନଙ୍କୁ ଶୁଣାଉଥିଲେ । ଗ୍ରାମର ବାଳକ ବାଳିକାମାନଙ୍କୁ ସେ ପ୍ରାର୍ଥନା ସବୁ ଶିଖାଉଥିଲେ ଓ ଧର୍ମାଚରଣ ବିଷୟରେ ପ୍ରଶ୍ନୋତର ମାଧ୍ୟମରେ ଶିକ୍ଷା ଦେଉଥିଲେ । ନିଜେ ଗରିବ ଥିଲେ ମଧ୍ୟ ନିଜର ଖାଦ୍ୟରୁ ସେ ଅନ୍ୟ ଭୋକିଲା ବାଳକ ବାଳିକାଙ୍କ ମଧ୍ୟରେ ବାଣ୍ଟୁଥିଲେ । ମେଷପାଳନ କରି ନିଜ ଘରୁ ସେ ଯେତିକି ଖାଦ୍ୟ ପାଉଥିଲେ ତାହା ମଧ୍ୟ ସେ ଭୋକିଲା ବାଳକ ବାଳିକାଙ୍କୁ ବାଣ୍ଟି ଦେଉଥିଲେ । ନିଜର ଖାଦ୍ୟ ସେ ଭୋକିଲା ପିଲାଙ୍କୁ ବାଣ୍ଟି ଦେଉଥିବାରୁ ଅଧିକାଂଶ ରାତିରେ ତାଙ୍କୁ ଖାଲି ପେଟରେ ଶୋଇବାକୁ ପଡୁଥିଲା । ଜେର୍‌ମାଇନ୍‌ଙ୍କର ସେବା ମନୋଭାବ ଓ ଦୟା ଯୋଗୁଁ ଆଖପାଖ ଗ୍ରାମବାସୀଙ୍କ ମଧ୍ୟରେ ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ବଢ଼ାଇ ଦେଲା । କେଉଁଠି କେହି ଦୁଃଖରେ ଥିଲେ ତାଙ୍କ ହୃଦୟ ସେଇଠି ପହଞ୍ଚି ଯାଉଥିଲା । ସେ ନିଜେ ଦୁର୍ବ୍ୟବହାରର ଶିକାର ହୋଇଥିବାରୁ ଅନ୍ୟମାନଙ୍କ ଅପେକ୍ଷା ଦୁଃଖୀଙ୍କୁ ବେଶ୍ ବୁଝି ପାରୁଥିଲେ । ଥରେ ଶୀତ ଦିନରେ ଜେର୍‌ମାଇନ୍ ଅନ୍ୟ ଜଣେ ଭୋକିଲା ଲୋକକୁ ଯେତେବେଳେ ନିଜର ଖାଦ୍ୟ ଦେବାକୁ ଯାଉଥିଲେ ତାଙ୍କର ସାବତ ମା ସେ ଚୋରି କରୁଛନ୍ତି ବୋଲି ଦୋଷ ଦେଇ ତାଙ୍କୁ ବାଡ଼ିରେ ବାଡ଼େଇବାକୁ ଧମକ ଦେଲେ । ଜେର୍‌ମାଇନ୍ ନିଜର ଓଢଣୀ (ଚାଦର) ଖୋଲି ଦେବାରୁ ସେଥିରୁ ଗ୍ରୀଷ୍ମଋତୁର ଫୁଲ ସବୁ ତଳେ ବିଛେଇ ହୋଇଗଲା । ଏଭଳି ଘଟଣା ଦେଖିବା ପରେ ତାଙ୍କର ପିତାମାତା ଓ ପଡ଼ୋଶୀମାନେ ତାଙ୍କୁ ଜଣେ ପବିତ୍ର ବାଳିକା ବୋଲି ମନେକରି ତାଙ୍କ ପ୍ରତି ଉତମ ବ୍ୟବହାର କଲେ ।

ଯେତେବେଳେ ଜେର୍‌ମାଇନ୍ ଜଣେ ଯୁବତୀଭଳି ବଢିବାକୁ ଲାଗିଲେ ତାଙ୍କର ପିତା ତାଙ୍କୁ ଅଧିକ ସ୍ନେହ ଦେଇ ଯତ୍ନରେ ରଖିବାକୁ ଚାହିଁଲେ । ତାଙ୍କ ପ୍ରତି କଠୋର ନହେବା ପାଇଁ ନିଜ ସ୍ତ୍ରୀଙ୍କୁ କହିଲେ ଓ ଘରେ ଅନ୍ୟ ପିଲାମାନଙ୍କ ସହ ରଖିବାକୁ ଚାହିଁଲେ, କିନ୍ତୁ ସାଧ୍ୱୀ ଜେର୍‌ମାଇନ୍ ମେଣ୍ଢାଶାଳରେ ଏକାନ୍ତରେ ରହିବାକୁ ଉଚିତ୍ ମନେ କଲେ ।

୧୬୦୧ ମସିହାରେ ଦିନେ ସକାଳୁ ଜେର୍‌ମାଇନ୍‌ଙ୍କ ପିତା ଦେଖିଲେ ଯେ ସେ ମେଣ୍ଢା ଚରାଇବାକୁ ନେଇନାହାନ୍ତି ତେଣୁ ସେ ତାଙ୍କୁ ଡାକିବାକୁ ଗଲେ ।

ତାଙ୍କର ପିତା ଦେଖିଲେ ଯେ ମେଣ୍ଢାଶାଳରେ ଜେର୍‌ମାଇନ୍ ମରି ପଡ଼ିଛନ୍ତି । ସେତେବେଳେ ତାଙ୍କର ବୟସ ବାଇଶ ବର୍ଷ ହୋଇଥିଲା ।

ମୃତ୍ୟୁର ୫୦ ବର୍ଷ ପରେ ତାଙ୍କର ଜଣେ ସମ୍ପର୍କୀୟ ଜେର୍‌ମାଇନ୍‌ଙ୍କର କବର ନିକଟରେ ନିଜକୁ କବର ଦେବାକୁ ଇଚ୍ଛା ପ୍ରକାଶ କରିଥିଲେ । ସେତେବେଳେ ଜେର୍‌ମାଇନଙ୍କ କବରଟି ଖୋଲା ଯିବାରୁ ତାଙ୍କ ଶରୀରଟି ନିଖୁଣ ଭାବରେ ରହିଥିବାର ଦେଖିବାକୁ ମିଳିଥିଲା । ତେଣୁ ତାଙ୍କର ପବିତ୍ର ଶରୀରକୁ ନେଇ ଚର୍ଚ୍ଚରେ ସର୍ବସାଧାରଣଙ୍କୁ ପ୍ରଦର୍ଶିତ କରାଗଲା ।

ପଚାଶବର୍ଷ ପରେ ଜେର୍‌ମାଇନ୍‌ଙ୍କ ଅକ୍ଷତ ଶରୀର ପ୍ରଦର୍ଶିତ ହେବା ପରେ ଘରୋଇ ଭାବରେ ତାଙ୍କର ଭକ୍ତି ସମ୍ପର୍କରେ ପ୍ରକୃତ ତଥ୍ୟ ସଂଗୃହୀତ ହେଲା । ଏହା ସପକ୍ଷରେ ଅନେକ ଆରୋଗ୍ୟ ଓ ରହସ୍ୟମୟ ଘଟଣା ଜଣାପଡ଼ିଲା । ୧୭୦୦ ମସିହାରେ ତାଙ୍କୁ ସାଧ୍ୱୀରୂପେ ଘୋଷଣା କରିବାର ପ୍ରକ୍ରିୟାର ଆରମ୍ଭ ହେଲା । କିନ୍ତୁ ତାହା ବନ୍ଦ ହୋଇ ପୁଣି ୧୮୫୦ ମସିହାରେ ଆରମ୍ଭ ହେଲା । ପ୍ରାୟ ୪୦୦ରୁ ଅଧିକ ରହସ୍ୟମୟ ଘଟଣା ସମ୍ପର୍କିତ ତଥ୍ୟ ସଂଗ୍ରହ କରାଗଲା । ବିଭିନ୍ନ ଧରଣର ଅନ୍ଧତ୍ୱ, ଜନ୍ମରୁ ଆକ୍ରାନ୍ତ ଅଣ୍ଟା ଓ ମେରୁଦଣ୍ଡ ରୋଗସବୁ ଭଲ ହୋଇଥିବା ଜେର୍‌ମାଇନ୍‌ଙ୍କ ରହସ୍ୟମୟ ଘଟଣାବଳୀ ଅଂଶ ବିଶେଷ । ୧୮୫୪ ମସିହା, ମଇ ୭ ତାରିଖ ଦିନ ପୋପ ପୀୟ ନବମ ତାଙ୍କୁ ଧନ୍ୟା ବୋଲି ଘୋଷଣା କଲେ । ୧୮୬୭ ମସିହା ଜୁନ୍ ୨୯ ସାଧୁ ପିତର ଓ ପାଉଲଙ୍କ ପର୍ବ ଦିବସରେ ୫ଶହ ଧର୍ମାଧ୍ୟକ୍ଷ (Bishops) ସହସ୍ରାଧିକ ଯାଜକ (Priests) ଓ ଅସଂଖ୍ୟ ବିଶ୍ୱାସୀଙ୍କ ସମ୍ମୁଖରେ ସେହି ପୋପ ତାଙ୍କୁ ସାଧ୍ୱୀବୋଲି ଘୋଷଣା କଲେ । ତାଙ୍କର ପର୍ବ ଜୁନ୍ ୧୫ ତାରିଖରେ । ପିବ୍ରାକ୍‌ର ଚର୍ଚ୍ଚରେ ଏବେ ମଧ୍ୟ ତାଙ୍କ ଶରୀର ସଂରକ୍ଷିତ ହୋଇ ରହିଛି । ତାମିଲନାଡୁର ମଦୁରାଇ ନିକଟସ୍ଥ ରାୟପୁରମ୍ ଗ୍ରାମରେ ଏକ ଚର୍ଚ୍ଚ ଜେର୍‌ମାଇନ୍‌ଙ୍କ ନାମରେ ଉତ୍ସର୍ଗ କରାଯାଇଛି । ପାସ୍କାପର ଦ୍ୱିତୀୟ ଶନିବାରରେ ତାଙ୍କର ଉତ୍ସବରେ ଏଠାରେ ହଜାର ହଜାର ଲୋକ ସମବେତ ହୁଅନ୍ତି ଓ ସେମାନେ ଅନେକ ରହସ୍ୟମୟ ଘଟଣା ଅନୁଭବ କରିଥାନ୍ତି ।

ଯେଉଁ ପିଲାମାନେ ନିଜ ପିତାମାତାଙ୍କୁ ହରାଇଥାନ୍ତି, ଯେଉଁ ଶିଶୁମାନେ

ନିର୍ଯ୍ୟାତନା ଶିକାର ହୋଇଥାନ୍ତି, ଶାରିରୀକ ଦୃଷ୍ଟିରୁ ଯେ ଭିନ୍ନକ୍ଷମ, ଗ୍ରାମାଞ୍ଚଳର ବାଳିକା ଓ ଚାଷୀ ପରିବାରର କନ୍ୟାମାନଙ୍କର ଜେର୍‌ମାଇନ୍ ହେଉଛନ୍ତି ଇଷ୍ଟ ସାଧ୍ୱୀ ।

**ଜେରେମାଇନ୍ କାଉସିନ**

✸ "ହେ ପରମେଶ୍ୱର ଅଧିକ କ୍ଷୁଧା ବା ଅଧିକ ତୃଷା ଯେପରି ମୁଁ ନ ହୁଏ। ମୋର ମାଁଙ୍କୁ ସନ୍ତୁଷ୍ଟ କରିବା ପାଇଁ ମୋତେ ସାହାଯ୍ୟ କର । ତୁମକୁ ସନ୍ତୁଷ୍ଟ କରିବା ପାଇଁ ମୋତେ ସାହାଯ୍ୟ କର" ।



# ସାଧୁ ଆଲୋଇସିୟୁସ ଗନ୍‌ସାଗା
# (୧୫୬୮-୧୫୯୧, ଜୁନ ୨୧)

ଇଟାଲୀ ଦେଶର କାସ୍ତିଲିୟନେ ନାମକ ଏକ ଛୋଟ ସହରରେ ୧୫୬୮ ମସିହା ମାର୍ଚ୍ଚ ମାସ ୯ ତାରିଖରେ ଆଲୋଇସିୟୁସ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଫେରାଣ୍ଟେ ଓ ମାତା ମାର୍ଟାତାନାଡି ସାଣ୍ଟେନାଙ୍କ ସାତୋଟି ସନ୍ତାନ ମଧ୍ୟରୁ ଆଲୋଇସିୟୁସ ଥିଲେ ଜ୍ୟେଷ୍ଠ । ତାଙ୍କ ପିତା କାସ୍ତିଲିୟନେର ଜଣେ ପ୍ରଭାବଶାଳୀ ବ୍ୟକ୍ତି ରୂପେ ପରିଚିତ ଓ ମାତା ସ୍ପେଇନ୍‌ରରାଜା ଦ୍ୱିତୀୟ ଫିଲିପଙ୍କ ପତ୍ନୀ ରାଣୀ ଇସାବେଲାଙ୍କ ଜଣେ କର୍ମଚାରୀ ରୂପେ କାର୍ଯ୍ୟ କରୁଥିଲେ । ପରିବାରର ଜ୍ୟେଷ୍ଠ ପୁତ୍ର ରୂପେ ପିତାଙ୍କର ସମସ୍ତ ସମ୍ପଦର ଉତରାଧିକାରୀ ହେବା ପାଇଁ ସେ ଯୋଗ୍ୟ ଥିଲେ । ଆଲୋଇସିୟୁସଙ୍କ ପିତାଙ୍କ ସ୍ୱପ୍ନ ଥିଲା ଯେ ତାଙ୍କ ପୁତ୍ର ଭବିଷ୍ୟତରେ ଜଣେ ସୈନିକ ହେବେ । ଏଣୁ ଛୋଟରୁ ହିଁ ସାମରିକ ତାଲିମ ପ୍ରାପ୍ତ କରିବା ସାଥେ ସାଥେ ଭାଷା ଓ ସାହିତ୍ୟରେ ଶିକ୍ଷା ପ୍ରାପ୍ତ କରିଥିଲେ ।

'ନ' ବର୍ଷ ବୟସରେ ଧାର୍ମିକ ସନ୍ନ୍ୟାସୀ ଜୀବନ ବିତାଇବା ପାଇଁ ସେ ପ୍ରତିଜ୍ଞା କରିଥିଲେ । ୧୫୮୦ ମସିହା ଜୁଲାଇ ୨୨ ତାରିଖରେ ଚାର୍ଲସ ବୋରୋମିଓଙ୍କ ଦ୍ୱାରା ପ୍ରଥମ ଥର ଦିବ୍ୟପ୍ରସାଦ ସଂସ୍କାର ଗ୍ରହଣ କରିଥିଲେ । ଯୀଶୁ ସଂଘର ମିଶିନାରୀମାନଙ୍କ କାର୍ଯ୍ୟକଳାପ ଉପରେ ଆଧାରିତ ଗୋଟିଏ ପୁସ୍ତକ ପଠନ କରି ସେ ଜଣେ ମିଶିନାରୀ ହେବା ପାଇଁ ପ୍ରେରଣା ପାଇଥିଲେ । ଗ୍ରୀଷ୍ମ ଛୁଟିରେ କାସ୍ତିଲିୟନେର ଯୁବକ ପିଲାମାନଙ୍କୁ ସେ ଧର୍ମଶିକ୍ଷା ଦେଉଥିଲେ । ଆଲୋଇସିୟୁସ ଜଣେ ଧର୍ମ ଯାଜକ ହେବା ପାଇଁ ତାଙ୍କର ଗଭୀର ଇଚ୍ଛା ଥିଲା କିନ୍ତୁ ତାଙ୍କ ପରିବାରର ସଦସ୍ୟମାନେ ସେଥିରୁ ତାଙ୍କର ମନ ପରିବର୍ତନ ପାଇଁ ଯଥେଷ୍ଟ ପରିଶ୍ରମ କରିଥିଲେ ।

ଆଲୋଇସିୟୁସଙ୍କୁ ଯେତେବେଳେ ୧୮ ବର୍ଷ ବୟସ ହେଉଥିଲା ସେ ନିଜ ପିତାଙ୍କ ଉତରାଧିକାରୀ ହେବାର ଅଧିକାର ତ୍ୟାଗ କରି ରୋମର ଯୀଶୁ ସଂଘରେ ଯୋଗ ଦେଇଥିଲେ । ନଭିସିଏଟ୍ ସମୟରେ ସେ ଯେଉଁ କଠୋର ପ୍ରାୟଶ୍ଚିତ କରୁଥିଲେ ସେ ସବୁକୁ ଛାଡି ଅନ୍ୟମାନଙ୍କ ସହିତ ମିଶିବା ପାଇଁ ତାଙ୍କୁ

ଉତ୍ସାହିତ କରାଗଲା । ୧୫୮୭ ମସିହା ନଭେମ୍ବର ମାସ ୨୫ ତାରିଖ ଦିନ ଆଜ୍ଞାବହତା, ଦରିଦ୍ରତା ଓ ସନ୍ନ୍ୟାସ ଜୀବନ ଯାପନ କରିବା ପାଇଁ ବ୍ରତ ନେଇଥିଲେ । ୧୫୮୮ ମସିହା ଫେବୃୟାରୀ ଓ ମାର୍ଚ୍ଚ ମାସରେ ମାଇନର ଅର୍ଡର ପ୍ରାପ୍ତ କଲାପରେ ଯାଜକ ଅଭିଷେକ ପ୍ରାପ୍ତ କରିବା ପାଇଁ ଈଶଶାସ୍ତ୍ର ଅଧ୍ୟୟନ ଆରମ୍ଭ କରିଥିଲେ । ୧୫୯୧ ମସିହାରେ ରୋମ୍‌ରେ ମହାମାରୀ ବ୍ୟାପି ଯାଇଥିଲା । ଯୀଶୁ ସଂଘ ଦ୍ୱାରା ହସପିଟାଲ ଖୋଲାଯାଇଥିଲା ଏବଂ ଆଲୋଇସିୟୁସ ସେଥିରେ ସ୍ୱଇଚ୍ଛାରେ ଯୋଗ ଦେଇ ରୋଗୀମାନଙ୍କୁ ସେବା କରୁଥିଲେ । ମହାମାରୀ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବା ପାଇଁ ସେ ଅନ୍ୟମାନଙ୍କଠାରୁ ଭିକ୍ଷା ମାଗୁଥିଲେ । ମହାମାରୀ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ଗାଧୋଇ ଦେଉଥିଲେ ଏବଂ ଖୁଆଇ ଦେଉଥିଲେ । ସଂସ୍କାର ପ୍ରଦାନ କରିବା ପାଇଁ ସେମାନଙ୍କୁ ପ୍ରସ୍ତୁତ କରୁଥିଲେ । ଫାଦେର ଆଲୋଇସିୟୁସଙ୍କ ଆଧ୍ୟାତ୍ମିକ ପିତା ଥିଲେ ରୋବର୍ଟ ବେଲାରମିନ ।

ମହାମାରୀ ଦ୍ୱାରା ଆକ୍ରାନ୍ତ ହୋଇଥିବା ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବାକୁ ଯାଇ ଅନେକ ଯୁବକ ଫାଦେରମାନେ ନିଜେ ସେହି ରୋଗ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏଣୁ ଆଲୋଇସିୟୁସଙ୍କ ଅଧିକାରୀ ହସପିଟାଲ ଯିବା ପାଇଁ ମନା କରିଥିଲେ । କିନ୍ତୁ ଆଲୋଇସିୟୁସ ବାରମ୍ବାର ଅନୁରୋଧ କରିଥିଲେ ତାଙ୍କୁ ଅନୁମତି ଦେବା ପାଇଁ ଯେପରି ସେଠାକୁ ଯାଇ ସେବା କରିପାରିବ । ଶେଷରେ ଅନ୍ୟ ହସପିଟାଲରେ ସେବା କରିବା ପାଇଁ ସେ ଅନୁମତି ପାଇଥିଲେ । ସେହି ହସପିଟାଲର ନାମ ଥିଲା (ସାନ୍ତ୍ୱନାର ମାତା) ଯେଉଁଠାରେ ଡିଆଁ ରୋଗରେ ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ଗ୍ରହଣ କରାଯାଉନଥିଲା । ଡିଆଁ ରୋଗରେ ଆକ୍ରାନ୍ତ ଜଣେ ବ୍ୟକ୍ତି ଖଟିଆରୁ ତଳେ ପଡ଼ିଯାଇଥିଲେ, ତାଙ୍କୁ ଉଠାଇ ନିଜ ଖଟିଆକୁ ନେଇ ଶୁଆଇ ଦେଉଥିଲେ । ୧୫୯୧ ମସିହା ମାର୍ଚ୍ଚ ମାସ ୩ ତାରିଖ ଦିନ ଆଲୋଇସିୟୁସ ରୋଗରେ ପୀଡ଼ିତ ହୋଇ ଶଯ୍ୟାଶାୟୀ ହେଲେ ।

ଜ୍ୱର ଓ ଥଣ୍ଡାରେ କିଛିଦିନ ସଂଘର୍ଷ କଲା ପରେ ସେ ଦୁର୍ବଳ ହେବାକୁ ଲାଗିଲା । ସମସ୍ତେ ଭାବିଲେ ଯେ ସେ ଆଉ ବଞ୍ଚି ପାରିବ ନାହିଁ, ଏଣୁ ଯାଜକଙ୍କୁ ଡକାଇ ତାଙ୍କୁ ଅନ୍ତିମାଭିଷେକ ସଂସ୍କାର ଦିଆଗଲା । ସେ ଦୁର୍ବଳ ହେବା ସମୟରେ

ଅନେକଥର ନିଜର ଆଧ୍ୟାତ୍ମିକ ପିତା ରୋବର୍ଟ ବେଲାରମିନ୍‌ଙ୍କ ସହିତ କଥା ହେଉଥିଲେ । ୨୩ତମ ଜନ୍ମ ଦିନ ପୂର୍ବରୁ ଅର୍ଥାତ ୧୫୯୧ ମସିହା ଜୁନ୍ ମାସ ୨୧ ତାରିଖ ଦିନ ସେ ମୃତ୍ୟୁ ବରଣ କରିଥିଲେ । ସାଧୁ ଇଗ୍ନାସିୟସ ଲୋୟଲାଙ୍କ ଦେବାଳୟ ରୋମ୍‌ରେ ତାଙ୍କୁ ସମାଧି ଦିଆଗଲା ।

ମୃତ୍ୟୁର ୧୪ ବର୍ଷ ପରେ ଅର୍ଥାତ ୧୬୦୫ ମସିହା ଅକ୍ଟୋବର ମାସ ୧୯ ତାରିଖ ଦିନ ପୂଣ୍ୟପିତା ପଞ୍ଚମ ପାଉଲ ତାଙ୍କୁ 'ଧନ୍ୟ' ବୋଲି ଘୋଷଣା କରିଥିଲେ । ୧୭୨୬ ମସିହା ଡିସେମ୍ବର ମାସ ୩୧ ତାରିଖ ଦିନ ଯୀଶୁ ସଂଘର ଅନ୍ୟ ଜଣେ ନଭିସ ଷ୍ଟାନିସଲାଉସ କୋଷ୍ଟାକ୍‌ଙ୍କୁ ପୂଣ୍ୟପିତା ତ୍ରୟୋଦଶ ବେନେଦିକ୍ତ ସାଧୁ ରୂପେ ଘୋଷଣା କଲେ । ୧୭୨୯ ମସିହାରେ ପୂଣ୍ୟପିତା ତ୍ରୟୋଦଶ ବେନେଦିକ୍ତ ଆଲୋଇସିୟୁସ ଗନ୍‌ସାଗାଙ୍କୁ ଯୁବକ ଛାତ୍ରମାନଙ୍କ ଇଷ୍ଟ ସାଧୁ ରୂପେ ଘୋଷଣା କରିଥିଲେ । ତାହାଙ୍କର ମୃତ୍ୟୁ ଯେଉଁପରି ଭାବେ ଘଟିଥିଲା ତାହାକୁ ସ୍ମରଣ କରି ମହାମାରୀ ସଂକ୍ରମଣରେ ଆକ୍ରାନ୍ତ ବ୍ୟକ୍ତିମାନଙ୍କ ଇଷ୍ଟ ସାଧୁ ରୂପେ ମଧ୍ୟ ତାଙ୍କୁ ସମ୍ମାନ ଦିଆଯାଇଥାଏ ।

ଆଲୋଇସିୟୁସ ଗନ୍‌ସାଗାଙ୍କ ଦୟା ଓ ସାହାସକୁ ଦୃଷ୍ଟିରେ ରଖି AIDS ପରି ଅସାଧ୍ୟ ରୋଗରେ ଆକ୍ରାନ୍ତ ବ୍ୟକ୍ତିମାନଙ୍କର ଓ ସେମାନଙ୍କୁ ଯତ୍ନ ନେଉଥିବା ବ୍ୟକ୍ତିମାନଙ୍କ ଇଷ୍ଟ ସାଧୁ ରୂପେ ଲୋକଙ୍କର ସମ୍ମାନ ଓ ଭକ୍ତି ସେ ପାଆନ୍ତି । ସାଧୁ ଆଲୋଇସିୟୁସ ନିଜ ଜୀବନ ଦ୍ୱାରା ଦେଖେଇ ଦେଇ ପାରିଛନ୍ତି ଯେ ଯୁବକ ହୋଇ ସାଧୁ ହେବା ଅସମ୍ଭବ ନୁହେଁ ।

**ଆଲୋଇସିୟୁସ ଗନ୍‌ସାଗାଙ୍କ କେତୋଟି ଉକ୍ତି:**

* "ସାରା ବିଶ୍ୱର ରାଜା ହେବା ଅପେକ୍ଷା ଇଶ୍ୱରଙ୍କ ସନ୍ତାନ ହେବା ଅତି ଉତମ" ।
* "ମୁଁ ଜଣେ ବଙ୍କା ଲୁହା, ସେହି ବଙ୍କା ଲୁହାକୁ ସିଧା କରିବା ପାଇଁ ମୁଁ ସନ୍ନ୍ୟାସୀ ଜୀବନରେ ପ୍ରବେଶ କରିଛି" ।



# ସାଧୁ ପିତର (ଜୁନ ୨୯)

ନିଷ୍ଠୁର ଶାସକ ନେରୋ ରୋମ୍‌ରେ ଖ୍ରୀଷ୍ଟିୟାନମାନଙ୍କୁ ତାଡ଼ନା ଦେବା ସମୟରେ ଖ୍ରୀଷ୍ଟିୟାନମାନେ ପିତରଙ୍କୁ ରୋମ୍ ଛାଡ଼ି ଅନ୍ୟତ୍ର ଯିବା ପାଇଁ ଅନୁରୋଧ କଲେ । ଯଦିଓ ସେ ଇଚ୍ଛା କରୁ ନଥିଲେ ତଥାପି ଦିନେ ରାତ୍ରି ସମୟରେ ରୋମ୍‌ରୁ ବାହାରି ଯିବା ସମୟରେ ରୋମ୍‌ର ପ୍ରବେଶ ଦ୍ୱାରରେ ସେ ଯୀଶୁଙ୍କୁ ସାକ୍ଷାତ କଲେ । ପିତର ଯୀଶୁଙ୍କୁ ପଚାରିଲେ, ପ୍ରଭୁ ତୁମ୍ଭେ କେଉଁଆଡ଼େ ଯାଉଛ ?(ଦୋମିନେ କ୍ୟୁ ଭାଦିସ ?) ଯୀଶୁ ଉତର ଦେଲେ, "ପୂନର୍ବାର କ୍ରୁଶବିଦ୍ଧ ହେବା ପାଇଁ ମୁଁ ରୋମ୍ ଯାଉଛି"। ଏହି ଉକ୍ତିର ମର୍ମ ସେ ବୁଝି ପାରିଲେ । ନିଜ ଭୀରୁତାର ଲଜ୍ଜା ସେ ଅନୁଭବ କରି ରୋମ୍‌କୁ ଫେରିଲେ । ସୈନ୍ୟମାନେ ତାଙ୍କୁ ଗିରଫ କରି ରୋମ୍‌ର ବନ୍ଦୀଶାଳାରେ ରଖିଲେ । ପାଉଲଙ୍କ ସହିତ ମାମେର୍‌ଟାଇନ୍ ବନ୍ଦୀଶାଳାରେ ପ୍ରାୟ ୮ ମାସ ରହିଲେ । ୮ ମାସ ବନ୍ଦୀଶାଳାରେ ରହିବା ପରେ ୬୫ ଶତାବ୍ଦୀରେ ତାଙ୍କ ଗୋଡ଼ ଉପରକୁ ଓ ମସ୍ତକ ତଳକୁ ରଖି କ୍ରୁଶବିଦ୍ଧ କରିଥିଲେ ।

ସାଧୁ ପିତରଙ୍କୁ ପ୍ରଭୁ ଆହ୍ୱାନ କରିବା ପୂର୍ବେ ତାଙ୍କ ନାମ ଥିଲା ସିମନ । ସାଧୁ ଆନ୍ଦ୍ରୁଙ୍କ ସେ ଥିଲେ ଛୋଟ ଭାଇ । କେତେଜଣ କହନ୍ତି ସେ ତାହାଙ୍କ ବଡ଼ ଭାଇ । ସେମାନଙ୍କ ଗୃହ ଗାଲିଲୀ ହ୍ରଦ ନିକଟବର୍ତ୍ତୀ ବେଥସାଇଦାରେ । ସେମାନଙ୍କର ବୃତି ଥିଲା ମାଛ ଧରିବା । ଦୁହେଁ ଥିଲେ ଯୀହୁଦୀ ସମ୍ପ୍ରଦାୟର । କୁହାଯାଏ ବିବାହ ପରେ ପିତର କାଫାର୍ଣ୍ଣାହୁମ ଯାଇ ବାସ କଲେ । ସାଧୁ ଯୋହନ ବାପ୍ତିସ୍ତଙ୍କ ଶିଷ୍ୟଥିଲେ ସାଧୁ ଆନ୍ଦ୍ରିୟ । ସାଧୁ ଯୋହନ ଓ ଆନ୍ଦ୍ରିୟ ଯୀଶୁଙ୍କୁ ସାକ୍ଷାତ କରି ତାଙ୍କ ସହିତ ପୂରା ଦିନ ବିତାଇଲେ । ଯୀଶୁଙ୍କୁ ମସୀହ ବା ତ୍ରାଣକର୍ତ୍ତା ରୂପେ ଚିହ୍ନିବା ପରେ ଆନନ୍ଦରେ ସେ ନିଜ ଭାଇ ସିମନଙ୍କୁ ଜଣାଇଲେ । ସିମନ ଯୀଶୁଙ୍କୁ ସାକ୍ଷାତ କଲା ପରେ ଯୀଶୁ ତାଙ୍କ ନାମ ବଦଳାଇ ପିତର ନାମ ଦେଲେ । ହିବ୍ରୁ ଭାଷାରେ ତାଙ୍କ ନାମ ଥିଲା କେଫାସ ଓ ଗ୍ରୀକ ଭାଷାରେ 'ପେଟ୍ରୋସ' ଯାହାର ଅର୍ଥ ହେଲା 'ପଥର' ।

**ପିତରଙ୍କ ଚରିତ୍ରଃ**

ସୁସମାଚାରରୁ ଆମ୍ଭେ ଜାଣୁ ପିତର କେବଳ ଯେ ତରବରିଆ ବ୍ୟକ୍ତି ଥିଲେ ତା ନୁହଁ ତାଙ୍କ ମଧ୍ୟରେ ଥିଲା ଅନେକ ଦୁର୍ବଳତା । ପ୍ରଭୁଙ୍କ ପ୍ରତି ତାଙ୍କର ଯଥେଷ୍ଟ ପ୍ରେମ ଥିଲା ତଥାପି ପ୍ରଭୁଙ୍କୁ ସେ ଅସ୍ୱୀକାର କରିଥିଲେ । ତାଙ୍କର ଦୁର୍ବଳତା ସତ୍ୱେ ପ୍ରଭୁ ତାଙ୍କୁ ପ୍ରଥମ ମଣ୍ଡଳୀର ଜଣେ ନେତା ରୂପେ ବାଛିଥିଲେ ଓ ପରେ ମଣ୍ଡଳୀର ସେ ପ୍ରଥମ ପୂଣ୍ୟପିତା ହୋଇପାରିଥିଲେ ।

**ପିତରଙ୍କ କେତୋଟି ବିଫଳତା:**

୧. ଜଳ ଉପରେ ଚାଲିବା ପାଇଁ ସେ ପ୍ରଭୁଙ୍କ ଠାରୁ ଆଜ୍ଞା ପାଇଲେ କିନ୍ତୁ ଚାଲିବା ସମୟରେ ବିଶ୍ୱାସ ହରାଇବା ମାତ୍ରେ ସେ ବୁଡ଼ିବାକୁ ଲାଗିଲେ ।

୨. ନିଜ ମାଲିକ ବା ଗୁରୁଙ୍କୁ ଗାଳି କରିବାର ସାହାସ ତାଙ୍କଠାରେ ଥିଲା ଏବଂ ଗୁରୁଙ୍କଠାରୁ ମଧ୍ୟ ସେ ଗାଳି ଶୁଣିଥିଲେ ।

୩. ମୋଶା, ଏଲିୟ ଓ ଯୀଶୁଙ୍କ ପାଇଁ ସେ ତମ୍ବୁ ତିଆରି କରିବା ପାଇଁ ଚାହିଁଲେ କିନ୍ତୁ ଯୀଶୁଙ୍କ କ୍ରୁଶବିଦ୍ଧ ସମୟରେ ତାଙ୍କୁ ସାଥି ଦେଇ ପାରି ନ ଥିଲେ ।

୪. ସେ ସବୁବେଳେ ଯୀଶୁଙ୍କୁ ପ୍ରଥମେ ପ୍ରଶ୍ନ କରୁଥିଲେ କିନ୍ତୁ ଯୀଶୁଙ୍କୁ ବିନା କାରଣରେ ଦୋଷୀ ସାବ୍ୟସ୍ତ କରିବା ସମୟରେ ପଦେ ବି ତାଙ୍କ ସପକ୍ଷରେ କଥା କହି ନ ଥିଲେ ।

୫. ଯୀଶୁ ତାଙ୍କ ଗୋଡ଼ ଧୋଇବା ସମୟରେ ପ୍ରତିବାଦ କରି କହିଥିଲେ ତାହା କେବେ ହୋଇ ପାରିବ ନାହିଁ ।

୬. ଗେଥ୍‌ସେମାନି ଉଦ୍ୟାନରେ ପ୍ରାର୍ଥନା କରିବା ସମୟରେ ସେ ନିଦ୍ରାଗତ ହେଲେ ଯଦିଓ ପ୍ରଭୁ ତାଙ୍କୁ କିଛି ସମୟ ଉଜାଗର ରହିବା ପାଇଁ କହିଥିଲେ ।

୭. ଗେଥ୍‌ସେମାନି ଉଦ୍ୟାନରେ ମାଲକୁସଙ୍କ କର୍ଣ୍ଣ ଛେଦନ କରି ଯୀଶୁଙ୍କଠାରୁ ଗାଳି ଶୁଣିଥିଲେ ।

୮. ଯୀଶୁଙ୍କ ସହିତ ରହିବା ପାଇଁ ପ୍ରତିଶ୍ରୁତି ଦେଇ ତିନିଥର ତାଙ୍କୁ ଅସ୍ୱୀକାର କରିଥିଲେ ।

୯. ଯୀଶୁ ତାଙ୍କୁ ସ୍ୱର୍ଗ ରାଜ୍ୟର ଚାବିକାଠି ଦେଲେ କିନ୍ତୁ ଯୀଶୁଙ୍କୁ ଗିରଫ କରିବା ସମୟରେ ତାଙ୍କ ଠାରୁ ପଳାୟନ କଲେ ।

୧୦. ପୁନରୁତ୍ଥିତ ଯୀଶୁଙ୍କ ସମ୍ବନ୍ଧରେ  ଯେଉଁ ନାରୀମାନେ ସାକ୍ଷ୍ୟ ଦେଲେ, ସେମାନଙ୍କର ସାକ୍ଷ୍ୟକୁ ସେ ବିଶ୍ୱାସ କଲେ ନାହିଁ ।

୧୧. ପେଣ୍ଟେକଷ୍ଟ ପରେ ମଧ୍ୟ ବିଜାତୀୟମାନଙ୍କ ପ୍ରତି ତାଙ୍କର ପୂର୍ବ ପ୍ରତିକୂଳ ଚିନ୍ତାଧାରା ଥିଲା ।

୧୨. ପିତରଙ୍କ ଅସଙ୍ଗତି ଯୋଗୁଁ ପାଉଲଙ୍କଠାରୁ ସେ ଗାଳି ଶୁଣିଥିଲେ । (ଗାଲାତୀୟ ୨:୧୧-୧୪)

ପିତର ଯଦିଓ ଅନେକ ଥର ବିଫଳତା ଦେଇ ଗତି କରିଛନ୍ତି ତଥାପି ଖ୍ରୀଷ୍ଟଙ୍କଠାରେ ସେ କେବେହେଲେ ଆଶା ଛାଡି ନ ଥିଲେ ।

ପୁନରୁତ୍ଥିତ ଯୀଶୁ ପିତରଙ୍କୁ ଦର୍ଶନ ଦେଇ ଥିଲେ । ଯେରୁସାଲେମ ଏବଂ ତାହାର ନିକଟବର୍ତ୍ତୀ ଅଞ୍ଚଳକୁ ଯାଇ ସେ ସୁସମାଚାର ପ୍ରଚାର କଲେ । ଆନ୍ତିୟୋଖରେ ସେ ପ୍ରଥମ ଖ୍ରୀଷ୍ଟିୟାନ ମଣ୍ଡଳୀ ସ୍ଥାପନ କଲେ । ସେଠାରେ ପ୍ରାୟ ୭ ବର୍ଷ ରହି ଅନ୍ୟାନ୍ୟ ଅଞ୍ଚଳରେ ଧର୍ମ ପ୍ରଚାର କଲେ । ତାଙ୍କ ପ୍ରଚାରରେ ଅନେକେ ସୁସ୍ଥତା ଲାଭ କଲେ ଓ ମନ ପରିବର୍ତ୍ତନ କରି ପ୍ରଭୁଙ୍କଠାରେ ବିଶ୍ୱାସ କଲେ । ପ୍ରଚାର ପାଇଁ ଯେତେବେଳେ ପ୍ରେରିତମାନଙ୍କ ମଧ୍ୟରେ ବିଶ୍ୱର ବିଭିନ୍ନ ସ୍ଥାନ ବଣ୍ଟାଗଲା, ପିତର ବିଶ୍ୱର ରାଜଧାନୀ ରୋମ୍ ପରି ଶକ୍ତିଶାଳୀ, ଗର୍ବ ଏବଂ ଗୌରବର ସ୍ଥାନରେ ଧର୍ମ ପ୍ରଚାର କରିବାର ସୁଯୋଗ ପାଇଥିଲେ । ପ୍ରାୟ ୨୫ ବର୍ଷ ରୋମ୍‌ର ଧର୍ମାଧ୍ୟକ୍ଷ ଭାବେ କାର୍ଯ୍ୟ କଲେ । ୫୧ ଶତାବ୍ଦୀର ଯେରୁସାଲେମ ସଭାରେ ସେ ଉପସ୍ଥିତ ଥିଲେ । ରୋମ୍‌ର ମାମେରଟାଇନ ବନ୍ଦୀଶାଳାରେ ପ୍ରାୟ ୮ ମାସ ବିଭିନ୍ନ ପ୍ରକାର ତାଡ଼ନା ଓ ନିର୍ଯ୍ୟାତନା ପାଇଥିଲେ । ବନ୍ଦୀଶାଳାରେ ଥିବା ସମୟରେ ସାଧୁ ପ୍ରସେସୁସ ଏବଂ ମାର୍ଟିନିଆନ ଏବଂ ଜଗାଳିମାନଙ୍କ ଦାୟୀତ୍ୱରେ ଥିଲେ ଓ ସେଠାରୁ ପ୍ରାୟ ୪୭ ଜଣ ଲୋକ ପିତରଙ୍କ ଦ୍ୱାରା ମନ ପରିବର୍ତ୍ତନ ହୋଇଥିଲେ ।

ଆଲେକଜାଣ୍ଡ୍ରିଆର ସାଧୁ କ୍ଲେମେନ୍ତ ପିତରଙ୍କ ସାକ୍ଷ୍ୟକୁ ଉଲ୍ଲେଖ କରି କହନ୍ତି, ଯେତେବେଳେ ତାଙ୍କ ପତ୍ନୀଙ୍କୁ ନିଆଗଲା ମୃତ୍ୟୁଦଣ୍ଡ ଦେବା ପାଇଁ ପିତର ଖୁସୀ ଥିଲେ କାରଣ ପ୍ରଭୁ ତାଙ୍କୁ ବିଶ୍ୱାସର ସାକ୍ଷ୍ୟ ଦେବା ପାଇଁ ମନୋନୀତ କରିଛନ୍ତି । ପ୍ରଭୁଙ୍କୁ ଯେ ସେ ସ୍ମରଣ କରନ୍ତି ତାହା ଜାଣି ସେ ଖୁସୀ ହୋଇଥିଲେ । ତାଙ୍କୁ

କ୍ରୁଶବିଦ୍ଧ କରିବା ସମୟରେ ସେ କହିଥିଲେ ଯୀଶୁଙ୍କ ପରି ମୁଁ ମରିବା ପାଇଁ ଯୋଗ୍ୟ ନୁହେଁ ଏଣୁ ଯେଉଁମାନେ ତାଙ୍କୁ କ୍ରୁଶବିଦ୍ଧ କରୁଥିଲେ ସେମାନଙ୍କୁ ସେ ମସ୍ତକ ତଳକୁ କରି ତାଙ୍କୁ କ୍ରୁଶବିଦ୍ଧ କରିବା ପାଇଁ କହିଥିଲେ ।

ଶେଷ ଦିନରେ ନିଜର କର୍ମ ପାଇଁ ସେ ଏତେ ଅନୁତପ୍ତ ଥିଲେ ଯେ ତାଙ୍କ ଲୁହ ଦ୍ୱାରା ତାଙ୍କ ମୁଖରେ ସବୁଦିନ ଦାଗ ରହିଗଲା । ସାଧୁ କ୍ଲେମେନ୍ତ କହନ୍ତି ପିତର ନିଜ ବସ୍ତ୍ର ଭିତରେ ସର୍ବଦା ଲୁହ ପୋଛିବା ପାଇଁ ଗୋଟିଏ ରୁମାଲ ରଖୁଥିଲେ । ଯେତେବେଳେ ସେ ପ୍ରଭୁଙ୍କ ପ୍ରେମ ସ୍ମରଣ କରୁଥିଲେ ତାଙ୍କ ଆଖିରୁ ଲୁହ ଝରୁଥାଏ, ଯେତେବେଳେ ସେ ସ୍ମରଣ କରନ୍ତି କିପରି ସେ ପ୍ରଭୁଙ୍କୁ ଅସ୍ୱୀକାର କରିଥିଲେ, ତାଙ୍କ ଆଖିରୁ ଲୁହ ଝରେ । ପୁଣି କୁକୁଡ଼ାର ସ୍ୱର ଶୁଣିଲେ ମଧ୍ୟ ତାଙ୍କ ଆଖିରୁ ଲୁହ ଝରୁଥାଏ । କ୍ରନ୍ଦନ କରିବା ଏପରି ଏକ ଅଭ୍ୟାସ ହୋଇଗଲା ଯେ ତାଙ୍କ ମୁଖ ସର୍ବଦା ଲୁହରେ ଭିଜି ରହୁଥାଏ । ହସ୍ତରେ ଧରିଥିବା ଚାବି ଛବିଟି ଦ୍ୱାରା ପିତରଙ୍କୁ ଦେବାଳୟ ଗୁଡ଼ିକରେ ଚିତ୍ରଣ କରାଯାଇଥାଏ ।

**ସାଧୁ ପିତରଙ୍କ କେତୋଟି ଉକ୍ତି:**

* ମାଥିଉ ୧୬:୧୬ "ତୁମ୍ଭେ ଜୀବନ୍ତ ଇଶ୍ୱରଙ୍କ ପୁତ୍ର, ସେହି ଖ୍ରୀଷ୍ଟ"।
* ୧ମ ପିତର ୧:୯ "ତୁମ୍ଭ ବିଶ୍ୱାସର ଲକ୍ଷ୍ୟ, ଆତ୍ମାର ପରିତ୍ରାଣ"।
* ୧ମ ପିତର ୨:୯ "ତୁମ୍ଭେମାନେ ଏକ ମନୋନୀତ ବଂଶ, ରାଜକୀୟ ଯାଜକବର୍ଗ, ପବିତ୍ର ଜାତି ପୁଣି ଇଶ୍ୱରଙ୍କ ନିଜସ୍ୱ ପ୍ରଜା ହୋଇଅଛ"।
* ୧ମ ପିତର ୩:୧୫ "ତୁମ୍ଭମାନଙ୍କଠାରେ ଥିବା ଭରସାର କାରଣ ସମ୍ବନ୍ଧରେ ଯେ କେହି ପ୍ରଶ୍ନ କରେ, ତାହାକୁ ପ୍ରତ୍ୟୁତର ଦେବାକୁ ପ୍ରସ୍ତୁତ ରୁହ । ମାତ୍ର ତାହା ବିନୟତା ତଥା ଶ୍ରଦ୍ଧା ସହକାରେ ସମ୍ପାଦନ କର"।
* ୧ମ ପିତର ୫:୭ "ତୁମ୍ଭମାନଙ୍କ ସମସ୍ତ ଚିନ୍ତାର ଭାର ତାହାଙ୍କ ଉପରେ ପକାଅ, କାରଣ ସେ ତୁମ୍ଭମାନଙ୍କ ନିମନ୍ତେ ଚିନ୍ତା କରନ୍ତି" ।



## ପ୍ରେରିତ ସାଧୁ ପାଉଲ (ଜୁନ ୨୯)

ପ୍ରେରିତ ସାଧୁ ପାଉଲଙ୍କ ପୂର୍ବ ନାମ ଥିଲା ସାଉଲ । ସାଉଲ ହେଉଛି ହିବ୍ରୁ ନାମ ଏବଂ ପାଉଲ ରୋମୀୟ ନାମ ଅଟେ । ପାଉଲର ଅର୍ଥ କ୍ଷୁଦ୍ର (ଶାରିରୀକ) । ସିଲିସିଆର ତାରସୁସ୍‌ଠାରେ ପାଉଲଙ୍କ ଜନ୍ମସ୍ଥାନ । ଯିହୁଦୀ ପରିବାର ବେଞ୍ଜାମିନ ବଂଶଜ ପାଉଲ ପ୍ରଥମ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ରୋମୀୟ ନାଗରିକ ଭାବେ ଜନ୍ମ ଗ୍ରହଣ କରିଥିବାରୁ ରୋମୀୟ ପ୍ରଥା ବା ଅଧିକାର ସେ ଜାଣି ପାରିଥିଲେ । ଯଦିଓ ସେ ଗ୍ରୀକ ସହରରେ ଜନ୍ମ ଗ୍ରହଣ କରିଥିଲେ, ଉଚ୍ଚ ଶିକ୍ଷା ପ୍ରାପ୍ତ ନିମନ୍ତେ ସେ ଯେରୁସାଲେମ ଯାଇଥିଲେ ଏବଂ ବିଖ୍ୟାତ ଯିହୁଦୀ ଗୁରୁ ଗାମାଲିଏଲଙ୍କଠାରୁ ଯିହୁଦୀ ନିୟମ ଓ ତାହାର ବ୍ୟାଖ୍ୟା ସମ୍ବନ୍ଧରେ ସେ ଶିକ୍ଷା ଲାଭ କରିଥିଲେ ।

ସୁସମାଚାର ପ୍ରଚାର ନିମନ୍ତେ ସେ ଅନେକ ଦୁଃଖଭୋଗ କରିଛନ୍ତି । ଯନ୍ତ୍ରଣା ଥିଲା ତାଙ୍କ ପ୍ରେରିତିକ ଜୀବନର ଏକ ଅଂଶ ଏଣୁ ସେ କହନ୍ତି, "ପ୍ରତିଦିନ ମୁଁ ମୃତ୍ୟୁ ବରଣ କରେ"(୧ମ କରନ୍ଥୀୟ ୧୫:୩୧) । କ୍ରୁଶ ଓ ଯୀଶୁଙ୍କ ପୁନରୁତ୍ଥାନର ଶକ୍ତିକୁ ପ୍ରଦର୍ଶନ କରିବା ନିମନ୍ତେ ଓ ତାଙ୍କର ଯୋଜନାକୁ ଜାଣିବା ନିମନ୍ତେ ପ୍ରଭୁ ତାଙ୍କ ଜୀବନରେ ଯନ୍ତ୍ରଣା ଦିଅନ୍ତି (୧ମ କରନ୍ଥୀୟ ୨:୧-୫) । ନିଜ ଜୀବନରେ ଅନୁଭବ କରିଥିବା ଯନ୍ତ୍ରଣାଗୁଡିକର ତାଲିକା ସେ ଦିଅନ୍ତି:

ରୋମୀୟ ୮:୩୫

୧ମ କରନ୍ଥୀୟ ୪:୯-୧୩

୨ୟ କରନ୍ଥୀୟ ୪:୮-୯, ୬:୪-୫

୧ମ କରନ୍ଥୀୟ ୧୧:୨୩-୨୯

ବିଜାତୀୟମାନଙ୍କୁ ସୁସମାଚାର ପ୍ରଚାର ନିମନ୍ତେ ପ୍ରଭୁଯୀଶୁ ତାହାଙ୍କୁ ଯେଉଁ ଦର୍ଶନ ଦେଇଥିଲେ ତାହା ସେ ପ୍ରକାଶ କରନ୍ତି । ନିଜକୁ ନମ୍ର କରିବା ପାଇଁ ପ୍ରଭୁ ତାଙ୍କ ଶରୀରରେ ଯେଉଁ କଣ୍ଟା ଦିଅନ୍ତି ଅର୍ଥାତ ଶାରିରୀକ ଯନ୍ତ୍ରଣା ସେ ପାଇଥିବା ହେତୁ ତାହା ବାହାର କରିବା ପାଇଁ ତିନିଥର ସେ ପ୍ରାର୍ଥନା କରନ୍ତି । ପ୍ରାର୍ଥନା କରିବା ସତ୍ୱେ ପ୍ରଭୁ ତାଙ୍କ ଶରୀରରୁ ସେହି କଣ୍ଟା ବାହାର କଲେ ନାହିଁ ।

### ସାଧୁ ପାଉଲଙ୍କ ମିଶିନାରୀ ଯାତ୍ରା:

ଡାମାସକାସରେ ପ୍ରଭୁ ସାଉଲଙ୍କୁ ଆହ୍ୱାନ କଲା ପରେ ସେ ଆରାବିଆ ମରୁଭୂମିକୁ ଯାଇ ସେଠାରେ ନିଜ ଆହ୍ୱାନ ବିଷୟ ଧ୍ୟାନ କରିଥିଲେ । ତିନିବର୍ଷ ଧରି ସେଠାରେ ରହିଥିଲେ । ପିତର ଓ ଯାକୁବଙ୍କ ସହିତ ପ୍ରାୟ ୧୫ ମାସ

ଯେରୁସାଲେମ୍‌ରେ ବିତାଇଲେ (ଗାଲାତୀୟ ୧ :୧୯-୧୯) । ଏହାପରେ ସେ ସିରିଆ ଓ ସିଲିସିଆ ଯାଇ ସୁସମାଚାର ପ୍ରଚାର କରିଥିଲେ । ତିନୋଟି ମିଶିନାରୀ ଯାତ୍ରା ସେ କରିଥିଲେ ।

ପ୍ରଥମ ମିଶିନାରୀ ଯାତ୍ରା- (୪୬-୪୯ A.D)

ଦ୍ବିତୀୟ ମିଶିନାରୀ ଯାତ୍ରା- (୫୦-୫୨A.D)

ତୃତୀୟ ମିଶିନାରୀ ଯାତ୍ରା- (୫୪-୫୮A.D)

ତିନୋଟି ମିଶିନାରୀ ଯାତ୍ରା ପରେ ସାଧୁ ଯାକୁବଙ୍କ ଅନୁରୋଧ କ୍ରମେ ସେ ଯେରୁସାଲେମ୍‌କୁ ଯାତ୍ରା କରିଥିଲେ । ନେରୋଙ୍କ ରାଜତ୍ୱ କାଳର ୬୫ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସାଧୁ ପାଉଲଙ୍କ ମସ୍ତକ ଛେଦନ କରାଗଲା ତାହା ତିନି ଥର ଭୂମିରୁ ଡେଇଁଲା । ଯେଉଁ ତିନୋଟି ସ୍ଥାନରେ ତାଙ୍କ ମସ୍ତକ ଡେଇଁଲା ସେହି ସ୍ଥାନରେ ତିନୋଟି ଝରଣା ସୃଷ୍ଟି ହୋଇଥିଲା, ଏଣୁ ସେହି ସ୍ଥାନକୁ 'ତ୍ରେ ଫନ୍ତାନେ' ବୋଲି ନାମ ରଖାଯାଇଛି । ସାଧୁ ପାଉଲଙ୍କୁ ରୋମ୍‌ର ପ୍ରାଚୀର ବାହାରେ ଥିବା ଭିଆ ଅସ୍ତିଏନସିସରେ ତିଆରି କରାଯାଇଥିବା ସାଧୁ ପାଉଲ ମହା ଭଜନାଳୟରେ ଭୂସ୍ଥାପନ କରାଯାଇଛି ।

**ପାଉଲଙ୍କ କେତୋଟି ଉକ୍ତି:**

✸ ୧ମ କରିନ୍ଥୀୟ ୧୫ :୧୦ "ମୁଁ ବର୍ତ୍ତମାନ ଯାହାକିଛି ହୋଇଛି, ତାହା ଇଶ୍ୱରଙ୍କ ଅନୁଗ୍ରହ ଯୋଗୁଁ ସଂଘଟିତ"।

✸ ଫିଲିପୀୟ ୧ :୨୧ "ମୋ ପାଇଁ ଜୀବନର ଲକ୍ଷ୍ୟ ଖ୍ରୀଷ୍ଟ; କିନ୍ତୁ ମୃତ୍ୟୁ ମଧ୍ୟ ମୋ ପାଇଁ ଲାଭଜନକ"।

✸ ଫିଲିପୀୟ ୧ :୨୯ "ଖ୍ରୀଷ୍ଟଙ୍କଠାରେ କେବଳ ବିଶ୍ୱାସ ସ୍ଥାପନ କରିବା ପାଇଁ ନୁହେଁ, ବରଂ ତାହାଙ୍କ ସକାଶେ ଯାତନା ମଧ୍ୟ ଭୋଗ କରିବା ପାଇଁ ତୁମ୍ଭମାନଙ୍କୁ ଅନୁଗ୍ରହ ପ୍ରଦତ୍ତ ହୋଇଛି"।

✸ ୧ମ କରିନ୍ଥୀୟ ୯ :୧୬ "ମୁଁ ଯଦି ସୁସମାଚାର ପ୍ରଚାର ନ କରେ, ତେବେ ମୋତେ ଧିକ୍" ।

✸ ଗାଲାତୀୟ ୨ :୨୦ "ଖ୍ରୀଷ୍ଟଙ୍କ ସମେତ ମୁଁ କ୍ରୁଶବିଦ୍ଧ ହୋଇଛି, ବର୍ତ୍ତମାନ ଯିଏ ଜୀବିତ, ସେ ଆଉ ମୁଁ ନୁହେଁ, ବରଂ ଖ୍ରୀଷ୍ଟ ହିଁ ମୋ ଠାରେ ଜୀବିତ ଅଟନ୍ତି"।

✸✸✸

# ଭାରତର ପ୍ରେରିତ ସାଧୁ ଥମାସ (ଜୁଲାଇ ୩)

ଯୀଶୁଙ୍କ ଦ୍ୱାଦଶ ଶିଷ୍ୟମାନଙ୍କ ମଧ୍ୟରୁ ପ୍ରେରିତ ଥମାସ ଅନ୍ୟତମ । ସିରିଆକ୍ ଭାଷାରେ 'ଥମାସ'ର ଅର୍ଥ ହେଲା 'ଜାଆଁଳା' । ଯୀଶୁଙ୍କର ସ୍ୱର୍ଗାରୋହଣ ପରେ ଥମାସ ପ୍ରଭୁଙ୍କର ବାକ୍ୟ ପ୍ରଚାର କରିବା ପାଇଁ ପାର୍ଥିଆ, ମିଦେସ, ପେରସିଆ ଏବଂ ବିଭିନ୍ନ ଦେଶକୁ ଯାଇ ଶେଷରେ ଭାରତରେ ପଦାର୍ପଣ କରିଥିଲେ । କାଥଲିକ୍ ପରମ୍ପରା ଅନୁଯାୟୀ ସାଧୁ ଥମାସ ପ୍ରଥମେ କେରଳର କ୍ରାଙ୍ଗାନୋର (ବର୍ତ୍ତମାନର କାଡୁଙ୍ଗାଲୁର)ରେ ୫୨ ଶତାବ୍ଦୀରେ ପହଞ୍ଚି ୭ଟି ମଣ୍ଡଳୀ ସ୍ଥାପନ କରିଥିଲେ । ଆବ୍ରାହାମ ଯେପରି ସମସ୍ତ ବିଶ୍ୱାସୀମାନଙ୍କର ପିତା, ସେହିପରି ସାଧୁ ଥମାସ ଭାରତୀୟ ଖ୍ରୀଷ୍ଟ ବିଶ୍ୱାସୀମାନଙ୍କର ପିତା ରୂପେ ଗଣିତ ହୋଇଛନ୍ତି, କାରଣ ସେ ପ୍ରଥମେ ଭାରତରେ ବିଶ୍ୱାସର ବୀଜ ବପନ କରିଥିଲେ । ସୁସମାଚାରର ବିଭିନ୍ନ ସ୍ଥାନରେ ଥମାସଙ୍କ ବ୍ୟକ୍ତିତ୍ୱ ଆମ୍ଭେ ଜାଣିଥାଉ । ଲାଜାରଙ୍କ ଅସୁସ୍ଥତା ଶୁଣି ଯୀଶୁ ଯେତେବେଳେ ଯୁଦେଆର ବେଥାନିକୁ ଯିବା ପାଇଁ ପ୍ରସ୍ତୁତ ହେଉଥିଲେ, ସେହି ସମୟରେ ଅନ୍ୟ ଶିଷ୍ୟମାନେ ଭୟରେ ତାଙ୍କ ଜୀବନରେ ବିପଦ ଥିବା ବିଷୟ ଜଣାଇ ସତର୍କ କରାଇଦେଲେ । କିନ୍ତୁ ଥମାସ ସାହସର ସହିତ କହିଥିଲେ, 'ଚାଲ' ଆମ୍ଭେ ମଧ୍ୟ ତାଙ୍କ ସହିତ ଯାଇ ମରିବା (ଯୋହନ ୧୧:୭-୧୬) । ବାସ୍ତବରେ ଯୀଶୁଙ୍କୁ ଅନୁସରଣ କରି ସେ ମୃତ୍ୟୁବରଣ କଲେ ଏବଂ ତାହାଙ୍କ ରକ୍ତ ଦ୍ୱାରା ଯୀଶୁଙ୍କୁ ଅନ୍ୟମାନଙ୍କ ଆଗରେ ସାକ୍ଷ୍ୟ ଦେଇପାରିଥିଲେ ।

ଶେଷ ଭୋଜନ ସମୟରେ ଯୀଶୁ ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ ଯେ, 'ସେ ସେମାନଙ୍କୁ ଛାଡ଼ିଯିବେ' । ସେ କେଉଁଆଡ଼େ ଯିବେ, ତାହା ଶିଷ୍ୟମାନେ ପଚାରିଥିଲେ । ପ୍ରଭୁ, ତୁମ୍ଭେ କେଉଁ ଆଡ଼େ ଯାଉଅଛ ଆମ୍ଭେ ଜାଣି ନାହୁଁ, ଆମ୍ଭେ କେମିତି ସେହି ରାସ୍ତା ଜାଣିବୁ ? ଯୀଶୁ ଉତର ଦେଲେ, 'ମୁଁ ହିଁ ପଥ, ମୁଁ ହିଁ ସତ୍ୟ ଏବଂ ମୁଁ ହି ଜୀବନ, ମୋ ଦେଇ ନଗଲେ କେହି ପିତାଙ୍କ ନିକଟକୁ ଯାଇ ପାରିବ ନାହିଁ' (ଯୋହନ ୧୪:୬) । ଏହି ମହାନ୍ ଉକ୍ତି କେବଳ ଥମାସଙ୍କ ପ୍ରଶ୍ନର ଉତ୍ତରରେ ଯୀଶୁ କିଏ, ସେହି ରହସ୍ୟ ସେ ନିଜେ ପ୍ରକାଶ କରିଥିଲେ । ପ୍ରକୃତରେ ସେ ଅବିଶ୍ୱାସୀ ନ ଥିଲେ କିଅବା ସନ୍ଦେହକାରୀ ନ ଥିଲେ ।

କୌଣସି ବିଷୟକୁ ନିଜେ ନ ଜାଣିବା ପର୍ଯ୍ୟନ୍ତ ସେ ବିଶ୍ୱାସ କରୁ ନଥିଲେ । ଯେତେବେଳେ ଅନ୍ୟ ଶିଷ୍ୟମାନେ କହିଲେ ଯେ, ସେମାନେ ପ୍ରଭୁଙ୍କୁ ଦେଖିଲେ, ଥମାସ ବିଶ୍ୱାସ କରି ନ ଥିଲେ । ଯେଉଁ ପର୍ଯ୍ୟନ୍ତ ପ୍ରଭୁ ତାଙ୍କୁ ନିଜେ ଦେଖା ନ ଦେଇଛନ୍ତି ଏବଂ ତାଙ୍କ କ୍ଷତ ସ୍ଥାନରେ ସେ ହାତ ନ ଦେଇଛନ୍ତି ସେ କେବେହେଲେ ବିଶ୍ୱାସ କରିବେ ନାହିଁ । ଯୀଶୁ ଯେତେବେଳେ ନିଜର କ୍ଷତ ସ୍ଥାନରେ ତାଙ୍କ ଆଙ୍ଗୁଠି ରଖିବା ପାଇଁ କହିଲେ, ଥମାସ ନିଜର ହାତ ରଖିବା ପାଇଁ ବ୍ୟାକୁଳତା ନ ହୋଇ ସମ୍ପୂର୍ଣ୍ଣ ଭାବରେ 'ହେ ମୋହର ପ୍ରଭୁ, ହେ ମୋହର ଈଶ୍ୱର' କହି ନିଜକୁ ତାଙ୍କ ନିକଟରେ ଆତ୍ମସମର୍ପଣ କଲେ । ଥମାସଙ୍କ ସନ୍ଦେହ ଯୀଶୁଙ୍କୁ ପ୍ରତ୍ୟାଖ୍ୟାନ କରିବା ସନ୍ଦେହ ନ ଥିଲା ବରଂ ସତ୍ୟତାକୁ ଅନୁସନ୍ଧାନ କରିବାର ସନ୍ଦେହ ଥିଲା । ଏହି ପରିପ୍ରେକ୍ଷୀରେ ଯୀଶୁ ଥମାସଙ୍କୁ କହିଥିଲେ, 'ଧନ୍ୟ ସେହିମାନେ ଯେଉଁମାନେ ପ୍ରଭୁଙ୍କୁ ନ ଦେଖି ବିଶ୍ୱାସ କରନ୍ତି' ।

**କ୍ରାଙ୍ଗାନୂରରେ ସାଧୁ ଥୋମାସ**

ଥୋମାସ ବୋଇତ ଚଢ଼ି ମାଲାବାର ପ୍ରତି ଯାତ୍ରା କଲେ । ଖ୍ରୀଷ୍ଟାବ୍ଦ ୫୨, ଡ଼ିସେମ୍ବର ତା ୨୧ ରିଖରେ ସେ କ୍ରାଙ୍ଗାନୂର ପହଞ୍ଚିଲେ ।

ଏଣେ ନଗରଯାକ ରାଜ-ବିବାହରେ ମାତିଛି । ନଗରରେ ନାନା ନାଚଗୀତ ଲାଗିଛି । ପ୍ରାଚ୍ୟ ସଙ୍ଗୀତର ମାଧୁରୀ ଥୋମାସଙ୍କୁ ଏକାବେଳକେ ମୁଗ୍ଧ କରି ପକାଇଲା । ସେ ନଗର ପ୍ରତି ଚାଲିଲେ । ହଠାତ୍ ସେ ଦେଖଣାହାରୀଙ୍କ ମଝିରେ ଯାଇ ଠିଆହେଲେ । ବିଦେଶୀଙ୍କ ଉପସ୍ଥିତିରେ ରକ୍ଷଣଶୀଳ ଲୋକମାନେ ବରକନ୍ୟାଙ୍କ ଅଶୁଭ ମଣିଲେ । ପଣ୍ଡାପୁରୋହିତ 'ମାରା ହେଲା, ମାରା ହେଲା' ପାଟି ଛାଡ଼ିଲେ । ରାଜପରିବାର ପ୍ରମାଦ ଗଣିଲେ । ଜଣେ ରାଜପରିଚାରକ ଆସି ଥୋମାସଙ୍କୁ ଗୋଟିଏ ଚାପଡ଼ା ଦେଲା । ଦିବ୍ୟ ଗୁରୁଙ୍କର ଶିଷ୍ୟ ସେ; ତାହାଙ୍କର ଶିକ୍ଷା ଓ ଆଦର୍ଶ ପାଳିବାର ସୁଯୋଗ ସେ ମନେ କଲେ । ଧୀର ଚିତ୍ତରେ ସେଠାରୁ ସେ ଚାଲିଗଲେ ।

କିଛି କାଳ ପରେ ରାଜସଭାରେ ଚହଳ ପଡ଼ିଗଲା । ଗୋଟିଏ ଭୀଷଣାକୃତିର କୁକୁର କୁଆଡୁ ଏକ ମଣିଷ ହାତ କାଟି ଆଣି ସଭା ମଝିରେ ପକାଇ ଦେଇ କାହିଁ ଉଭେଇଗଲା ଲୋକ ଚିହ୍ନିଲେ ଯେ ସେ ହାତଟା, ଯେ ଲୋକ ଥୋମାସଙ୍କୁ

ମାରିଥିଲା, ତା'ରି ସନ୍ଧାନ କରି ଜାଣିଲେ ଯେ ଲୋକଟି ମରିଯାଇଛି । ସଙ୍ଗେ ସଙ୍ଗେ ଥୋମାସଙ୍କ ଖୋଜା ପଡ଼ିଲା । ରାଜା ଥୋମାସଙ୍କୁ ସସମ୍ମାନ ଗ୍ରହଣ କଲେ। ଥୋମାସ ରାଜପରିଚାରକଟିର ଶବ ଅଣାଇ ତାକୁ ଜୀଆଁଇ ଦେଲେ । ଏଥିରେ ରାଜସଭା ମୁଗ୍ଧ ହୋଇଗଲା । ରାଜପରିବାର ଅସଂଖ୍ୟ ପ୍ରଜାଙ୍କ ସହ ଧର୍ମରେ ଦୀକ୍ଷିତ ହୋଇଥିଲେ ।

## ପାଲାୟୁରରେ ସାଧୁ ଥୋମାସ

କ୍ରାଙ୍ଗାନୂର ନଗରରେ କ୍ରୁଶ ସ୍ତମ୍ଭରୂପ ଖ୍ରୀଷ୍ଟୀୟ ବିଜୟ କେତନ ସ୍ଥାପନ କରି ଥୋମାସ ପାଲୟୂର ଚାଲିଲେ । ନଗରଟି ନମ୍ବୁଦିରୀ ନାମକ ଅତି ନୈଷ୍ଠିକ ବ୍ରାହ୍ମଣମାନଙ୍କ କେନ୍ଦ୍ର ଥିଲା ନଗର ମୁଣ୍ଡରେ ଗୋଟିଏ ବଡ଼ ପୋଖରୀ । ବେଳ ଉଇଁ ଆସୁଛି । ବ୍ରାହ୍ମଣମାନେ ତର୍ପଣ କରିବାରେ ଲାଗିଛନ୍ତି । ତେବେ ଥୋମାସ ଯାଇ ସେଠାରେ ପହଞ୍ଚିଲେ । ସେତେବେଳେ ସେମାନେ ସୂର୍ଯ୍ୟର ଉପାସନା କରିବାରେ ଓ ଉପରକୁ ବାରମ୍ବାର ଜଳ ଅଞ୍ଜଳିଦ୍ୱାରା ଫିଙ୍ଗିବାରେ ରତ । ଥୋମାସ ସେମାନଙ୍କୁ କହିଲେ । "ବୃଥା ଶ୍ରମ ! ସୂର୍ଯ୍ୟ ତ ସୃଷ୍ଟ ବସ୍ତୁ, ତା'ଠୁଁ ବା କି ମୁକ୍ତି ମିଳିବ ? ତୁମ ଜଳାଞ୍ଜଳିରେ ବା କାହାର ତୃପ୍ତି ? ତାହା ତ କେହି ଘେନି ନ ଥାଏ ! ଦେଖୁନ, ତାହା ପୁଣି ତଳେ ପଡ଼ିଯାଏ ?" ଦେଖୁଁ ଦେଖୁଁ ବ୍ରାହ୍ମଣମାନଙ୍କ ସହ ଥୋମାସଙ୍କ ବଡ଼ ବାଦାନୁବାଦ ଲାଗିଗଲା । ପରିଶେଷରେ ସମସ୍ତେ ଶପଥ କରି କହି ଉଠିଲେ, "ତୋ ଜଳ ତଳେ ନ ପଡ଼ିଲେ, ଆମେ ତୋ ଦେବତାର ପୂଜା କରିବୁଁ, ନଚେତ୍ ଏହିକ୍ଷଣ ତୋ ପ୍ରାଣ ଗଲା !" ଥୋମାସ ସେମାନଙ୍କ ପଣ ଗ୍ରହଣ କଲେ । ସେ ଉପରକୁ କିଛି ସମୟ ସ୍ଥିର ଦୃଷ୍ଟିରେ ଚାହିଁ ରହିଲେ । ସେ ପୋଖରୀକୁ ଓହ୍ଲାଇ ଦୁଇ ହାତରେ ଅଞ୍ଜଳାଏ ଜଳ କାଢ଼ି ଉପରକୁ ଫିଙ୍ଗି ଦେଲେ । ଜଳ ସିଧା ଉପରେ ଉଠି ବଡ଼ ବଡ଼ ବିନ୍ଦୁ ଆକାରରେ ବିଭକ୍ତ ହୋଇଗଲା । ସମସ୍ତେ ଏକ ଲୟରେ ଚାହିଁ ରହିଛନ୍ତି । ବିନ୍ଦୁ ଗୁଡ଼ିକ ଅରୁଣ କିରଣର କୋମଳ ସ୍ପର୍ଶରେ ନୀଳ, ଲୋହିତ, ପୀତ ଆଦି ସପ୍ତ ରଙ୍ଗରେ ରଞ୍ଜିତ ମେଘଧନୁର ଛଟା ଦେଖାଇ ବୈଦୁର୍ଯ୍ୟ-ମଣି ମାଣିକ୍ୟ ଭଳି ଆକାଶ ପୃଥିବୀ ମଝିରେ ମୁହୂର୍ତ୍ତକ ପାଇଁ ବୁଲିବାକୁ ଲାଗିଲେ । ତେବେ ସମସ୍ତେ ମନେ ମନେ କହିଲେ, "ଏକ୍ଷଣି ତଳକୁ ଖସିବ ! କିନ୍ତୁ ଏ କଣ ? ତାହା ଯେ ଉର୍ଦ୍ଧ୍ୱମୁଖ ହେଲାଣି ! କି ବିଚିତ୍ର, ତାହା ଯେ ଗୋଟିଏ ପୁଷ୍ପରଥ ଭଳି ଦିଶୁଛି, ଆକାଶ ମାର୍ଗରେ

ଚାଲିଛି !” ସମସ୍ତେ ଚିତ୍ରର୍ପିତ ପ୍ରାୟ ହୋଇ ରହିଲେ । ଅନେକ ସମୟ ପରେ ସେମାନେ ଚେତନା ପାଇ ପୋଖରୀ ପ୍ରତି ଚାହିଁ ଦିଅନ୍ତି ତ, ଆଉ ଗୋଟିଏ ଆଶ୍ଚର୍ଯ୍ୟ ! ପ୍ରଶାନ୍ତ ସୁ ସ୍ଥିର ପୋଖରୀ ଜଳରେ ସେହି ଅଞ୍ଜଳାଏ ଜଳର ଗୋଟିଏ ଗାତ ! ମୁଗ୍ଧ ଚକିତ ବ୍ରାହ୍ମଣମାନେ ଥୋମାସଙ୍କ ପାଦତଳେ ପଡ଼ିଗଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଧର୍ମବିଶ୍ୱାସ ପାଇଥିଲେ । ସେହି ପୋଖରୀ ଜଳରେ ସେମାନେ ଥୋମାସଙ୍କଠାରୁ ସ୍ନାନ ଗ୍ରହଣ କରିଥିଲେ ।

ତେବେ ଅବଶିଷ୍ଟ ବ୍ରାହ୍ମଣମାନେ ସେହି ସ୍ଥାନକୁ ଅଭିଶପ୍ତ ବା ମାରା ହେଲା କହି ସ୍ଥାନ ଛାଡ଼ି ପଳାଇଲେ । ସେ ଅବଧି ସେଠାର ଦେଉଳ ଭଜନାଳୟ ଭାବରେ ଆଜି ସୁଦ୍ଧା ବ୍ୟବହୃତ ହୋଇଥାଏ ।

## ମାଲାବାର ଧର୍ମ ପ୍ରତିଷ୍ଠାରେ ସାଧୁ ଥୋମାସ

ଅପୂର୍ବ ସତ୍ୟ ଶିଖାଇ ଓ ଅଦ୍ଭୁତ ଶକ୍ତି ଦେଖାଇ ଥୋମାସ ମାଲାବାରର ଦୈର୍ଘ୍ୟ ପ୍ରସ୍ଥରେ ଖ୍ରୀଷ୍ଟୀୟ ବିଜୟ ଧ୍ୱଜା ଉଡ଼ାଇବାକୁ ଲାଗିଲେ । ଛ’ଟି ବର୍ଷ ଭିତରେ ସେ ଦେଶର ସର୍ବତ୍ର ଧର୍ମ ପ୍ରଚାର କରିଥିଲେ । ତେବେ ଏପରି ଗ୍ରାମ ବା ନଗର ନ ଥିଲା, ଯେଉଁଠି ଲୋକ ସତ୍ୟ ଧର୍ମର ଆଲୋକ ପାଇ ନ ଥିଲେ । କି ଉଚ୍ଚ କି ନୀଚ ସବୁ ଜାତିର ଲୋକ ଥୋମାସଙ୍କ ଶିଷ୍ୟ ହୋଇଥିଲେ ।

ଥୋମାସ କ୍ରାଙ୍ଗାନୂର, ପାଲୟୁର ପ୍ରଭୃତି ସାତଟି ମଣ୍ଡଳୀ ଗଠନ କରି ପୁରୋହିତଶ୍ରେଣୀ ନିଯୁକ୍ତ କଲେ । ମଠ ଭଜନାଳୟ ଆଦି ନିର୍ମାଣ କରାଇ ପ୍ରତ୍ୟେକ ସ୍ଥାନରେ ଖ୍ରୀଷ୍ଟଙ୍କର ଜୟ ନିଶାଣ କୃଶସ୍ତମ୍ଭମାନ ପ୍ରତିଷ୍ଠା କଲେ । ତାଙ୍କ ପରିଶ୍ରମର ଫଳ ସ୍ୱରୂପ ତାଙ୍କୁ ସ୍ୱର୍ଗୀୟ ଆନନ୍ଦର ଆଭାସ ଦେବା ପାଇଁ ଈଶ୍ୱରଙ୍କଠାରୁ ବିଧାନ ହୋଇଥିଲା । ସାଧ୍ୱୀ କୁମାରୀ ମାରୀୟା ତାଙ୍କୁ ମାଲେୟାଟୁରଠାରେ ଦର୍ଶନ ଦେଇଥିଲେ । ମଇଲାପୁର ବର୍ତ୍ତମାନ ଏକତମ ଖ୍ରୀଷ୍ଟୀୟାନ ତୀର୍ଥସ୍ଥାନ ହୋଇ ରହିଛି । ପ୍ରତିବର୍ଷ ସେଠାରେ ଲକ୍ଷ ଲକ୍ଷ ତୀର୍ଥଯାତ୍ରୀ ଗୁଣ୍ଡ ହୋଇଥାନ୍ତି । ସେମାନେ ସେହି ପୁଣ୍ୟ ସ୍ଥାନ ଓ ଅତୀତର ମୂକସାକ୍ଷୀ ହୋଇ ରହିଥିବା ଥୋମାସଙ୍କ କ୍ରୁଶ ଦର୍ଶନ କରି ଜୀବନ ସାର୍ଥକ ମଣିଥାନ୍ତି ।

## ମଇଲାପୁରରେ ସାଧୁ ଥୋମାସ

ଥୋମାସଙ୍କ କାଳରେ ବାଣିଜ୍ୟ ଭାରତର ଦକ୍ଷିଣ-ପଶ୍ଚିମ ଉପକୂଳରେ ଯେପରି ଚଳୁଥିଲା ; ଦକ୍ଷିଣ-ପୂର୍ବ ଉପକୂଳରେ ମଧ୍ୟ ସେହିପରି ଚଳୁଥିଲା । ଉଭୟ ଉପକୂଳକୁ ଜଳପଥରେ ଓ ପାଲଘାଟ ଦେଇ ସ୍ଥଳପଥରେ ଯାତାୟାତ ହୋଇ ପାରୁଥିଲା । ଥୋମାସ ସେହି ବାଣିଜ୍ୟ ପଥମାନ ଦେଇ ଆତ୍ମାମାନଙ୍କ ମୁକ୍ତି ବାଣିଜ୍ୟ କରିବାରେ ଲାଗିଲେ । ତେବେ ସେ ପୂର୍ବ ଉପକୂଳରେ ଆସି ମଇଲାପୁରରେ ପହଞ୍ଚିଲେ । ସେତେବେଳେ କନ୍ଦପ ରାଜା ସେଠାରେ ରାଜତ୍ୱ କରୁଥାନ୍ତି ।

ଦିନେ ରାଜା ଶୁଣିଲେ ଯେ, କୂଳ ନିକଟରେ ଗୋଟିଏ ମସ୍ତବଡ଼ କଡ଼ିକାଠ ଭାସୁଛି । ସଙ୍ଗେ ସଙ୍ଗେ ରାଜାଙ୍କ ଆଦେଶ ହେଲା ଯେ କାଠଟି ଉଦ୍ଧାର କରାଯିବ । ଅସଂଖ୍ୟ କେଉଟ କାର୍ଯ୍ୟରେ ହାତଦେଲେ । ବହୁଚେଷ୍ଟା ସତ୍ତ୍ୱେ ତାହା ହାତେସୁଦ୍ଧା କୂଳକୁ ଘୁଞ୍ଚିଲା ନାହିଁ । ଅନେକ କଳକୌଶଳ ପ୍ରୟୋଗ ହେଲା, ହାତୀଦଳ ମଧ୍ୟ ଲଗାଇ ଦିଆଗଲା ; କିଛି ଫଳ ହେଲା ନାହିଁ । ପରିଶେଷରେ ରାଜା କେଜାଣି କାହିଁକି ଥୋମାସଙ୍କୁ ଛାମୁରେ ଡ଼କାଇ ତାଙ୍କ ସାହାଯ୍ୟ ଲୋଡ଼ିଲେ । ଥୋମାସ ସିଧା କାଠପାଖକୁ ଚାଲିଲେ । ସମସ୍ତେ କୂଳରେ ଠିଆହୋଇ ଚାହିଁଥାନ୍ତି । ସେ ନିଜ ଅଣ୍ଟା ବନ୍ଧନୀର ଗୋଟିଏ ମଙ୍ଗରେ ଗଣ୍ଡିଟାକୁ ବାନ୍ଧି ଦେଇ କୂଳକୁ ଚାଲିବାକୁ ଲାଗିଲେ । ତେବେ କାଠଟି ଅନାୟାସରେ ତାଙ୍କ ପଛରେ ଖସି ଖସି ଚାଲିଛି । ତାହା ଦେଖି ଲୋକସମୂହ ଏକବାର ଅବାକ୍ ହୋଇଗଲେ । ଥୋମାସ ରାଜାଗୁରୁ ନିଯୁକ୍ତ ହେଲେ । ସେ ଅବଧି ଅନେକ ଲୋକ ଥୋମାସଙ୍କ ଶିଷ୍ୟ ହୋଇଥିଲେ । ଆଉ ସେ କାଠଟି ଭଜନାଳୟ ନିର୍ମାଣରେ ବ୍ୟବହୃତ ହୋଇଥିଲା ।

## ମାନ୍ଦ୍ରାଜରେ ସାଧୁ ଥୋମାସ

ଥୋମାସ କନ୍ଦପ ରାଜାଙ୍କ ଆନୁକୂଲ୍ୟରେ ପୁରାତନ ମଇଲାପୁରର କିଛି ଦୂର ପଶ୍ଚିମରେ ଗୋଟିଏ ମଠ ବା ବାସ ନିର୍ମାଣ କରିଥିଲେ । ତାହା ବେଥ୍‌ଥୁମା ବା ଥୋମାବାସ ନାମରେ ପରିଚିତ ଥିଲା । ସେତେବେଳେ ତାହା ଥୋମାସଙ୍କ ଧର୍ମଶିଷ୍ୟମାନଙ୍କ ଶିକ୍ଷାକେନ୍ଦ୍ର ହୋଇଥାଏ । ଏଣୁ ତାହା ମଦ୍ରାଶା ବା ପାଠଶାଳା ନାମରେ ମଧ୍ୟ ବିଦିତ ଥିଲା ଆଧୁନିକ ମାନ୍ଦ୍ରାଜ ତାହାର ଅପଭ୍ରଂଶ । ଅଧୁନା ମାନ୍ଦ୍ରାଜ ମଇଲାପୁରରୁ ପୃଥକ୍ ହୋଇ ଏକ ବୃହତ୍ ଆକାର ଧାରଣ କରିଛି । ଥୋମାସଙ୍କ

ଭବିଷ୍ୟତ ବାଣୀ ଅନୁଯାୟୀ ପୁରାତନ ମଇଲାପୁର ସମୁଦ୍ର ଗର୍ଭସାତ୍ ହୋଇଯାଇଛି । ଥୋମାବାସକୁ ପର୍ତ୍ତୁଗୀଜମାନେ 'ଥୋମାସଙ୍କ ମଇଲାପୁର' ନାମ ଦେଇଥିଲେ । ସେ ଅବଧି ତାହା ମଇଲାପୁର ନାମ ଧରି ଗୋଟିଏ ଛୋଟ ନଗର ହୋଇ ଉଠିଛି । ତେବେ ଶତ ଶତ ଲୋକ ତାଙ୍କ ନିର୍ବିକାର ସୌମ୍ୟମୂର୍ତ୍ତି ଦ୍ୱାରା ଆକୃଷ୍ଟ ହୋଇ ତାଙ୍କ ଶିକ୍ଷାକେନ୍ଦ୍ରକୁ ଆସୁଥାନ୍ତି । ବହୁଲୋକ ତାଙ୍କ ଉପଦେଶ ଓ କୋମଳ ସ୍ୱଭାବରେ ମୋହିତ ହୋଇ ସତ୍ୟ ଧର୍ମରେ ଦୀକ୍ଷିତ ହେଉଥାନ୍ତି । ଅଳ୍ପକାଳ ମଧ୍ୟରେ ଥୋମା ସେଠାରେ ଏକ ସୁଦୃଢ଼ ଖ୍ରୀଷ୍ଟୀୟାନ ମଣ୍ଡଳୀ ଗଢ଼ିଲେ । ପରେ ସେ ପୁରପଲ୍ଲୀରେ ଧର୍ମର ବ୍ୟାପକ ପ୍ରଚାର ପାଇଁ ବାହାରି ପଡ଼ିଲେ ।

**ବ୍ରାହ୍ମଣଙ୍କ ଷଡ଼ଯନ୍ତ୍ରରେ ସାଧୁ ଥୋମାସ**

ଖ୍ରୀଷ୍ଟୀୟାନ ଧର୍ମ ଦାବାଗ୍ନି ଭଳି ଦକ୍ଷିଣ-ଭାରତରେ ସର୍ବତ୍ର ପ୍ରସାରିତ ହୋଇ ଯାଉଛି । କି ବ୍ରାହ୍ମଣ, କି ଚଣ୍ଡାଳ, କି ରାଜା, କି ପ୍ରଜା, କି ଧନୀ, କି ନିର୍ଦ୍ଧନ ସତ୍ୟ ଧର୍ମ ଗ୍ରହଣ କରି ଜୀବନ ସାର୍ଥକ ମଣୁଛନ୍ତି । ତଥାପି ଅଣଖ୍ରୀଷ୍ଟୀୟାନ ରାଜାମାନଙ୍କଠାରେ ଥୋମାସଙ୍କ ପ୍ରତି ପରିହାସ ନ କରି ବରଂ ଶ୍ରଦ୍ଧା ବଢୁଛି । ଏହା ଦେଖି, ତେବେ, ପଣ୍ଡା ପୁରୋହିତଙ୍କ ମଧ୍ୟରେ ହାହାକାର ପଡ଼ିଗଲା । ସେମାନଙ୍କ ଜୀବିକା ନିର୍ବାହ ପନ୍ଥାରେ ସଂକଟ ପଡ଼ିଗଲାଣି । ସମସ୍ତେ ପ୍ରମାଦ ଗଣିଲେ । ବିଳମ୍ବରେ ସର୍ବନାଶ ! ପୁରୋହିତମାନଙ୍କ ନେତା 'ମୂଳୁ ମାଇଲେ ଯିବ ସରି' ଭାବିଲା । ସେ ଗୋଟିଏ କ୍ରୁର ଉପାୟ ପାଞ୍ଚିଲା । ଆପଣା ପୁଅଟିକୁ ସେ ଆପେ ହତ୍ୟାକଲା; ଥୋମାସଙ୍କ ଉପରେ ଦୋଷାରୋପ କରି ରାଜାଙ୍କ ଛାମୁରେ ସେ ଅଭିଯୋଗ କଲା । ମିଥ୍ୟା ସାକ୍ଷୀ ବି ସୁବିଧାରେ ମିଳି ଗଲେ । ଥୋମାସ ରାଜାଙ୍କ ନିକଟରେ ନିଜ ନିର୍ଦ୍ଦୋଷତା ଜଣାଇ ଗୁହାରୀ କଲେ; କିନ୍ତୁ ସେ ଶୁଣିଲେ ନାହିଁ । ତେବେ ସେ ସ୍ୱର୍ଗର ରାଜାଙ୍କ ନିକଟରେ ଗୁହାରୀ କଲେ, ଆଉ ସେ ଶୁଣିଲେ । ତେବେ ଥୋମାସ ସେହି ମୃତ ବାଳକକୁ ଜୀଁ ଉଠି ତଥ୍ୟ ପ୍ରକାଶ କରିବାକୁ ଆଦେଶ ଦିଅନ୍ତି । ବାଳକଟି ଜୀଁ ଉଠି ଓ ପ୍ରକାଶ କରନ୍ତି ଯେ ତା'ରି ବାପା ତା' ଘାତକ ! ସମସ୍ତେ ସ୍ତମ୍ଭୀଭୁତ ହୋଇଗଲେ ।

## ଶତ୍ରୁ ସଂକଟରେ ସାଧୁ ଥୋମାସ

ଥୋମାସ ଯେତେ ଅଦ୍ଭୁତ ଲକ୍ଷଣ ଦେଖାଉଥାନ୍ତି, ସେହି ପାପାନ୍ଧମାନଙ୍କ ହୃଦୟ ସେତେ ହିଁ କଠିନରୁ କଠିନତର ହୋଇ ଯାଉଥାଏ । ଯଦିଓ ସେ ରାଜାଙ୍କ ପ୍ରିୟ ଥିଲେ, ତଥାପି ପୁରୋହିତ ମାନଙ୍କ ପ୍ରରୋଚନାରେ ମନ୍ତ୍ରୀମାନେ ଅନେକ ବାର ତାଙ୍କ ପ୍ରତି ଗୃହମଧ୍ୟରେ ଦୁର୍ବ୍ୟବହାର କରି ବିନାଶ ଚେଷ୍ଟା କରୁଥାନ୍ତି । ଖ୍ରୀଷ୍ଟୀୟାନମାନଙ୍କ ଅନୁରୋଧରେ ଥୋମାସ ତିନି କୋଶ ଦୂରରେ ଥିବା ଗୋଟିଏ ଛୋଟ ପାହାଡ଼ର ଆଶ୍ରୟ ନେଲେ । ସେଠାରେ ଏକ ସାନ ଗାତଭିତରେ ସେ ଲୁଚି ରହୁଥାନ୍ତି । ସେଠାକୁ ଲୋକ ତାଙ୍କ ଉପଦେଶ ଶୁଣିବାକୁ ଗୋପନରେ ଆସୁଥାନ୍ତି। ଲୋକଙ୍କ ତୃଷା ନିବାରଣ ପାଇଁ ସେ ଦିନେ ପଥର ଉପରେ ଆଘାତ କରି ଅଦ୍ଭୁତ ଭାବରେ ଏକ ଜଳସ୍ରୋତ ବାହାର କରି ଦେଇଥିଲେ । ଝରଣାଟି ବର୍ତ୍ତମାନ ସୁଦ୍ଧା ଅଜସ୍ର ବହିଚାଲିଛି । ଛୋଟ ପାହାଡ଼ରେ ପୁଣ୍ୟସ୍ଥାନଗୁଡ଼ିକ ବର୍ତ୍ତମାନ ଭଜନାଳୟମାନ ଗଢ଼ା ଯାଇ ସୁରକ୍ଷିତ ହୋଇଛି ।

## ବଡ଼ ପାହାଡ଼ରେ ସାଧୁ ଥୋମାସ

ଛୋଟ ପାହାଡ଼ରେ ଥୋମାସ ଯେଉଁ ଜୀବନ କଟାଉଥାନ୍ତି, ତାହା ଜୀବନ ନୁହେ, ଜୀବନ୍ତ ମରଣ ! ତଥାପି ସେ ଈଶ୍ୱରଙ୍କ ଗୌରବ ପାଇଁ ଅଧିକ କିଛି କାଳ ବଞ୍ଚି ରହିବା ଆପଣାର ଶ୍ରେୟ ମଣୁ ଥିଲେ । ଛୋଟ ପାହାଡ଼ର ଅନତିଦୂରରେ ବଡ଼ ପାହାଡ଼ । ଛୋଟ ପାହାଡ଼ରେ ନିଜ ଜୀବନ ନିରାପଦ ନୁହେ ଜାଣି ସେ ବଡ଼ ପାହାଡ଼ ଚଢ଼ିଲେ । ଏଣେ ସେତେବେଳେ ରାଜା ମହାଦେବ ରାଜ୍ୟର ରାଜା ହୋଇଥାନ୍ତି। ସେ ମଧ୍ୟ ଥୋମାସଙ୍କୁ ମହାପୁରୁଷ ଜ୍ଞାନ କରି ଭକ୍ତି କରୁଥାନ୍ତି । ମନ୍ତ୍ରୀ ପୁରୋହିତ କିନ୍ତୁ ଏତେ ଚେଷ୍ଟା କରି ସୁଦ୍ଧା ଥୋମାସଙ୍କୁ ବିନାଶ କରି ନ ପାରିବାରୁ କ୍ଷିପ୍ତ ପ୍ରାୟ ହୋଇ ଯାଉଥାନ୍ତି ।

ଥୋମାସ ଯେତେ ଅଧିକ ଲୁଚିଲେ, ଅନ୍ଧାରର ଶକ୍ତି ସେତେ ଅଧିକ ପ୍ରବଳ ହେଲା । ଥୋମାସ ଯେତେ ଦୂରକୁ ପଳାଇଲେ, ସେହି କାପୁରୁଷମାନେ ସେତେ ଅଧିକ ତାଙ୍କୁ ଗୋଡ଼ାଇଲେ । ତେବେ ସେମାନେ ସ୍ୱପ୍ନରେ ସୁଦ୍ଧା ଭାବୁ ନ ଥାନ୍ତି ଯେ ଥୋମାସଙ୍କ ସେ ପ୍ରକାର ଆଚରଣ ମରଣ ଭୟରେ ନୁହେ, କିନ୍ତୁ ଆତ୍ମମାରଣ ବା ତ୍ୟାଗ ସ୍ୱୀକାରରେ ନିୟନ୍ତ୍ରୀତ । ସେ ଯାହା ହେଉ, ଅତ୍ୟାଚାରୀମାନଙ୍କର ଉପଦ୍ରବ

ଯେତେ ଅସହ୍ୟ ହେଲେହେଁ ଥୋମାସ ସେ ସ୍ଥାନ ଛାଡ଼ି ଅନ୍ୟ ନୂଆ ସ୍ଥାନର ଆଶ୍ରୟ ନେବାକୁ ଇଚ୍ଛୁକ ହୋଇ ନ ଥିଲେ । ତାହାହିଁ ତାଙ୍କ ଶେଷ ଆଶ୍ରୟ ହୋଇଥିଲା ।

## ସତ୍ୟ ଧର୍ମର ସାକ୍ଷ୍ୟରେ ସାଧୁ ଥୋମାସ

କାଲଭରୀ ପର୍ବତରେ ପ୍ରଭୁ ଆତ୍ମା ବଳିଦାନ କଲେ । ତାହାଙ୍କର ସୁଯୋଗ୍ୟ ଶିଷ୍ୟ ଥୋମାସ ବଡ଼ ପାହାଡ଼ରେ ବଳି ଦିଆଯାଇ ଧର୍ମର ସାକ୍ଷୀ ହେଲେ । ଥୋମାସଙ୍କୁ ଗୋପନରେ ହତ୍ୟା କରିବା ପାଇଁ ରାଜା ମହାଦେବଙ୍କ ମନ୍ତ୍ରୀ ପୁରୋହିତମାନଙ୍କଠାରୁ ଅନେକ ଗୁପ୍ତଚର ନିଯୁକ୍ତ ହୋଇଥିଲେ । ସେମାନଙ୍କ ଏକମାତ୍ର ଲକ୍ଷ୍ୟ ଥାଏ ଯେ, ରାଜାଙ୍କ ଅଗୋଚରେ କିପରି ସେମାନଙ୍କ ଦୁରଭିସନ୍ଧି ପୂର୍ଣ୍ଣ ହୋଇଯିବ ।

୬୮ ଖ୍ରୀଷ୍ଟାବ୍ଦ, ଜୁଲାଇ ତା ୩ ଖରେ ଯେତେବେଳେ ଥୋମାସ ନିଜ ପ୍ରସ୍ତରଖୋଦିତ କ୍ରୁଶ ସମ୍ମୁଖରେ ଜାନୁପାତ କରି ଧ୍ୟାନମଗ୍ନ ଅଛନ୍ତି, ଶୂଳହାତରେ ଜଣେ ଆତତାୟୀ ଗୋପନରେ ଆସି ତାଙ୍କ ପାର୍ଶ୍ୱକୁ ବିଦୀର୍ଣ୍ଣ କଲା । ଥୋମାସ କ୍ରୁଶକୁ ଆଲିଙ୍ଗନ କରି ପଡ଼ିଲେ । ସତ୍ୟ ଧର୍ମପାଇଁ ସେ ଜୀବନ ଆହୁତି ଦେଲେ । ପ୍ରାଣ ଦେଇ ସେ ସତ୍ୟର ପ୍ରମାଣ କଲେ । ନିଜ ସାକ୍ଷ୍ୟକୁ ସେ ନିଜ ଜୀବନ୍ତ ରକ୍ତରେ ମୁଦ୍ରିତ କଲେ ।

## କାଲାମୀନ୍‌ରେ ସାଧୁ ଥୋମାସ

ମହାପୁରୁଷଙ୍କ ସେହି ହତ୍ୟାକାଣ୍ଡ ଦେଖୁଁ ଦେଖୁଁ ଚାରିଆଡ଼େ ପ୍ରଚାରିତ ହୋଇଗଲା । ସମଗ୍ର ଦେଶ ବିଷାଦ ଛାୟାରେ ଆବୃତ ହୋଇଗଲା । ଶିଷ୍ୟମାନେ ବିଭିନ୍ନ ସ୍ଥାନରୁ ଶେଷଥର ପାଇଁ ଗୁରୁଙ୍କ ମୁଖଦର୍ଶନ କରିବାକୁ ପର୍ବତ ଶିଖରକୁ ଧାଇଁଲେ । ଥୋମାସ ନିଜ ପ୍ରିୟ ଶିଷ୍ୟମାନଙ୍କୁ ନିଜ ଚରମ ଉପଦେଶ, ସ୍ୱର୍ଗୀୟ ସମ୍ବାଦ ଦେବା ଆଶାରେ ଆହୁରି ପ୍ରାଣ ଛାଡ଼ି ନ ଥିଲେ । ବ୍ୟଥିତ ଚିତ୍ତ ଓ ସାଶ୍ରୁଲୋଚନରେ ଶିଷ୍ୟମାନେ ଥୋମାଙ୍କୁ ଘେନି ପର୍ବତ ଓହ୍ଲାଇଲେ, ଥୋମାବାସ ଅଭିମୁଖରେ ଚାଲିଲେ ।

ବଡ଼ ପାହାଡ଼ର ତିନି ମାଇଲ୍ ଦୂରରେ କାଲାମୀନ୍‌ର ଗ୍ରାମ ଅବସ୍ଥିତ ଥାଏ । ଶିଷ୍ୟମାନେ ଗୁରୁଙ୍କୁ ନେଇ ସେଠାରେ ଯେତେବେଳେ ପହଞ୍ଚିଲେ, ସେତେବେଳେ ସେଠାରେ ସହସ୍ର ସହସ୍ର ହୋଇ ଯାଇଥିଲେ । ସେମାନେ ସମସ୍ତେ ଧର୍ମସାକ୍ଷୀଙ୍କ

ପାଇଁ ଓ ତାଙ୍କ ଅନ୍ତିମ ଉପଦେଶରେ କାନକୁ ପବିତ୍ର କରିବା ପାଇଁ ଏକାବେଳକେ ମାଡ଼ି ଆସିଲେ । ତେବେ ଥୋମାସ ସେହି ଗ୍ରାମରେ ସ୍ଥଗିତ ହେବାକୁ ନିର୍ଦ୍ଦେଶ କଲେ । ସେହିଠାରେ ସେ ନିଜ ପ୍ରେରିତ୍ୟର ସୁସମାଚାର ଘୋଷଣା କଲେ । ପରିଶେଷରେ ସେ ହାତ ଉଠାଇ ସମସ୍ତଙ୍କୁ କ୍ରୁଶଚିହ୍ନ ଆକାରରେ ଆଶୀର୍ବାଦ କରି ସ୍ମିତ ପ୍ରଶାନ୍ତ ମୁଖରେ ମହାନିଦ୍ରାଗତ ହେଲେ ।

## ଥୋମାସ-ଗିରି ସ୍ମୃତିରେ ସାଧୁ ଥୋମାସ

ଧର୍ମସାକ୍ଷୀର ରକ୍ତ ଖ୍ରୀଷ୍ଟୀୟାନର ବୀଜ । ଖ୍ରୀଷ୍ଟଙ୍କର ସୁଯୋଗ୍ୟ ଯୋଦ୍ଧା ରୂପରେ ଥୋମାସ ନିଜ ଜୀବନରେ ଅଜ୍ଞାନ-ଅନ୍ଧକାର ବିରୋଧରେ ନିରବଧି ଯୁଦ୍ଧ କରିଥିଲେ । ସେଦିନ ଯେବେ ସେ ସେହି ବଡ଼ ପାହାଡ଼ରେ ସାଂଘାତିକ ଭାବରେ ଆହତ ହୋଇ ପଡ଼ିଲେ, ତେବେହିଁ ସେ ଶତ୍ରୁକୁ ସମ୍ପୂର୍ଣ୍ଣ ପରାସ୍ତ କଲେ । ତେବେହିଁ ଅବାଧ ଅବିଶ୍ୱାସୀମାନେ ତାଙ୍କ ଶିକ୍ଷାର ମାହାତ୍ମ୍ୟ ବୁଝିଲେ । ତେବେହିଁ ମୃତ ଥୋମାସଙ୍କ ଶିଷ୍ୟସଂଖ୍ୟା ବହୁଗୁଣିତ ହେଲା

ସେ ଅବଧି ସେହି ବଡ଼ ପାହାଡ଼ ଥୋମାସ-ଗିରି ନାମରେ ଲୋକଙ୍କ ମଧ୍ୟରେ ବିଦିତ ହେଲା । ଗୀର୍ଜା-କିରାଟୀ ଥୋମାସଗିରି ଆଜି ପର୍ଯ୍ୟନ୍ତ ଖ୍ରୀଷ୍ଟୀୟାନମାନଙ୍କ ତୀର୍ଥସ୍ଥାନ ହୋଇ ରହିଛି । ଥୋମା ଯେଉଁ ପ୍ରସ୍ତରଖୋଦିତ କ୍ରୁଶ ଉପରେ ପଡ଼ିଥିଲେ, ତାହା ଥୋମାଗିରି ଗୀର୍ଜାରେ ସୁରକ୍ଷିତ ଅଛି । ତାହା ଥୋମାସଙ୍କ ରକ୍ତବିନ୍ଦୁ ଗୁଡ଼ିକରେ ଚିରରଞ୍ଜିତ ରହି ଯାଇଛି । ବେଳେ ବେଳେ ତାହା ଅଦ୍ଭୁତ ଭାବରେ ରକ୍ତ ଓ ସ୍ୱେଦ ତ୍ୟାଗ କରିଥାଏ । ଥୋମାସଙ୍କ ରକ୍ତରେ ପବିତ୍ରୀକୃତ ସେହି ପୁଣ୍ୟସ୍ଥଳ ଦର୍ଶନ କରିବାକୁ ପ୍ରତିବର୍ଷ ଲକ୍ଷ ଲକ୍ଷ ତୀର୍ଥଯାତ୍ରୀ ରୁଣ୍ଡ ହୋଇଥାନ୍ତି । ସେହି ସ୍ୱର୍ଗତ ମହା ପ୍ରେରିତଙ୍କ ନିକଟରେ ସେମାନେ ତାଙ୍କ ରକ୍ତର ମୂଲ୍ୟ ସ୍ୱରୂପ ବିଶ୍ୱାସ ପାଇଥିବାରୁ ଆପଣା କୃତଜ୍ଞତା ଜଣାଇଥାନ୍ତି ।

## ଥୋମା-ବାସରେ ସାଧୁ ଥୋମାସ

ଥୋମାସଙ୍କ ଦେହତ୍ୟାଗ ବେଳେ କାଲାମୀନ୍ର ଗ୍ରାମକୁ ଚତୁର୍ଦ୍ଦିଗରୁ ଲୋକଧାଡ଼ି ଛୁଟିଥାନ୍ତି । ପରେ ଥୋମାସଙ୍କ ଅନ୍ତରାତ୍ମା ସ୍ୱର୍ଗାରୋହଣ କରନ୍ତେ ସେହି ବିପୁଳ ଜନତା ତାଙ୍କ ଦେହ ଘେନି ମଇଲାପୁର ପ୍ରତି ଶୋକଯାତ୍ରା କଢ଼ାଇଲେ । ମାର୍ଗରେ ସେମାନେ ଥୋମାସଙ୍କ ଦ୍ୱାରା ଶିକ୍ଷିତ ଉପଦେଶମାନ ଉଚ୍ଚାରଣ

କରୁଥାନ୍ତି । ପ୍ରାର୍ଥନାମାନ ଆବୃତ୍ତି କରୁଥାନ୍ତି, ଧର୍ମଗୀତମାନ ଗାନ କରୁଥାନ୍ତି, ସେତେବେଳେ ସେମାନେ ଗୋଟିଏ କଥା ମଧ୍ୟ ମନେ ମନେ ମନାସୁ ଥାନ୍ତି; ଭାରତ ନିମନ୍ତେ ଧର୍ମପିତାଙ୍କ ଏ ମହାତ୍ୟାଗ ବୃଥା ନ ଯାଉ ।

ଥୋମାବାସ ପାଖରେ ଏକ ଛୋଟ ଭଜନାଳୟ ଥାଏ । ଥୋମାସ ତାହା ସ୍ୱହସ୍ତରେ ତୋଳିଥିଲେ । ସେହି ଭଜନାଳୟ ମଧରେ ସାଧୁଙ୍କ ଦେହକୁ ସମାଧି ଦେଇ ସମସ୍ତେ ଶୋକସନ୍ତାପରେ ଅଥଚ ସୁଦୃଢ଼ ଧର୍ମବିଶ୍ୱାସରେ ନିଜ ନିଜ ଘରକୁ ଚାଲିଗଲେ ।

**ଅର୍ତ୍ତନାରେ ସାଧୁ ଥୋମାଙ୍କ ଅସ୍ଥି**

ସେକାଳରେ ବାଣିଜ୍ୟ ଯେପରି ପ୍ରବଳ ଗତିରେ ଚାଲିଥିଲା, ସମ୍ପତ୍ତି ଓ ସଭ୍ୟତାର ଉନ୍ନତି ସଙ୍ଗେ ସଙ୍ଗେ ଯୁଦ୍ଧ, ଲୁଣ୍ଠନ ଆଦି ମଧ ନୂଆ ପ୍ରକାର ଘେନି ଚାଲିଥିଲା । ତେବେ ଥୋମାସଙ୍କ ସମାଧି କାଳେ ଅତ୍ୟାଚାରିତ ହେବ, ଆଶଙ୍କା କରି ୨୩୨ ଖ୍ରୀଷ୍ଟାବ୍ଦ, ଡ଼ିସେମ୍ବର ତା ୨୧ ରିଖରେ ତାହା ଖୋଳାଯାଇ ଅଧିକାଂଶ ଅସ୍ଥିଙ୍କକାଳ ଏଦେଶା ନଗରକୁ ନିଆଗଲା । ସେଠାରୁ ଚୀୟକୁ ଓ ଚୀୟରୁ ଇଟାଲୀର ଅର୍ତ୍ତନା ନଗରକୁ ନିଆଯାଇ ସେଠାର ମହା ଭଜନାଳୟରେ ତାହା ସୁରକ୍ଷିତ ଅଛି ।

**ମଇଲାପୁରରେ ସାଧୁ ଥୋମାସଙ୍କ ଅସ୍ଥି**

ଥୋମାଙ୍କ ଅବଶିଷ୍ଟ ଦେହାବଶେଷ ମଇଲାପୁରରେ ସୁରକ୍ଷିତ ଅଛି । ସେଥିର କିଛି କ୍ଷୁଦ୍ରାଂଶ ଏକ ଅସ୍ଥିଧାନୀରେ ମଧ ରଖାଯାଇଅଛି । ତାହା ପ୍ରତିବର୍ଷ ଭକ୍ତମାନଙ୍କ ଦର୍ଶନ ଓ ସମ୍ମାନ ପାଇଁ ବ୍ୟବହୃତ ହୋଇଥାଏ । ସେଠାରେ ବର୍ତ୍ତମାନ ଗୋଟିଏ ବିରାଟ କାରୁକଳାଶୋଭିତ ମହାଭଜନାଳୟ ଥୋମାଙ୍କ ସ୍ମାରକ ରୂପରେ ଠିଆ ରହି ତାଙ୍କ ଭାରତ ପ୍ରେରିତ୍ୟର ଗୌରବ ଘୋଷଣା କରିଥାଏ ।

ପରମ୍ପରା କୁହେ ୭୨ ଶତାବ୍ଦୀ ଜୁଲାଇ ୩ ତାରିଖରେ ଚେନାଇର ସେହି ଛୋଟ ପାହାଡ଼ 'ଚିନ୍ନା ମାଲାଇ'ରେ ସାଧୁ ଥମାସ ଶହୀଦ ଭାବେ ମୃତ୍ୟୁବରଣ କରିଥିଲେ । ପ୍ରେରିତ ସାଧୁ ଥମାସଙ୍କ ଶରୀରକୁ ସମ୍ମାନର ସହ ତାଙ୍କ ଦ୍ୱାରା ନିର୍ମିତ ମଇଲାପୁର ଗୀର୍ଜାରେ ରାଜା ପେରୁମାଲା କବର ଦେଇଥିଲେ । ସିରିଆର ଏଡ଼େସାରେ ପ୍ରଥମେ ତାଙ୍କ ଅସ୍ଥିକୁ ନିଆଯାଇଥିଲା, ପୁଣି ଦ୍ୱାଦଶ ଶତାବ୍ଦୀରେ ସେଠାରୁ ଏସିଆ ମାଇନ୍‌ରର ଖିଅସକୁ ଅଣାଗଲା । ଖିଅସରୁ ବର୍ତମାନ

ଇଟାଲୀର ଅର୍ଟନାରେ ଅଣାଯାଇ ସେଠାରେ ସମ୍ମାନ ପ୍ରଦର୍ଶନ କରାଯାଉଛି । ୧୯୫୩ ମସିହାରେ କାର୍ଡିନାଲ୍ ତିସେରାନ୍ତ ସାଧୁ ଥମାସଙ୍କ ରେଲିକ୍ସର କିଛି ଅଂଶ ଆଣି କେରଳର କଡୁଙ୍ଗାଲୁର, ଯେଉଁଠାରେ ପ୍ରଥମେ ସେ ପ୍ରବେଶ କରିଥିଲେ ସେହି ସ୍ଥାନରେ ନିର୍ମିତ ଏକ ନୂତନ ଗୀର୍ଜାରେ ସ୍ଥାପନ କରିଛନ୍ତି, ଯାହା ପୁଣ୍ୟପିତାଙ୍କ ଦ୍ୱାରା ଅନୁମୋଦିତ ଏକ ପବିତ୍ର ତୀର୍ଥ ସ୍ଥାନ Shrine ରୂପେ ଘୋଷଣା କରାଯାଇଛି ।

***

# ସାଧ୍ୱୀ ମାରିଆ ଗରେଟି

## (୧୮୯୦-୧୯୦୨, ଜୁଲାଇ ୬)

ଇଟାଲୀ ଦେଶର ଆନ୍‌ଜିଓ ନିକଟବର୍ତୀ କରିନାଲ୍‌ଦୋ ନଗରରେ ଗରେଟି, ୧୮୯୦ ମସିହା ଅକ୍ଟୋବର ୧୬ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଓ ମାତା ବହୁତ ଗରିବ ଥିଲେ, କିନ୍ତୁ ସମସ୍ତେ ବହୁତ ପରିଶ୍ରମୀ ଥିଲେ । ଗରେଟିଙ୍କୁ ଯେତେବେଳେ ୧୦ବର୍ଷ ହେଉଥାଏ, ତାଙ୍କ ପରିବାର ରୋମ ନିକଟବର୍ତୀ ନେତ୍ତୁନକୁ ଯାଇ ବାସ କଲେ । ସେଠାରେ ରହିବା ପାଇଁ ତାଙ୍କର ବାସସ୍ଥାନ ନ ଥିଲା । ଏଣୁ ସେରେନେଲିଙ୍କ ଘରର ଗୋଟିଏ କୋଠରିରେ ମାରିଆ ଗରେଟି ଏବଂ ତା'ର ୭ଜଣ ଭାଇ ଓ ଭଉଣୀ ଏକାଠି ରହୁଥିଲେ । ମାରିଆଙ୍କ ପିତା ଲୁଇସ୍ କିଛି ଦିନ ପରେ ମୃତ୍ୟୁବରଣ କଲେ । ଲୁଇସ୍‌ଙ୍କ ମୃତ୍ୟୁ ପରେ ପରିବାରର ଅବସ୍ଥା ଆହୁରି ଶୋଚନୀୟ ହେଲା । ତାଙ୍କ ମା'ଙ୍କର ଚିନ୍ତା ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେ କିପରି ତାର ସାତୋଟି ସନ୍ତାନଙ୍କୁ ଖାଇବାକୁ ଦେବ । ଅନେକ ସମୟରେ ମା'ଙ୍କ ହତୋତ୍ସାହ ମନୋଭାବ ଦେଖି ମାରିଆ କହିଲେ, 'ମା' ସାହସ ଧର । ଆମେ ବଢ଼ୁଛୁ । ଦିନେ ନିଶ୍ଚୟ ଆମେ କାମ କରି ପରିବାରକୁ ଚଳାଇ ପାରିବୁ । କାମ ନ ପାଇବା ପର୍ଯ୍ୟନ୍ତ ପ୍ରଭୁ ଆମକୁ ଚଳାଇବେ । ମାରିଆ ବିଭିନ୍ନ ଭାବରେ ତାଙ୍କ ମା'ଙ୍କୁ ସାହାଯ୍ୟ କରୁଥାନ୍ତି । ଯେତେବେଳେ ସେମାନେ କ୍ଷେତକୁ ଯାଆନ୍ତି, ସେ ତାଙ୍କ ମା'ଙ୍କ ସାମନାରେ ରାସ୍ତା ପ୍ରସ୍ତୁତ କରନ୍ତି ଯେପରି ରାସ୍ତାରେ ଯଦି ସାପ ଥାଏ ତାର ଶବ୍ଦ ଶୁଣି ସେମାନେ ଚାଲିଯିବେ । କାରଣ, ତାଙ୍କ ମା' ସାପକୁ ବହୁତ ଭୟ କରୁଥିଲେ । ରାତ୍ରିରେ ତାଙ୍କ ମା' ଶୟନ କଲାବେଳେ ଅନ୍ୟ ଭାଇ ଓ ଭଉଣୀଙ୍କର ସେ ଯତ୍ନ ନେଉଥିଲେ । ମା' ଅନ୍ୟମାନଙ୍କର କ୍ଷେତରେ କାମ କରିବାକୁ ଗଲାବେଳେ ସେ ଘର ସଫା ଏବଂ ରୋଷେଇ କାମ କରୁଥିଲେ ।

ମାରିଆ ଯେଉଁ ସ୍ଥାନରେ ରହୁଥିଲେ, ସେଠାରୁ ଗୀର୍ଜାକୁ ଚାଲିଗଲେ ପ୍ରାୟ ଦୁଇ ଘଣ୍ଟାର ରାସ୍ତା । ମାରିଆ ଯେବେ ଗୀର୍ଜାକୁ ଯାଆନ୍ତି ସମସ୍ତଙ୍କଠାରୁ ସେ ପ୍ରଥମେ ପହଞ୍ଚନ୍ତି ଏବଂ ଯଜ୍ଞ ପରେ ସମସ୍ତଙ୍କଠାରୁ ସେ ଶେଷରେ ବାହାରନ୍ତି । ପ୍ରାୟ ଅଧିକାଂଶ ସମୟରେ ପାପସ୍ୱୀକାର କରନ୍ତି । ପ୍ରଥମଥର ଦିବ୍ୟ ପ୍ରସାଦ

ଯେତେବେଳେ ସେ ଗ୍ରହଣ କଲେ, ଯାଜକ ଜଣକ ତାଙ୍କ ପ୍ରଚାରରେ ସବୁବେଳେ ପବିତ୍ରତା ଜୀବନଯାପନ କରିବା ପାଇଁ ପରାମର୍ଶ ଦେଇଥିଲେ । ସେହିଦିନଠାରୁ ମାରିଆ ନିଜକୁ ପବିତ୍ର ରଖିବା ପାଇଁ ସର୍ବଦା ଯତ୍ନ ନେଉଥିଲେ ।

ସେହି ସମୟରେ ମାରିଆ ଗରେଟି ପରିବାର ଜନ୍ ସେରେନେଲି ପରିବାର ନିକଟରେ ବାସ କରୁଥିଲେ । ଜନ୍ ସେରେନେଲିଙ୍କ ପୁଅ ଆଲେକଜାଣ୍ଡାରଙ୍କ ବୟସ ଥିଲା ପ୍ରାୟ ୨୦ ବର୍ଷ । ତାଙ୍କ ଚରିତ୍ର ଭଲ ନ ଥିଲା । ତାଙ୍କ ବାପା ଜନ୍ ଯେଉଁ ଅଶ୍ଳୀଳ ମାଗାଜିନ୍ ବା ଛବିଗୁଡ଼ିକ ନେଇ ଆସନ୍ତି ସେଗୁଡ଼ିକୁ ଘରେ କେହି ନ ଥିଲା ବେଳେ ଆଲେକ୍‌ଜାଣ୍ଡର ଦେଖି ସମୟ ବିତାଉଥିଲେ । ସାଙ୍ଗ ସାଥୀମାନଙ୍କ ସହିତ ମିଶି ନିଶା ସେବନ ମଧ୍ୟ କରୁଥିଲେ । ଆଲେକଜାଣ୍ଡରଙ୍କ ଏହି ପ୍ରକାର ଜୀବନ ଦେଖି ମାରିଆ ସବୁବେଳେ ଭୟ କରୁଥାନ୍ତି । ଦିନେ ଆଲେକଜାଣ୍ଡାର ମାରିଆଙ୍କ ପାଖରେ ଆସି ତାଙ୍କ ସହିତ ଶୟନ କରିବା ପାଇଁ କହିଲେ । ମାରିଆ ତାଙ୍କୁ ରୋକ୍‌ଠୋକ ମନା କରିଦେଲେ । ଦଶ ଦିନ ପରେ ମାରିଆଙ୍କୁ ପୁଣି ଥରେ ସେହି ବିଷୟ ହିଁ ପଚାରିଥିଲେ । ମାରିଆ କହିଲେ, 'ଯାହା ତୁମ୍ଭେ ପଚାରୁଛ, ତାହା ପ୍ରଭୁଙ୍କ ଦୃଷ୍ଟିରେ ଘୃଣ୍ୟ' । ଏହା ପରେ ଆଲେକଜାଣ୍ଡର ମାରିଆଙ୍କୁ ଜୋର୍‌ରେ ଭିଡ଼ି ଧରିଲେ । ମାରିଆ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ତାଙ୍କଠାରୁ ଦୌଡ଼ି ପଳାଇ ଯାଇଥିଲେ ।

ସେହି ସମୟଠାରୁ ମାରିଆ ସବୁବେଳେ ଭୟରେ ରହୁଥାନ୍ତି । ତାଙ୍କ ମା'ଙ୍କୁ ଏହି ବିଷୟ କିପରି କହିବେ ତାହା ଚିନ୍ତା କରି ସେ ଦ୍ୱନ୍ଦ୍ୱରେ ରହୁଥାନ୍ତି । ମା'ଙ୍କୁ କହିବା ପାଇଁ ତାଙ୍କର ସାହସ ଆସୁ ନଥାଏ । ଆଲେକଜାଣ୍ଡାର ମାରିଆଙ୍କୁ ଭୟ ଦେଖାଇ କହିଥିଲେ ଯେ ଯଦି ସେ କେବେ ତାଙ୍କ ମା'ଙ୍କୁ କହନ୍ତି ତେବେ ସେ ତାଙ୍କୁ ପ୍ରାଣରେ ମାରିଦେବେ । ଏଣୁ ମାରିଆ ସବୁବେଳେ ହୃଦୟରେ ଦୁଃଖ ଭରି ଅଶ୍ରୁପୂର୍ଣ୍ଣ ନୟନରେ ନୀରବ ରହୁଥିଲେ । ତାଙ୍କ ହୃଦୟର ଦୁଃଖ ସେ କାହାକୁ ଖୋଲି କହିପାରୁ ନଥିଲେ । ଦିନେ ତାଙ୍କ ମା'ଙ୍କୁ କହିଲେ ମା', କାମ ପାଇଁ ବାହାରକୁ ଯାଅନାହିଁ । ଦୟାକରି ଘରେ ରୁହ । ମାରିଆ ଯେତେବେଳେ ଏହି କଥା କହୁଥାନ୍ତି, ତାଙ୍କ ଚକ୍ଷୁ ଏବଂ ସ୍ୱର ଅଶ୍ରୁରେ ପୂର୍ଣ୍ଣ ଥିଲା । ତାଙ୍କ ମାଁ ତାହା ଦେଖି ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପଚାରିଲେ

କିନ୍ତୁ କାହିଁକି ? ମାରିଆ ପୁନର୍ବାର ଅନୁରୋଧ କରି କହିଲା, ମା' ତୁମେ ଯାଅ ନାହିଁ । କିନ୍ତୁ ସେ କେବେ ହେଲେ ନ ଯିବାର କାରଣ କହିଲେ ନାହିଁ । ତାଙ୍କ ମା' ଜାଣି ପାରିଲେ ଯେ ମାରିଆଙ୍କୁ କିଛି ବିବ୍ରତ କରୁଛି । ସେହିଦିନ ସନ୍ଧ୍ୟା ସମୟରେ ମାରିଆ ତାଙ୍କର କର୍ତବ୍ୟ କରିବାରେ ଭୁଲି ଯିବାରୁ ତାଙ୍କ ମା' ତାଙ୍କୁ ଗାଳି କରିଥିଲେ । ମାରିଆ ଆଉ କେବେ ସେହିପରି କରିବି ନାହିଁ ବୋଲି କ୍ଷମା ମାଗିଥିଲେ । ତହିଁ ଆର ଦିନ ମାରିଆ ଗରେତି ଏବଂ ସେରେନେଲିଙ୍କ ପରିବାର ସମସ୍ତେ ଜୁଲାଇ ମାସର ପ୍ରଚଣ୍ଡ ଖରାରେ କାମ କରୁଥିଲେ । ବିନ୍‌ସିର ଚୋପା ବାହାର କରିବାରେ ବ୍ୟସ୍ତ ଥିଲେ । ଆଲେକ୍‌ଜାଣ୍ଡାର ମଧ୍ୟ ବଳଦ ଦ୍ୱାରା ଚଟାଣରେ ସେହି କାର୍ଯ୍ୟ କରୁଥାନ୍ତି ଏବଂ ମାରିଆଙ୍କ ଭାଇ ଓ ଭଉଣୀମାନେ ତାଙ୍କ ପଛରେ (Wagon) ଗାଡ଼ି ନେଇ ବୁଲୁଥାନ୍ତି । ଅପରାହ୍ନ ତିନି ଘଣ୍ଟା ସମୟରେ ଆଲେକଜାଣ୍ଡାର ମାରିଆଙ୍କ ମା'ଙ୍କୁ ନିଜ କାମର ଦାୟିତ୍ୱ ଦେଇ ଘରକୁ କିଛି ସମୟ ପାଇଁ ଯାଇଥିଲେ । ତାଙ୍କ ପିତା ଜନ୍‌ଙ୍କର ଜ୍ୱର ହେଉଥିବାରୁ ଘରର ବାହାରେ ଗଛ ତଳେ ବିଶ୍ରାମ ନେଉଥିଲେ । ମାରିଆ ଘରର ପାହାଚରେ ବସି ଥିଲାବେଳେ ଆଲେକଜାଣ୍ଡାର ସେହି ପାହାଚ ଦେଇ ଗଲେ କିନ୍ତୁ ମାରିଆଙ୍କୁ କିଛି କହିଲେ ନାହିଁ । ଘର ଭିତରେ ପ୍ରବେଶ କରି ବାକ୍ସରେ ଥିବା ଗୋଟିଏ ଫୁଟ ଲମ୍ବା ଆଇରନ୍ ବାହାର କଲେ । ସେହି ଆଇରନର ଗୋଟିଏ ପାର୍ଶ୍ୱ ବର୍ଛା ପରି ଅତି ତୀକ୍ଷଣ ଥିଲା । ଏହାପରେ ଆଲେକ୍‌ଜାଣ୍ଡାର ମାରିଆଙ୍କୁ ଡାକି କହିଲେ 'ମାରିଆ ଗୋଟିଏ ମିନିଟ୍ ପାଇଁ ଏଠାକୁ ଆସ' ।

ମାରିଆ କିଛି ଉତର ଦେଇପାରିଲେ ନାହିଁ, କେବଳ ଭୟରେ ଥରିବାକୁ ଲାଗିଲେ । ସେ ପାଦେ ମଧ୍ୟ ଆଗକୁ ଘୁଞ୍ଚି ପାରିଲେ ନାହିଁ । ବିଜୁଳି ପରି ମୁହୂର୍ତକ ମଧ୍ୟରେ ପାହାଚ ତଳକୁ ଓହ୍ଲେଇ ଆସି ମାରିଆଙ୍କୁ ଜାବୁଡ଼ି ଧରି ଘର ଭିତରକୁ ନେଇଗଲେ । ମାରିଆ ତାଙ୍କଠାରୁ ପଳାୟନ କରିବା ପାଇଁ ଚେଷ୍ଟା କରି କବାଟକୁ ଜୋର୍‌ରେ ଧକ୍‌କା ମାରିଲେ । ସେ ଚିତ୍କାର କରିବାକୁ ଲାଗିଲେ, କିନ୍ତୁ ସେ ରୁମାଲ୍ ଦ୍ୱାରା ମାରିଆର ପାଟିକୁ ବନ୍ଦ କରିଦେଲେ । ତଥାପି ମାରିଆ ତାଙ୍କୁ କହିଲେ, 'ଦୟାକରି ଏପରି କର ନାହିଁ । ପ୍ରଭୁ ଏହା ଚାହାନ୍ତି ନାହିଁ । ଯଦି ତୁମେ ଏହା କର, ତେବେ ତୁମର ଗୁରୁତର ପାପ ହେବ ଓ ତୁମେ ନର୍କକୁଯିବ' ।

ଶେଷରେ ସେ ବର୍ଚ୍ଛା ବାହାର କରି ତାଙ୍କୁ ଆଘାତ କରିବାକୁ ଲାଗିଲେ । ମାରିଆ ଗରେତି ଅଚେତ ହୋଇ ତଳେ ପଡ଼ିଗଲେ । ଆଲେକ୍‌ଜାଣ୍ଡାର ଭାବିଲା ବର୍ତ୍ତମାନ ମାରିଆ ମରିଯାଇଛି । ସେ ନିଜ କୋଠରୀକୁ ଚାଲିଗଲା । କିଛି ସମୟ ପରେ ମାରିଆ ବହୁତ ଚେଷ୍ଟା କରି ଘୋଷାରି ଘୋଷାରି ଦୁଆରକୁ ଆସି ଚିତ୍କାର କରି କହିଲେ, ଜନ୍ ଏଠାକୁ ଆସ, ଆଲେକ୍‌ଜାଣ୍ଡାର ମୋତେ ଆଘାତ କରିଛି । ଆଲେକଜାଣ୍ଡାର ମାରିଆଙ୍କ ସ୍ୱର ଶୁଣିବା କ୍ଷଣି ପୁଣି ଥରେ ଦୌଡ଼ି ଯାଇ ତାଙ୍କ ଗଳାକୁ ଭିଡ଼ି ଧରିଲେ ଏବଂ ଚଉଦ ଥର ତାଙ୍କ ଶରୀରକୁ ବର୍ଚ୍ଛାରେ ଚୋଟ ଦେଲେ । ମାରିଆଙ୍କ ଭାଇ ମାରିଆନ୍ ସେହି ଶବ୍ଦ ଶୁଣି ଦୌଡ଼ିଗଲେ ଏବଂ ସେହି ଭୟଙ୍କର ଦୃଶ୍ୟ ଦେଖି ନ ପାରି ପଛକୁ ଫେରିଲେ । ଯେତେବେଳେ ମାରିଆଙ୍କ ମା' ଏବଂ ପଡ଼ୋଶୀମାନେ ସେଠାରେ ପହଞ୍ଚିଲେ, ମାରିଆ ଟିକିଏ ଚେତା ପାଇଥିଲେ । ତାଙ୍କ ମା' ସେହି ଦୃଶ୍ୟ ଦେଖି ମୂର୍ଚ୍ଛା ହୋଇ ତଳେ ପଡ଼ିଗଲେ । ଚେତା ଫେରି ପାଇଲା ପରେ ତାଙ୍କ ମା' ପଚାରିଲେ, ଝିଅ ତୋତେ ଏହିପରି କିଏ କଲା ? ମାରିଆ କହିଲେ, 'ଆଲେକ୍‌ଜାଣ୍ଡାର' । ମା' ପୁଣି ପଚାରିଲେ, କାହିଁକି ସେ ତୋତେ ଏହିପରି କଲା ? ମାରିଆ ଉତରରେ କହିଲେ, 'ସେ ମୋ ସହିତ ଶୟନ କରିବା ପାଇଁ ବାଧ୍ୟ କଲା, କିନ୍ତୁ ମୁଁ ସେଥିରେ ରାଜି ହେଲି ନାହିଁ ।

ସେହି ସମୟରେ ପୋଲିସ୍ ଆସି ଆଲେକ୍‌ଜାଣ୍ଡାରଙ୍କୁ ଥାନାକୁ ନେଇଗଲେ । ମାରିଆଙ୍କ ଶରୀରର ୧୪ଟି ସ୍ଥାନରେ କ୍ଷତ ପଟି ବାନ୍ଧି ତାଙ୍କୁ ନିକଟବର୍ତ୍ତୀ ହସ୍ପିଟାଲ୍‌ରେ ଭର୍ତ୍ତି କଲେ । ହସ୍ପିଟାଲ୍‌ରେ ପହଞ୍ଚିବା କ୍ଷଣି ଯାଜକଙ୍କୁ ଡକାଗଲା । ମାରିଆ ଯାଜକଙ୍କଠାରେ ପାପ ସ୍ୱୀକାର କଲେ । ସେମାନେ ମାରିଆର ଜୀବନକୁ ବଞ୍ଚାଇବା ପାଇଁ ଚେଷ୍ଟା କଲେ, କିନ୍ତୁ ତାହା ସମ୍ଭବ ହୋଇପାରିଲା ନାହିଁ । ଗୋଟିଏ ଦିନ ପରେ ମାରିଆ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମରିବା ପୂର୍ବରୁ ସେ ଆଲେକଜାଣ୍ଡାରଙ୍କୁ କ୍ଷମା ଦେଇଥିଲେ ।

ଆଲୋକଜାଣ୍ଡାରଙ୍କୁ ୩୦ ବର୍ଷ ପର୍ଯ୍ୟନ୍ତ ଏହି ହତ୍ୟା ପାଇଁ ଜେଲ ଭୋଗିବାକୁ ପଡ଼ିଥିଲା । ୬ ବର୍ଷ ବନ୍ଦିଶାଳାରେ ରହିବା ପରେ ଦିନେ ଆଲେକଜାଣ୍ଡାର ସ୍ୱପ୍ନରେ ମାରିଆ ତାଙ୍କୁ ଗୋଟିଏ ପୁଷ୍ପଗୁଚ୍ଛ ଦେବାର ଦେଖିଲେ ।

ଏହି ଦୃଶ୍ୟ ଦେଖିବା ପରେ ଆଲେକଜାଣ୍ଡାର ମନ ପରିବର୍ତ୍ତନ କଲେ ଏବଂ ନିଜର ଦୋଷକୁ ସ୍ୱୀକାର କରି ପ୍ରାୟଶ୍ଚିତ କଲେ । ବନ୍ଦିଶାଳାରୁ ୨୭ ବର୍ଷ ପରେ ମୁକ୍ତ ହେବାରୁ ପ୍ରଥମେ ମାରିଆଙ୍କ ମା'ଙ୍କ ପାଖକୁ ଯାଇ କ୍ଷମା ମାଗିଥିଲେ । ତାଙ୍କ ମାଁ ଆନନ୍ଦରେ ତାଙ୍କୁ କ୍ଷମା ଦେଇଥିଲେ । ୧୯୫୦ ମସିହା ଜୁଲାଇ ୨୫ ତାରିଖ ଦିନ ଭାଟିକାନ୍ ପ୍ରାଙ୍ଗଣରେ ପୁଣ୍ୟପିତା ଦ୍ୱାଦଶ ପୀୟୁଷ ମାରିଆ ଗରେତିଙ୍କୁ ସାଧ୍ୱୀ ରୂପେ ଘୋଷଣା କରିଥିଲେ । ସେହିଦିନ ମାରିଆ ଗରେତିଙ୍କ ମା' ଆସୁନ୍ତା ଏବଂ ଆଲୋକଜାଣ୍ଡାର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଏହାପରେ ଆଲେକଜାଣ୍ଡାର କାପୁଚିଆନ୍ ସଂଘର ଆଶ୍ରମରେ ପ୍ରବେଶ କରି ଜଣେ ମାଳି ହିସାବରେ କାର୍ଯ୍ୟ କଲେ । ପୁଣ୍ୟପିତା ମାରିଆ ଗରେତିଙ୍କୁ 'ପବିତ୍ରତାର ଶହୀଦ' ବୋଲି ଆଖ୍ୟା ଦେଲେ ।

***

# ସାଧୁ ବେନେଦିକ୍ତ
## (୪୮୦-୫୪୭, ଜୁଲାଇ ୧୧)

ଇଟାଲୀ ଦେଶର ନୁରସିଆ ନଗରରେ ସାଧୁ ବେନେଦିକ୍ତ ୪୮୦ ମସିହାରେ ଗୋଟିଏ ଧନଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ୟୁପ୍ରୋପୀୟୁଷ ଏବଂ ମାତା ଆବୁନଦାନସିଆଙ୍କ ଧାର୍ମିକ ଏବଂ ପବିତ୍ରତା ଜୀବନ ବେନେଦିକ୍ତଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ବେନେଦିକ୍ତ ନାମର ଅର୍ଥ ହେଲା 'ଆଶୀର୍ବାଦ' । ବେନେଦିକ୍ତଙ୍କ ଜାଆଁଳା ଭଉଣୀ ସ୍କଲାଷ୍ଟିକା ମଧ୍ୟ ପ୍ରଭୁଙ୍କ ନିମନ୍ତେ ନିଜର ଜୀବନ ଉତ୍ସର୍ଗ କରିଥିଲେ ।

ବେନେଦିକ୍ତଙ୍କୁ ଯେତେବେଳେ ୧୪ ବର୍ଷ ହେଉଥିଲା, ତାଙ୍କ ପିତା ଓ ମାତା ତାଙ୍କୁ ରୋମ୍‌କୁ ଅଧ୍ୟୟନ କରିବା ପାଇଁ ପଠେଇଥିଲେ । ଦୁଇ ବର୍ଷର ରହଣି ମଧ୍ୟରେ ସେ ଅନୁଭବ କଲେ ଯେ ପ୍ରଭୁ ତାଙ୍କୁ ସନ୍ନ୍ୟାସୀ ଜୀବନ ଯାପନ କରିବା ପାଇଁ ଆହ୍ୱାନ କରୁଛନ୍ତି, ଏଣୁ ସେ ରୋମ୍ ଛାଡ଼ି ଘରକୁ ଫେରି ଆସିଲେ । ରୋମାନୁସ ନାମକ ଜଣେ ସନ୍ନ୍ୟାସୀଙ୍କ ସହିତ ସାକ୍ଷାତ ହେଲା ପରେ ତାଙ୍କ ନିର୍ଦ୍ଦେଶନାରେ ସୁବିଆକଠାରେ ଥିବା ଗୋଟିଏ ଗୁହାକୁ ଯାଇ ଧ୍ୟାନ ମଗ୍ନ ହୋଇ ପ୍ରାର୍ଥନାରେ ସମୟ ବିତାଇଲେ । ମେଣ୍ଢା ଚର୍ମ ନିର୍ମିତ ପୋଷାକ ପରିଧାନ କରି ସ୍ୱଳ୍ପ ଖାଦ୍ୟ ଖାଇ ନୀରବ, ପଶ୍ଚାତ୍ତାପ ଏବଂ ପ୍ରାର୍ଥନାରେ ଏକାକୀ ବାସ କଲେ ।

ରୋମାନୁସ ତାଙ୍କର ଖାଦ୍ୟ ଓ ରହିବା ବ୍ୟବସ୍ଥା କରିଥିଲେ । ପ୍ରତିଦିନ ଗୋଟିଏ ଟୋକେଇରେ ଦୌଡ଼ି ଦ୍ୱାରା ତାଙ୍କ ଖାଦ୍ୟକୁ ତଳକୁ ପଠାଯାଉଥିଲା । ପ୍ରାୟ ୧୦ରୁ ୧୫ ବର୍ଷ ଏହିପରି ଜୀବନ ବିତାଇବା ମଧ୍ୟରେ ଅନେକେ ତାଙ୍କ ପବିତ୍ରମୟ ବ୍ୟକ୍ତିତ୍ୱ ଜାଣି ଆଧ୍ୟାତ୍ମିକ ଦିଗରେ ତାଙ୍କର ପରାମର୍ଶ ଲୋଡ଼ିଥିଲେ । ଅନେକେ ତାଙ୍କ ପାଖକୁ ଆସିଲେ ଏବଂ ପବ୍ରିତ ଜୀବନ ଯାପନ କରିବା ପାଇଁ ତାଙ୍କ ସହିତ ବାସ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ଏଣୁ ବେନେଦିକ୍ତ ସୁବିଆକ ଅଞ୍ଚଳରେ ପ୍ରାୟ ୧୨ଟି ଆଶ୍ରମ ସ୍ଥାପନ କରି, ପ୍ରତ୍ୟେକ ଆଶ୍ରମର ଦାୟିତ୍ୱ ଜଣେ ଜଣେ ସନ୍ନ୍ୟାସୀଙ୍କ ହସ୍ତରେ ନ୍ୟସ୍ତ କଲେ । ପ୍ରାୟ ୨୮ ବର୍ଷ ସେଠାରେ ବାସ କଲାପରେ ସେଠାରୁ ମଣ୍ଟେକାସିନ୍‌କୁ ଯାଇଥିଲେ । ମଣ୍ଟେକାସିନ୍‌ରେ ଗୋଟିଏ ଆଶ୍ରମ ସ୍ଥାପନ କରି ତାଙ୍କ ଶେଷ ସମୟ ପର୍ଯ୍ୟନ୍ତ

ସେଠାରେ ରହି ସନ୍ନ୍ୟାସୀ ଜୀବନ ଯାପନ ପାଇଁ କେତୋଟି ନିୟମ ପୁସ୍ତକ ଲେଖିଥିଲେ । ସାମୂହିକ ଜୀବନ (Community life) ଯାପନ ବିଷୟରେ ବିଶେଷ ଗୁରୁତ୍ୱ ଦେଇଥିଲେ । ସନ୍ନ୍ୟାସୀମାନେ କିପରି ପ୍ରତିଦିନ ଦିବସଟିକୁ ଉତ୍ତମ ଭାବରେ ବିତାଇ ପାରିବେ, ସେଥିନିମନ୍ତେ ଦିବସଟିକୁ ତିନି ଭାଗରେ ବିଭକ୍ତ କରିଥିଲେ । ବିଶେଷ ଭାବରେ ପ୍ରାର୍ଥନା, ଅଧ୍ୟୟନ ଏବଂ ଶାରୀରିକ କାମ ମାଧ୍ୟମରେ ସେମାନଙ୍କର ସନ୍ନ୍ୟାସୀ ଜୀବନ ଫଳପ୍ରଦ ହୋଇପାରିବ, ଏହି ବିଷୟରେ ସେ ବିଶେଷ ଭାବରେ ଗୁରୁତ୍ୱ ଦେଇଥିଲେ । ସମସ୍ତ ଗୁଣଠାରୁ ନମ୍ରତା ଏବଂ ଆଜ୍ଞାବହତା ପ୍ରତ୍ୟେକ ସନ୍ନ୍ୟାସୀମାନଙ୍କଠାରେ ପରିଲକ୍ଷିତ ହେବା ଆବଶ୍ୟକ । ଯେଉଁମାନଙ୍କୁ ଆଶ୍ରମର ମୁଖ୍ୟ ଅଧିକାର ଦିଆଯାଏ, ସେମାନେ ସର୍ବଦା ପିତାଙ୍କ ଦୟା ପ୍ରେମରେ ଶାସନ କରିବା ଉଚିତ୍ । ସେମାନଙ୍କର ଅନଭୁବ କରିବା ଆବଶ୍ୟକ ଯେ, ତାଙ୍କ ଅଧିକାର ପ୍ରଭୁଙ୍କଠାରୁ ଆସିଥାଏ ।

ପ୍ରାର୍ଥନା ବିଷୟରେ ଶିକ୍ଷା ଦେଇ କହନ୍ତି, Divine office ଦିନରେ ନିର୍ଦ୍ଦିଷ୍ଟ ସମୟରେ କରିବା ଉଚିତ୍ । ଜଣେ ଯେଉଁଠାରେ ଥାଉନା କାହିଁକି, ନିର୍ଦ୍ଦିଷ୍ଟ ସମୟରେ ଆମକୁ ଏହି ପ୍ରାର୍ଥନା କରିବା ଆବଶ୍ୟକ । କାରଣ ଆମ୍ଭେ ବିଶ୍ୱାସ କରୁ ଯେ ପ୍ରଭୁ ସବୁ ସ୍ଥାନରେ ଅଛନ୍ତି । ମଣ୍ଡଳୀ ବିଶ୍ୱାସ କରି ଆସିଛି ଯେ ଏହି, Divine office ପ୍ରାର୍ଥନା ମଣ୍ଡଳୀର ପ୍ରାର୍ଥନା ଅଟେ । ବେନେଦିକ୍ତଙ୍କ ଅନୁଯାୟୀ ପବିତ୍ର ବାକ୍ୟ ପଢ଼ିବା ଉତ୍ତମ କାର୍ଯ୍ୟମାନଙ୍କ ମଧ୍ୟରୁ ଅନ୍ୟତମ କାର୍ଯ୍ୟ ଅଟେ ।

ସେ କହନ୍ତି, ପବିତ୍ର ବାକ୍ୟ, ଆମକୁ ଜ୍ଞାନ ବ୍ୟବହାର କରି ପଢ଼ିବା ଠିକ୍ ନୁହଁ ବରଂ ପ୍ରେମର ସହିତ ପଢ଼ିବା ଆବଶ୍ୟକ ଅଟେ । ବାକ୍ୟ ପଢ଼ିବା, ମନର ବ୍ୟାୟାମ ନୁହେଁ ବରଂ ଧ୍ୟାନ (Contemplantion) ଦ୍ୱାରା ବ୍ୟାୟାମ୍ କରିବା ଯେପରି ଆମର ସ୍ୱର ଏବଂ ହୃଦୟ ମଧ୍ୟରେ ସମନ୍ୱୟତା ଆସିପାରିବ । ପ୍ରତ୍ୟେକ ବାକ୍ୟ ଆମର ମନ, ହୃଦୟ ଏବଂ ଆତ୍ମାରେ ସିକ୍ତ ହେବା ଆବଶ୍ୟକ, ଯେପରି ଆମର ପ୍ରାର୍ଥନା କେବଳ ସ୍ମରଣ ଶକ୍ତିରୁ ନ ଆସି ଆମର ଗଭୀର ଅନ୍ତରରୁ ସ୍ୱତଃପ୍ରବୃତ୍ତ ହୋଇ ବାହାରିବା ଉଚିତ୍ ।

ପ୍ରତ୍ୟେକ ଶବ୍ଦକୁ ଧ୍ୟାନର ସହିତ ପଢ଼ିବା ଏବଂ ଯଦି କୌଣସି ଶବ୍ଦ ଆମ ହୃଦୟକୁ ସ୍ପର୍ଶ କରେ, ତେବେ ସେହି ଶବ୍ଦ ବା ବାକ୍ୟକୁ ବାରମ୍ବାର ଆବୃତ୍ତି

କରିବା । ସେହି ହୃଦୟସ୍ପର୍ଶୀ ଶବ୍ଦ ବା ବାକ୍ୟକୁ ନିଜ ଜୀବନରେ କଣ କରି ପାରିବା ସେହି କଥା ଚିନ୍ତା ନ କରି ବାରମ୍ବାର କେବଳ ସ୍ମରଣ ଶକ୍ତି ଦ୍ୱାରା ଆବୃତ୍ତି କରିବା, ଯେପରି ପ୍ରଭୁଙ୍କର ବାକ୍ୟର ଶକ୍ତି ତାହାକୁ ଆଚ୍ଛାଦନ କରିବ । ଯେତେବେଳେ ସେହି ଶବ୍ଦ ବା ବାକ୍ୟାଂଶ ତାର ଅନ୍ତର୍ନିହିତ ସମସ୍ତ ଅର୍ଥ ହରେଇ ଦିଏ ତେବେ, କେବଳ ଶକ୍ତି ଦ୍ୱାରା ସେହି ବ୍ୟକ୍ତିଟି ନୀରବ ଅବସ୍ଥାରେ ପହଞ୍ଚିବ । ସେହି ସମୟରେ ପବିତ୍ର ଆତ୍ମାଙ୍କ ଶକ୍ତିରେ ହୃଦୟରେ ସେହି ବାକ୍ୟର ଅର୍ଥ ପ୍ରଭୁ କହିବେ । ଶେଷରେ ବ୍ୟକ୍ତିଟି ଯେଉଁ ପର୍ଯ୍ୟାୟରେ ପହଞ୍ଚିବ, ତାହା ଆମର ସ୍ୱର ଏବଂ ଜ୍ଞାନର ଊର୍ଦ୍ଧ୍ୱରେ । କେବଳ ଈଶ୍ୱରଙ୍କ ଉପସ୍ଥିତିରେ ସେ ଆନନ୍ଦିତ ହେବ ।

ଦିନେ ଜଣେ ଗରିବ ବ୍ୟକ୍ତି କିଛି ତେଲ ମାଗିବା ପାଇଁ ଆଶ୍ରମରେ ପହଞ୍ଚିଲା । ଯଦିଓ ବେନେଦିକ୍ତ ତେଲ ଦେବା ପାଇଁ ସମସ୍ତ ଦାୟିତ୍ୱରେ ଥିବା ବ୍ୟକ୍ତିମାନଙ୍କୁ ଆଦେଶ ଦେଇଥିଲେ, ତଥାପି ଜଣେ ସନ୍ନ୍ୟାସୀ ସେହି ଗରିବ ବ୍ୟକ୍ତିଙ୍କୁ ତେଲ ଦେବା ପାଇଁ ମନା କରିଦେଇଥିଲେ କାରଣ ତାଙ୍କ ପାଖରେ ବହୁତ କମ୍ ତେଲ ଥିଲା । ସେହି ସନ୍ନ୍ୟାସୀଙ୍କର ପ୍ରଭୁଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ନ ଥିବା ଦେଖି ସେ ଆଣ୍ଠୁପାତି ପ୍ରଭୁଙ୍କଠାରେ ପ୍ରାର୍ଥନା କଲେ । ପ୍ରାର୍ଥନା କରିବା ସମୟରେ ସେହି ତୈଳ ପାତ୍ରରୁ ତୈଳ ଅତି ଜୋର୍‌ରେ ଶବ୍ଦ କରି ବାହାରି ଅସିଲା । ସେହି ତୈଳ ପାତ୍ରଟି ପୂର୍ଣ୍ଣ ହୋଇ ଘୋଡ଼ାଯାଇଥିବା ଘୋଡ଼ଣିରୁ ତେଲ ଟୋପା ଟୋପା ହୋଇ ଘୋଡ଼ଣିକୁ ଚାପି ତଳେ ପଡ଼ିବାକୁ ଲାଗିଲା ଏବଂ ଚଟାଣ ସାରା ଭରିଗଲା । ଅନ୍ୟମାନେ ଏହି ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବେନେଦିକ୍ତ ତାଙ୍କ ପ୍ରାର୍ଥନାରେ କହନ୍ତି, 'ହେ ପ୍ରଭୁ ଆମର ହୃଦୟ ହେଉଛି ସେହି ତୈଳ ଶୂନ୍ୟ ପାତ୍ର ଯାହା ଜ୍ଞାନ, ଭାବନା ଏବଂ ପ୍ରତ୍ୟେକ ଚିନ୍ତାରୁ ଶୂନ୍ୟ ଅଟେ । କେବଳ ଆମର ବିଶ୍ୱାସ ଏବଂ ପ୍ରଭୁଙ୍କ ଉପରେ ଆସ୍ଥା ଆମର ହୃଦୟକୁ ଭରିଦେବ । ଯେତେବେଳେ ଆମେ ପ୍ରଭୁଙ୍କ ଉପରେ ଆସ୍ଥା ସ୍ଥାପନ କରୁ ସେ ତାଙ୍କର ଉତ୍ତମତାରେ ଆମର ଶୂନ୍ୟ ହୃଦୟକୁ ଭରି ଦିଅନ୍ତି' ।

ବେନେଦିକ୍ତ ଅନୁଭବ କଲେ ଯେ, ଯେତେବେଳେ ତାଙ୍କୁ (Sexual) ଯୌନ ପ୍ରଲୋଭନ ଆସୁଥାଏ, ସେହି ସମୟରେ କଳା ବର୍ଣ୍ଣର ପକ୍ଷୀ (ଭୂତ ରୂପରେ) ଆସି ତାଙ୍କ ମୁଖ ଚାରିପଟୁ ବୁଲୁଥାନ୍ତି । ଏହା ଦେଖି ସେ କ୍ରୁଶ ଚିହ୍ନ

କରିବା କ୍ଷଣି ସେହି ପକ୍ଷୀଗୁଡ଼ିକ ଉଡ଼ି ଯାଆନ୍ତି । ବେଳେ ବେଳେ ତାଙ୍କ ମନରେ ଯୁବତୀ ଝିଅମାନଙ୍କ ଛବି ଆସିଯାଏ ଏବଂ ସେହି ପ୍ରଲୋଭନ ଏଡ଼େ ଭୟଙ୍କର ଭାବରେ ହୁଏ ଯେ, ଇନ୍ଦ୍ରିୟକୁ ଦମନ କରିବା ପାଇଁ ବଗିଚାରେ ଥିବା କଣ୍ଟା ବୁଦା ଉପରେ ନିଜେ ଲୋଟି ପଡ଼ନ୍ତି, ଯାହାରି ଫଳରେ ଶରୀର ଆଘାତ ହୋଇଥାଏ । ଏହିସବୁ ଅନୁଭୂତି ମାଧମରେ ବେନେଦିକ୍ତ ତାଙ୍କ ଆଧାତ୍ମିକ ଜୀବନରେ ପରିପକ୍ୱତା ଲାଭ କରି ପାରିଥିଲେ ।

ଭିକୋଭାରା ଆଶ୍ରମର ମୁଖ୍ୟ ଦାୟିତ୍ୱ ଯେତେବେଳେ ବେନେଦିକ୍ତଙ୍କୁ ଦିଆଗଲା ସେ ନିୟମକାନୁନ୍ ଠିକ୍ ଭାବରେ ପାଳନ କରିବା ପାଇଁ ସନ୍ନ୍ୟାସୀମାନଙ୍କୁ ସୂଚେଇ ଦେଲେ । ଅନ୍ୟ ସନ୍ନ୍ୟାସୀମାନେ ତାହା ପସନ୍ଦ କଲେନାହିଁ । ବେନେଦିକ୍ତଙ୍କ କଠୋର ନିୟମ ପାଳନରେ ଅସନ୍ତୁଷ୍ଟ ହୋଇ କେତେଜଣ ସନ୍ନ୍ୟାସୀ ଗୁପ୍ତରେ ତାଙ୍କ ମଦ ପିଇବା ଗ୍ଲାସରେ କିଛି ବିଷାକ୍ତ ଦ୍ରବ୍ୟ ପକାଇ ଦେଇଥିଲେ । ଖାଇବା ପୂର୍ବରୁ ବେନେଦିକ୍ତ ଯେତେବେଳେ ଖାଦ୍ୟକୁ ଆଶୀର୍ବାଦ କରି କ୍ରୁଶ ଚିହ୍ନ କରନ୍ତେ, ଦୂରରେ ଥିବା ବିଷାକ୍ତ ମଦ୍ୟ ଗ୍ଲାସଟି ଚୂରମାର ହୋଇ ଭାଙ୍ଗିଗଲା ! ସନ୍ନ୍ୟାସୀମାନଙ୍କର ଏହିପରି ଆଚରଣ ଜାଣିପାରି ବେନେଦିକ୍ତ ସେଠାରୁ ବାହାରି ମଣ୍ଟେକାସିନ୍‌କୁ ଚାଲି ଯାଇଥିଲେ ।

ବେନେଦିକ୍ତଙ୍କ ସାଧୁତା ଯେତେବେଳେ ଚାରିଆଡ଼େ ବିସ୍ତାର ହେବାକୁ ଆରମ୍ଭ ହେଲା, ତାଙ୍କ ପଡ଼ୋଶୀ ଫ୍ଲୋରେନ୍ତିନୁସ୍ ନାମକ ଜଣେ ଯାଜକ ତାଙ୍କ କାର୍ଯ୍ୟ କଳାପ ଦେଖି ମନରେ ଈର୍ଷାଭାବ ପୋଷଣ କଲେ । ହିଂସାରେ ଜଳିଯାଇ, ଫ୍ଲୋରେନ୍ତିନୁସ ବିଷାକ୍ତ ରୋଟି ତାଙ୍କ ପାଖକୁ ପଠେଇଥିଲେ । ସାଧୁ ବେନେଦିକ୍ତ ତାହା ଜାଣିପାରି ତାଙ୍କୁ ଖାଦ୍ୟ ଯୋଗାଉଥିବା କାଉଟିକୁ ଆଦେଶ ଦେଲେ, ଯେପରି ସେହି ଖାଦ୍ୟ ଦ୍ୱାରା କେହି ବିଷାକ୍ତ ନ ହୁଅନ୍ତୁ । କାଉଟି ବେନେଦିକ୍ତଙ୍କ କଥା ମାନ୍ୟ କରି ରୋଟି ନେଇ ଚାଲିଗଲା ଏବଂ ତିନି ଘଣ୍ଟା ପରେ ସେହି ସ୍ଥାନକୁ ଫେରି ଆସିଲା । ଯେତେବେଳେ ଫ୍ଲୋରେନ୍ତିନୁସ୍ ଜାଣିପାରିଲେ ଯେ ତାଙ୍କ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ ବେନେଦିକ୍ତ ବଞ୍ଚିଗଲେ । ସେ ଅନ୍ୟ ଭାବରେ ତାଙ୍କୁ ପ୍ରଲୋଭନରେ ପକାଇବାକୁ ଉପାୟ ବାହାର କଲେ । ସାତଜଣ ଉଲଗ୍ନ ନୃତ୍ୟ କରୁଥିବା ଯୁବତୀ ଝିଅମାନଙ୍କୁ ତାଙ୍କ ପାଖକୁ ପଠାଇ

ସନ୍ନ୍ୟାସୀମାନଙ୍କୁ ପ୍ରଲୋଭନ ଦେଖେଇଥିଲେ । ତଥାପି, ବେନେଦିକ୍ତ ଏହିସବୁ ପ୍ରଲୋଭନକୁ ଜୟକରି ପ୍ରଭୁଙ୍କଠାରେ ସଂଯୁକ୍ତ ହୋଇ ରହିଥିଲେ । ଫ୍ଲୋରେନ୍ତିନୁସ୍ ତାଙ୍କ ଯିବା ପଥରେ ମୃତ୍ୟୁବରଣ କରିଥିଲେ । ବେନେଦିକ୍ତ ତାଙ୍କ ମୃତ୍ୟୁ ଖବର ପାଇ ବହୁତ ଦୁଃଖ ପ୍ରକାଶ କରିଥିଲେ ।

୫୪୩ ମସିହାରେ ସାଧୁ ବେନେଦିକ୍ତ ତାଙ୍କ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ତାଙ୍କ ଶରୀରକୁ ତାଙ୍କ ଦ୍ୱାରା ସ୍ଥାପିତ ମଣ୍ଟେକାସିନ୍ ଆଶ୍ରମରେ ନିଜ ଭଉଣୀ ସ୍କଲାଷ୍ଟିକାଙ୍କ ସମାଧି ପାଖରେ କବର ଦିଆଯାଇଥିଲା । ପୁଣ୍ୟପିତା ପାଉଲ ଷଷ୍ଠ ୧୯୬୪ ମସିହାରେ ତାଙ୍କୁ ୟୁରୋପର ଇଷ୍ଟ ସାଧୁ ରୂପେ ଘୋଷଣା କରିଥିଲେ ।

***

# ସାଧ୍ୱୀ ଆଲ୍‌ଫନ୍‌ସା

## (୧୯୧୦-୧୯୪୬, ଜୁଲାଇ ୨୬)

ଭାରତର କେରଳ ରାଜ୍ୟ ଅନ୍ତର୍ଗତ କଟାୟାମ୍ ନିକଟବର୍ତ୍ତୀ କୁଡ଼ାମାଲୁର ଗ୍ରାମରେ ସାଧ୍ୱୀ ଆଲ୍‌ଫନସା ୧୯୧୦ ମସିହା ଅଗଷ୍ଟ ମାସ ୧୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଆଲ୍‌ଫନ୍‌ସାଙ୍କ ଜନ୍ମର ୩୭ ଦିନ ପରେ ତାଙ୍କ ମା' ଇହଧାମ ତ୍ୟାଗ କରି ଚାଲିଗଲେ । ନିଜ ମା' ଙ୍କ ଭଉଣୀ ଅର୍ଥାତ୍ ମାଉସୀଙ୍କ ତତ୍ତ୍ୱାବଧାନରେ ଆଲ୍‌ଫନ୍‌ସା ବଢ଼ିବାକୁ ଲାଗିଲେ । ତାଙ୍କ ମାମୁ ଫାଦେର୍ ଯୋସେଫ୍ ମୁଟାଥୁପୁଡାଥୁଙ୍କ ସାହାଯ୍ୟ ଓ ପ୍ରେରଣା ତାଙ୍କ ଜୀବନକୁ ପ୍ରଭାବିତ କରିଥିଲା । ୧୯୧୬ ସାଲ୍‌ରେ ତାଙ୍କ ପ୍ରାଥମିକ ଅଧ୍ୟୟନ ଆରପୁକାରରେ ଆରମ୍ଭ କରିଥିଲେ । ଛୋଟରୁ ତାଙ୍କୁ ସ୍ନେହରେ ସମସ୍ତେ ଆନ୍ନାକୁଟି (କୁନିଆନ୍ନା) ବୋଲି ଡାକୁଥିଲେ । ଆନ୍ନା ୧୯୧୭ ନଭେମ୍ବର ୨୭ ତାରିଖରେ ପ୍ରଥମ ଥର ଦିବ୍ୟ ପ୍ରସାଦ ଗ୍ରହଣ କରିଥିଲେ । ଆନ୍ନାଙ୍କ ଆଇ ଛୋଟରୁ ସାଧୁମାନଙ୍କ ଜୀବନୀ ତାଙ୍କୁ କହୁଥିଲେ । ସାଧ୍ୱୀ ତେରେସା (Little Flower) ଙ୍କ ପ୍ରତି ଆନ୍ନାଙ୍କ ପ୍ରଗାଢ଼ ଭକ୍ତି ଥିଲା । ଦିନେ କାର୍ମେଲାଇଟ୍ ସଂଘର ଜଣେ ଅତି ସୁନ୍ଦରୀ ସିଷ୍ଟେର୍ ତାଙ୍କ ପାଖକୁ ଆସି କହିଲେ, 'ଆନ୍ନାକୁଟି ତୁମେ ମୋ ପରି ଜଣେ ସିଷ୍ଟେର୍ ହୋଇପାରିବ' । ବହୁତ ଦିନ ପରେ ସେ ଜାଣିପାରିଲେ ଯେ, ସିଷ୍ଟେର୍ ତେରେସା ତାଙ୍କୁ ନିଜେ ଦେଖା ଦେଇଥିଲେ । ଆନ୍ନାକୁଟିଙ୍କୁ ଯେତେବେଳେ ୧୩ ବର୍ଷ ହୋଇଥିଲା, ତାଙ୍କ ମାଉସୀ ତାଙ୍କ ବିବାହ ପାଇଁ ବିଭିନ୍ନ ପ୍ରସ୍ତାବ ନେଇ ଆସୁଥିଲେ । ତାଙ୍କ ମାମୁଁଙ୍କୁ ଦିନେ ସେ କହିଲେ, 'ଯୀଶୁଙ୍କର ପାଞ୍ଚୋଟି କ୍ଷତ ନାମରେ ମୁଁ ଅନୁରୋଧ କରୁଛି, ମୋତେ ଦୟାକରି ବିବାହ କରିବା ପାଇଁ ବାଧ କର ନାହିଁ । ମୁଁ ଜଣେ ସିଷ୍ଟେର୍, ହେବା ପାଇଁ ଚାହୁଁଛି, ମୁଁ ଯୀଶୁଙ୍କ ପାଇଁ ବଞ୍ଚିବା ଓ ମରିବା ପାଇଁ ଚାହୁଁଛି' । ଆଲ୍‌ଫନସଙ୍କ ମାଉସୀ କିନ୍ତୁ ସହଜରେ ରାଜି ହୋଇ ନଥିଲେ । ବିବାହ ହେବାକୁ ନାରାଜ ହୋଇ ନିଜକୁ ଅସୁନ୍ଦର କରିବା ପାଇଁ ଦିନେ ଆନ୍ନାକୁଟି ସକାଳ ସମୟରେ ଗୋଟିଏ ଗାତରେ ଜଳୁଥିବା ନିଆଁ ଉପରେ ତାଙ୍କ ବାମ ଗୋଡ଼ଟି ପକାଇବା ସମୟରେ ଖସିଯାଇ ତାହା ଉପରେ ପଡ଼ିଗଲେ । ଅଗ୍ନି ଶିଖାରେ ତାଙ୍କ ଗୋଡ଼ଟି ପୋଡ଼ିଗଲା ଏବଂ ତାଙ୍କ ବସ୍ତ୍ର ଏବଂ ସୁନ୍ଦର କେଶ

ମଧ୍ୟ ସେ ହରାଇଲେ । ଅଗ୍ନି ମଧ୍ୟରୁ ସଂଘର୍ଷ କରି ସେ ବାହାରି ଆସି ଅଚେତ୍ ହୋଇ ପଡ଼ିଗଲେ । ଆନ୍ନାକୁଟିଙ୍କ ଏହି ଅବସ୍ଥା ଦେଖି ତାଙ୍କ ମାଉସୀ ସବୁ ପ୍ରକାର ସାହାଯ୍ୟ କଲେ । ତିନି ମାସ ପର୍ଯ୍ୟନ୍ତ ଆନ୍ନାକୁଟି ଶଯ୍ୟାରେ ପଡ଼ି ଯଥେଷ୍ଟ ଯନ୍ତ୍ରଣା ଅନୁଭବ କଲେ । ଶେଷରେ ଯେଉଁ ବିବାହ ପ୍ରସ୍ତାବଗୁଡ଼ିକ ଆସିଥିଲା, ସେ ସବୁ ବନ୍ଦ ହୋଇଗଲା । ପ୍ରଭୁ ଆନ୍ନାକୁଟିଙ୍କ ପ୍ରାର୍ଥନା ଶୁଣିଲେ ଏବଂ ତାଙ୍କ ମାଉସୀ ମଧ୍ୟ ଆନ୍ନାକୁଟିଙ୍କ ପ୍ରସ୍ତାବରେ ରାଜି ହୋଇ ଶେଷରେ ଫ୍ରାନ୍‌ସିସ୍କାନ୍ ସଂଘର କନ୍‌ଭେଣ୍ଟରେ ଯୋଗଦେଲେ । ୧୯୨୭ ସାଲ୍ ପେଣ୍ଟେକଷ୍ଟ ପର୍ବ ଦିନ ଭାରନାଙ୍ଗାନା କ୍ଲାରା କନ୍‌ଭେଣ୍ଟରେ ପ୍ରଥମେ ପ୍ରବେଶ କଲେ । ୧୯୨୮ ମସିହା ଅଗଷ୍ଟ ୨ ତାରିଖରେ Postulant (ତାଲିମ ପ୍ରାପ୍ତ ସମୟର ଗୋଟିଏ ପାହାଚ) ଥିବା ସମୟରେ ଯେତେବେଳେ ଓଢଣୀ (veil) ପ୍ରାପ୍ତ କଲେ ସେ ତାଙ୍କ ନାମ ପରିବର୍ତ୍ତନ କରି ଆଲ୍‌ଫନ୍‌ସା ରଖିଲେ । ୧୯୨୯ ମସିହା ମଇ ମାସରେ ସେ ହାଇସ୍କୁଲ୍ ଅଧ୍ୟୟନ ପାଇଁ ବାରାପାଲି ଗଲେ । ୧୯୩୦ ମଇ ମାସ ୧୯ ତାରିଖରେ ସିଷ୍ଟେର ପୋଷାକ ଭାର୍‌ନାଙ୍ଗାନ୍‌ର କନ୍‌ଭେଣ୍ଟରେ ପାଇଲେ, ୧୯୩୬, ଅଗଷ୍ଟ ୧୨ ତାରିଖରେ ଶେଷବ୍ରତ ନେଇଥିଲେ ।

ସିଷ୍ଟେର୍ ହେଲା ପରେ ଅଧିକାଂଶ ସମୟରେ ସିଷ୍ଟେର୍ ଆଲ୍‌ଫନ୍‌ସା ବେମାର ପଡୁଥିଲେ । ୧୯୩୯ ମସିହା ଜୁନ୍ ୧୪ ତାରିଖରେ ନିମୋନିଆ ଦ୍ୱାରା ସେ ଦୁର୍ବଳ ହୋଇପଡ଼ିଲେ । ୧୯୪୦ ସାଲ୍‌ରେ ଅକ୍ଟୋବର ୧୮ ତାରିଖ ମଧ୍ୟ ରାତ୍ରରେ ଜଣେ ଚୋର ତାଙ୍କ କୋଠରୀରେ ପ୍ରବେଶ କରିବାର ଦେଖି ନିଜ ପାଖରେ ଥିବା କ୍ରୁଶଟିକୁ ଉପରକୁ ଉଠାଇ ଚିହାର କରି କହିଲେ, 'ଯୀଶୁ ଖ୍ରୀଷ୍ଟଙ୍କ ନାମରେ ମୁଁ ତୁମ୍ଭଙ୍କୁ ଅନୁରୋଧ କରୁଛି, ତୁମେ ମୋତେ କିଛି କ୍ଷତି କରନାହିଁ' । ତତ୍‌କ୍ଷଣାତ୍ ସେହି ଚୋରଟି ସବୁ କିଛି ଛାଡ଼ି ସେଠାରୁ ପଳାଇଗଲା । କିନ୍ତୁ ଏହି ଘଟଣା ଆଲ୍‌ଫନସାଙ୍କୁ ମାନସିକ ଯନ୍ତ୍ରଣା ଆଣି ଦେଇଥିଲା । ସିଷ୍ଟେର୍ ହେବା ପାଇଁ ତାଲିମ୍ ପାଉଥିବା ସମୟରେ (ନଭିସେଟ୍) ୩ ମାସ ପର୍ଯ୍ୟନ୍ତ ଆଲ୍‌ଫନ୍‌ସାଙ୍କ ନାକ ଏବଂ ପାଟିରୁ ରକ୍ତ ଝରୁଥାଏ । ପୁଣି ତାଙ୍କ ଗୋଡ଼ରେ ଆଲ୍‌ସେର ପରି ଘା'ଟି ବଢି ତାଙ୍କ ଅବସ୍ଥାକୁ ଅଧିକ ଦୁର୍ବଳ କରୁଥିଲା । ତାଙ୍କ ଆଧ୍ୟାତ୍ମିକ ନିର୍ଦ୍ଦେଶକଙ୍କ ପରାମର୍ଶ ଅନୁଯାୟୀ ଆଲ୍‌ଫନସ୍ ଏବଂ ତାଙ୍କ ସଙ୍ଗରେ ରହୁଥିବା

କେତେ ଜଣ ନଭିସ୍ ଫାଦେର୍ ଏଲିଆସ୍ ଚାଭାରାଙ୍କ ନିକଟରେ ନବୀନା ପ୍ରାର୍ଥନା କରିଥିଲେ । ନବୀନା ପ୍ରାର୍ଥନାର ଶେଷ ଦିନ ମଧ୍ୟ ରାତ୍ରରେ ମାଦେର ଉର୍ସୁଲା ଆଲ୍‌ଫନ୍‌ସାଙ୍କ କୋଠରିକୁ ଯାଇଥିଲେ । ତାଙ୍କ କୋଠରି ପ୍ରବେଶ କରିବା ପୂର୍ବରୁ ମାଦେର୍ ଉର୍ସୁଲା କେହି କଥା ହେବାର ଶୁଣିବାକୁ ପାଇଲେ । ସେ ଭାବିଲେ ହୁଏତ ସିଷ୍ଟେର୍ ଲୁୟିସା ଯିଏ ସିଷ୍ଟେର ଆଲ୍‌ଫନ୍‌ସାଙ୍କ ଯତ୍ନ ନେଉଥିଲେ, ତାଙ୍କ ସହିତ କଥା ହେଉଛନ୍ତି, କିନ୍ତୁ କୋଠରିଟି ପ୍ରବେଶ କଲାପରେ ଦେଖିବାକୁ ପାଇଲେ ଯେ ସିଷ୍ଟେର ଲୁୟିସା ଗାଢ଼ ନିଦ୍ରାରେ ଶୋଇଛନ୍ତି ଏବଂ ନିଦ୍ରା ଅବସ୍ଥାରେ ରହି ଆଲ୍‌ଫନ୍‌ସା ନିଜେ କଥା ହେଉଛନ୍ତି । ଯେତେବେଳେ ମାଦେର୍ ଉର୍ସୁଲା ତାଙ୍କୁ ପଚାରିଲେ, ସେ କାହା ସହିତ କଥା ହେଉଥିଲେ ? ଆଲ୍‌ଫନ୍‌ସା କହିଲେ, ଫାଦେର୍ ଚାଭାରାଙ୍କ ସହିତ । ଫାଦେର୍ ଚାଭାରା କହିଲେ ଯେ ସେ ସୁସ୍ଥତା ଲାଭ କଲେ ତାଙ୍କ ଗୋଡ଼ର ଆଲ୍‌ସେରରୁ କିନ୍ତୁ ତାଙ୍କୁ ଆହୁରି ଯନ୍ତ୍ରଣା ଦେଇ ଯିବାକୁ ପଡ଼ିବ । ଏହାପରେ ଆଲ୍‌ଫନ୍‌ସା ନିଜ ଗୋଡ଼ଟିକୁ ଉର୍ସୁଲାଙ୍କୁ ଦେଖାଇଲେ । ମାଦେର୍ ଉର୍ସୁଲା ଦେଖି ଆଶ୍ଚର୍ଯ୍ୟ ହେଲେ କାରଣ ତାଙ୍କ ଗୋଡ଼ରେ ଆଉ ଆଲ୍‌ସେର୍ ନାହିଁ, କେବଳ ଛୋଟିଆ ଦାଗଟିଏ ଥିଲା । ପରବର୍ତ୍ତୀ ଦିନ ଆଲ୍‌ଫନ୍‌ସା ସକାଳୁ ଉଠି ଗୀର୍ଜାକୁ ଗଲା ଏବଂ ସମ୍ପୂର୍ଣ୍ଣ ଭାବେ ସୁସ୍ଥତା ପାଇବାର ଅନୁଭବ ହେଲା ।

ନଭିସ୍ ସମୟରେ ସାଧ୍ୱୀ ଆଲ୍‌ଫନ୍‌ସାଙ୍କୁ ବିଭିନ୍ନ ଭାବରେ ଆଜ୍ଞାବହତା ଓ ନମ୍ରତାର ପରୀକ୍ଷା ଦେଇ ଯିବାକୁ ପଡ଼ିଥିଲା । ଦିନେ ବିଶପ୍ ନଭିସମାନଙ୍କୁ ପରୀକ୍ଷା ସ୍ୱରୂପ ପଚାରିଥିଲେ ଯେ, ସେମାନେ ଖାଦ୍ୟ ବିଷୟରେ ଅଭିଯୋଗ କରୁଛନ୍ତି । ନଭିସମାନଙ୍କୁ ଯେତେବେଳେ ପଚାରାଗଲା, ସମସ୍ତେ ଅସ୍ୱୀକାର କଲେ କେବଳ ଆଲ୍‌ଫନ୍‌ସା ଜଣେ କ୍ଷମା ମାଗିଥିଲେ । ତାହା ଦେଖି ବିଶପ୍ ଜଣକ କହିଥିଲେ, ଆଲ୍‌ଫନ୍‌ସା ତୁମେ ଦିନେ ସାଧ୍ୱୀ ହେବ । ଦିନକର ଘଟଣା ମାଦେର୍ ଉର୍ସୁଲା ଆଲ୍‌ଫନ୍‌ସାଙ୍କୁ ବେମାରୀ ପଡ଼ିଥିବା ନଭିସ୍‌ମାନଙ୍କ ଖାଦ୍ୟକୁ ସେ ଖାଇଛି ବୋଲି ମିଥ୍ୟା ଅଭିଯୋଗ କରି ତାଙ୍କୁ ସମସ୍ତଙ୍କ ସମ୍ମୁଖରେ କ୍ଷମା ମାଗିବା ପାଇଁ କହିଥିଲେ । ତତ୍‌କ୍ଷଣାତ୍ ସମସ୍ତ ନଭିସ୍‌ମାନଙ୍କ ସମ୍ମୁଖରେ ଆଲ୍‌ଫନସ୍ ଆଣ୍ଠୁପାତି କ୍ଷମା ମାଗିଥିଲେ । ସିଷ୍ଟେର୍ ହେଲାପରେ ଯେତେବେଳେ

ତାଙ୍କୁ ଭାରନାଙ୍ଗାନାମ୍ କନ୍‌ଭେଣ୍ଟକୁ ପଠାଗଲା, ସେଠାରେ ମଧ୍ୟ ସେ ସର୍ବଦା ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଇଚ୍ଛୁକ ଥିଲେ ।

ଯେତେବେଳେ ଅନ୍ୟର ଲୁଗା ମଇଳା ଥିବା ସେ ଦେଖନ୍ତି, ଶୀଘ୍ର ତାହା ନେଇ ସଫା କରିବାକୁଯାଆନ୍ତି ଏବଂ ଆଇରନ୍ କରି ସେମାନଙ୍କ ଅଜଣାତରେ ତାହାଙ୍କ ପେଡ଼ି ଭିତରେ ରଖିଦିଅନ୍ତି । ଦିନେ ଆଲ୍‌ଫନ୍‌ସାଙ୍କ ପିତା ଗୋଟିଏ ନାମ ନ ଥିବା ଚିଠିଟିଏ ପାଇ ଶୁଣିବାକୁ ପାଇଲେ ଯେ ଆଲ୍‌ଫନସାଙ୍କୁ କନ୍‌ଭେଣ୍ଟରୁ ବାହାର କରାଯାଇଛି ତାଙ୍କର ଖରାପ ଚରିତ୍ର ଯୋଗୁଁ । ବହୁତ ଦୁଃଖରେ ତାଙ୍କ ପିତା ଆଲ୍‌ଫନ୍‌ସାଙ୍କୁ ଦେଖିବା ପାଇଁ ଭାରନାଙ୍ଗାନଙ୍କୁ ଗଲେ । ଆଲ୍‌ଫନ୍‌ସାଙ୍କ ମାମୁଁ ଫାଦେର ଯୋସେଫଙ୍କ କୋଠରିରେ ଆଲ୍‌ଫନ୍‌ସା ଏବଂ ମାଦେର ଉର୍ସୁଲାଙ୍କୁ ଦେଖିବାକୁ ପାଇଲେ । ମାଦେର୍ ଉର୍ସୁଲାଙ୍କ ହାତକୁ ଚିଠିଟି ବଢାଇ ଦେଲେ ଏବଂ ମାଦେର୍ ଉର୍ସୁଲା ଚିଠି ପଢ଼ି ଆଲ୍‌ଫନ୍‌ସାଙ୍କୁ ଦେଲେ । ଆଲ୍‌ଫନ୍‌ସା ଚିଠିଟି ପଢ଼ି ହସିଲେ । ଚିଠି ଲେଖିଥିବା ସେହି କାଲ୍‌ପ୍ରିଟ୍‌ଙ୍କୁ ଅନୁସନ୍ଧାନ କରିବା ପାଇଁ ଯେତେବେଳେ ମାଦେର୍ ଉର୍ସୁଲା କହିଲେ, ସିଷ୍ଟେର ଆଲ୍‌ଫନ୍‌ସା ଉତ୍ତର ଦେଇ କହିଲେ, ‘ଏହା କେବଳ ଗୋଟିଏ ଛୋଟ ଅପମାନ, ପ୍ରଭୁ ମୋ ପାଖକୁ ପଠାଇଛନ୍ତି’ । ଦିନକୁ ଦିନ ସେ ଦୁର୍ବଳ ଅନୁଭବ କଲେ କାରଣ ତାଙ୍କ ଶରୀର ବିଭିନ୍ନ ସ୍ଥାନରେ ଫୁଲା ଏବଂ ଘା ଦେଖା ଦେବାକୁ ଆରମ୍ଭ କଲା ଯାହାରି ଫଳରେ ପଢ଼ିବା ପାଇଁ ସେ ସକ୍ଷମ ନ ଥିଲେ । କଷ୍ଟ ଯନ୍ତ୍ରଣା ସତ୍ତ୍ୱେ ସେ ସର୍ବଦା ଖୁସି ରହୁଥିଲେ । ୧୯୪୫ ମସିହା ଜୁଲାଇ ମାସରେ ପୁଣି ସେ ବେମାର ପଡ଼ିଲେ । ଜ୍ୱର ବ୍ୟଥାରେ ତାଙ୍କ ଶରୀର ଝାଳରେ ପୂର୍ଣ୍ଣ ହେଲା ଏବଂ ସେ ବହୁତ ଦୁର୍ବଳ ହୋଇପଡ଼ିଲେ । ତାଙ୍କର ସବୁଠାରୁ ଦୁଃଖର ବିଷୟ ହେଲା ସେ କେବଳ ସପ୍ତାହକୁ ଥରେ ଦିବ୍ୟ ପ୍ରସାଦ ଗ୍ରହଣ କରୁଥିଲେ । ତାଙ୍କ ଅଧିକାରୀ ଦିନେ ଆଲ୍‌ଫନ୍‌ସାଙ୍କୁ ପଚାରିଥିଲେ, ଯେ ସେ ସମ୍ପୂର୍ଣ୍ଣ ସୁସ୍ଥତା ପାଇଁ ପ୍ରାର୍ଥନା କରିବା ଉଚିତ୍ । ଆଲ୍‌ଫନ୍‌ସା ଉତ୍ତର ଦେଇ କହିଲେ, ‘ମୁଁ ଆହୁରି ଯନ୍ତ୍ରଣା ପାଇବା ପାଇଁ ଇଚ୍ଛା କରୁଛି । ଏହି ପୃଥିବୀର ପାପ ପାଇଁ ଅଧିକ ଯନ୍ତ୍ରଣା ପାଇବା ପାଇଁ ମୁଁ ପ୍ରସ୍ତୁତ ଅଛି’ ।

ଦିନେ ତାଙ୍କ ବିଶପ୍ ଏବଂ ସଙ୍ଗରେ ରହୁଥିବା ସିଷ୍ଟେରମାନେ

ମ୍ୟାଲେରିଆ ଜ୍ୱରରେ ପୀଡ଼ିତ ଥିଲେ । ଆଲ୍‌ଫନ୍‌ସା ପ୍ରାର୍ଥନା କଲେ, ଯେପରି ସେମାନଙ୍କର ବେମାର ନିଜ ଶରୀରକୁ ଆସୁ । ସେମାନେ ସମସ୍ତେ ସୁସ୍ଥତା ଲାଭ କଲେ, କିନ୍ତୁ ସେହି ମ୍ୟାଲେରିଆ ଆଲ୍‌ଫନ୍‌ସାଙ୍କ ଶରୀରକୁ ଆସିଲା ଏବଂ ତାଙ୍କୁ ଜୀବନ ଓ ମରଣ ମଧ୍ୟରେ ସଂଘର୍ଷ କରିବାକୁ ପଡ଼ିଥିଲା । ଦିନରେ ତାଙ୍କୁ ବହୁତ ଯନ୍ତ୍ରଣା ଦେଇ ଗତି କରିବାକୁ ପଡୁଥାଏ କିନ୍ତୁ ରାତ୍ରିରେ ପ୍ରଭୁ ତାଙ୍କୁ ସ୍ୱର୍ଗୀୟ ଆନନ୍ଦରେ ଭରପୁର କରୁଥିଲେ । ୧୯୪୬ ମସିହା ଜୁଲାଇ ୨୮ ତାରିଖରେ ଯୀଶୁ, ମାରୀୟା ଏବଂ ଯୋସେଫଙ୍କ ନାମ ଓଷ୍ଠରେ ଉଚ୍ଚାରଣ କରି ସେ ପ୍ରାଣତ୍ୟାଗ କଲେ । କେବଳ ୩୬ ବର୍ଷ ବଞ୍ଚିଲେ, କିନ୍ତୁ ଅଧିକାଂଶ ସମୟରେ ଶଯ୍ୟାଶାୟୀ ହୋଇ ଖଟରେ ପଡ଼ି ରହୁଥିଲେ । କଷ୍ଟ ମଧ୍ୟରେ ସର୍ବଦା ଖୁସିରେ ରହୁଥିଲେ । ଦିବ୍ୟ ମଞ୍ଜୁଷା ସମ୍ମୁଖରେ ବହୁତ ସମୟ ଧରି ପ୍ରାର୍ଥନା କରୁଥିଲେ ।

୨୦୦୮ ସାଲ ଅକ୍ଟୋବର ୧୨ ତାରିଖରେ, ପୁଣ୍ୟପିତା ବେନେଦିକ୍ତ ଷୋହଳ ଆଲ୍‌ଫନ୍‌ସାଙ୍କୁ ସାଧ୍ୱୀ ରୂପେ ଘୋଷଣା କରିଥିଲେ ।

**ସାଧ୍ୱୀ ଆଲଫନ୍ସାଙ୍କ କେତୋଟି ଉକ୍ତି**

✸ "ମୋର ଯନ୍ତ୍ରଣା ଯାହା ହେଉନା କାହିଁକି, ମୁଁ କେବେ ଅଭିଯୋଗ କରିବି ନାହିଁ, ଯଦି ମତେ ଅପମାନ ଦେଇ ଯିବାକୁ ପଡେ ତେବେ ଯୀଶୁଙ୍କର ପବିତ୍ର ହୃଦୟରେ ଆଶ୍ରୟ ନେବି"।

✸ "ତୁମେ ଯାଣ କି ମୁଁ କାହିଁକି ଆଜି ବିଶେଷଭାବରେ ଖୁସୀ । ମୁଁ ଖୁସୀ କାରଣ ଯୀଶୁ ମୋ ହୃଦୟରେ ଅଛନ୍ତି"।

✸ "ମୁଁ ନିଜକୁ ସମ୍ପୂର୍ଣ୍ଣ ରୂପେ ଯୀଶୁଙ୍କୁ ଦେଇଅଛି । ତାଙ୍କୁ ଯେମିତି ସନ୍ତୁଷ୍ଟ ସେମିତି ସେ ମୋ ସହିତ ବ୍ୟବହାର କରନ୍ତୁ । ଏହି ପୃଥିବୀରେ ମୋର କେବଳ ଗୋଟିଏ ଇଚ୍ଛା ତାହା ହେଲା ପରମେଶ୍ୱରଙ୍କ ପ୍ରେମ ପାଇଁ କଷ୍ଟ ସହିବା ଓ ସେଥିରେ ଆନନ୍ଦିତ ହେବା"।

✸✸✸

## ଲୟୋଲାର ସାଧୁ ଇଗ୍ନାସିୟସ (ଜୁଲାଇ ୩୧)

୧୪୯୧ ମସିହାରେ ସାଧୁ ଇଗ୍ନାସିୟସ ସ୍ପେଇନ୍ ଦେଶର ବାସ୍କୁଏ ପ୍ରୋଭିନ୍‌ସ ଅନ୍ତର୍ଗତ ଗୁଇପୋଜକୁଆ ଆଜପେଇଟା ଦୁର୍ଗରେ ଜନ୍ମଗ୍ରହଣ କରିଥିଲେ । ଯୁବକ ଅବସ୍ଥାରେ ସେ ଜଣେ (ଚବଶର) ବା ଦ୍ୱାରପାଳ ହିସାବରେ ସ୍ପେଇନ୍ ରାଜାଙ୍କ ଦରବାରରେ କାମ କରୁଥିଲେ । ସେହି କାର୍ଯ୍ୟରେ ସେ ସନ୍ତୁଷ୍ଟ ନ ଥିଲେ, ଏଣୁ ସୈନ୍ୟ ବିଭାଗରେ ଯୋଗଦେଇ ସେ ଜଣେ ଦକ୍ଷ ଏବଂ ସାହସିକ ସୈନିକ ଭାବରେ ପରିଚିତ ହେଲେ । ପିତାମାତାଙ୍କର ୧୩ଟି ସନ୍ତାନ ମଧ୍ୟରୁ ସେ ଥିଲେ ସବୁଠୁ ସାନ । ତାଙ୍କ ଦୀକ୍ଷାସ୍ନାନ ନାମ ଥିଲା ଇନିଗୋ ଲୋପେଜ ଡି ଲୟୋଲା ।

୧୫୨୧ ମସିହାରେ ଫ୍ରାନ୍ସର ସୈନ୍ୟମାନେ ଯେତେବେଳେ ପାମ୍ପଲୋନା ଉପରେ ଆକ୍ରମଣ କଲେ, ଶତ୍ରୁମାନଙ୍କ ପକ୍ଷର ବନ୍ଧୁକର ଗୁଳିଟି ଆସି ଇଗ୍ନାସିୟସ୍‌ଙ୍କ ଆଣ୍ଠୁରେ ଆଘାତ କଲା ଏବଂ ସେ ତଳେ ପଡ଼ିଗଲେ । ଅସ୍ତ୍ରୋପଚାର ପରେ ତାଙ୍କୁ ଛୋଟା ହୋଇ ରହିବାକୁ ପଡ଼ିଥିଲା । ଯେତେବେଳେ ସେ ହସ୍ପିଟାଲ୍‌ରେ ଥିଲେ, ଦୁଇଟି ପୁସ୍ତକ ତାଙ୍କୁ ପ୍ରେରଣା ଦେଇଥିଲା । ଗୋଟିଏ ହେଲା ଜଣେ କାର୍ଥୁସିଆନ୍ ସଂଘର (monk) ସନ୍ନ୍ୟାସୀ ଲୁଡଲଫ୍‌ଙ୍କ ଦ୍ୱାରା ଲିଖିତ ଖ୍ରୀଷ୍ଟଙ୍କ ଜୀବନୀ ଏବଂ ଅନ୍ୟଟି ହେଲା ଜାକୋମ୍ ଦି ଭାରତଙ୍କ ଦ୍ୱାରା ଲିଖିତ The flower of the saints (ସାଧୁମାନଙ୍କର ପୁଷ୍ପ) । ସାଧୁମାନଙ୍କ ଜୀବନୀ ପଢ଼ି ସେ ମଧ୍ୟ ସେମାନଙ୍କ ପରି ଈଶ୍ୱରଙ୍କ ସେବାର ବୀର (Knights) ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କ ପାଇଁ ଲଢେଇ କରିବାକୁ ଇଚ୍ଛା କଲେ । ୧୫୨୨ ମସିହା ଯେତେବେଳେ ତାଙ୍କୁ ୩୧ ବର୍ଷ ବୟସ ହୋଇଥିଲା, ସେତେବେଳେ ନିଜର ଦୁର୍ଗ ଛାଡ଼ି ମନ୍ତେସେରାତ୍ ମାଙ୍କ ତୀର୍ଥସ୍ଥାନ କାତାଲୋନିଆ ଅଭିମୁଖେ ଯାତ୍ରା କଲେ । ନିଜର ଅତି ମୂଲ୍ୟବାନ ପୋଷାକ ଭିକାରୀଙ୍କୁ ଦେଇ ପବିତ୍ରତାର ବ୍ରତ ନେଇ ସେହି ମା' ମେରୀଙ୍କ ବେଦୀରେ ନିଜର ବର୍ଚ୍ଛା ଏବଂ ଛୁରୀକୁ ସମର୍ପଣ କଲେ । ସେଠାରେ ସେ ପାପ ସ୍ୱୀକାର କରି ନିକଟବର୍ତ୍ତୀ ମାନ୍‌ରେସାକୁ ଗଲେ ଏବଂ ସେଠାରେ ସରଳ ଓ ପ୍ରାର୍ଥନାମୟ ଜୀବନ ବିତାଇଲେ । ସେହି ମାନ୍‌ରେସା ଗୁହାରେ ଇଗ୍ନାସିୟସ୍ ସ୍ୱର୍ଗୀୟ ଚେତନା ପାଇ Spiritual Exercise ପୁସ୍ତକ

ଲେଖିଲେ । ଏହି ପୁସ୍ତକରେ କିପରି ଈଶ୍ୱରଙ୍କ ଇଛାକୁ ଜଣେ ଜାଣିପାରିବ ଏବଂ କେଉଁ ରାସ୍ତାକୁ ସେ ବାଛିପାରିବ ସେହି ବିଷୟ ଇଗ୍ନାସିୟସ ଲେଖିଛନ୍ତି ; ଏହି ପୁସ୍ତକରେ ମଧ୍ୟ ସେ ଶିକ୍ଷା ଦିଅନ୍ତି ଯେ, 'ସବୁକିଛି ଈଶ୍ୱରଙ୍କ ଗୌରବ ନିମନ୍ତେ କରିବା ଉଚିତ୍' ।

୧୫୨୩ ମସିହାରେ ସେ ଯେରୁସାଲେମ ଅଭିମୁଖେ ତୀର୍ଥଯାତ୍ରା ଆରମ୍ଭ କଲେ । ସେଠାରୁ ବାର୍ସେଲୋନା ଫେରିଆସି ଆଲକାଲା ଏବଂ ସାଲାମାନ୍‌କୋ ବିଶ୍ୱବିଦ୍ୟାଳୟରେ ଲାଟିନ୍ ଭାଷା ଶିକ୍ଷା କଲେ । ସେଠାରୁ ୧୫୨୮ ସାଲ୍‌ରେ ଫ୍ରାନ୍‌ସର ପ୍ୟାରିସ୍ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷାପ୍ରାପ୍ତ କଲେ । ପ୍ୟାରିସ୍‌ରେ ୭ ବର୍ଷ ରହଣି ମଧ୍ୟରେ ଫ୍ରାନ୍‌ସିସ୍ ଜେଭିୟର ଏବଂ ପିଟେର ଫାବେର୍‌ଙ୍କ ସମେତ ଅନ୍ୟ ୪ଜଣଙ୍କ ସହିତ ଯୋଗଦେଇ ଯୀଶୁ ସଂଘ ସ୍ଥାପନ କରିଥିଲେ । ୧୫୩୪ ସାଲ୍, ଅଗଷ୍ଟ ୧୫, କୁମାରୀ ମାରିୟାଙ୍କ ସ୍ୱର୍ଗାରୋହଣ ପର୍ବ ଦିନ ପ୍ୟାରିସ୍ ନିକଟବର୍ତ୍ତୀ ମଣ୍ଟମାର୍ତ୍ତେର ସାଧୁ ଡେନିସ୍ ଗୀର୍ଜାରେ ସମବେତ ହୋଇ ଦାରିଦ୍ର୍ୟ ଓ ପବିତ୍ରତାର ବ୍ରତ ନେଇଥିଲେ । ପବିତ୍ର ନଗର ଯେରୁସାଲେମ୍ ଯାଇ ଅବିଶ୍ୱାସୀମାନଙ୍କ ମନ ପରିବର୍ତ୍ତନ ନିମନ୍ତେ ସେମାନେ ଦୃଢ ସଂକଳ୍ପ ନେଇଥିଲେ । ଇଗ୍ନାସିୟସ୍ ଅସୁସ୍ଥ ଯୋଗୁଁ ସ୍ପେଇନ୍‌କୁ ଫେରିଆସିଲେ । ମଣ୍ଟମାର୍ତ୍ତାରେ ଯେଉଁ ନିଷ୍ପତ୍ତି ନେଇଥିଲେ, ସେମାନେ ପୁଣ୍ୟପିତାଙ୍କ ଆଜ୍ଞାବଦ୍ଧ ହେବେ, ତାହା ସେମାନେ ପାଳନ କଲେ । ୧୫୪୦ ସାଲ ସେପ୍ଟେମ୍ବର ୨୭ ତାରିଖ ଦିନ ପୁଣ୍ୟପିତା ତୃତୀୟ ପାଉଲ ଯୀଶୁ ସଂଘ ସମାଜ ସ୍ଥାପନ ପାଇଁ ଅନୁଷ୍ଠାନିକ ସ୍ୱୀକୃତି ଦେଲେ । ଇଗ୍ନାସିୟସ୍‌ଙ୍କୁ ସଂଘର ମୁଖ୍ୟ ଦାୟିତ୍ୱ ଦିଆଗଲା । ସଂଘର ସମ୍ବିଧାନ ଯେତେବେଳେ ପୁଣ୍ୟପିତାଙ୍କ ନିକଟରେ ଉପସ୍ଥାପନ କରାଗଲା, ପୁଣ୍ୟପିତା ତାହା ଦେଖି ଆଶ୍ଚର୍ଯ୍ୟ ପ୍ରକାଶ କରି କହିଥିଲେ, 'ଈଶ୍ୱରଙ୍କ ଅଙ୍ଗୁଳି ଏହିଠାରେ ଅଛି' । ଇଗ୍ନାସିୟସ୍‌ଙ୍କ ନେତୃତ୍ୱରେ ଯୀଶୁ ସଂଘ ସମାଜର କାର୍ଯ୍ୟ ଦିନକୁ ଦିନ ଚାରିଆଡ଼େ ବିସ୍ତାର ହେବାକୁ ଲାଗିଲା । ୧୫୫୬ ସାଲ୍, ଜୁଲାଇ ୩୧ ତାରିଖରେ ୬୫ ବର୍ଷ ବୟସରେ ମୁଖରେ ଯୀଶୁଙ୍କ ପବିତ୍ର ନାମ ଉଚ୍ଚାରଣ କରି ସାଧୁ ଇଗ୍ନାସିୟସ୍ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ମୃତ୍ୟୁ ବେଳକୁ ଯୀଶୁ ସମାଜର ପ୍ରାୟ ୧୦୦ଟି ଗୃହ ଏବଂ ୧୦୦୦ଜଣ ସଭ୍ୟଥିଲେ । ଇଗ୍ନାସିୟସଙ୍କ ମୂଳ ଲକ୍ଷ୍ୟ

ଥିଲା ଲୁଥରାନ୍ (Heresy) (ଧର୍ମତତ୍ତ୍ୱ ବିରୋଧ ମତ)କୁ ସାମନା କରି ଉପଯୁକ୍ତ ଶିକ୍ଷା ଦେଇ ଲୋକମାନଙ୍କ ମନରୁ ଭ୍ରାନ୍ତ ଧାରଣା ଦୂରେଇ ଦେବା ଏବଂ ଖ୍ରୀଷ୍ଟଙ୍କୁ ଅନୁସରଣ କରିବା ପଥ ଦେଖାଇବା । ତାଙ୍କ ଜୀବନରୁ ଆମ୍ଭେ ଶିକ୍ଷା ପାଉ ଯେ, ସେ ଖ୍ରୀଷ୍ଟଙ୍କର ସେବା ପାଇଁ ନିଜକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେ । ପୁଣ୍ୟପିତା ପଞ୍ଚଦଶ ଗ୍ରେଗରୀ ୧୬୨୨ରେ ତାଙ୍କୁ ସାଧୁ ରୂପେ ଘୋଷଣା କରିଥିଲେ । ତାଙ୍କ ଦ୍ୱାରା ଲିଖିତ ଏକ ସୁନ୍ଦର ଏବଂ ଗଭୀର ପ୍ରାର୍ଥନା ସମସ୍ତଙ୍କୁ ହୃଦୟକୁ ସ୍ପର୍ଶ କରିପାରିଥିଲା ।

'ଖ୍ରୀଷ୍ଟଙ୍କ ଆତ୍ମା ମୋତେ ଶୁଚୀ କରୁ ।
ଖ୍ରୀଷ୍ଟଙ୍କ ଶରୀର ମୋତେ ଉଦ୍ଧାର କରୁ ।
ଖ୍ରୀଷ୍ଟଙ୍କ ରକ୍ତ ମୋତେ ପ୍ରକ୍ଷାଳନ କରୁ ।
ଖ୍ରୀଷ୍ଟଙ୍କ ପାର୍ଶ୍ୱରୁ ପ୍ରବାହିତ ଜଳ ମୋତେ ଧୌତ କରୁ ।
ଖ୍ରୀଷ୍ଟଙ୍କ ଯନ୍ତ୍ରଣା ମୋତେ ଶକ୍ତିବନ୍ତ କରୁ ।'

ହେ ମୋର ପ୍ରିୟ ଯୀଶୁ, ମୋର ପ୍ରାର୍ଥନା ଶୁଣ, ତୁମ କ୍ଷତ ଭିତରେ ମୋତେ ଲୁଚାଇ ରଖ । ତୁମଠାରୁ ଯେପରି ପୃଥକ ନ ରହେ, ସେଥିପାଇଁ ମୋତେ ଅନୁମତି ଦିଅ । ଅସଙ୍ଗତ ଶତ୍ରୁମାନଙ୍କଠାରୁ ମୋତେ ରକ୍ଷା କର । ମୃତ୍ୟୁ ସମୟରେ ମୋତେ ତୁମ ନିକଟକୁ ଡାକ, ତୁମ ନିକଟକୁ ଆସିବା ପାଇଁ ସାହାଯ୍ୟ କର, ଯେପରି ତୁମ ସାଧୁମାନଙ୍କ ସହିତ ସର୍ବଦା ତୁମର ପ୍ରଶଂସା କରିପାରିବି । ଆମେନ୍ ।

**ଇୟୋଲାର ସାଧୁ ଇଗ୍ନାସିୟସ୍‌ଙ୍କ କେତୋଟି ଉକ୍ତି**

✸ "କାର୍ଯ୍ୟ କର ଯେପରି ସବୁକିଛି ତୁମ ଉପରେ ନିର୍ଭର କରେ ; ବିଶ୍ୱାସ କର ଯେପରି ସବୁକିଛି ପରମେଶ୍ୱରଙ୍କଠାରେ ନିର୍ଭର କରେ" ।

✸ "ଯେଉଁମାନେ ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ କୌଣସି ପ୍ରମାଣର ଆବଶ୍ୟକତା ନାହିଁ । ଯେଉଁମାନେ ଅବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଯେତେ ପ୍ରମାଣ ଦେଲେ ମଧ୍ୟ ତାହା ଯଥେଷ୍ଟ ନୁହଁ" ।

✸ "ଯାହାଙ୍କୁ ପରମେଶ୍ୱର ଅଧିକ ଯନ୍ତ୍ରଣା ଦିଅନ୍ତି ତାହାଙ୍କୁ ସାଧୁ କରିବା ପାଇଁ ସେ ସେହି ଚିହ୍ନ ଦିଅନ୍ତି" ।



# ଯୋହନ ମାରି ଭିଆନି (୧୭୮୬ - ୧୮୫୯, ଅଗଷ୍ଟ ୪)

ଫ୍ରାନ୍ସ ଦେଶର ଲିୟନ ନିକଟବର୍ତ୍ତୀ ଦାର୍ଦିଲି ଗ୍ରାମରେ ୧୭୮୬ ସାଲ୍ 'ମଇ' ମାସ ୮ ତାରିଖରେ ଯୋହନ ଗୋଟିଏ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାରରେ ୮ଜଣ ଭାଇ ମଧ୍ୟରୁ ସେ ଥିଲେ ଚତୁର୍ଥ । ପିଲାଦିନରୁ ଯୋହନ ପିତାଙ୍କୁ କୃଷି କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଗଛ, ଫୁଲ ଓ ପ୍ରକୃତି ମଧ୍ୟରେ ସେ ଛୋଟରୁ ବଢ଼ି ଥିଲେ ଏବଂ ପ୍ରଭୁଙ୍କର ଉପସ୍ଥିତି ଅନୁଭବ କରୁଥିଲେ । ତାଙ୍କ ମାଁ ଥିଲେ ଜଣେ ବିଶ୍ୱାସୀ, ଏଣୁ ତାଙ୍କଠାରୁ ପ୍ରଥମ ଧର୍ମ ଶିକ୍ଷା ପାଇଥିଲେ । ଯେତେବେଳେ ସେ ଏକା କାମ କରୁଥାନ୍ତି, ସେ ଜୋର୍‌ରେ ପ୍ରାର୍ଥନା କରୁଥିଲେ, ଅନ୍ୟମାନେ ଥିବା ସମୟରେ ନୀରବରେ ପ୍ରାର୍ଥନା କରୁଥାନ୍ତି । ଯେତେବେଳେ କୋଡ଼ି କିମ୍ବା ଶାବଳ ନେଇ ଭୂମି ଉପରେ ପକାଉଥାନ୍ତି ସେ ନିଜକୁ ନିଜେ କହୁଥାନ୍ତି, ଏହିପରି ଆତ୍ମାର ଚାଷ ମୋତେ କରିବାକୁ ପଡ଼ିବ ଏବଂ ଉତ୍ତମ ପରମେଶ୍ୱରଙ୍କୁ ଉତ୍ତମ ବୀଜ ଦେବାକୁ ପଡ଼ିବ । ୧୩ ବର୍ଷ ବୟସରେ ସେ ପ୍ରଥମ ଥର ପାପସ୍ୱୀକାର କରି ଦିବ୍ୟ ପ୍ରସାଦ ଗ୍ରହଣ କରିଥିଲେ । ସେହି ସମୟରୁ ଯାଜକ ହେବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା । ଏହି କଥା ତାଙ୍କ ପିତାଙ୍କୁ ୪ ବର୍ଷ ପରେ ଜଣେଇଥିଲେ । ୧୮୧୩ ସାଲ୍‌ର ଅକ୍ଟୋବର ମାସରେ ଲିୟନ୍‌ର Major Seminary ରେ ପ୍ରଥମେ ପ୍ରବେଶ କଲେ । ଲାଟିନ୍ ଭାଷା ଶିଖିବା ପାଇଁ ତାଙ୍କୁ ବହୁତ କଷ୍ଟ ଲାଗୁଥିଲା । ଏଣୁ ଶିକ୍ଷକମାନେ ଯାହା ବୁଝାଉଥିଲେ,ସେ ବୁଝି ପାରୁ ନଥିଲେ କିମ୍ବା ସେମାନଙ୍କୁ ପ୍ରଶ୍ନ ପଚାରି ପାରୁନଥିଲେ । ପ୍ରଥମ ଟେର୍ମର ଶେଷରେ ତାଙ୍କୁ ସେମିନାରୀ ଛାଡ଼ି ଯିବା ପାଇଁ କୁହାଗଲା । ଏହା ତାଙ୍କ ପାଇଁ ବହୁତ ଦୁଃଖ ଏବଂ ସେ ହତୋତ୍ସାହ ହୋଇପଡ଼ିଲେ । ସେହି ସମୟରେ ଫାଦେର ବାଲି ତାଙ୍କୁ ଏକୁଲିରେ ରଖି ବ୍ୟକ୍ତିଗତ ଭାବେ ଲାଟିନ୍ ଭାଷା ଶିଖାଇଲେ । ଅଭିଷେକ ପୂର୍ବରୁ ତାଙ୍କୁ ପରୀକ୍ଷା କରାଗଲା, ସେଥିରେ ଭଲ ନ କରିବାରୁ, ତାଙ୍କୁ ବ୍ୟକ୍ତିଗତ ଭାବେ ପରୀକ୍ଷା କରି ଉତ୍ତୀର୍ଣ୍ଣ କରାଗଲା ।

୨୯ବର୍ଷ ବୟସରେ ୧୮୧୫ ସାଲ୍ ଅଗଷ୍ଟ ୧୩ ତାରିଖରେ ସେ ଯାଜକ ଅଭିଷେକ ପାଇଲେ । ତାଙ୍କର ପ୍ରଥମ ଦିବ୍ୟଯଜ୍ଞ ହୋଇଥିଲା, ଗ୍ରେନୋବ୍ଲୁ ସେମିନାରୀର ଚାପେଲ୍‌ରେ । ଫାଦେର୍ ଭିଆନିଙ୍କ ଭଉଣୀ ମାର୍ଗରେତ କହୁଥାନ୍ତି, "ସେ ଭଲ ପ୍ରଚାର କରୁ ନଥିଲେ, କିନ୍ତୁ ଯେତେବେଳେ ସେ ପ୍ରଚାର କରୁଥିଲେ, ଅନେକେ ତାଙ୍କ ଦିବ୍ୟଯଜ୍ଞ ଶୁଣିବା ପାଇଁ ଆସୁଥିଲେ" ।

ଫାଦେର୍ ବାଲି ୧୮୧୭ରେ ଭିଆନିଙ୍କ କୋଳରେ ମୃତ୍ୟୁବରଣ କଲେ । ଫାଦେର୍ ବାଲି, ଭିଆନିଙ୍କର ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରେରଣାର ଉତ୍ସଥିଲେ । ଭିଆନିଙ୍କ ଯଦିଓ ଜାଗତିକ ଜିନିଷ ପ୍ରତି ଆଗ୍ରହ ନଥିଲା, ତଥାପି ତାଙ୍କ ଶିକ୍ଷକ ଓ ଗୁରୁଙ୍କ ଗୋଟିଏ ଛୋଟିଆ ଦର୍ପଣ ରଖିଥିଲେ କାରଣ ଏହା ଥିଲା ଫାଦେର ବାଲିଙ୍କ ମୁଖର ପ୍ରତିବିମ୍ବ । ଫାଦେର୍ ବାଲିଙ୍କ ମୃତ୍ୟୁ ପରେ ଭିଆନିଙ୍କୁ ଆର୍ସ ନାମକ ଗୋଟିଏ ଛୋଟିଆ ଗ୍ରାମକୁ ବଦଳି କରାଗଲା । ବଦଳି ସମୟରେ ଭିକାର୍ ଜେନେରାଲ୍ କହିଥିଲେ 'ଏହି ପ୍ୟାରିସ୍‌ରେ ସେତେ ଅଧିକ ପ୍ରେମ ନାହିଁ, କିନ୍ତୁ ମୁଁ ଜାଣେ ତୁମେ ସେଠାରେ କିଛି ପ୍ରେମ ଭରି ପାରିବ' ।

ଏକୁଲିଠାରୁ ଆର୍ସର ଦୂରତା ପ୍ରାୟ ୩୮ କିଲୋମିଟର । ପ୍ରଥମେ ଫାଦେର୍ ଭିଆନିଙ୍କୁ ଚାଲି ଚାଲି ଯିବାକୁ ପଡ଼ିଥିଲା । ପୁଣି କିଛି ବାଟ Carriage ରେ ତାଙ୍କ ବ୍ୟବହାର ଜିନିଷ ନେଇ ସେ ଯାଇଥିଲେ । ଆର୍ସରେ ପହଞ୍ଚିଲା ପରେ ଫାଦେର ଭିଆନି ଦେଖିବାକୁ ପାଇଲେ, କେହି ଚର୍ଚ୍ଚକୁ ଯାଉନାହାନ୍ତି । ରବିବାର ଦିନ ମାନଙ୍କରେ ଗୀର୍ଜାକୁ ନ ଯାଇ ପାନ୍ଥଶାଳାରେ ମଦ୍ୟପାନ କରି, ଜୁଆ ଖେଳି ରାତିସାରା ନାଚ କରି ମଉଜ ମଜଲିସ୍‌ରେ ସମୟ ବିତାଉଛନ୍ତି । ଫାଦେର୍ ଭିଆନି ପ୍ରଥମେ ବ୍ୟକ୍ତିଗତ ସମ୍ପର୍କ ରଖି ତାଙ୍କୁ ଆପ୍ୟାୟିତ କରିବା ପାଇଁ ଘରକୁ ଘର ବୁଲିବା ଆରମ୍ଭ କଲେ । ପ୍ରାର୍ଥନା, ଉପବାସ ଏବଂ କଠିନ ତ୍ୟାଗ ଦ୍ୱାରା କେବଳ ସେମାନଙ୍କ ମନ ପରିବର୍ତ୍ତନ ହେବ, ତାହା ବିଶ୍ୱାସ କଲେ । ଏଣୁ ସେ ନିଜେ କେବଳ ସିଝା ଆଳୁ କେତେ ଖଣ୍ଡ ଖାଇ ଚଟାଣରେ ଶୋଉଥିଲେ । ପ୍ରାୟ ୧୦ ରୁ ୧୫ ଘଣ୍ଟା ପାପ ସ୍ୱୀକାର ଶୁଣୁଥିଲେ । ଦିନେ ପ୍ୟାରିସ୍‌ର ଜଣେ ବ୍ୟକ୍ତି ତାଙ୍କୁ ପଚାରିଲେ, 'କାହିଁକି ସେ ପ୍ରଚାର ସମୟରେ ବହୁତ ଜୋର୍‌ରେ ପାଟିକରି ପ୍ରଚାର କରନ୍ତି, କିନ୍ତୁ ପ୍ରାର୍ଥନା ସମୟରେ ଅତି ଧୀର ସ୍ୱରରେ କଥା କହନ୍ତି' । ସେ ଉତ୍ତର ଦେଲେ, 'ଯେତେବେଳେ ମୁଁ ପ୍ରଚାର କରେ ଯେଉଁମାନେ ଶୁଅନ୍ତି ବା ଶୁଣୁନାହାନ୍ତି ସେମାନଙ୍କୁ ମୁଁ କହେ, କିନ୍ତୁ ପ୍ରାର୍ଥନା ସମୟରେ ମୁଁ ଈଶ୍ୱରଙ୍କ ସହିତ କଥା କୁହେ, ଯିଏ ବଧିର ନୁହଁନ୍ତି' । ଦିନେ ତାଙ୍କ ପ୍ରଚାର ସମୟରେ ସେ କହିଥିଲେ ପାନ୍ଥଶାଳା ସଇତାନର ଗୃହ ଅଟେ । ଏହା ଏକ ବଜାର, ଯେଉଁଠାରେ ଆତ୍ମାମାନେ ହଜିଯାଆନ୍ତି, ଯେଉଁଠାରେ ପରିବାରର ସୁସମ୍ପର୍କ ଭାଙ୍ଗିଯାଏ, ଯେଉଁଠାରେ ଯୁଦ୍ଧ ଆରମ୍ଭ ହୁଏ ଏବଂ ହତ୍ୟାରୂପକ କାର୍ଯ୍ୟ କରାଯାଏ ।

ଆର୍ସରେ ଦିନକୁ ଦିନ ଲୋକଙ୍କ ଭିଡ଼ ବଢିବାକୁ ଲାଗିଲା । ଅନେକ ପାପୀ ଆତ୍ମାମାନେ ପ୍ରଭୁଙ୍କ ପାଖକୁ ଫେରିଆସିଲେ । ଅସୁସ୍ଥ ବ୍ୟକ୍ତିମାନେ ସୁସ୍ଥତା

ଲାଭ କଲେ । ଲୋକଙ୍କ ପାଟିରୁ ଏହି କଥା ବାହାରୁଥାଏ । 'ଭିଆନିଙ୍କ ପରି କୌଣସି ଯାଜକଙ୍କଠାରୁ ପ୍ରଭୁଙ୍କ ବିଷୟ ଶୁଣି ନାହୁଁ' । ଯାଜକମାନେ, ଏହା ଶୁଣି ଭିଆନିଙ୍କ ପ୍ରତି ହିଂସା ପ୍ରକଟ କଲେ । ସେମାନେ ଭିଆନିଙ୍କ ବିରୁଦ୍ଧରେ ସମାଲୋଚନା ଆରମ୍ଭ କଲେ । ବିଶପ୍‌ଙ୍କ ନିକଟରେ ଅନେକ ମିଥ୍ୟା ଅଭିଯୋଗ ଆଣିଲେ । ମନୁଷ୍ୟ ହିସାବରେ ପ୍ରାୟ ଦୁଇ ତିନି ଥର ଅନୁଭବ କଲେ, ସେହି ସ୍ଥାନ ଛାଡ଼ିଯିବା ପାଇଁ । ତଥାପି ପ୍ରାର୍ଥନା ମାଧମରେ ସେ ପ୍ରଭୁଙ୍କଠାରେ ସମ୍ପୂର୍ଣ୍ଣ ଆଶା ସ୍ଥାପନ କରି ରହିଲେ । ଯାଜକମାନଙ୍କ ଅଭିଯୋଗ ଶୁଣି ବିଶପ୍ ଲୋକ ପଠାଇ ତଥ୍ୟ ଅନୁସନ୍ଧାନ କରି ଜାଣିପାରିଲେ ଯେ, ସେହିସବୁ ଅଭିଯୋଗ ମିଥ୍ୟା ଅଟେ ।

୧୮୫୯ ଅଗଷ୍ଟ ୪ ତାରିଖ ଦିନ, ୭୪ ବର୍ଷ ବୟସରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଲୋକଙ୍କ ସେବାରେ ସେ ନିଜକୁ ସମ୍ପୂର୍ଣ୍ଣ ଭାବେ ଉତ୍ସର୍ଗ କରିଥିଲେ । ପାପୀମାନଙ୍କର ମନ ପରିବର୍ତ୍ତନ ପାଇଁ ନିଜେ କଠୋର ପଶ୍ଚାତାପ କରିଥିଲେ । ତାଙ୍କ ତ୍ୟାଗମୟ ସରଳ ଏବଂ ପ୍ରାର୍ଥନାମୟ ଜୀବନ ଦ୍ୱାରା ଆଜି ସେ ପ୍ୟାରିସ୍‌ର ମୁଖ୍ୟ ଯାଜକମାନଙ୍କର ଇଷ୍ଟ ସାଧୁ ରୂପେ ଗଣିତ ହୋଇପାରିଛନ୍ତି, ଏବଂ ପାପସ୍ୱୀକାର ସଂସ୍କାରର ଜଣେ ଶହୀଦ କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୨୫ ସାଲରେ ପୁଣ୍ୟପିତା ଏକାଦଶ ପୀୟୁଷ ତାଙ୍କୁ ସାଧୁ ବୋଲି ଘୋଷଣା କଲେ ।

**ଜନ୍ ମାରି ଭିଆନିଙ୍କ କେତୋଟି ଉକ୍ତି**

✸ "ସମସ୍ତଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କର ନାହିଁ । ଈଶ୍ୱରଙ୍କୁ, ଦୂତମାନଙ୍କୁ ଏବଂ ସାଧୁ ସାଧ୍ୱୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କର, କାରଣ ସେମାନେ ତୁମର ଜନ ସାଧାରଣ" ।

✸ "ଦିବ୍ୟଯଜ୍ଞଠାରୁ ବଳି ମହାନ ଆଉ କିଛି ନୁହଁ । ଯଦି ତାହାଠାରୁ ଅଧିକ ମୂଲ୍ୟବାନ ପ୍ରଭୁଙ୍କଠାରେ ଥାଆନ୍ତା, ତେବେ ତାହା ସେ ଆମକୁ ଦେଇଥାନ୍ତେ" ।

✸ "ଜଣେ ଯାଜକ ଯେତେବେଳେ ସ୍ୱର୍ଗକୁ ଯାଏ କିମ୍ବା ନର୍କକୁ ଯାଏ ସେ କେବେ ଏକା ଯାଆନ୍ତି ନାହି କିନ୍ତୁ ତାଙ୍କ ପଛରେ ହଜାର ହଜାର ଲୋକେ ଯାଆନ୍ତି" ।



# ଶହୀଦ ସାଧୁ ଲରେନ୍ସ
## (୨୨୫-୨୫୮, ଅଗଷ୍ଟ ୧୦)

ପୂଣ୍ୟପିତା ସାଧୁ ସିକ୍ସତୁସ ଯେତେବେଳେ ସ୍ପେଇନ ଯାଇଥିଲେ, ସେଠାରେ ଏହି ଉତ୍ସାହୀ ଯୁବକଙ୍କୁ ସାକ୍ଷାତ କରି ରୋମକୁ ନେଇ ଆସିଥିଲେ । ପ୍ରଥମେ ତାଙ୍କୁ ଡିକେନ ଭାବରେ ଅଭିଷିକ୍ତ କରି ପରେ ଆର୍ଚ୍ଚ ଡିକେନ ରୂପେ ନିଯୁକ୍ତି ଦେଇଥିଲେ । ୭ ଜଣ ଆର୍ଚ୍ଚ ଡିକେନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ । ସେମାନଙ୍କର ଦାୟିତ୍ୱ ଥିଲା ମଣ୍ଡଳୀର ସମ୍ପତିକୁ ଦାୟିତ୍ୱରେ ପରିଚାଳନା କରିବା ବିଶେଷ ଭାବରେ ଗରୀବମାନଙ୍କ ଯତ୍ନ ନେବା ।

ଦିନେ ରୋମର ମୁଖ୍ୟ ପ୍ରଶାସକ ଚର୍ଚ୍ଚର ଅଜସ୍ର ସମ୍ପତି ଥିବାର ଖବର ପାଇ ସେଗୁଡ଼ିକୁ ନିଜର କରିବା ପାଇଁ ଲୋଭ କଲେ । ଏଣୁ ଲରେନ୍ସଙ୍କୁ ଡକାଇ ପଚାରିଲେ, "ଖ୍ରୀଷ୍ଟିୟାନମାନଙ୍କୁ ଆମ୍ଭେ ନିଷ୍ଠୁର ଭାବେ ଅତ୍ୟାଚାର କରୁଛୁ ବୋଲି ତୁମ୍ଭେମାନେ ଅଭିଯୋଗ କରୁଅଛ" । ଆମ୍ଭେ ଶୁଣିବାକୁ ପାଉ ଯେ ତୁମର ଯାଜକମାନେ ଚର୍ଚ୍ଚରେ ସୁନା ଅର୍ପଣ କରନ୍ତି, ପବିତ୍ର ରକ୍ତକୁ ରୂପା ପାତ୍ରରେ ସେବନ କରନ୍ତି, ସୁନାର ରୁଖାରେ ମହମବତୀ ପ୍ରଜ୍ୱଳନ କରି ରାତ୍ରିରେ ଯଜ୍ଞ ଉତ୍ସର୍ଗ କରନ୍ତି । ସେହି ସମସ୍ତ ଲୁଚାଇ ରଖିଥିବା ସୁନା ଓ ରୂପାର ସମ୍ପତି ମୋ ନିକଟକୁ ଘେନିଆସ କାରଣ ସାମ୍ରାଜ୍ୟର ସୈନ୍ୟମାନଙ୍କର ଭରଣପୋଷଣ ନିମନ୍ତେ ମୋର ସେଗୁଡ଼ିକର ପ୍ରୟୋଜନ ଅଛି । ଲରେନ୍ସ ଉତ୍ତର ଦେଲେ, "ବାସ୍ତବରେ ଚର୍ଚ୍ଚର ଯଥେଷ୍ଟ ସମ୍ପତି ଅଛି । କିନ୍ତୁ ମୋତେ କିଛି ସମୟ ଦିଅନ୍ତୁ ମୁଁ ଯେପରି ସବୁ କିଛି ହିସାବ କରି ଆପଣଙ୍କୁ ସେହି ମୂଲ୍ୟବାନ ସମ୍ପତି ଦେଖାଇ ପାରିବି" । ରୋମ୍‌ର ମୁଖ୍ୟ ଶାସକ ତାଙ୍କୁ ତିନି ଦିନ ସମୟ ଦେଲେ । ମଣ୍ଡଳୀ ଦ୍ୱାରା ସାହାଯ୍ୟ ପ୍ରାପ୍ତ ରୋମ୍ ନଗରର ସମସ୍ତ ଗରୀବମାନଙ୍କୁ ସେ ଏକତ୍ର କଲେ । କୁଷ୍ଠୀ, ଛୋଟା, ଅନ୍ଧ, ବିଧବା, ଅନାଥମାନଙ୍କୁ ଧାଡ଼ିରେ ରଖି ମୁଖ୍ୟ ଶାସକଙ୍କୁ ଏହିସବୁ ମଣ୍ଡଳୀର ସମ୍ପତି ବୋଲି ଦେଖାଇଥିଲେ । ରୋମ୍‌ରେ ଏତେ ଜଣ ଗରୀବଙ୍କୁ ଦେଖି ସେ କେବଳ ଯେ ଆଶ୍ଚର୍ଯ୍ୟ ହୋଇଥିଲେ ତା ନୁହେଁ କିନ୍ତୁ ଲରେନ୍ସ ଯେ ତାଙ୍କୁ ଏହି ଭାବରେ ଅପମାନ ଦେଇଛନ୍ତି ଜାଣି ସେ ତାଙ୍କ ପ୍ରତି କ୍ରୋଧାନ୍ୱିତ ହେଲେ । ମୁଖ୍ୟ ଶାସକ ଲରେନ୍ସଙ୍କୁ ଭୟ ଦେଖାଇ

କହିଲେ "ତୁମ୍ଭେ ରାତ୍ରିସାରା ନିର୍ଯ୍ୟାତନା ପାଇବା ପାଇଁ ଚାହୁଁଛ ନା ଆମର ଦେବତାମାନଙ୍କ ନିକଟରେ ନିଜର ନୈବେଦ୍ୟ ଉତ୍ସର୍ଗ କରିବା ପାଇଁ ଚାହଁ" । ଲରେନ୍ସ କହିଲେ, "ମୋ ପାଇଁ ରାତ୍ରି ଅନ୍ଧକାର ନୁହେଁ, ଆଲୋକରେ ସବୁକିଛି ରଶ୍ମି ଭଳି ଦେଖାଯାଏ" । ଏହାପରେ ରୋମ୍ ଶାସକ ଆଦେଶ ଦେଲେ, ତାଙ୍କୁ ଉତପ୍ତ ଲୁହା ଜାଲିରେ ଭାଜିବା ପାଇଁ । ଲରେନ୍ସଙ୍କ ବସ୍ତ୍ର ବାହାର କରି ତାଙ୍କୁ ସେହି ଉତପ୍ତ ଲୌହ ଜାଲିରେ ବନ୍ଧାଗଲା ଏବଂ ଜୀବନ୍ତ ଭାବେ ଭଜା ଗଲା । ଏହି ଦୃଶ୍ୟକୁ ଯେଉଁମାନେ ଦେଖିଲେ, ସେମାନେ କହନ୍ତି ଯେ ତାଙ୍କ ମୁଖ ସ୍ୱର୍ଗୀୟ ଆଲୋକ ଦ୍ୱାରା ଉଭାସିତ ହେଉଥିଲା ଏବଂ ସେହି ପୋଡ଼ା ମାଂସର ବାସନା ସୁଗନ୍ଧ ଧୂପ ପରି ନିର୍ଗତ ହେଉଥିଲା । ଗୋଟିଏ ପାର୍ଶ୍ୱରେ ସମ୍ପୂର୍ଣ୍ଣ ରୂପେ ପୋଡ଼ା ଯିବା ପରେ ସାଧୁ ଲରେନ୍ସ ଶାସକଙ୍କୁ ଏହି ପ୍ରକାରେ କହିଥିବା କୁହାଯାଏ, "ମୋର ଶରୀରର ଗୋଟିଏ ପାର୍ଶ୍ୱ ସମ୍ପୂର୍ଣ୍ଣ ପୋଡ଼ି ଯାଇଛି, ଅନ୍ୟ ପାର୍ଶ୍ୱଟି ପୋଡ଼ିବାକୁ ଦିଅ" । ଅନ୍ୟ ପାର୍ଶ୍ୱଟି ପୋଡ଼ିବା ପରେ ଲରେନ୍ସ କହିଲେ, "ମୋର ଶରୀର ପ୍ରସ୍ତୁତ ହୋଇଛି, ତୁମେ ବର୍ତମାନ ଭୋଜନ କର" । ଏହାପରେ ସେହି ବିଜାତୀୟ ଶାସକଙ୍କ ମନ ପରିବର୍ତନ ପାଇଁ ପ୍ରାର୍ଥନା କରି ନିଜର ଜୀବନ ଉତ୍ସର୍ଗ କଲେ ।

ରୋମୀୟ ଶାସକ ଭାଲେରିଆନଙ୍କ ଆଦେଶକ୍ରମେ ଅନେକ ଧର୍ମାଧ୍ୟକ୍ଷ, ଯାଜକ ଓ ଡିକେନମାନଙ୍କୁ ହତ୍ୟା କରାଗଲା । ପୂଣ୍ୟପିତା ସିକ୍ସତୁସଙ୍କୁ ହତ୍ୟା କରିବା ନିମନ୍ତେ ନେବା ସମୟରେ କ୍ରନ୍ଦନ କରି ସାଧୁ ଲରେନ୍ସ କହିଥିଲେ, 'ହେ ପିତା, ତୁମର ପୁତ୍ରଙ୍କୁ ଛାଡି କେଉଁଠାକୁ ଯାଉଛ ? ହେ ପବିତ୍ର ଯାଜକ ତୁମର ଡିକେନଙ୍କୁ ଛାଡ଼ି କେଉଁଠାକୁ ଯାଉଛ । ତୁମର ସେବକ ସାହାଯ୍ୟ ବିନା ତୁମ୍ଭେ କେବେ ବଳି ଉତ୍ସର୍ଗ କରି ନ ଥାଅ । ମୁଁ ତୁମ ବିରୁଦ୍ଧରେ କଣ କଲି ଯାହା ତୁମ୍ଭଙ୍କୁ ଦୁଃଖ ଆଣି ଦେଇଛି । ମୁଁ କଣ ତୁମର ପୁତ୍ର ହେବା ପାଇଁ ଅଯୁଗ୍ୟ ହେଲି । କାହାକୁ ତୁମ ବେଦୀର ସେବକ ହେବା ପାଇଁ ତୁମ୍ଭେ ମନୋନୀତ କରିଅଛ' । ପୂଣ୍ୟପିତା କହିଲେ, "ହେ ମୋର ପୁତ୍ର ମୁଁ ତୁମଙ୍କୁ ପରିତ୍ୟାଗ କରୁନାହି କିନ୍ତୁ ତୁମର ବିଶ୍ୱାସକୁ ପରୀକ୍ଷା କରିବା ପାଇଁ ଅଧିକ ଯନ୍ତ୍ରଣା ତୁମ ପାଇଁ ଅଛି । ଆମ୍ଭେ ବୃଦ୍ଧ ଓ ଦୁର୍ବଳ ହୋଇଥିବା ହେତୁ ଆମକୁ କମ୍ ଯନ୍ତ୍ରଣା ଦିଆଯାଇଅଛି । ତିନି ଦିନ ପରେ ତୁମେ ମୋ ପଛରେ ଆସିବ" । ପୂଣ୍ୟପିତା ସିକ୍ସତୁସ ଲରେନ୍ସଙ୍କୁ କହିଲେ, ମଣ୍ଡଳୀର ସମସ୍ତ ସମ୍ପଦ ଗରୀବମାନଙ୍କୁ

ଦାନ କର । ୨୫୮ ମସିହା ଅଗଷ୍ଟ ୬ ତାରିଖରେ ପୂଣ୍ୟପିତା ସିକ୍ସ୍ତୁସଙ୍କୁ ହତ୍ୟା କରାଗଲା । ପୂଣ୍ୟପିତା ସିକ୍ସ୍ତୁସଙ୍କ ମୃତ୍ୟୁର ୪ ଦିନ ପରେ ଲରେନ୍ସଙ୍କୁ ଉତପ୍ତ ଅଗ୍ନି ଲୌହ ଜାଲିରେ ଭଜା ଗଲା । ସାଧୁ ଲରେନ୍ସଙ୍କ ପ୍ରାର୍ଥନା ଦ୍ୱାରା ରୋମ୍‌ର ଅଧିକାଂଶ ଲୋକ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ବୋଲି ଲୋକେ ବିଶ୍ୱାସ କରନ୍ତି ।

ସାଧୁ ଆମ୍ବ୍ରୁସ କହନ୍ତି, "ଅତ୍ୟାଚାରୀଙ୍କ ଅଗ୍ନି ଶିଖାକୁ ସେ ତାଙ୍କର ବିଶ୍ୱାସ ଦ୍ୱାରା ଜୟଯୁକ୍ତ କରିଥିଲେ, ନରକର ଅଗ୍ନିକୁ ବିଶ୍ୱାସର ଅଗ୍ନିଦ୍ୱାର ଜୟଯୁକ୍ତ ହୋଇଥିଲେ, ବିଚାର ଦିବସର ଭୟକୁ ଖ୍ରୀଷ୍ଟଙ୍କ ପ୍ରେମ ଦ୍ୱାରା ଦୂର କରିଥିଲେ" ।

**ସାଧୁ ଲରେନ୍ସଙ୍କ କେତୋଟି ଉକ୍ତି:**

✸ "ହେ ଅସୁଖୀ ବ୍ୟକ୍ତିମାନେ, ପରମେଶ୍ୱରଙ୍କ ଶକ୍ତି କେଡ଼େ ମହାନ ତାହା ଶିଖ । ତୁମର ଜ୍ୱଳନ୍ତ ଅଙ୍ଗାର ମୋତେ ସତେଜ କରେ । କିନ୍ତୁ ତାହା ତୁମ ପାଇଁ ଅନନ୍ତ କାଳୀନ ଦଣ୍ଡ ହେବ" ।

✸ "ଯୀଶୁଖ୍ରୀଷ୍ଟଙ୍କ ନାମରେ ଆଶ୍ରୟ ନିଅ । ଯେଉଁ ଯନ୍ତ୍ରଣା ମୁଁ ଅନୁଭବ କରେ, ସେଥିପ୍ରତି ମୋର ଭୟନାହି କାରଣ ସେଗୁଡ଼ିକ ଚିରସ୍ଥାୟୀ ନୁହଁ " ।

✸ ସାଧୁ ଲରେନ୍ସଙ୍କୁ ଅନ୍ୟ ଦେବଦେବୀଙ୍କ ସମ୍ମୁଖରେ ପ୍ରଣିପାତ କରିବା ପାଇଁ ରୋମୀୟ ଶାସକ ଆଦେଶ ଦେଲେ ନଚେତ୍ ସାରା ରାତ୍ରୀ ସେହି ଅନ୍ଧକାର ତୁମ ଯନ୍ତ୍ରଣାର ସାକ୍ଷୀ ହେବ । ସେମାନଙ୍କୁ ଲରେନ୍ସ ଏହି ପରି କହିଥିଲେ, "ମୋର ରାତ୍ରୀର ଅନ୍ଧକାର ନାହିଁ । ସବୁକିଛି ମୋ ମୋ ପାଇଁ ଉଜ୍ଜଳ" ।

✸ ଏହା ପରେ ତାଙ୍କ ପାଟିରେ ପଥର ପୁରାଇ ଆଘାତ କଲେ । ହସ ହସ ମୁହଁରେ ଲରେନ୍ସ ଉତ୍ତର ଦେଲେ, "ହେ ଖୀଷ୍ଟ ମୁଁ ତୁମଙ୍କୁ ଧନ୍ୟବାଦ ଦିଏ" ।



# ସାଧୁ ମାକ୍ସିମିଲିଆନ ମେରୀ କଲ୍‌ବେ

## (୧୮୯୪-୧୯୪୨, ଅଗଷ୍ଟ ୧୪)

ପୋଲାଣ୍ଡ ଦେଶର (Zdunsk) ଡୁନସ୍କା ନାମକ ଗୋଟିଏ ଛୋଟିଆ ସହରରେ ୧୮୯୪ ମସିହା ଜାନୁଆରୀ ୮ ତାରିଖରେ ମାକ୍ସିମିଲିଆନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଜୁଲେସ ଏବଂ ମାତା ମାରିଆ ବହୁତ ଗରିବ ବୁଣାକାର ପରିବାରର ଥିଲେ । ମାକ୍ସିମିଲିଆନଙ୍କ ବାପ୍ତିସ୍ମ ନାମ ଥିଲା ରେମଣ୍ଡ । ଛୋଟରୁ ମାକ୍ସିମିଲିଆନ୍ ଜଣେ ଜିଦ୍‌ଖୋର ଏବଂ ଚଗଲା ପ୍ରକୃତିର ଥିଲେ । ସେ ବହୁତ ଚଞ୍ଚଳ ଏବଂ ସ୍ୱାଧୀନ ଚିନ୍ତାଧାରାର ବ୍ୟକ୍ତି ଥିଲେ । ମାକ୍ସିମିଲିଆନଙ୍କ ଏହି ପ୍ରକାର ବ୍ୟବହାର ଦେଖି ଦିନେ ତାଙ୍କ ମା' ତାଙ୍କୁ ଗାଳିକରି ମନ ବିରକ୍ତିରେ କହିଥିଲେ 'ପୁଅ, ତୁ ଯଦି ଏହିପରି ଚାଲିଥିବୁ, ତୁ କ'ଣ ହେବୁ ଭବିଷ୍ୟତରେ ମୁଁ ଜାଣିପାରୁନାହିଁ, ତତ୍‌କ୍ଷଣାତ୍ ନୀରବ ରହି ତାଙ୍କ ଘରର କୋଣରେ ଥିବା ଚେଷ୍ଟୋକୋଭା ମା' ମାରିଆଙ୍କ ମୂର୍ତ୍ତି ନିକଟକୁ ଯାଇ ପ୍ରାର୍ଥନା କଲେ । ସେହିଦିନଠାରୁ ପ୍ରତି ଦିନ ତାଙ୍କ ମା' ଦେଖୁଥାନ୍ତି ମାକ୍ସିମିଲିଆନଙ୍କୁ ସେହି ମୂର୍ତ୍ତିର ସମ୍ମୁଖରେ ପ୍ରାର୍ଥନା କରିବାର । ମାକ୍ସିମିଲିଆନ୍‌ଙ୍କ ବ୍ୟବହାର ପରିବର୍ତ୍ତନ ହେବାର ଦେଖି ତାଙ୍କ ମା' ତାଙ୍କୁ ପଚାରିଥିଲେ, 'ପୁଅ ତୋର କ'ଣ ହେଲା, ତୋ ମାଁ କୁ ଖୋଲି କହି ଦେ' । ଏହାପରେ ମାକ୍ସିମିଲିଆନ୍ କହିଲେ, 'ମା' ତୁମେ ଯେଉଁଦିନଠାରୁ ମୋତେ ଗାଳି ଦେଇ କହିଥିଲ ଏ ପୁଅ ଭବିଷ୍ୟତରେ କ'ଣ ହେବ; ତାହା ମୋ ହୃଦୟକୁ ସ୍ପର୍ଶ କଲା ଏବଂ ମା' ମେରୀଙ୍କ ନିକଟକୁ ଯାଇ ମୁଁ ପଚାରିଲି ମା' ମୁଁ କ'ଣ ହୋଇପାରିବି ? ଗୀର୍ଜାକୁ ଯିବା ସମୟରେ ମଧ୍ୟ ମୁଁ ମା' ମେରୀଙ୍କୁ ସେହି କଥା ହିଁ ପଚାରିଥିଲି । ସେହି ସମୟରେ ମା' ମେରୀ ଗୋଟିଏ ହସ୍ତରେ ରଙ୍ଗ ବର୍ଣ୍ଣର ମୁକୁଟ ଏବଂ ଅନ୍ୟ ହସ୍ତରେ ଧଳା ବର୍ଣ୍ଣର ମୁକୁଟ ନେଇ ଆସିଲେ । ରଙ୍ଗ ବର୍ଣ୍ଣର ମୁକୁଟର ଅର୍ଥ ହେଲା, ତାଙ୍କ ପାଇଁ ଶହୀଦ ହେବା ଏବଂ ଧଳା ମୁକୁଟର ଅର୍ଥ ହେଲା, ତାଙ୍କ ପାଇଁ ପବିତ୍ର ହୋଇ ରହିବା । ମାରିଆ ପଚାରିଲେ, 'କେଉଁ ମୁକୁଟ ତୁମେ ନେବା ପାଇଁ ଇଚ୍ଛା କରୁଛ' ? ମାକ୍ସିମିଲିଆନ କହିଥିଲେ, ମା' ମୁଁ ଦୁଇଟି ଯାକ ମୁକୁଟ ନେବାପାଇଁ ଇଚ୍ଛା

କରୁଛି । ମା' ମାରିଆ ତାଙ୍କୁ ନିରୀକ୍ଷଣ କରି ହସି ଅଦୃଶ୍ୟ ହୋଇଗଲେ । କେବଳ ତାଙ୍କ ମା' ଙ୍କୁ ହିଁ ମାକ୍ସିମିଲିଆନ୍ ଏହି କଥା କହିଥିଲେ, ଦୁହେଁ ଏହି ବିଷୟଟି ଗୁପ୍ତ ରଖିଲେ । ମାକ୍ସିମିଲିଆନଙ୍କୁ ଯେତେବେଳେ ୧୩ ବର୍ଷ ହେଉଥାଏ, ତାଙ୍କ ଭାଇ ଫ୍ରାନ୍‌ସିସଙ୍କ ସହିତ ଦିନେ ଦୁହେଁ ଅଷ୍ଟ୍ରିଆ ଦେଶର ସୀମା ପାର ହୋଇ ଫ୍ରାନ୍‌ସିସ୍କାନ ସଂଘରେ ପ୍ରବେଶ କରିଥିଲେ । ଦୁଇ ବର୍ଷ ନଭିସିଏଟ୍ କଲା ପରେ ରୋମକୁ ଉଚ୍ଚ ଅଧ୍ୟୟନ କରିବା ପାଇଁ ଯାଇଥିଲେ । ସେହି ସମୟରେ ମାକ୍ସିମିଲିଆନ ମା' ମାରିଆଙ୍କ ମାଧ୍ୟମରେ ପ୍ରଭୁଙ୍କ ନିମନ୍ତେ ଯୁଦ୍ଧ କରିବା ପାଇଁ ଗୋଟିଏ ସୈନ୍ୟଦଳ ଗଢ଼ିବା ପାଇଁ ଚିନ୍ତା କଲେ । ସେହି ଦଳର ନାମ ଦେଲେ Militia Immaculate ମେରୀଙ୍କ ସୈନ୍ୟଦଳ The Knights of Mary । ରୋମରେ ଥିବା ସମୟରେ ମାକ୍ସିମିଲିଆନ୍ ମାକ୍ସ ଭାବରେ ତାଙ୍କର ବନ୍ଧୁମାନଙ୍କ ମଧ୍ୟରେ ପରିଚିତ ହେଲେ । ୧୯୧୨ ମସିହା ଅକ୍ଟୋବର ୨୬ ତାରିଖରେ ଗାଲିସିଆ Province ପାଇଁ ଯାଜକତା ଅଭିଷେକ ପାଇଥିଲେ । ଯାଜକତା ପରେ କ୍ରାକୋରେ ଥିବା ସେମିନାରୀରେ ଶିକ୍ଷା ଦେବାପାଇଁ ସେ ନିଯୁକ୍ତି ପାଇଲେ । ମାରିଆଙ୍କ ସୈନ୍ୟଦଳରେ ଯୋଗଦେବା ପାଇଁ ନିଜ ସଂଘର ସଭ୍ୟମାନଙ୍କୁ ସେ ଆହ୍ୱାନ କରୁଥିଲେ । ସଂଘର ସଭ୍ୟମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ସେହି ସମୟରେ Tuberculosis ବେମାରରେ ମାକ୍ସିମିଲିଆନ ବହୁତ କଷ୍ଟ ପାଇଲେ । ଏହି ରୋଗରୁ ସେ କେବେ ମୁକ୍ତି ପାଇଲେ ନାହିଁ । ରୋଗରେ ଯନ୍ତ୍ରଣା ପାଇବା ସମୟରେ ମଧ୍ୟ ପ୍ରତି ସୁଯୋଗ ଦେଖି ମାରିଆ ଓ ଯୀଶୁଙ୍କ ବିଷୟରେ ଅନ୍ୟମାନଙ୍କୁ କହୁଥିଲେ ।

ମାରିଆଙ୍କ ବିଷୟରେ ଅନ୍ୟମାନେ ଯେପରି ଜାଣିପାରିବେ, ଏଥି ନିମନ୍ତେ ଗୋଟିଏ ପତ୍ରିକା ପ୍ରକାଶ କରିବା ପାଇଁ ଇଚ୍ଛା କଲେ । ନିଜର ଅଧିକାରୀଙ୍କୁ ଯେତେବେଳେ ଅନୁମତି ମାଗିଲେ, ସେ ରାଜି ହେଲେ । କିନ୍ତୁ ତାଙ୍କୁ କହିଲେ, ଏଇଥିପାଇଁ ତାଙ୍କୁ ନିଜେ ଅର୍ଥ ଯୋଗାଡ଼ କରିବାକୁ ପଡ଼ିବ । ମାକ୍ସିମିଲିଆନ୍ ସର୍ବଦା ପ୍ରଭୁଙ୍କଠାରେ ଭରସା ରଖି କାର୍ଯ୍ୟ କରୁଥିଲେ ତାଙ୍କର ଆଗ୍ରହ ଦେଖି ଅନ୍ୟମାନେ ସାହାଯ୍ୟ କରିବାକୁ ପଛେଇ ନ ଥିଲେ । ଦିନେ ଜଣେ ପରିଦର୍ଶନ କାରୀ ଯାଜକ, ତାଙ୍କର କାର୍ଯ୍ୟ ଦେଖି ୧୦୦ ଡଲାର

ଦେଇଥିଲେ । ସେଥିରୁ ସେ ଗୋଟିଏ ପୁରୁଣା, ହାତରେ କାର୍ଯ୍ୟ କରୁଥିବା Printing Press କିଣିଲେ । କିଛିଦିନ ପରେ ଏହି କାର୍ଯ୍ୟ ପାଇଁ ସେମାନଙ୍କୁ ଗ୍ରୋଦନ ନାମକ ଗୋଟିଏ ସ୍ଥାନକୁ ଯିବାକୁ ପଡ଼ିଥିଲା । ତାଙ୍କର ଖର୍ଚ୍ଚକୁ କମାଇବା ପାଇଁ ମାକ୍ସିମିଲିଆନ ଓ ତାଙ୍କ ଅନ୍ୟ ଜଣେ ସହକର୍ମୀ ଗୋଟିଏ କୋଟ୍ ଏବଂ ଗୋଟିଏ ହଳ ମୋଜା ଦୁହେଁ ବ୍ୟବହାର କରୁଥିଲେ । ଏହା ଭଲ ଥିଲା, କାରଣ ଥରକେ ଦୁଇ ଜଣଙ୍କୁ ବାହାରକୁ ଯିବାକୁ ପଡୁ ନଥିଲା । ଯେଉଁମାନେ ମାରିଆଙ୍କ ସୈନ୍ୟଦଳରେ ସଭ୍ୟଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ପ୍ରକାର 'ପତ୍ରିକା' ପ୍ରକାଶନ କାର୍ଯ୍ୟରେ ସାହାଯ୍ୟ କଲେ । ୫ବର୍ଷ ମଧ୍ୟରେ ଏହାର ସଂଖ୍ୟା ବଢ଼ିବାକୁ ଲାଗିଲା । ଏଣୁ ମାକ୍ସିମିଲିଆନଙ୍କୁ ଆହୁରି ଅଧିକ ଜାଗା ଖୋଜିବା ପାଇଁ ଆବଶ୍ୟକ । Warsaw ବାହାରେ ସେମାନେ ଗୋଟିଏ ଉପଯୁକ୍ତ ସ୍ଥାନ ବାଛିଲେ, କିନ୍ତୁ ତାର ମୂଲ୍ୟ ଅଧିକ ଥିଲା । ସେହି ଜାଗାଟି ଥିଲା ପୋଲାଣ୍ଡର ଜଣେ ଯୁବରାଜଙ୍କର । ମାକ୍ସିମିଲିଆନ ସେହି ଯୁବରାଜଙ୍କୁ ସାକ୍ଷାତ କରିଥିଲେ । ଯୁବରାଜ ମାକ୍ସିମିଲିଆନଙ୍କ କାର୍ଯ୍ୟକଳାପ ଦେଖି ପ୍ରଶଂସା କରି କହିଥିଲେ, 'ତୁମ୍ଭେ ଏହି ଜାଗାଟି କିଣିପାରିବ ନାହିଁ, ଏହାର ମୂଲ୍ୟ ଅଧିକ । ମୁଁ ତୁମ୍ଭଙ୍କୁ ବିନା ମୂଲ୍ୟରେ ଦେଉଛି ।' ସେହି ସ୍ଥାନରେ (ନିପୋକାଲାନେ) ମାରିଆଙ୍କ ନଗର ଗଢ଼ି ଉଠିଥିଲା । ଅଳ୍ପ ସମୟ ମଧ୍ୟରେ ସେହି ସ୍ଥାନରେ ଅନେକ ଘର ତିଆରି ହେଲା । ପୁରୁଣା ମେସିନ୍ ବଦଳରେ ନୂଆ ମେସିନ୍ ଅଣାଗଲା ଏବଂ ପ୍ରାୟ (୪,୦୦,୦୦୦) ଚାରି ଲକ୍ଷ ପତ୍ରିକା ବାଣ୍ଟିବା ପାଇଁ ଛପାଗଲା ।

୧୯୩୦ ମସିହାରେ ଜାପାନକୁ ଯାଇ ସେଠାରେ 'ମାରିଆଙ୍କ ନଗର' ପ୍ରତିଷ୍ଠା କରିବା ପାଇଁ ଅଧିକାରୀଙ୍କୁ ଅନୁମତି ମାଗିଥିଲେ । ଅଧିକାରୀ ତାଙ୍କୁ ଅନୁମତି ଦେଲେ, କିନ୍ତୁ ନିଜେ ଅର୍ଥ ଯୋଗାଡ଼ କରି ତାଙ୍କୁ ଜାପାନ୍‌କୁ ଯିବାକୁ ପଡ଼ିଥିଲା । ଜାପାନର ନାଗାସାକୀ ପହଞ୍ଚିଲା ପରେ ତାଙ୍କୁ ଜାପାନୀ ଭାଷା ପ୍ରଥମେ ଶିଖିବାକୁ ପଡ଼ିଥିଲା । ଭାଷା ଶିଖିଲା ପରେ ଅତିଶୀଘ୍ର ପତ୍ରିକା ମାଧ୍ୟମରେ ଯୀଶୁ ଓ ମାରିଆଙ୍କ ବିଷୟରେ ପ୍ରଚାର କଲେ । ସେଠାରେ ତାଙ୍କୁ ପ୍ରଥମେ ଚଟାଣରେ ଶୋଇବାକୁ ପଡ଼ିଥିଲା । ରାତ୍ରିରେ ଭୟଙ୍କର ବରଫ । ସେଠାକାର ଜଳବାୟୁ, ଖାଦ୍ୟ ଏବଂ ସଂସ୍କୃତି ସବୁ ଭିନ୍ନ ଥିଲା । ତଥାପି ଗୋଟିଏ

ଜାଗା କିଣି, ସେହି ସ୍ଥାନର ନାମ 'ମାରିଆଙ୍କ ବଗିଚା' ରଖିଲେ । ସୃଷ୍ଟି ଅନେକଙ୍କ ଆଶ୍ରୟସ୍ଥଳୀ ହୋଇ ପାରିଥିଲା । ଏହା ମଧ୍ୟ ଥିଲା ଈଶ୍ୱରଙ୍କ ଯୋଜନା ।

ଜାପାନରେ ୬ ବର୍ଷ ବିତାଇଲା ପରେ ଭାରତରେ ଗୋଟିଏ କେନ୍ଦ୍ର ଖୋଲିବା ପାଇଁ ଯୋଜନା କରିଥିଲେ । କିନ୍ତୁ ଯେତେବେଳେ ତାଙ୍କୁ ସଂଘର ଅଧିକାରୀ ରୂପେ ବଛାଗଲା, ତାଙ୍କୁ ନିପୋକାଲାନୋକୁ ଫେରିବାକୁ ପଡ଼ିଥିଲା ।

୧୯୩୯ ମସିହାରେ ଜର୍ମାନ୍ ପୋଲାଣ୍ଡ ଉପରେ ଆକ୍ରମଣ କରି ନିଜ ଅକ୍ତିଆରରେ ରଖିଲା । ସେହି ସମୟରେ ମାକ୍ସିମିଲିଆନ ଏବଂ ତାଙ୍କ ସଂଘର ଅନେକ ଫାଦରମାନଙ୍କୁ ବନ୍ଦୀଶାଳାକୁ ନେଇଗଲେ । ତିନିମାସ ବନ୍ଦୀଶାଳାରେ ରହିଲା ପରେ ତାଙ୍କୁ ମୁକ୍ତ କରାଗଲା, କିନ୍ତୁ ଯିହୁଦୀମାନଙ୍କୁ ଆଶ୍ରୟ ଦେଉଛନ୍ତି ବୋଲି ଅଭିଯୋଗ କରି ପୁନର୍ବାର ତାଙ୍କୁ ଯିହୁଦୀମାନଙ୍କ ସହିତ ତାଲା ବନ୍ଦ କରି ସେହି Concentration Camp Auschwitz କୁ ନେଇ ଆସିଲେ । ସେହି ଶିବିରରେ ତାଙ୍କ ନମ୍ବର ଥିଲା ୧୬୬୭୦ । ସେଠାରେ ରହି ଅନ୍ୟ ଭାଇମାନଙ୍କୁ ସେ ସାନ୍ତ୍ୱନା ଦେଉଥିଲେ । ପାପ ସ୍ୱୀକାର ଶୁଣି ସେମାନଙ୍କ ସହିତ ପ୍ରାର୍ଥନା କରୁଥିଲେ । ତାଙ୍କୁ କଠିନ ପରିଶ୍ରମ କରିବାକୁ ପଡୁଥିଲା । ନିର୍ମମ ଭାବେ ତାଙ୍କୁ ଚାବୁକରେ ପ୍ରହାର କରୁଥିଲେ ଏବଂ ସ୍ୱଳ୍ପ ଖାଦ୍ୟରେ ସେମାନଙ୍କୁ ସେଠାରେ ରହିବାକୁ ପଡୁଥିଲା । ସେହି ନିରୀହ ବ୍ୟକ୍ତିମାନଙ୍କୁ ପଶୁଠାରୁ ଅଧିକ ନିଷ୍ଠୁର ଭାବରେ ବ୍ୟବହାର ଦେଖାଉଥିଲେ । ନାରୀମାନେ ତଥା ସେମାନଙ୍କର ଛୋଟ ଶିଶୁମାନେ ଯେଉଁମାନେ ଅସୁସ୍ଥ ଥିଲେ ସେମାନଙ୍କୁ ସେହି ଜ୍ୱଳନ୍ତ ଗ୍ୟାସ କୋଠରିକୁ ପଠାଉଥିଲେ ଏବଂ ସେଠାରେ ସେମାନେ ଅଣନିଃଶ୍ୱାସୀ ହୋଇ ମୃତ୍ୟୁବରଣ କରୁଥିଲେ ।

୧୯୪୧ ମସିହା ଜୁଲାଇ ୨୪ ତାରିଖ ଜଣେ ବ୍ୟକ୍ତି ବନ୍ଦୀଶାଳାରେ ୧୪ନମ୍ବର ବ୍ଲକରୁ ଖସି ପଳାଇଗଲା । ଏଇଥିପାଇଁ ପ୍ରାୟ ୬୦୦ ଜଣଙ୍କୁ କମାଣ୍ଡର ଧାଡ଼ିରେ ରଖି ଖସି ଯାଇଥିବା ବ୍ୟକ୍ତି ବଦଳରେ ୧୦ଜଣଙ୍କୁ ସେ ବାଛିଲେ, ଯେଉଁମାନଙ୍କୁ ଅନାହାରରେ ମୃତ୍ୟୁବରଣ କରିବାକୁ ପଡ଼ିଥିଲା ।

ସେହି ୧୦ଜଣଙ୍କ ମଧ୍ୟରୁ ଯେତେବେଳେ ଫ୍ରାନ୍ସିସସ୍ ଗାଜୋନିକଜେକଙ୍କୁ

ଚାଲିଗଲା, ସେ କ୍ରନ୍ଦନ କରି କହିବାକୁ ଲାଗିଲେ; 'ମୋର ସ୍ତ୍ରୀ ଓ ମୋର ପିଲାମାନଙ୍କୁ ମୁଁ ଆଉ କେବେ ଦେଖିପାରିବି ନାହିଁ । ସୈନିକମାନେ ଥଟ୍ଟାରେ ପରିହାସ କରି ତାଙ୍କୁ ଠେଲି ବାହାର କରୁଥିଲେ । ଠିକ୍ ସେହି ସମୟରେ ଧାଡ଼ିରେ ଥିବା ଜଣେ ବ୍ୟକ୍ତି ନିର୍ଦ୍ଦେଶକଙ୍କ ନିକଟକୁ ଆସି ଅତି ଧୀର ସ୍ୱରରେ ଜର୍ମାନୀ ଭାଷାରେ କହିଲେ 'ମୋର ଗୋଟିଏ ଅନୁରୋଧ ଅଛି ।

ନିର୍ଦ୍ଦେଶକ ପଚାରିଲେ, କ'ଣ ତୁମେ କହିବାକୁ ଚାହଁ' ? ସେହି ବ୍ୟକ୍ତିଟି କହିଲା 'ସେହି ବ୍ୟକ୍ତିର ସ୍ଥାନ ମୁଁ ନେବା ପାଇଁ ଚାହୁଁଛି । ମୋର ସ୍ତ୍ରୀ କିମ୍ବା ପିଲା ନାହାନ୍ତି । ମୁଁ ଜଣେ ବୟସ୍କ ବ୍ୟକ୍ତି । ମୋ ଠାରୁ ତାର ପରିସ୍ଥିତି ଭଲ ଅଛି । ସେ କାମ କରିପାରିବ' । ନିର୍ଦ୍ଦେଶକ ପଚାରିଲେ, ତୁମେ କିଏ ? ସେହି ବ୍ୟକ୍ତିଟି କହିଲେ 'ମୁଁ ଜଣେ କାଥଲିକ୍ ଯାଜକ' । ନିର୍ଦ୍ଦେଶକ କହିଲେ, 'ଠିକ୍ ଅଛି ତୁମର ଅନୁରୋଧ ଆମ୍ଭେ ଗ୍ରହଣ କରୁଛୁ' । ଏହା ପରେ ମାକ୍ସିମିଲିଆନ ସେହି ବ୍ୟକ୍ତିର ସ୍ଥାନ ନିଜେ ନେଲେ ଏବଂ ତାଙ୍କୁ ନିଆଗଲା ସେହି ଅନ୍ଧାରୁଆ ମୃତ୍ୟୁ କୋଠରିକୁ । ଦୁଇ ସପ୍ତାହ ପରେ ସେମାନଙ୍କ ମଧ୍ୟରେ କେବଳ ମାକ୍ସିମିଲିଆନ ବଞ୍ଚିଥିଲେ । ନିର୍ଦ୍ଦେଶକ ଆଦେଶ ଦେଲେ ଯେ ତାଙ୍କୁ କାର୍ବୋଲିକ ଏସିଡ୍ ଇଞ୍ଜେକସନ୍ ଦିଆଯାଉ, ଯେପରି ସେ ହଠାତ୍ ମୃତ୍ୟୁବରଣ କରିବ । ଅନ୍ୟ ୯ଜଣଙ୍କ ସହିତ ମାକ୍ସିମିଲିଆନଙ୍କୁ ୧୯୪୧ ମସିହା ଅଗଷ୍ଟ ୧୫ତାରିଖରେ ତାଙ୍କ ଶରୀରକୁ ଜଳାଇ ଦିଆଗଲା । ମୃତ୍ୟୁ ବେଳକୁ ତାଙ୍କର ବୟସ ଥିଲା ୪୭ ବର୍ଷ । ମୃତ୍ୟୁ ପୂର୍ବରୁ ସେ କହୁଥିଲେ, 'ବିମଳା କୁମାରୀ ମାରିଆଙ୍କ ନିମନ୍ତେ ମୁଁ ଭୂମିରେ ପଡ଼ି ଧୂଳି ହୋଇ ସେହି ଧୂଳି ଯେପରି ପବନ ଦ୍ୱାରା ଚାରିଆଡ଼େ ବ୍ୟାପିଯିବ ତାହା ମୁଁ ଚାହେଁ' । ବାସ୍ତବରେ କୁମାରୀ ମାରିଆଙ୍କ ସ୍ୱର୍ଗୋନ୍ନୟନ ପର୍ବ ଦିନ ମାକ୍ସିମିଲିଆନ କଲବେଙ୍କ ପାଉଁଶ ସାରା ପୃଥିବୀକୁ ବ୍ୟାପି ଯାଇଥିଲା । କୁମାରୀ ମାରିଆଙ୍କ ପ୍ରତି ପ୍ରଗାଢ ଭକ୍ତି ଥିଲା । ତାଙ୍କ ବିଷୟରେ ପୂଣ୍ୟ ପିତା ଯୋହନ ପାଉଲ ଦ୍ୱିତୀୟ କହନ୍ତି, 'ଯେଉଁଠାରେ ଲୋକେ ଈଶ୍ୱର ଓ ମନୁଷ୍ୟଠାରେ ବିଶ୍ୱାସ ହରାନ୍ତି, ସେହିଠାରେ ମାକ୍ସିମିଲିଆନ କଲ୍‌ବେ ବିଶ୍ୱାସ ଓ ପ୍ରେମ ଦ୍ୱାରା ବିଜୟ ହୁଅନ୍ତି' ।

୧୯୮୨ ମସିହା ଅକ୍ଟୋବର ୧୦ ତାରିଖ ଦିନ ପୁଣ୍ୟପିତା ଜନ୍ ପଲ ଦ୍ୱିତୀୟ ତାଙ୍କୁ ସାଧୁ ରୂପେ ଘୋଷଣା କଲେ ।

**ସାଧୁ ମାକ୍ସମିଲିଆନ କଲ୍‌ବେଙ୍କ କେତୋଟି ଉକ୍ତି :**

✸ "ଜଣେ କାଥଲିକ ହୁଅ: ବେଦୀ ସମ୍ମୁଖରେ ଯେବେ ତୁମେ ଜାନୁପାତ କର, ତୁମ୍ଭେ ଏହିଭଳି ଭାବରେ କର ଯେପରି ଅନ୍ୟମାନେ ତୁମଙ୍କୁ ଦେଖି ଚିହ୍ନି ପାରିବେ ଯେ ଯାହାଙ୍କ ସମ୍ମୁଖରେ ତୁମେ ଜାନୁପାତ କର ତାହାଙ୍କୁ ତୁମ୍ଭେ ଜାଣ"।

✸ "ବିମଳା ମାରୀୟାଙ୍କୁ ଯିଏ ନିଜ ମାଁ ରୂପେ ଗ୍ରହଣ କରିନାହିଁ, ଖ୍ରୀଷ୍ଟଙ୍କୁ ସେ ନିଜର ଭାଇ ରୂପେ ଗ୍ରହଣ କରି ପାରିବ ନାହିଁ"।

✸ "କେବଳ ମାରୀୟା ଇଶ୍ୱରଙ୍କ ଦ୍ୱାରା ଶୟତାନ ଉପରେ ବିଜୟ ଲାଭ କରିବାର ପ୍ରତିଶ୍ରୁତି ପାଇଛନ୍ତି। ଯେଉଁ ଆତ୍ମା ତାଙ୍କ ନିକଟରେ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରନ୍ତି ସେହି ପ୍ରକାର ଆତ୍ମା ମାନଙ୍କୁ ସେ ଖୋଜନ୍ତି ଯେପରି ତାଙ୍କ ହସ୍ତରେ ସେମାନେ ଶକ୍ତିଶାଳୀ ଉପାଦାନ ହୋଇ ଶୟତାନଙ୍କୁ ପରାସ୍ତ କରି ପ୍ରଭୁଙ୍କ ରାଜ୍ୟ ବିସ୍ତାର କରି ପାରିବେ"।



# ଲିମାର ସାଧ୍ୱୀ ରୋଜା

## (୧୫୮୬-୧୬୧୭, ଅଗଷ୍ଟ ୨୩)

ଦକ୍ଷିଣ ଆମେରିକାର ପେରୁ ଦେଶ ଅନ୍ତର୍ଗତ ଲିମା ସହରରେ ରୋଜା ୧୫୮୬ ମସିହା ଏପ୍ରିଲ୍ ୨୦ ତାରିଖରେ ଗୋଟିଏ ଗରିବ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ଥିଲା ଇସାବେଲା, କିନ୍ତୁ ତାଙ୍କର ସୌନ୍ଦର୍ଯ୍ୟ ପାଇଁ ସମସ୍ତେ ରୋଜା ବୋଲି ଡାକୁଥିଲେ । ସେ ଏତେ ସୁନ୍ଦର ଥିଲେ ଯେ ତାଙ୍କ ସାମନା ଦେଇ ଯାଉଥିବା ବ୍ୟକ୍ତିମାନେ ତାଙ୍କୁ ନ ଅନାଇ ଯାଇପାରୁ ନଥିଲେ । ନିଜର ସୌନ୍ଦର୍ଯ୍ୟ ଦ୍ୱାରା ଅନ୍ୟମାନେ ଯେପରି ପ୍ରଲୋଭିତ ନ ହୁଅନ୍ତି, ଏଥିପାଇଁ ଖଣ୍ଡେ କାଗଜ ନେଇ ନିଜ ମୁଖକୁ ଏମିତି ଭାବରେ ଘଷିଲେ ଯେ ତାଙ୍କ ମୁଖ ରଙ୍ଗ ହୋଇ ଘା' ପରି ଫୁଲିଗଲା ।

ତାଙ୍କ ପିତା ଗାସ୍‌ପାରି ଦେ ଫ୍ଲୋରେସ ଏବଂ ମାତା ମାରିଆ ଦି ଓଲିଭିଆଙ୍କ ଦଶଟି ସନ୍ତାନ ମଧ୍ୟରୁ ଇସାବେଲା ଥିଲେ ଅନ୍ୟତମା । ତାଙ୍କ ପିତା ଥିଲେ ସ୍ପେନର ଏବଂ ମାତା ପେରୁର ଆଦିବାସୀ ସମ୍ପ୍ରଦାୟର । ପରିବାର ଗରୀବ ଥିବାରୁ ତାଙ୍କ ବାପା ଓ ମା'ଙ୍କ ଇଚ୍ଛା ଥିଲା, ରୋଜା ବଡ଼ ହେବ, ସେ ଜଣେ ଧନୀ ଏବଂ ସୁନ୍ଦର ଯୁବକକୁ ବିବାହ କରିବ । ତାଙ୍କ ଦ୍ୱାରା ପରିବାରର ଅଭାବ ଦୂର ହୋଇଯିବ । କିନ୍ତୁ, ଛୋଟରୁ ରୋଜା ସାଧ୍ୱୀ କାଥାରିନା ସିଏନାଙ୍କ ଜୀବନରୁ ପ୍ରେରଣା ପାଇ ବିବାହ ନ କରି ଯୀଶୁଙ୍କ ସେବାରେ ନିଜର ଜୀବନକୁ ଉତ୍ସର୍ଗ କରିବା ପାଇଁ ଇଚ୍ଛା କଲେ । ରୋଜାଙ୍କର ଏହି ପ୍ରକାର ମନୋଭାବକୁ ତାଙ୍କ ପିତା ମାତା ରାଜି ହୋଇ ନଥିଲେ ।

ପରିବାର ପ୍ରତିପୋଷଣ କରିବା ପାଇଁ ରୋଜା ନିଜ ଘର ଅଗଣାରେ ଗୋଟିଏ ଛୋଟ କୁଡ଼ିଆଟିଏ କରି ବଗିଚାରେ ଫୁଲ ଏବଂ ଅନ୍ୟାନ୍ୟ ଗଛଗୁଡ଼ିକ ଲଗାଇଲେ । ରୋଜା ଯଥେଷ୍ଟ ପରିଶ୍ରମ କରି ଯାହା ଆଦାୟ କରୁଥିଲେ, ସେଥିରେ ତାଙ୍କ ପରିବାର ଚଳିବାରେ ସୁବିଧା ହେଉଥାଏ । ଏହା ବ୍ୟତୀତ ରୋଜା ନିଜ କୁଡ଼ିଆରେ ରହି ସିଲେଇ କାମରେ ବ୍ୟସ୍ତ ରହୁଥା'ନ୍ତି । ତାଙ୍କ ହାତ ସିଲାଇ ବସ୍ତ୍ରଗୁଡ଼ିକ ଏତେ ସୁନ୍ଦର ଥିଲା ଯେ, ବିଭିନ୍ନ ସ୍ଥାନରୁ ଲୋକେ ଆସି

ସେହି ପୋଷାକଗୁଡ଼ିକ କିଣୁଥିଲେ । ଯେତେବେଳେ ବଗିଚାରେ ସେ କାମ କରନ୍ତି କୀଡା ଏବଂ ମଶାଗୁଡ଼ିକ ଆସି ତାଙ୍କ ଦେହରେ ଗୋଡ଼ରେ ହାତରେ ବସନ୍ତି । ରୋଜା ଭୟ କଲେ କାଳେ ରାଗରେ ସେମାନଙ୍କୁ ଘଉଡିବାକୁ ଯାଇ ମାରିପାରନ୍ତି, ଏଣୁ ସେ ସେମାନଙ୍କୁ କହିଲେ, 'ମୋର ପ୍ରିୟ ଛୋଟ ଭାଇମାନେ, ମୁଁ ଜାଣେ ପ୍ରଭୁ ତୁମ୍ଭମାନଙ୍କୁ ସୃଷ୍ଟି କରିଛନ୍ତି । ମୁଁ ତୁମକୁ ଓ ପ୍ରଭୁଙ୍କର ସମସ୍ତ ସୃଷ୍ଟିକୁ ଭଲପାଏ । ମୁଁ ଯେତେବେଳେ କାମ କରେ ଆପଣମାନେ ଦୟାକରି ଅନ୍ୟାଆଡ଼କୁ ଯାଇପାରିବେ କି ? କାରଣ ଏହି କାମ ଦ୍ୱାରା ମୋର ପରିବାରକୁ ମୋତେ ପାଳିବାକୁ ପଡ଼ିବ । ତୁମେ ଯଦି ମୋତେ କାମୁଡ଼ିବ ମୁଁ ଭଲରେ କାମ କରିପାରିବି ନାହିଁ' । ରୋଜାଙ୍କ ଏହି କଥାରେ ମଶା ଓ କୀଡାଗୁଡ଼ିକ ତାଙ୍କ କଥା ମାନି ଗୋଟିଏ କୋଣକୁ ଯାଇ ରହିଗଲେ । ସେ ଯେତେବେଳେ କାମ କରନ୍ତି, ସେମାନେ ଗୀତ ଗାଇ ତାଙ୍କୁ ଶୁଣାନ୍ତି ।

ଦିନେ ରୋଜା ନିଜ ଜୀବନ ବିଷୟ ଚିନ୍ତା କରୁଥାନ୍ତି । ପ୍ରକୃତରେ ସେ କ'ଣ ଜଣେ ସିଷ୍ଟେର୍ ହୋଇପାରିବ ? ସେ ଈଶ୍ୱରଙ୍କୁ ଗୋଟିଏ ଚିହ୍ନ ମାଗିଲେ କ'ଣ ସେ ପ୍ରକୃତରେ ପ୍ରଭୁଙ୍କ ସେବା କରିପାରିବ ? ଏହି କଥା ଭାବି ବଗିଚାରେ ଯେତେବେଳେ କାମ କରୁଥାନ୍ତି, ସେହି ସମୟରେ କଳା ଓ ଧଳା ରଙ୍ଗର ପ୍ରଜାପତିଗୁଡ଼ିକ ଗୁଣ୍ଡ ହୋଇ ତାଙ୍କ ମସ୍ତକ ଉପରେ ଆକାଶରେ ମାଳାଜପ ଆକାରରେ ଆସି ଠିଆ ହେଲେ । ଏହି ଦୃଶ୍ୟ ଦେଖି ରୋଜା ଅନୁଭବ କଲେ ଯେ ଏହା ଈଶ୍ୱରଙ୍କଠାରୁ ଆଗତ ଚିହ୍ନ । ପରବର୍ତ୍ତୀ ଦିନ ଦମିନିକାନ୍ କନ୍‌ଭେଣ୍ଟକୁ ଯାଇ ଦମନିକାନର ତୃତୀୟ Order ରେ ଯୋଗଦେବା ପାଇଁ ନିଜର ଇଚ୍ଛା ପ୍ରକାଶ କଲେ । ସେମାନେ ଯେତେବେଳେ ରାଜି ହେଲେ, ସେ ଆନନ୍ଦରେ ସେହିଦିନଠାରୁ ନିଜ ଘରେ ରହି କଳା ଏବଂ ଧଳା ରଙ୍ଗର ଦମନିକାନ ପୋଷାକ ପରିଧାନ କରି ଈଶ୍ୱରଙ୍କ ଓ ପରିବାରର ସେବା କଲେ । ଈଶ୍ୱରଙ୍କ କାର୍ଯ୍ୟ କରିବା ପାଇଁ ରୋଜାଙ୍କୁ ବାହାର ଦେଶକୁ ଯାତ୍ରା କରିବାକୁ ଆବଶ୍ୟକ ନଥିଲା, କିମ୍ବା ଆନ୍ଦୋଳନ ଦ୍ୱାରା ସମାଜର ପରିବର୍ତ୍ତନ ଆଣିବା ତାଙ୍କର ଲକ୍ଷ୍ୟ ନଥିଲା । କୌଣସି ରାଜା କିମ୍ବା ବିଶପମାନଙ୍କୁ ଉପଦେଶ ଦେବା କିମ୍ବା କୌଣସି ସମାଜ ପ୍ରତିଷ୍ଠା କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ରୋଜା ଚାହିଁ ନଥିଲେ ନିଜର

ସୌନ୍ଦର୍ଯ୍ୟ ଦ୍ୱାରା ଈଶ୍ୱରଙ୍କ ବାର୍ତ୍ତା ପ୍ରଚାର କରିବା, ବରଂ ନିଜର ଜୀବନକୁ ପ୍ରାର୍ଥନା ଉପବାସ ଏବଂ ପଶ୍ଚାତ୍ତାପ ଦ୍ୱାରା ଖ୍ରୀଷ୍ଟଙ୍କ ସକାଶେ ବଞ୍ଚିବା ପାଇଁ ଇଚ୍ଛା କରିଥିଲେ । ତାଙ୍କ ଯନ୍ତ୍ରଣା ସମୟରେ ସେ ଏହିପରି ପ୍ରାର୍ଥନା କରୁଥିଲେ । ପ୍ରଭୁ 'ମୋର ଯାତନା ବଢ଼ାଅ ଏବଂ ମୋର ହୃଦୟରେ ତୁମର ପ୍ରେମକୁ ତା' ସହିତ ବୃଦ୍ଧି କରାଅ' ।

୧୬୧୭ ମସିହା, ଅଗଷ୍ଟ ୨୪ ତାରିଖ, ୩୧ ବର୍ଷ ବୟସରେ ସେ ପ୍ରାଣ ତ୍ୟାଗ କଲେ । ପୁଣ୍ୟପିତା ଦଶମ କ୍ଲେମେଣ୍ଟ ୧୬୭୧ ମସିହାରେ ତାଙ୍କୁ ସାଧ୍ୱୀ ରୂପେ ଘୋଷଣା କଲେ । ଆମେରିକା ଓ ଫିଲିପିନା ଲୋକମାନଙ୍କର ଇଷ୍ଟ ସାଧୁ ରୂପେ ସେ ନାମିତ ହୋଇଛନ୍ତି ।

**ଲିମାର ସାଧ୍ୱୀ ରୋଜାଙ୍କ କେତୋଟି ଉକ୍ତି :**

✸ "ସ୍ୱର୍ଗକୁ ପହଞ୍ଚିବା ପାଇଁ କ୍ରୁଶ ବିନା ଅନ୍ୟ କୌଣସି ସିଢ଼ି ନାହିଁ" ।

✸ "ଦୁଃଖ ଯେପରି ବଢ଼ି ଚାଲେ ଈଶ୍ୱରଙ୍କର ଅନୁଗ୍ରହର ଦାନ ସେହିପରି ବଢ଼ିଚାଲେ" ।

✸ "ଗରୀବ ଓ ରୋଗୀ ମାନଙ୍କ ସେବାରେ ଆମ୍ଭେ ଯୀଶୁଙ୍କୁ ସେବା କରିଥାଉ । ଆମର ପୋଡଶୀମାନଙ୍କୁ ସାହାଯ୍ୟ କରିବାରେ କେବେ ହେଁ ଅବହେଳା କରିବା ନାହିଁ କାରଣ ସେମାନଙ୍କଠାରେ ଆମ୍ଭେ ଯୀଶୁଙ୍କୁ ସେବା କରୁ" ।



# ସାଧ୍ୱୀ ମନିକା

## (୩୩୧-୩୮୭, ଅଗଷ୍ଟ ୨୭)

୩୩୧ ମସିହାରେ ସାଧ୍ୱୀ ମନିକା ଆଫ୍ରିକା ମହାଦେଶର ଟାଗାସ୍ତେଠାରେ ଜନ୍ମ ଗ୍ରହଣ କରିଥିଲେ । ବର୍ତ୍ତମାନର ଆଲ୍‌ଜେରିଆକୁ ସେହି ସମୟର ଟାଗାସ୍ତେ କୁହାଯାଉଥିଲା । ସାଧୁ ଅଗଷ୍ଟିନଙ୍କ ଦ୍ୱାରା ଲିଖିତ ପ୍ରସିଦ୍ଧ 'confession' (ପାପ ସ୍ୱୀକାର) ପୁସ୍ତକରୁ ଆମ୍ଭେ ମନିକାଙ୍କ ସମ୍ବନ୍ଧରେ ଜାଣିବାକୁ ପାଉ । ଯଦିଓ ମଣିକା ଖ୍ରୀଷ୍ଟିୟାନ ଥିଲେ ତାଙ୍କ ସ୍ୱାମୀ ପାଟ୍ରିସିୟୁସ ଥିଲେ ଜଣେ ଅବିଶ୍ୱାସୀ । ପାଟ୍ରିସିୟୁସ ଥିଲେ ଜଣେ ପରସ୍ତ୍ରୀଗାମୀ ବ୍ୟକ୍ତି ଏବଂ ଛୋଟ କଥାରେ ବିରକ୍ତି ହେଉଥାନ୍ତି । ତାଙ୍କ ଶାଶୁ ମାଁ ମଧ୍ୟ ଜଣେ କଳହପ୍ରିୟ ବ୍ୟକ୍ତି ଥିଲେ । ଏହି ବ୍ୟକ୍ତିମାନଙ୍କ ସହିତ ଶାନ୍ତିରେ ବାସ କରିବା ମନିକା ପକ୍ଷରେ ସହଜ ନ ଥିଲା ।

ମନିକା ଏବଂ ପାଟ୍ରିସିୟୁସଙ୍କ ତିନୋଟି ସନ୍ତାନ ଥିଲେ : ଅଗଷ୍ଟିନ, ନାଭିଜିୟୁସ ଏବଂ ପେରପେତୁଆ । ଅଗଷ୍ଟିନ ବେମାର ପଡ଼ିବାରୁ ତାଙ୍କ ମାଁ ମନିକା ପୁଅକୁ ଦୀକ୍ଷାସ୍ନାନ ଦେବା ପାଇଁ ପାଟ୍ରିସିୟୁସଙ୍କୁ ଅନୁରୋଧ କରିଥିଲେ । ପାଟ୍ରିସିୟୁସ ପ୍ରଥମେ ଅନୁମତି ଦେଇଥିଲେ କିନ୍ତୁ ପୁଅ ଭଲ ହେବାରୁ ସେ ଯେଉଁ ଅନୁମତି ଦେଇଥିଲେ ତାହାକୁ ପୁନରାୟ ପରିବର୍ତ୍ତନ କରିବା ପାଇଁ କହିଥିଲେ ।

ମନିକାଙ୍କ ପ୍ରାର୍ଥନା ଓ ଆଦର୍ଶ ଜୀବନ ଦ୍ୱାରା ନିଜର ସ୍ୱାମୀ ଓ ଶାଶୁ ମାଁଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ହେବା ପାଇଁ ପ୍ରେରଣା ଦେଇପାରିଥିଲେ । ସମୟ ଅନୁକ୍ରମେ ପେରପେତୁଆ ଓ ନାଭିଜିୟୁସ ମଧ୍ୟ ଧାର୍ମିକ ଜୀବନ ବିତାଇବା ପାଇଁ ଇଛା ପ୍ରକାଶ କରିଥିଲେ ।

ଦୀକ୍ଷାସ୍ନାନ ନେବାର ଗୋଟିଏ ବର୍ଷ ପରେ ଅର୍ଥାତ ୩୭୧ ମସିହାରେ ତାଙ୍କ ପିତା ପାଟ୍ରିସିୟୁସ ମୃତ୍ୟୁ ବରଣ କରିଥିଲେ । ପିତାଙ୍କ ମୃତ୍ୟୁ ବେଳକୁ ଅଗଷ୍ଟିନଙ୍କୁ ୧୭ ବର୍ଷ ହେଉଥାଏ ଏବଂ କାର୍ଥେଜ୍‌ରେ ସେ ଆଲଙ୍କାରିକ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ଦାର୍ଶନୀକ ମାଣିଙ୍କର ଚିନ୍ତାଧାରାରେ ଆକୃଷ୍ଟ ହୋଇ ଖ୍ରୀଷ୍ଟ ତତ୍ତ୍ୱ ବିରୁଦ୍ଧ ନୀତି ଅନୁସରଣ କରିବା ଜାଣି ମନିକା ମାନସିକ ଯନ୍ତ୍ରଣା ଅନୁଭବ କରୁଥିଲେ । ଦାର୍ଶନୀକ ମାଣିଙ୍କ ଚିନ୍ତାଧାରା ଥିଲା ଯାହା ମାଂସିକ ତାହା ମନ୍ଦ ଅଟେ । ଏଣୁ ଅଗଷ୍ଟିନ ଅନୈତିକ ଜୀବନ ଯାପନ କରୁଥିଲେ । ଅଗଷ୍ଟିନ ପ୍ରାୟ ୧୫ ବର୍ଷ ଜଣେ

ସ୍ତ୍ରୀଙ୍କ ସହିତ ବାସ କରୁଥିଲେ ଏବଂ ତାହାଙ୍କ ଦ୍ୱାରା ଯେଉଁ ସନ୍ତାନଟି ଜନ୍ମ ହେଲେ ତାଙ୍କୁ ଆଦେଓଦାତୁସ ନାମ ଦେଇଥିଲେ । ଏହି କାରଣରୁ ତାଙ୍କ ମାଁ ଅଗଷ୍ଟିନଙ୍କୁ ଘରୁ ବାହାର କରି ଦେଇଥିଲେ । କିଛି ଦିନ ପରେ ସ୍ୱପ୍ନରେ ସେ ସନ୍ଦେଶ ପାଇଥିଲେ ଯେ ଦିନେ ତାଙ୍କ ପୁଅର ମନ ପରିବର୍ତ୍ତନ ହେବ । ଏଣୁ ପ୍ରାର୍ଥନା ଓ ଉପବାସ କରି ନିଜ ପୁଅ ସହିତ ରହୁଥିଲେ । ମନିକା ଦିନେ ଧର୍ମାଧକ୍ଷ ଆମ୍ବ୍ରୁଜଙ୍କଠାରୁ ସାନ୍ତ୍ୱନା ପାଇ ନିଜ ପ୍ରାର୍ଥନାକୁ ଜାରି ରଖିଥିଲେ । ଧର୍ମାଧ୍ୟକ୍ଷ ଆମ୍ବ୍ରୁଜ ମନିକାଙ୍କୁ କହିଥିଲେ, "ତୁମର ସନ୍ତାନ କେବେ ହେଲେ ବିନଷ୍ଟ ହେବ ନାହିଁ" । ଏହା ଶୁଣି ମନିକା ଧର୍ଯ୍ୟ ଧରି ପ୍ରାର୍ଥନା ଜାରି ରଖିଥିଲେ ।

ଦିନେ ରାତ୍ରି ସମୟରେ ମାଁଙ୍କ ଜଣେ ବନ୍ଧୁଙ୍କୁ ନୌସ୍ଥାନ ଯାଇ ସାକ୍ଷାତ କରି ଫେରି ଆସିବି କହି ଅଗଷ୍ଟିନ ରୋମକୁ ଯାତ୍ରା କରିଥିଲେ । ମାଁ ମନିକା ଏହି ଖବର ପାଇ ପୁଅର ପଛେ ଦୌଡ଼ି ଯାଇ ରୋମ୍‌ରେ ପହଞ୍ଚିଥିଲେ । ସେଠାରେ ତାଙ୍କୁ ନ ପାଇ ପୁଣି ମିଲାନ ଆଡ଼କୁ ଯାତ୍ରା କରିଥିଲେ । ଧର୍ମାଧକ୍ଷ ଆମ୍ବ୍ରୁଜଙ୍କ ପ୍ରଚାର ଦ୍ୱାରା ପ୍ରଭାବିତ ହୋଇ ଅଗଷ୍ଟିନ ମନ ପରିବର୍ତ୍ତନ କରିଥିଲେ ଏବଂ ପାସ୍କା ପର୍ବ ଦିନ ଦୀକ୍ଷାସ୍ନାନ ଗ୍ରହଣ କରିଥିଲେ । କିଛି ଦିନ ପରେ ନିଜ ମାଁଙ୍କ ସହିତ ଆଫ୍ରିକା ଫେରିବା ସମୟରେ ରୋମ୍‌ର ଚିଭିତାଭେକ୍ଷିଆ ସହରରେ ୩୮୭ ମସିହାରେ ମନିକା ମୃତ୍ୟୁବରଣ କରିଥିଲେ । ରୋମ୍‌ର ବନ୍ଦର ଓସ୍ତିଆରେ ତାଙ୍କୁ କବର ଦିଆଗଲା । ୬୦୦ ଶତାବ୍ଦୀରେ ତାଙ୍କ ଶରୀରକୁ ଓସ୍ତିଆର ସାନ୍ତା ଆଉରିଆ ଚର୍ଚ୍ଚ ତଳେ ସମାଧି ଦିଆଯାଇଛି । ୧୯୪୬ ମସିହାରେ ସମାଧିରେ ଲେଖାଯାଇଥିବା ମୂଳ ଲେଖାର କିଛି ଅଂଶ ଆବିଷ୍କାର କରାଯାଇଛି ।

୧୩୦୦ ଶତାବ୍ଦୀ ବେଳକୁ ମନିକାଙ୍କ ପ୍ରତି ଲୋକଙ୍କର ଭକ୍ତିଭାବ ବୃଦ୍ଧି ପାଇବାକୁ ଲାଗିଲା ଓ ତାଙ୍କ ସମ୍ମାନାର୍ଥେ ମଇ ମାସ ୪ ତାରିଖ ଦିନ ଗୋଟିଏ ପର୍ବ ରଖାଗଲା । ୧୪୩୦ ମସିହାରେ ପୁଣ୍ୟପିତା ପଞ୍ଚମ ମାର୍ଟିନ ତାଙ୍କର (ରେଲିକ୍‌ସ) ସ୍ମୃତି ଚିହ୍ନକୁ ରୋମ୍ ନେଇ ଆସିଥିଲେ । କେତେବର୍ଷ ପରେ ସାଧୁ ଅଗଷ୍ଟିନଙ୍କ ସମ୍ମାନାର୍ଥେ ଯେଉଁ ମହାଦେବାଳୟ ତିଆରି କରାଗଲା ସେଥିରେ ମନିକାଙ୍କ ସ୍ମୃତି ଚିହ୍ନ ରଖାଯାଇଅଛି । ସାଧୁ ଅଗଷ୍ଟିନଙ୍କ ପର୍ବର ପରବର୍ତ୍ତୀ ଦିନ ମନିକାଙ୍କ ପର୍ବ ପାଳନ କରାଯାଏ । ପ୍ରାୟ ୧୦୦ ବର୍ଷ ପୂର୍ବେ ପ୍ୟାରିସ୍‌ର ଖ୍ରୀଷ୍ଟିୟାନ ମାଁ ମାନେ

ମନିକାଙ୍କ ନାମରେ ଗୋଟିଏ ସଂଘ ସ୍ଥାପନ କରି ନିଜର ପଥଭ୍ରଷ୍ଟ ସ୍ୱାମୀ ଓ ପୁତ୍ରମାନଙ୍କ ମନ ପରିବର୍ତ୍ତନ ପାଇଁ ପ୍ରାର୍ଥନା ଉତ୍ସର୍ଗ କରନ୍ତି । ନିଶାଦ୍ରବ୍ୟ ସେବନକାରୀ ବ୍ୟକ୍ତି, ବିବାହିତ ନାରୀ ଏବଂ ମାଁ ମାନଙ୍କର ଇଷ୍ଟ ସାଧ୍ୱୀ ରୂପେ ମନିକାଙ୍କୁ ମଣ୍ଡଳୀରେ ସମ୍ମାନ ଦିଆଯାଏ ।

**ସାଧ୍ୱୀ ମନିକାଙ୍କ କେତୋଟି ଉକ୍ତି:**

✸ ପୁଅର ମନ ପରିବର୍ତ୍ତନ ପରେ ସେ କହନ୍ତି, "ହେ ପୁତ୍ର, ବର୍ତ୍ତମାନ ଏହି ପୃଥିବୀରେ କୌଣସି ବିଷୟରେ ମୋର ଆନନ୍ଦ ନାହିଁ । ମୋତେ କଣ କରିବାକୁ ପଡ଼ିବ, ମୁଁ ଜାଣେ ନାହି । ମୁଁ ଜାଣେ ନାହିଁ କାହିକି ମୁଁ ଏ ପର୍ଯ୍ୟନ୍ତ ବଞ୍ଚି ରହିଛି । ଏହି ପୃଥିବୀରେ ମୋର ସମସ୍ତ ଆଶା ବର୍ତ୍ତମାନ ପୂର୍ଣ୍ଣ ହୋଇଅଛି"।

✸ ମୃତ୍ୟୁ ଶଯ୍ୟାରେ ଥାଇ ତାଙ୍କ ପୁତ୍ର ସାଧୁ ଅଗସ୍ତିନଙ୍କୁ ସେ ଏହା କହିଥିଲେ, "ଏହି ମୋର ଶରୀରକୁ ଯତ୍ନ ନେବା ପାଇଁ କଷ୍ଟ ନେବା ଆବଶ୍ୟକ ନୁହେଁ । ଯେଉଁଠାରେ ବି ଏହି ଶରୀରକୁ ରଖିପାର । କେବଳ ମୁଁ ତୁମଠାରୁ ଭିକ୍ଷା କରେ, ତୁମେ ଯେଉଁଠାରେ ରୁହନା କାହିକି ପ୍ରଭୁଙ୍କ ଯଜ୍ଞବେଦିରେ ମୋତେ ସ୍ମରଣ କର" ।



# ସାଧୁ ଅଗଷ୍ଟିନ

## (୩୫୪-୪୩୦, ଅଗଷ୍ଟ ୨୮)

ଆଫ୍ରିକା ମହାଦେଶର ନୁମିଦିଆ ସହର ନିକଟବର୍ତ୍ତୀ ତାଗାସ୍ତା ଗ୍ରାମରେ ୩୫୪ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୧୩ ତାରିଖରେ ସାଧୁ ଅଗଷ୍ଟିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ପାଟ୍ରିସିୟୁସ ଜଣେ ବିଜାତୀୟ ଏବଂ ମାତା ମନିକା ଥିଲେ ଖ୍ରୀଷ୍ଟ ଧର୍ମାବଲମ୍ବୀ । ମନିକାଙ୍କ ଆଦର୍ଶ ଓ ପ୍ରାର୍ଥନା ଜୀବନ ଦ୍ୱାରା ତାଙ୍କ ସ୍ୱାମୀ ପ୍ରଭାବିତ ହୋଇ ମୃତ୍ୟୁ ପୂର୍ବରୁ ଦୀକ୍ଷାସ୍ନାନ ଗ୍ରହଣ କରିଥିଲେ । ନିଜ ବାପାଙ୍କ ଠାରୁ ସାଂସାରିକ ଶିକ୍ଷା ସେ ପାଇଥିଲେ । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ଗୋଟିଏ ବର୍ଷ ପଢ଼ାରେ ବ୍ୟାଘାତ ସୃଷ୍ଟି ହୋଇଥିଲା । ସେହି ଗୋଟିଏ ବର୍ଷ ଅଗଷ୍ଟିନଙ୍କ ପାଇଁ ଥିଲା ପାପମୟ ଜୀବନର ପ୍ରାଥମିକ ସ୍କୁଲ । ଜୀବନର ପାପ ସବୁ ସେ ଏହି ସମୟରେ ଶିଖିଥିଲେ ଏବଂ ତାଙ୍କ ବିଜାତୀୟ ପିତା ମଧ୍ୟ ପୁଅର ସାଂସାରିକ ଶିକ୍ଷା ପାଇଁ ଗର୍ବ କରୁଥିଲେ । ଦୁଷ୍ଟ ସାଙ୍ଗମାନଙ୍କ ସହିତ ମିଶି ବିଭିନ୍ନ ପ୍ରକାର ଥିଏଟର, ଅଭିନୟ ତଥା ଆମୋଦପ୍ରମୋଦ ଜନିତ ଖେଳ ଓ ନାଟକ ଦେଖିବାକୁ ସେ ଭଲ ପାଉଥିଲେ । ତାଙ୍କ ପିତାଙ୍କ ପାଇଁ ମୁଖ୍ୟ ବିଷୟ ଥିଲା ଅଗଷ୍ଟିନଙ୍କ ଶିକ୍ଷା । ଅଗଷ୍ଟିନ ଯାହା ହେଉ ପଛେ ତାଙ୍କୁ ଭଲରେ ପାଠ ପଢ଼ିବା ଦରକାର । ଏଣୁ ଅଗଷ୍ଟିନଙ୍କ ମନ୍ଦ ଜୀବନ ପ୍ରତି ତାହାଙ୍କ ପିତା ଦୃଷ୍ଟି ଦେଉନଥିଲେ ।

୧୬ ବର୍ଷ ବୟସରେ ଜଣେ ମହିଳାଙ୍କ ସହିତ ସେ ବାସ କରୁଥିଲେ ଏବଂ ୧୮ ବର୍ଷ ବୟସରେ ତାଙ୍କର ଗୋଟିଏ ପୁତ୍ର ଜନ୍ମ ହୋଇଥିଲା ଯାହାଙ୍କୁ ସେ "ମୋର ପାପର ପୁତ୍ର" ବୋଲି କହୁଥିଲେ ଓ ତାଙ୍କୁ 'ଆଦେଓଦାତୁସ' ବୋଲି ନାମ ଦେଇଥିଲେ ଯାହାର ଅର୍ଥ ହେଲା 'ପରମେଶ୍ୱରଙ୍କ ଦାନ' । ଯେତେବେଳେ ସେହି ପୁତ୍ରଙ୍କର ମୃତ୍ୟୁ ହେଲା ତାଙ୍କ ପାଇଁ ଅଗଷ୍ଟିନ ରୋଦନ କରିଥିଲେ କାରଣ ତାଙ୍କୁ ସେ ଅତ୍ୟଧିକ ଭଲ ପାଉଥିଲେ ।

୩୭୦ ଖ୍ରୀଷ୍ଟାବ୍ଦରେ ଉଚ୍ଚ ଶିକ୍ଷା ଲାଭ କରିବା ପାଇଁ ଅଗଷ୍ଟିନ କାରଥେଜ ଯାଇଥିଲେ । ସେହି ବର୍ଷ ତାଙ୍କ ପିତାଙ୍କ ମୃତ୍ୟୁ ହୋଇଥିଲା । ବିଖ୍ୟାତ ଦାର୍ଶନିକ ସିସେରୋ ଓ ଆରିଷ୍ଟୋଟେଲଙ୍କ ପୁସ୍ତକ ପଢ଼ି ସେ ଅନୁପ୍ରାଣୀତ ହୋଇଥିଲେ ।

୧୯ ବର୍ଷରୁ ୨୮ ବର୍ଷ ପର୍ଯ୍ୟନ୍ତ ଦାର୍ଶନୀକ ମାଣିଙ୍କର ଚିନ୍ତାଧାରାରେ ଅନୁପ୍ରାଣୀତ ହୋଇ ସେ ଖ୍ରୀଷ୍ଟତତ୍ୱ ବିରୁଦ୍ଧ ନୀତିକୁ ଆଗ୍ରହ ସହକାରେ ଆପଣାଇଥିଲେ । ସେହି ସମୟରେ କାଥଲିକ ବିଶ୍ୱାସ ବିରୁଦ୍ଧରେ ସେ ଅଳ୍ପ କିଛି ବିଷୟ ଲେଖିଥିଲେ । ୨୦ ବର୍ଷ ବୟସରେ ଆର୍ଥିକ ସଂକଟରୁ ମୁକ୍ତି ପାଇବା ପାଇଁ କାର୍ଥେଜ ଛାଡି ନିଜର ମାତୃଭୂମି ଟାଗାସ୍ତେକୁ ଫେରି ସେଠାରେ ଗୋଟିଏ ବ୍ୟାକରଣ ସ୍କୁଲ ଆରମ୍ଭ କରିଥିଲେ ।

ଅଗଷ୍ଟିନଙ୍କ ପାପମୟ ଜୀବନ ତାଙ୍କ ମାଁଙ୍କ ହୃଦୟକୁ ବହୁତ ଦୁଃଖ ଦେଇଥିଲା । ଏଣୁ ଦିନେ ପୁଅ ପଛେ ପଛେ ଯାଇ ମିଲାନର ବିଶପ ଆମ୍ବ୍ରୋଜଙ୍କ ସହିତ ସାକ୍ଷାତ କରି ପୁଅର ମନ ପରିବର୍ତ୍ତନ ପାଇଁ ପ୍ରାର୍ଥନା ଅନୁରୋଧ କରିଥିଲେ । ବିଶପ ଆମ୍ବ୍ରୋଜ ସେହି ମାଁଙ୍କୁ ସାନ୍ତ୍ୱନା ଦେଇ କହିଥିଲେ, "ଜଣେ ମାଁ ର ଲୁହ କେବେହେଲେ ବୃଥାରେ ଯିବ ନାହିଁ, ଏଣୁ ଧର୍ଯ୍ୟ ଧରି ତୁମ ପ୍ରାର୍ଥନା ଜାରି ରଖ" ।

ଅଗଷ୍ଟିନଙ୍କୁ ଯେତେବେଳେ ୨୯ ବର୍ଷ ହେଉଥାଏ, ଟାଗାସ୍ତାରେ ନିଜ ମାଁଙ୍କୁ ଛାଡ଼ି ରାତ୍ରି ସମୟରେ ଗୁପ୍ତରେ ରୋମ୍‌କୁ ପଳାୟନ କଲେ । ଗୋଟିଏ ବର୍ଷ ରୋମ୍‌ରେ ରହି ପିଲାମାନଙ୍କୁ (Rhetoric) ଅଲଙ୍କାର ଶାସ୍ତ୍ର ଶିକ୍ଷା ଦେଉଥିଲେ । ନିଜ ଛାତ୍ରମାନଙ୍କ ଅସଭ୍ୟ ବ୍ୟବହାର ଦ୍ୱାରା ସେଠାରୁ ମିଲାନକୁ ଯାଇ ପ୍ରଫେସର ରୂପେ କାର୍ଯ୍ୟ କରିବା ପାଇଁ ଆବେଦନ କରିଥିଲେ ।

ତାଙ୍କ ମାଁ ଅଗଷ୍ଟିନଙ୍କୁ ବିଶପ ଅମ୍ବ୍ରୋଜଙ୍କ ପ୍ରଚାର ଶୁଣିବା ପାଇଁ ପ୍ରବର୍ତ୍ତାଉଥିଲେ । ଦଶ ବର୍ଷର ଝିଅ ସହିତ ବିବାହ ନିର୍ବନ୍ଧ ପାଇଁ ସ୍ଥିର ହୋଇଥିଲା । ଝିଅର ବୟୋଃପ୍ରାପ୍ତ ହେବା ପର୍ଯ୍ୟନ୍ତ ସେ ଅପେକ୍ଷା କରିବା ପାଇଁ ରାଜି ହୋଇଥିଲେ । ସେହି ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାର ଧର୍ଯ୍ୟ ହରାଇ ପୁଣି ଅନ୍ୟ ଏକ ନାରୀଙ୍କୁ ନିଜର ରକ୍ଷିତା ସ୍ତ୍ରୀ ଭାବେ ଗ୍ରହଣ କରିଥିଲେ ।

୯ ବର୍ଷ ପର୍ଯ୍ୟନ୍ତ ଅର୍ଥାତ ୩୭୪-୩୮୩ ପର୍ଯ୍ୟନ୍ତ ସେ କାଥଲିକ ବିଶ୍ୱାସର ବିରୁଦ୍ଧାଚରଣ ମତ ଅନୁସରଣ କରୁଥିଲେ । ସାଧୁ ପାଉଲଙ୍କ ଲିଖିତ ପତ୍ର ଗୁଡ଼ିକ ପଢ଼ିଲା ପରେ ପୁଣି ସାଧୁ ଆମ୍ବ୍ରୋଜଙ୍କ ପ୍ରଚାର ଶୁଣିଲା ପରେ କାଥଲିକ ବିଶ୍ୱାସର ସତ୍ୟତାକୁ ସେ ବୁଝିପାରିଲେ ।

ପୂଜ୍ୟପିତା ଡାମାସୁସ ଫାଦେର ସିମ୍ପ୍ଲିଆନଙ୍କୁ ସାଧୁ ଆମ୍ବ୍ରୋଜଙ୍କ ଆଧ୍ୟାତ୍ମିକ ପିତା ରୂପେ ରୋମରୁ ପ୍ରେରଣ କରିଥିଲେ । ସାଧୁ ଅଗଷ୍ଟିନ ତାଙ୍କ ସହିତ ବନ୍ଧୁତା ସ୍ଥାପନ କରି ବନ୍ଧୁତ ବିଷୟ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଫାଦେର ସିମ୍ପ୍ଲିଆନ ଜଣେ ଧାର୍ମିକ ଓ ବିଜ୍ଞ ବ୍ୟକ୍ତି ଥିଲେ । ରୋମ୍‌ର Rhetoric ଶାସ୍ତ୍ର ବିଶାରଦ ଭିକ୍ଟୋରିନୁସଙ୍କ ଦ୍ୱାରା ଲାଟିନ୍ ଭାଷାରେ ଅନୁବାଦିତ ଦାର୍ଶନିକ ପ୍ଲାଟୋଙ୍କର ପୁସ୍ତକଗୁଡ଼ିକୁ ସେ ପଢ଼ିଛନ୍ତି । ଭିକ୍ଟୋରିନୁସ୍‌ଙ୍କ ମନ ପରିବର୍ତ୍ତନରେ ସିମ୍ପ୍ଲିଆନଙ୍କ ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ତାହା ଜାଣି ଅଗଷ୍ଟିନ ଆଶ୍ଚର୍ଯ୍ୟ ହୋଇଥିଲେ । ଫରେଷ୍ଟ ସାଧୁ ଆନ୍ତୋଣୀ ଏବଂ ମରୁଦ୍ୟାନ ସନ୍ନ୍ୟାସୀମାନଙ୍କ ଜୀବନ ଶୈଳୀ ମଧ୍ୟ ସାଧୁ ଅଗଷ୍ଟିନଙ୍କୁ ଆପ୍ୟାୟିତ କରିଥିଲା । ଦିନେ ସାଧୁ ଅଗଷ୍ଟିନଙ୍କୁ ହସ୍‌ପିଟାଲରେ ଭର୍ତ୍ତି କରାଗଲା । ସେଠାରେ ରହିବା ପାଇଁ ସେ ଅସ୍ତବ୍ୟସ୍ତ ଅନୁଭବ କରୁଥିଲେ । ଶଯ୍ୟାଶାୟୀ ଥିବା ସମୟରେ କିଛି ପୁସ୍ତକ ପଢ଼ିବା ପାଇଁ ସେ ଆଗ୍ରହ ପ୍ରକାଶ କଲେ । ସେହି ସମୟରେ ଦିନେ ସେ ଅନ୍ତଃସ୍ୱର ଶୁଣିଲେ, 'ତଲେ ଲେଜେ, ତଲେ ଲେଜେ' ଏହାର ଅର୍ଥ, ନିଅ ଏବଂ ପଢ଼ । ଏଣୁ ସେ ବାଇବଲ ଖୋଲନ୍ତେ ହଠାତ ତାଙ୍କ ଦୃଷ୍ଟି ସାଧୁ ପାଉଲଙ୍କ ଲିଖିତ ପତ୍ର ରୋମୀୟ ୧୩ ଅଧ୍ୟାୟ ୧୪ ପଦରେ ଦୃଷ୍ଟି ପଡ଼ିଲା । ସେଠାରେ ଲେଖା ଅଛି, "ରାତ୍ରି ବିଗତ ପ୍ରାୟ, ଦିବସ ପ୍ରାୟ ଆସନ୍ନ । ତେଣୁ ଆସ ଆମେ ଅନ୍ଧକାରର କର୍ମସବୁ ପରିତ୍ୟାଗ କରି ଆଲୋକର ସାଞ୍ଜୁ ପିନ୍ଧିବା । ଆସ ଆମ୍ଭେ ରାତ୍ରି କାଳୀନ ତାଣ୍ଡବଲିଳାରେ, ମଦ୍ୟପାନସବରେ, ଯୌନ ଅସଦାଚରଣରେ, ଲମ୍ପଟତାରେ, କଳହ ଓ ଈର୍ଷାରେ ଲିପ୍ତ ନ ରହି ଦିବସରେ ଆଚରଣ କଲାପରି ଶିଷ୍ଟ ଆଚରଣ କରୁ । ତୁମ୍ଭେମାନେ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ ବସ୍ତ୍ର ରୂପେ ପରିଧାନ କର ଏବଂ ତୁମ ପାପ ପ୍ରକୃତିର ଅଭିଳାଷଗୁଡ଼ିକ କିପରି ଚରିତାର୍ଥ କରିବ, ସେହି ବିଷୟରେ ମନୋଯୋଗୀ ହୁଅ ନାହିଁ "(ରୋମୀୟ ୧୩: ୧୨-୧୪) । ଏହି ପାଠଟି ପଢ଼ିଲା ପରେ ହଠାତ୍ ତାଙ୍କର ମନ ପରିବର୍ତ୍ତନ ହୋଇଥିଲା । ଏହାପରେ ପ୍ରଥମ ଥର ପାଇଁ ଜୀବନରେ ସେ ଶାନ୍ତି ଅନୁଭବ କରିପାରିଥିଲେ ।

୩୮୭ ମସିହା ପାସ୍କା ରବିବାର ଦିନ ଅଗଷ୍ଟିନ ଧର୍ମାଧ୍ୟକ୍ଷ ଆମ୍ବ୍ରୋଜଙ୍କ ଦ୍ୱାରା ଦୀକ୍ଷାସ୍ନାନ ପ୍ରାପ୍ତ କରିଥିଲେ । ମଣିକାଙ୍କ ପ୍ରାର୍ଥନାର ଉତର ପ୍ରଭୁ ଶୁଣିଥିଲେ । ଅଗଷ୍ଟିନ ନିଜ ଦେଶକୁ ଫେରିଯାଇ ସନ୍ନ୍ୟାସୀ ଜୀବନ ବିତାଇବା ପାଇଁ ଇଚ୍ଛା ପ୍ରକାଶ

କରିଥିଲେ । ନିଜର ସମ୍ପତି ସବୁ ଦରିଦ୍ରମାନଙ୍କୁ ଦାନ କରି ତାଗାସ୍ତେରେ ନିଜର ଜୀବନକୁ ଅତିବାହିତ କରିବା ପାଇଁ ଚାହିଁଲେ ।

ପ୍ରାୟ ତିନି ବର୍ଷ ନିରୋଳାରେ ସାଧୁ ଅଗଷ୍ଟିନ ତାଗାସ୍ତେରେ ସମୟ ବିତାଇଥିଲେ । ସେ କୌଣସି ଧର୍ମପ୍ରଦେଶକୁ ଯିବା ପାଇଁ ଇଚ୍ଛା କଲେ ନାହିଁ । କାଳେ ତାଙ୍କୁ କୌଣସି ଧର୍ମ ପ୍ରଦେଶରେ ଧର୍ମାଧ୍ୟକ୍ଷ କରିପାରନ୍ତି ଏହି ଭୟରେ ସେ ସେମାନଙ୍କଠାରୁ ଦୂରରେ ରହୁଥିଲେ ।

ହିପୋର ବିଷପ ଭାଲେରିଉସ ବୃଦ୍ଧ ହୁଅନ୍ତେ ନିଜ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଜଣେ ବ୍ୟକ୍ତିଙ୍କୁ ଯାଜକ ପଦରେ ଅଭିଷିକ୍ତ କରିବା ପାଇଁ ଚାହୁଁଥିଲେ । ଅଗଷ୍ଟିନଙ୍କୁ ଚର୍ଚ୍ଚ ଯିବାର ଦେଖି ଲୋକେ ତାଙ୍କୁ ଯାଜକ ପାଇଁ ଜଣେ ଉପଯୁକ୍ତ ପ୍ରାର୍ଥୀ ରୂପେ ଉପସ୍ଥାପନ କରିଥିଲେ । ଅଗଷ୍ଟିନ ଲୋକଙ୍କର ମତକୁ ପ୍ରତିବାଦ କରି ନିଜ ଆଶ୍ରମକୁ ଫେରିଯିବା ପାଇଁ ଚାହିଁଥିଲେ । କିନ୍ତୁ ସମସ୍ତଙ୍କର ମତରେ ୩୯୦ ମସିହାରେ ତାଙ୍କୁ ଯାଜକ ପଦରେ ଅଭିଷିକ୍ତ କରାଗଲା ।

ସେହି ସମୟରେ ହିପୋ ଗୋଟିଏ ଛୋଟିଆ ବନ୍ଦର ଥିଲା ଯେଉଁଠାରେ ପ୍ରାୟ ୪୦,୦୦୦ରୁ ଅଧିକ ଲୋକେ ବାସ କରୁଥିଲେ । ହିପୋରେ ତିନୋଟି ଭିନ୍ନ ଭିନ୍ନ ଚର୍ଚ୍ଚ ଥିବାର ଜଣାଯାଏ । ଗୋଟିଏ ଚର୍ଚ୍ଚ ଥିଲା ଡୋନାଟିଷ୍ଟ ଦଳର ଏବଂ ଅନ୍ୟ ଚର୍ଚ୍ଚଟି ମାଣିଙ୍କ ଦଳର ପୁଣି ଅନ୍ୟ ଏକ ଚର୍ଚ୍ଚଟି କାଥଲିକମାନଙ୍କର । ବିଭିନ୍ନ ସମୟରେ ବିଶ୍ୱାସରେ ଯେଉଁ ଆଲୋଚନା ହେଉଥାଏ ସେଥିରେ ଅଗଷ୍ଟିନଙ୍କ ବୁଦ୍ଧିର ବିଚକ୍ଷଣତା ଦେଖି ଅନ୍ୟମାନେ ତାଙ୍କର ସମ୍ମୁଖୀନ ହୋଇ ପାରୁ ନ ଥିଲେ ।

ତିନି ବର୍ଷ ପରେ ଅର୍ଥାତ ୩୯୫ ମସିହାରେ ଧର୍ମାଧ୍ୟକ୍ଷ ଭାଲେରିଉସଙ୍କ ବୃଦ୍ଧ ବୟସ ଯୋଗୁ ଅଗଷ୍ଟିନଙ୍କୁ ସର୍ବସମ୍ମତି କ୍ରମେ  କୋଆଜ୍ଜୁତର ବିଶପ ରୂପେ ନିର୍ବାଚିତ କରିଥିଲେ । ବିଶପ ଭାଲେରିଉସଙ୍କ ମୃତ୍ୟୁ ପରେ ଅଗଷ୍ଟିନ ହିପୋର ବିଶପ ହେଲେ । ୩୦ ବର୍ଷ ହିପୋର ବିଶପ ହୋଇ ସାରା ବିଶ୍ୱକୁ ନିଜର ଜ୍ଞାନ ଦ୍ୱାରା ଆପ୍ୟାୟିତ କରିପାରିଥିଲେ । ଦୁଇଜଣ ବ୍ୟକ୍ତିଙ୍କୁ ଡିକେନ ଭାବେ ଅଭିଷିକ୍ତ କରି ପୁଣି ଦୁଇଜଣ ସନ୍ନ୍ୟାସୀମାନଙ୍କୁ ଆଶ୍ରମରୁ ଡକାଇଲେ ଯେପରି ସେମାନେ ତାଙ୍କୁ ସାହାଯ୍ୟ କରିବେ । କେବଳ ଅତିଥି ଓ ବେମାରରେ ପଡ଼ିଥିବା ବ୍ୟକ୍ତିଙ୍କ ବିନା ଅନ୍ୟ ସମସ୍ତେ ନିରାମିଷ ଖାଦ୍ୟ ଖାଉଥିଲେ । ଅନ୍ୟ ବିଷୟରେ ଚର୍ଚ୍ଚା କରିବା

ସମ୍ପୂର୍ଣ୍ଣ ରୂପେ ମନା କରାଯାଇଥିଲା । ଖାଇବା ହଲ୍‌ରେ ଆଧ୍ୟାତ୍ମିକ ପଠନ ପଢ଼ାଯାଉଥିଲା । ବିଶ୍ୱାସ ସମ୍ବନ୍ଧରେ ଭୂଲ ତଥ୍ୟଗୁଡିକୁ ବଳିଷ୍ଠ ପ୍ରମାଣ ଦ୍ୱାରା ପ୍ରତ୍ୟାଖ୍ୟାନ କରୁଥିଲେ । ଅଗଷ୍ଟିନଙ୍କ ଆତ୍ମ ଜୀବନୀ ରଚିତ ପୁସ୍ତକର ଲେଖକ ପିସିଡିୟୁସ କହନ୍ତି, ଜଣେ କ୍ରୀତଦାସଙ୍କୁ ରକ୍ଷା କରିବା ପାଇଁ ସେ ଦିବ୍ୟ ପାନପାତ୍ରଟିକୁ ତରଳାଇ ବିକ୍ରି କରିଥିଲେ । ଯଦିଓ ସେ ଥିଲେ ଜଣେ ବିଖ୍ୟାତ ଲେଖକ ତଥାପି ଅତି ନମ୍ର ଜୀବନ ଯାପନ କରୁଥିଲେ । ଜେରମଙ୍କ ସହିତ ଯଦି କେବେ ଭୂଲ ବୁଝାମଣା ହୋଇଯାଏ ତେବେ ସେ କ୍ଷମା ମାଗୁଥିଲେ ଏବଂ ସର୍ବଦା ତାଙ୍କୁ ନିଜର ଗୁରୁ ରୂପେ ସ୍ୱୀକାର କରୁଥିଲେ ।

ସାଧୁ ଅଗଷ୍ଟିନଙ୍କ ଦୁଇଟି ବିଖ୍ୟାତ ପୁସ୍ତକ ହେଲା Confession ଓ City of God । ଏହା ବ୍ୟତୀତ, ତ୍ରିେକେଶ୍ୱରଙ୍କ ବିଷୟରେ ପ୍ରାୟ ୧୫ଟି ପୁସ୍ତକ ଉପରେ ସେ ବ୍ୟାଖ୍ୟା ଓ ତାହାର ତତ୍ତ୍ୱ ବା ଗଭୀର ଅର୍ଥ ପ୍ରକାଶ କରିଛନ୍ତି ।

ସାଧୁ ଅଗଷ୍ଟିନଙ୍କ ଶେଷ ଦିନ ଗୁଡିକ ବହୁତ ଦୁଃଖଦାୟକ ଥିଲା । ସ୍ପେଇନର ରାଜା ଜେନେସେରିକଙ୍କ ନେତୃତ୍ୱରେ ଆକ୍ରମଣକାରୀମାନେ ଆଫ୍ରିକାର ସମସ୍ତ ଛୋଟ ବଡ଼ ସହର ଗୁଡ଼ିକ ଧ୍ୱଂସ କରିବାକୁ ଲାଗିଲେ । ସେହି ଆକ୍ରମଣକାରୀଙ୍କ କବଳରୁ ରକ୍ଷା ପାଇବା ପାଇଁ କେତେକ ସେଠାରୁ ପଳାୟନ କଲେ । ଯେଉଁମାନେ ଗଲେ ନାହିଁ ସେମାନେ ଭୋକ ଉପାସରେ ଓ ମହାମାରୀ ଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କଲେ ।

ଧର୍ମାଧ୍ୟକ୍ଷ କୁଓଦଭୁଲତ ଦେଉସ ଓ ଅନରାତୁସ ଯେତେବେଳେ ଅଗଷ୍ଟିନଙ୍କୁ ପଚାରିଲେ ଯେ ଯାଜକ ଓ ଧର୍ମାଧ୍ୟକ୍ଷମାନେ ସେହି ନିଷ୍ଠୁର ବ୍ୟକ୍ତିମାନଙ୍କଠାରୁ ପଳାୟନ କରିବା ଉଚିତ କି ନୁହଁ ? ସେ ଉତ୍ତର ଦେଲେ କଦାପି ନୁହଁ । ମୃତ୍ୟୁ ପର୍ଯ୍ୟନ୍ତ ଅଗଷ୍ଟିନ ଯିଏ ବିଶ୍ୱାସର ସିଂହ ନିଜ ବିଶ୍ୱାସରେ ଅଟଳ ହୋଇ ରହିଥିଲେ ।

୭୬ ବର୍ଷ ବୟସରେ ନିଜର ବୟସ ଯୋଗୁଁ ସେ ଦୁର୍ବଳ ହେବାକୁ ଲାଗିଲେ । ୪୩୦ ମସିହା ଅଗଷ୍ଟ ୨୮ ତାରିଖ ଦିନ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ନିଜ ସମାଧିରେ ଯେଉଁ ବାଣୀଟି ଲେଖିଛନ୍ତି ତାହା ଅତି ମର୍ମସ୍ପର୍ଶୀ । ସେହି ବାଣୀଟି ହେଲା, "ଜଣେ ଖ୍ରୀଷ୍ଟିୟାନର ହୃଦୟକୁ କଣ ଭାରାକ୍ରାନ୍ତ କରିଥାଏ ? ସେ ଯେ ଏହି ଜଗତରେ ଜଣେ ତୀର୍ଥଯାତ୍ରୀ ଏବଂ ନିଜ ଦେଶ ସେ ଅନ୍ୱେଷଣ କରେ" ।

**ସାଧୁ ଅଗଷ୍ଟିନଙ୍କ କେତୋଟି ଉକ୍ତି:**

"ହେ ପ୍ରଭୁ, ମୋର ଆତ୍ମା ତୁମରି ପାଇଁ ସୃଷ୍ଟି; ଏଣୁ ତୁମଠାରେ ବିଶ୍ରାମ ନ ନେବା ପର୍ଯ୍ୟନ୍ତ ତାହା ଅସ୍ତବ୍ୟସ୍ତ ରହୁଥିବ" ।

"ତୁମ ବିନା ମୁଁ ପରିତ୍ରାଣ ପାଇବା ପାଇଁ ଚାହେଁ ନାହିଁ । କଣ ବା ମୁଁ ଅଧିକ କାମନା କରିବି ? କଣ ବା ମୁଁ କହିବି ? କାହିଁକି ମୁଁ ଜଣେ ଧର୍ମାଧ୍ୟକ୍ଷ ? କାହିଁକି ମୁ ଏହି ପୃଥିବୀରେ ଅଛି, କେବଳ ଯୀଶୁଙ୍କଠାରେ ବାସ କରିବା ପାଇଁ ? ତୁମ ସହିତ ତାଙ୍କଠାରେ ବାସ କରିବା ପାଇଁ ଚାହେଁ । ଏହା ହିଁ ମୋର ଇଚ୍ଛା, ମୋର ସମ୍ମାନ, ମୋର ଗୌରବ ମୋର ଆନନ୍ଦ ଏବଂ ମୋର ସମ୍ପଦ" ।

"ହେ ମୋର ପ୍ରଭୁ ଈଶ୍ୱର ତୁମ୍ଭେ ଜାଣ ମୋର ବୁଝିବା ଶକ୍ତି ଓ ଶିଖିବାର କୌଶଳ ତୁମରି ଦାନ କିନ୍ତୁ ଏହି ସବୁ ତୁମକୁ ଆରାଧନା ପାଇଁ ମୋତେ ସାହାଯ୍ୟ କରେ ନାହିଁ କାରଣ ପ୍ରେମ ବିନା ଜ୍ଞାନ କିଛି କରିପାରେ ନାହିଁ ବରଂ ତାହା ନିଜର ଗର୍ବକୁ ବାଷ୍ପ ପରି ଉଡ଼ାଇଦିଏ" ।

"ହେ ପ୍ରଭୁ ମୋର ହୃଦୟର ପ୍ରାସାଦ ଅତି ସଂକୀର୍ଣ୍ଣ । ତୁମେ ଯେପରି ଏଥିରେ ପ୍ରବେଶ କରିବ ସେଇଥି ପାଇଁ ଏହାକୁ ବୃଦ୍ଧି କରାଅ । ଏହା ଧ୍ୱଂସ ଅବସ୍ଥାରେ ଅଛି । ଏଣୁ ଏହାକୁ ମରାମତି କର" ।

ସାଧୁ ବେର୍ଣ୍ଣାଡ଼ କହନ୍ତି, "ଖ୍ରୀଷ୍ଟ ତତ୍ତ୍ୱ ବିରୁଦ୍ଧ ନୀତିର ଗୋଟିଏ ଶକ୍ତିଶାଳୀ ହାତୁଡ଼ି ହେଉଛନ୍ତି ଅଗଷ୍ଟିନ" ।



# ସାଧ୍ୱୀ ଇୟୁଫ୍ରେସିୟା ଏଲୁଭାଥିଙ୍ଗାଲ

# (୧୮୭୭-୧୯୫୨, ଅଗଷ୍ଟ ୨୯)

ଭାରତର କେରଳ ରାଜ୍ୟର ତ୍ରିଚୁର ଜିଲ୍ଲାସ୍ଥିତ ଇରିନ୍ୟାଲକୁଡ଼ା ନିକଟବର୍ତ୍ତୀ କାଟ୍ଟୁର ଗ୍ରାମରେ ସିରୋ ମାଲାବାର ପରିବାରର କାଥଲିକ ରୀତିରେ ଜନ୍ମ ଗ୍ରହଣ କରିଥିଲେ ଇୟୁଫ୍ରେସିଆ ୧୮୭୭ ମସିହାରେ । ଇୟୁଫ୍ରେସିଆଙ୍କ ଡକା ନାମ ଥିଲା ରୋଜା । ପିତା ଆନ୍ତୋଣୀ ଚେରପୁକାରାନ ଓ ମାତା କୁଞ୍ଜେଥିଙ୍କ ଝିଅ ରୋଜା ଥିଲେ ପରିବାରର ପ୍ରଥମ କନ୍ୟା । ରୋଜାଙ୍କ ଗୋଟିଏ ମାତ୍ର ଭଉଣୀ ଥିଲେ ଯିଏ ଛୋଟରୁ ମୃତ୍ୟୁ ବରଣ କରିଥିଲେ । ତାହାଙ୍କର ଅନ୍ୟ ତିନି ଭାଇ ଥିଲେ । ତାଙ୍କ ମାଁ ଥିଲେ ଜଣେ ବଡ଼ କାଥଲିକ ବିଶ୍ୱାସୀ ଯାହାଙ୍କ ଠାରୁ ରୋଜା ମାଳାଜପ ପ୍ରାର୍ଥନା ଶିଖିଥିଲେ ଏବଂ ଦିବ୍ୟଯଜ୍ଞରେ ଅଂଶ ଗ୍ରହଣ କରୁଥିଲେ ।

ରୋଜାଙ୍କୁ ଯେତେବେଳେ ୧୦ ବର୍ଷ ହେଉଥାଏ, ଏରନାକୁଲାମ ଜିଲ୍ଲାର କୁନାମୁଭୁସ୍ଥିତ କାର୍ମେଲ ସଂଘର ସେବାଭଗ୍ନୀମାନଙ୍କ ଦ୍ୱାରା ପରିଚାଳିତ ହଷ୍ଟେଲରେ ତାଙ୍କୁ ଭର୍ତ୍ତି କରାଗଲା । ସେହି କାର୍ମେଲାଇଟ୍ ସଂଘର ପ୍ରତିଷ୍ଠାତା ଥିଲେ ଫାଦେର କୁରିଆକୁସ ଏଲିଆସ ଚାଭାରା । ରୋଜା ବଡ଼ ହୁଅନ୍ତେ ସେହି ସଂଘର ଜଣେ ସେବାଭଗ୍ନୀ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ତାଙ୍କ ପିତାଙ୍କ ଇଚ୍ଛା ନ ଥିଲା ବରଂ ତାଙ୍କୁ ବିବାହ କରାଇବା ପାଇଁ ସେ ବ୍ୟବସ୍ଥା କରୁଥିଲେ । ରୋଜାଙ୍କ ଦୃଢ଼ ଇଚ୍ଛା ଜାଣି ଶେଷରେ ସେ ରାଜି ହେଲେ ଏବଂ ରୋଜାଙ୍କୁ ସାଙ୍ଗରେ ନେଇ କନ୍‌ଭେଣ୍ଟ ଗଲେ ।

୧୮୯୭ ମସିହାରେ ତ୍ରିଚୁର ଧର୍ମପ୍ରଦେଶର ପ୍ରଥମ ଆଞ୍ଚଳିକ ଧର୍ମାଧ୍ୟକ୍ଷ ଯୋହନ ମେନାଚେରୀ ଆମ୍ବାରାକାଦ (ବର୍ତ୍ତମାନ ସେହି କନ୍‌ଭେଣ୍ଟଟି ଇରିନ୍ୟାଲାକୁଡ଼ାରେ ଅବସ୍ଥିତ) ଠାରେ ଗୋଟିଏ କାର୍ମେଲ୍ କନ୍‌ଭେଣ୍ଟ ସ୍ଥାପନ କରିଥିଲେ । ମଇ ମାସ ୯ ତାରିଖରେ ଧର୍ମାଧ୍ୟକ୍ଷ ଯୋହନ ୫ ଜଣ ସେବାଭଗ୍ନୀ ହେବା ପାଇଁ ଅଧ୍ୟୟନ କରୁଥିବା ପ୍ରାର୍ଥୀମାନଙ୍କୁ ନିଜ ଧର୍ମପ୍ରଦେଶର କୁନାମାଭୁଠାରୁ ସେଠାକୁ ଆଣିଲେ । ସେହି ୫ ଜଣ ମଧ୍ୟରୁ ରୋଜା ଅନ୍ୟତମ । ତହିଁ ଆରଦିନ ରୋଜାଙ୍କୁ ପବିତ୍ର ଯୀଶୁଙ୍କ ହୃଦୟ ସଂଘର ଜଣେ Postulant (ପ୍ରାର୍ଥୀ) ରୂପେ

ଗ୍ରହଣ କରାଗଲା । ଗୋଟିଏ ବର୍ଷ ପରେ ଅର୍ଥାତ୍ ୧୮୯୮ ମସିହା ଜାନୁୟାରୀ ୧୦ ତାରିଖ ଦିନ ସେ ନଭିସିଏଟରେ ପ୍ରବେଶ କଲେ । ତାଙ୍କର ସ୍ୱାସ୍ଥ୍ୟ ଭଲ ରହୁ ନ ଥିବାରୁ ତାଲିମ୍ ଦାୟିତ୍ୱରେ ଥିବା ସେବାଭଗ୍ନୀ ମାନେ ରୋଗୀଙ୍କ ବିଷୟରେ ଚିନ୍ତିତ ଥିଲେ । ସ୍ୱାସ୍ଥ୍ୟ କାରଣରୁ କନ୍‌ଭେଣ୍ଟର ଅଧିକାରୀମାନେ ତାଙ୍କୁ ସଂଘରୁ ବାହାର କରିବା ପାଇଁ ମଧ୍ୟ ଚିନ୍ତା କରୁଥିଲେ ।

ଦିନେ ଇୟୁଫ୍ରେସିଆଙ୍କୁ ପ୍ରଭୁ ଦର୍ଶନରେ ପବିତ୍ର ପରିବାରଟିକୁ ଦେଖେଇଥିଲେ । ଏହି ଦର୍ଶନ ପରେ ଇୟୁଫ୍ରେସିଆ ଯେଉଁ ରୋଗରେ ଦୀର୍ଘ ଦିନ ଧରି କଷ୍ଟ ପାଉଥିଲେ ସେଥିରୁ ହଠାତ୍ ଆଶ୍ଚର୍ଯ୍ୟ ଭାବେ ସୁସ୍ଥତା ଲାଭ କଲେ । ୧୯୦୦ ମସିହା ମଇ ମାସ ୨୪ ତାରିଖ ଦିନ ଇୟୁଫ୍ରେସିଆ ପ୍ରଥମ ବ୍ରତ ଗ୍ରହଣ କରି ସେବାଭଗ୍ନୀ ହୋଇଥିଲେ । ପ୍ରଥମେ ସିଷ୍ଟର ଇୟୁଫ୍ରେସିଆ ସଂଘର ନଭିସିଏଟ ମାନଙ୍କର ସହ ଅଧିକାରୀ ରୂପେ ନିଯୁକ୍ତି ପାଇଥିଲେ । ଯଦିଓ ତାଙ୍କ ସ୍ୱାସ୍ଥ୍ୟ ଭଲ ନ ଥିଲା ତଥାପି ୧୯୦୪ ମସିହାରେ ତାଙ୍କୁ ସଂଘର ନଭିସମାନଙ୍କର ମୁଖ୍ୟ ପରିଚାଳିକା ଦାୟିତ୍ୱ ଦିଆଯାଇଥିଲା । ସେ ପ୍ରାୟ ୯ ବର୍ଷ ଅର୍ଥାତ୍ ୧୯୧୩ ମସିହା ପର୍ଯ୍ୟନ୍ତ ଏହି ଦାୟିତ୍ୱରେ ଥିଲେ । ଏହାପରେ ସେହି କନଭେଣ୍ଟରେ ସେ ସୁପିରିଅର ହୋଇ ୧୯୧୬ ପର୍ଯ୍ୟନ୍ତ ରହିଥିଲେ । ଅଧିକାଂଶ ସମୟ ସେ ଦିବ୍ୟ ମଞ୍ଜୁଷା ସମ୍ମୁଖରେ ପ୍ରାର୍ଥନା କରୁଥିଲେ । ଏଣୁ ସମସ୍ତେ ତାଙ୍କୁ ପ୍ରାର୍ଥନାର ମାଁ ବୋଲି କହୁଥିଲେ ଏବଂ ପ୍ରାର୍ଥନା ପାଇଁ ଅନୁରୋଧ କରୁଥିଲେ । ମାରୀୟାଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ଥିଲା ।

୧୯୫୨ ମସିହା ଅଗଷ୍ଟ ୨୯ ତାରିଖରେ ସାଧ୍ୱୀ ମାରିୟା କନ୍‌ଭେଣ୍ଟରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ସମାଧି ସ୍ଥଳରେ ଅନେକ ବିଶ୍ୱାସୀମାନେ ଆସି ପ୍ରାର୍ଥନା କରି ସୁସ୍ଥତା ଲାଭ କରନ୍ତି । ଅନେକ ଆଶ୍ଚର୍ଯ୍ୟ କର୍ମ ହେବା ଘଟଣା ତୀର୍ଥଯାତ୍ରୀ ମାନେ ପ୍ରକାଶ କରନ୍ତି ।

୧୯୮୬ ମସିହା ସେପ୍ଟେମ୍ବର ୨୭ ତାରିଖରେ ଇୟୁଫ୍ରେସିଆଙ୍କ ସାଧ୍ୱୀ ହେବାର ପ୍ରକ୍ରିୟା କେରଳର ଓଲ୍ଲୁରରେ ଆରମ୍ଭ ହୋଇଥିଲା । ୧୯୯୦ ମସିହା ଜାନୁୟାରୀ ୩୦ ତାରିଖ ଦିନ ସିଷ୍ଟର ଇୟୁଫ୍ରେସିଆଙ୍କ ସମାଧି ଖୋଲା କରାଯାଇ ତାଙ୍କ ମର ଶରୀରକୁ ନୂଆରେ ନିର୍ମାଣ କରାଯାଇଥିବା St. Mary Convent

ଦେବାଳୟ ଭିତରେ ରଖାଯାଇଥିଲା । ୧୯୯୪ ମସିହାରେ ଇୟୁଫ୍ରେସିଆଙ୍କ ସମସ୍ତ ବିବରଣୀ ଭାଟିକାନ୍‌ର ସାଧୁ ହେବା ପ୍ରକିୟାର ସଂସ୍ଥାକୁ ଉପସ୍ଥାପନ କରାଯାଇଥିଲା । ୨୦୦୨ ମସିହା ଜୁଲାଇ ୫ ତାରିଖରେ ଜନ୍ ପଲ୍ ଦ୍ୱିତୀୟ ତାଙ୍କୁ 'ସମ୍ମାନସ୍ପଦ' ବୋଲି ଘୋଷଣା କରିଥିଲେ । ୨୦୦୬ ମସିହା ଡିସେମ୍ବର ୩ ତାରିଖ ଦିନ ଅଲ୍ଲୁରର ସାଧୁ ଆନ୍ତୋଣୀ ଫରେନ୍ ଚର୍ଚ୍ଚରେ, ପୂଣ୍ୟପିତା ଷୋଡଷ ବେନେଦିକ୍ତଙ୍କ ତରଫରୁ ମେଜର ଆର୍ଚ୍ଚ ବିଶପ୍ ଭାର୍‌କି ଭିଥାୟାଥିଲ ଇୟୁଫ୍ରେସିଆଙ୍କୁ 'ଧନ୍ୟା' ବୋଲି ଘୋଷଣା କରିଥିଲେ । ୨୦୧୪ ମସିହା ନଭେମ୍ବର ମାସ ୨୩ ତାରିଖ ଦିନ ପୂଣ୍ୟପିତା ଫ୍ରାନ୍‌ସିସ ଭାଟିକାନ୍‌ରେ ସିଷ୍ଟେର ଇୟୁଫ୍ରେସିଆଙ୍କୁ 'ସାଧ୍ୱୀ' ବୋଲି ଘୋଷଣା କଲେ ।

**ଇୟୁଫ୍ରେସିଆଙ୍କ ପ୍ରାର୍ଥନା ମାଧ୍ୟମରେ ଆଷ୍ଚର୍ଯ୍ୟକର୍ମ:**

କେରଳର ଆନଚେରିସ୍ଥିତ ଓଲୁରର ଜଣେ ବଢ଼େଇ (କାଠରେ ତିଆରି ବସ୍ତୁ ଗୁଡିକୁ ଯିଏ ପଲିସ୍ କରନ୍ତି), ନାମ ତାଙ୍କର ଥମାସ୍ ଥାରାକନ କ୍ୟାନ୍‌ସର ରୋଗରେ ପୀଡ଼ିତ ଥିଲେ । ତ୍ରିଚୁର ଜୁବୁଲି ମିଶନ ମେଡିକାଲ୍ କଲେଜ ଓ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ରେ ତାଙ୍କୁ ଭର୍ତି କରାଯାଇଥିଲା । ପ୍ରାୟ ଗୋଟିଏ ସପ୍ତାହ ଧରି ସେ ସେଠାରେ ଚିକିତ୍ସିତ ହେଉଥିଲେ । କିନ୍ତୁ ଗୋଟିଏ ସପ୍ତାହ ପରେ ଯେତେବେଳେ ତାଙ୍କୁ scan କରାଗଲା, ତାଙ୍କ ଶରୀରରେ କ୍ୟାନ୍‌ସର ରୋଗର କୌଣସି ଚିହ୍ନ ନ ଥିଲା । ଥମାସଙ୍କ ଭଉଣୀ ରେଜି କହନ୍ତି ଯେ ସେ ଭାଇର ସୁସ୍ଥତା ପାଇଁ ସିଷ୍ଟେର ଇୟୁଫ୍ରେସିଆଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରିଥିଲେ ।

ଦ୍ୱିତୀୟ ଆଷ୍ଚର୍ଯ୍ୟ କର୍ମ ଘଟିଥିଲା ତ୍ରିଚୁର ଜିଲ୍ଲା ସ୍ଥିତ ସେହି ଓଲୁର ଗ୍ରାମର ଜଣେ ୭ ବର୍ଷର ପିଲାଙ୍କ ଜୀବନରେ । ପିଲାଟିର ନାମ ଯୁଏଲ । ତ୍ରିଚୁରସ୍ଥିତ ପଟାର ଧନ୍ୟା ହସ୍ପିଟାଲରେ ସେ ଚିକିତ୍ସିତ ହେଉଥିଲେ । ତାଙ୍କ ଗଳାରେ ଗୋଟିଏ ଆବୁ (tumour) ହୋଇଥିଲା ; ଯାହାରି ଫଳରେ କୌଣସି ଖାଦ୍ୟ ଗିଳିବା ପାଇଁ ବହୁତ କଷ୍ଟ ସେ ଅନୁଭବ କରୁଥିଲେ । ଡାକ୍ତରମାନେ କହିଥିଲେ ଯେ ସେହି ରୋଗ ଭଲ ହୋଇ ପାରିବ ନାହିଁ (incurable) । ଯୁଏଲଙ୍କ ପରିବାର ବହୁତ ଗରୀବ ଥିବାରୁ ତାଙ୍କ ପକ୍ଷରେ ଚିକିତ୍ସା କରିବା ପାଇଁ କୌଣସି ସମ୍ବଳ ନ ଥିଲା । ଶେଷରେ ପ୍ରଭୁଙ୍କ ଉପରେ ଭରସା ରଖିବା ବ୍ୟତୀତ ଅନ୍ୟ କୌଣସି ଉପାୟ ନ ଥିଲା । ଯୁଏଲଙ୍କ

ଆଇ ସିଷ୍ଟେର ଇୟୁପ୍ରେସିଆଙ୍କ ନିକଟରେ ଅନବରତ ପ୍ରାର୍ଥନା କରୁଥିଲେ । କିଛିଦିନ ପରେ ଧନ୍ୟା ହସ୍ପିଟାଲର ଡାକ୍ତର ସଶିକୁମାର ପରୀକ୍ଷା କରନ୍ତେ ଯୁଏଲଙ୍କ ଶରୀରରୁ ସେହି ଆବୁଟି ସମ୍ପୁର୍ଣ୍ଣ ରୂପେ ଉଭେଇ ଯାଇଛି ।

**ସାଧ୍ୱୀ ଇୟୁପ୍ରେସିଆଙ୍କ କେତୋଟି ଉକ୍ତି:**

✸ "ତୁମର ହୃଦୟ ସେହି ଯଜ୍ଞବେଦୀ ହେଉ ଯେଉଁଠାରୁ ଚିରନ୍ତନ ଧନ୍ୟବାଦର ଉଜ୍ଜଳ ଶିଖା ସ୍ୱର୍ଗକୁ ଆରୋହଣ କରୁ" ।

✸ "ତୁମର ଆହ୍ୱାନକୁ ପ୍ରେମ କର, ବାସ୍ତବରେ ପ୍ରେମ କର କାରଣ ସେହି ପବିତ୍ର ଓ ଉଦାରତାର ପ୍ରେମ ତୁମକୁ ଶକ୍ତି ଯୋଗାଇବ ଯେପରି ସମସ୍ତ ବିଷୟ ଗୁଡ଼ିକୁ ସମ୍ମୁଖିନ ହେବା ପାଇଁ ସକ୍ଷମ ହୋଇ ପାରିବ" ।

✸ "ଜଣେ ବ୍ୟସ୍ତବହୁଳ ବ୍ୟକ୍ତି ମଧ ଧ୍ୟାନର ଶୀର୍ଷ ସ୍ଥାନରେ ପହଞ୍ଚି ପାରିବ" ।

✸ "ଆମର ପୂଜାର ସବୁଠାରୁ ପ୍ରଥମ ଓ ମୂଖ୍ୟ ବସ୍ତୁ ହେଲା ଦିବ୍ୟ ପ୍ରସାଦ ସଂସ୍କାର । ଆମର ହୃଦୟରେ ତାହାକୁ ସଂରକ୍ଷଣ କରିବା ଏବଂ ସର୍ବଦା ଅବିରତ ସେହି ଦିବ୍ୟ ପ୍ରେମର ଅମୁଲ୍ୟ ପ୍ରତିଶ୍ରୁତିଗୁଡ଼ିକୁ ପାଳନ କରି ତାଙ୍କୁ ଆରାଧନା କରି ଆମର ଗଭୀର ଶ୍ରଦ୍ଧା ପ୍ରକାଶ କରିବା" ।

✸✸✸

# ସାଧ୍ୱୀ ମାଦର୍ ଟେରେସା
# (୧୯୧୦-୧୯୯୭, ସେପ୍ଟେମ୍ବର ୫)

ଯୁଗୋସ୍ଲୋଭିଆର ସ୍କୋପ୍‌ଜେ ଗ୍ରାମରେ ମାଦର ଟେରେସା ୧୯୧୦ ମସିହା ଅଗଷ୍ଟ ୨୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ମାଦର୍ ଟେରେସାଙ୍କ ପ୍ରକୃତ ନାମ ଥିଲା Agnes Gonxha Bojaxhiu । ତାଙ୍କ ପିତା ନିକୋଲା Bojaxhi ଏବଂ ମାତା ରୋଜା ଡ୍ରାନେ ମାରକିତ ଦୁହେଁ ଆଲବାନିଆ ଦେଶରୁ ଥିଲେ । ୫ ବର୍ଷ ବୟସରେ ଆଗ୍ନେସ୍ ପ୍ରଥମ ଥର ଦିବ୍ୟ ପ୍ରସାଦ ଗ୍ରହଣ କରିଥିଲେ । ତାଙ୍କୁ ଯେତେବେଳେ ୮ ବର୍ଷ ହେଉଥାଏ, ତାଙ୍କ ପିତା ମୃତ୍ୟୁ ବରଣ କଲେ । ସେହି ସମୟରେ ପରିବାରର ଆର୍ଥିକ ଅବସ୍ଥା ଭଲ ନ ଥିଲା ।

୧୮ ବର୍ଷ ବୟସରେ ମାଦର୍ ଟେରେସା ନିଜର ପରିବାର ତ୍ୟାଗ କରି ଲରେଟ ସଂଘରେ ଯୋଗଦେବା ପାଇଁ ଆୟରଲାଣ୍ଡ ଯାତ୍ରା କରିଥିଲେ । ସେଠାରେ ୩ ମାସ ରହିବା ପରେ ଭାରତରେ ରହୁଥିବା ଯୀଶୁ ସଂଘର ଯାଜକମାନଙ୍କ କାର୍ଯ୍ୟକଳାପ ଶୁଣି ଭାରତରେ କାମ କରିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା । ସେ କଲିକତାରେ ୧୯୨୯ ମସିହା ଜାନୁଆରୀ ୬ ତାରିଖରେ ପହଞ୍ଚିଲେ । ତାଙ୍କର ପ୍ରଥମ ବ୍ରତ ପରେ ୧୯୩୧ ମସିହାରେ ଜଣେ ଶିକ୍ଷୟିତ୍ରୀ ହିସାବରେ କାର୍ଯ୍ୟ କଲେ । ୧୯୪୪ ମସିହାରେ ସେହି ସ୍କୁଲ୍‌ର ପ୍ରିନ୍ସିପାଲ୍ ହୋଇ ପାରିଥିଲେ । ଯଦିଓ ସ୍କୁଲ୍‌ଟି ସ୍ଲାମ (ଝୁପୁଡ଼ି) ନିକଟବର୍ତ୍ତୀ ଥିଲା, ସେହି ସ୍କୁଲ୍‌ରେ କେବଳ ଧନଶାଳୀ ବ୍ୟକ୍ତିମାନଙ୍କ ଝିଅମାନେ ଅଧ୍ୟୟନ କରୁଥିଲେ ।

୧୯୪୬ ମସିହା ସେପ୍ଟେମ୍ବର ମାସ ୧୦ ତାରିଖରେ କଲିକତାଠାରୁ ଦାର୍ଜିଲିଙ୍ଗକୁ ବାର୍ଷିକୀ ଧ୍ୟାନ କରିବା ପାଇଁ ଟ୍ରେନରେ ଯାତ୍ରା କରିବା ସମୟରେ ସେ ଯେଉଁ ପ୍ରେରଣା ପାଇଲେ, ତାହା ସ୍ମରଣ କରି ସେ କହନ୍ତି, 'ଆହ୍ବାନ ଭିତରେ ଆହ୍ବାନ' ଯାହା ତାଙ୍କର ଦ୍ୱିତୀୟ ଆହ୍ବାନ । ଯୀଶୁଙ୍କର ତୃଷା ନିବାରଣ ପାଇଁ ତାଙ୍କ ଆତ୍ମା ପ୍ରେମରେ ପୂର୍ଣ୍ଣ ହେଲା । ସେ ଅନୁଭବ କଲେ ଯେ, ପ୍ରଭୁ ତାଙ୍କୁ ସ୍କୁଲ୍‌ର ପାଚେରି ମଧ୍ୟରେ ନ ରହି ପାଚେରି ବାହାରୁ ଗରୀବମାନଙ୍କର ସେବା କରିବା ପାଇଁ ଆହ୍ବାନ କରୁଛନ୍ତି । ଏଣୁ ୧୯୪୮ ମସିହା ଅଗଷ୍ଟ ୧୭ତାରିଖ ଦିନ ଖଦଡ଼ ଧଳା ଶାଢୀର ନୀଳ ଧଡ଼ି ଥିବା ଶାଢୀ ପିନ୍ଧି ହାତରେ ୫ ଟଙ୍କା ଧରି

ସେହି କନ୍‌ଭେଣ୍ଟରୁ ବାହାରି ଆସିଲେ । ଏହାପରେ ପାଟନା ଯାଇ କିଛି ଦିନ ପାଇଁ ନର୍ସିଙ୍ଗ ତାଲିମ ନେଇ କଲିକତାକୁ ଫେରି (Little Sisters of Poor) କନ୍‌ଭେଣ୍ଟରେ କିଛି ଦିନ ବିତାଇଲେ । ୧୯୪୮ ମସିହାରେ ଭାଟିକାନ୍ ତାଙ୍କୁ ନୂତନ ସଂଘ ଆରମ୍ଭ କରିବା ପାଇଁ ଅନୁମତି ଦେଲେ । କଲିକତାର ଆର୍ଚ୍ଚ ବିଶପଙ୍କ ତତ୍ତ୍ୱାବଧାନରେ ପ୍ରଥମେ ସେ ଗରିବମାନଙ୍କ ସେବା ଆରମ୍ଭ କଲେ । ମଦର୍ ତେରେସାଙ୍କ ସହିତ ପ୍ରଥମେ ଜଣେ ବେଙ୍ଗଲି ଝିଅ, ଯିଏ ତାଙ୍କର ଛାତ୍ରୀ ଥିଲେ, ସେ ଯୋଗ ଦେଲେ । ତାଙ୍କ ପରେ ଆସ୍ତେ ଆସ୍ତେ ପ୍ରାୟ ୧୦ଜଣ ଏକତ୍ର ହୋଇ କାର୍ଯ୍ୟ ଆରମ୍ଭ କଲେ ।

ଦିନେ ରାସ୍ତା କଡ଼ରେ ଜଣେ ସ୍ତ୍ରୀ ଲୋକ ପଡ଼ି ରହିଥିଲା । ମଦର୍ ତେରେସା ତାଙ୍କ ପାଖକୁ ଯାଇ ଦେଖିଲେ ମୂଷା ଏବଂ ପିମ୍ପୁଡ଼ି ତାର ଶରୀରର ଅଧା ଅଂଶ ଖାଇଛନ୍ତି । ମଦର୍ ତେରେସା ସେହି ସ୍ତ୍ରୀ ଲୋକଟିକୁ ନେଇ ହସ୍ପିଟାଲ୍‌କୁ ଗଲେ । ହସ୍ପିଟାଲ୍‌ର କର୍ମକର୍ତ୍ତାମାନେ ତାଙ୍କୁ ଚିକିତ୍ସା କରିବା ପାଇଁ ମନା କରିଦେଲେ । ମଦର୍ ତେରେସା ନିଜେ ଦୁଃଖରେ ଭାବିଲେ ସେମାନେ ନିଜର ସାଙ୍ଗ ଭାଇମାନଙ୍କ ଅପେକ୍ଷା ନିଜର ପାଳିତ ପଶୁମାନଙ୍କୁ ଅଧିକ ଯତ୍ନ କରିଥାନ୍ତି । ମଦର୍ ତେରେସା କିନ୍ତୁ ଛାଡ଼ିବା ଲୋକ ନୁହଁନ୍ତି । ସେ ଯାଇ ପୋଲିସ୍ କମିଶନଙ୍କ ନିକଟରେ ଅଭିଯୋଗ କଲେ । ସେହି ଅଫିସର ବହୁତ ଖୁସିରେ ଏହିପରି ରାସ୍ତାରେ ପଡ଼ି ମରୁଥିବା ବ୍ୟକ୍ତିମାନଙ୍କୁ ଯତ୍ନ ନେବା ପାଇଁ ସିଷ୍ଟେରମାନଙ୍କୁ ଜାଗା ଖୋଜେଇ ଦେଲେ । ଯାହା ସରକାରଙ୍କ ପାଇଁ ଲଜ୍ଜାର ବିଷୟ ଥିଲା, ତାହା ଏହିପରି ଉତ୍ସର୍ଗୀକୃତ ସାଧୁ ବ୍ୟକ୍ତିମାନେ କେବଳ କରିପାରିବେ । କାଳୀ ଦେବତାଙ୍କ ପାଇଁ ନିର୍ମିତ ଗୋଟିଏ ସୁନ୍ଦର ପୁରୁଣା ମନ୍ଦିରଟି ଖାଲିଥିଲା ଏବଂ ତାହା ମଦର ତେରେସାଙ୍କୁ ଦିଆଗଲା । ଏହି ସ୍ଥାନଟିକୁ କାଳିଘାଟ ବୋଲି ନାମକରଣ କରାଗଲା । ଏଠାରେ ଯେଉଁମାନେ ମୃତ୍ୟୁର ଶେଷ ଅବସ୍ଥାରେ ପହଞ୍ଚିଛନ୍ତି, ସେପରି ପରିତ୍ୟକ୍ତା ବ୍ୟକ୍ତିମାନଙ୍କୁ ଅଣାଯାଇ ମାଦର ତେରେସା ସେମାନଙ୍କୁ ମର୍ଯ୍ୟାଦା ଦେଇ ସେବା କରୁଥିଲେ । ମାଦର ତେରେସା ସେମାନଙ୍କୁ ଜଣାଇ ଦେବାକୁ ଚାହିଁଲେ ଯେ, ସେମାନେ ଈଶ୍ୱରଙ୍କ ସନ୍ତାନ ଅଟନ୍ତି ଏବଂ ସେ ସେମାନଙ୍କୁ ଭୁଲି ନାହାନ୍ତି । ଏହାପରେ, ଅନାଥ, ଅବହେଳିତ ଏବଂ ପରିତ୍ୟକ୍ତ

ଶିଶୁମାନଙ୍କ ନିମନ୍ତେ 'ଶିଶୁ ଭବନ' ନାମରେ ଅନ୍ୟ ଏକ ଗୃହ ଖୋଲିଲେ । କୁଷ୍ଠ ରୋଗରେ ପୀଡିତ ବ୍ୟକ୍ତିମାନଙ୍କ ନିମନ୍ତେ 'ଶାନ୍ତି ନଗର' ଆଶ୍ରମ ସ୍ଥାପନ କଲେ । ସେହି ସମୟରେ ପ୍ରାୟ ଦୁଇ ମିଲିୟନରୁ ଅଧିକ ଲୋକ ଭାରତରେ ଏହି ରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ସେମାନେ ସମାଜ ଦ୍ୱାରା ଘୃଣିତ ହୋଇ ମନୁଷ୍ୟଠାରୁ ହୀନ ଅବସ୍ଥାରେ ରହୁଥିଲେ । ସମାଜ ସେମାନଙ୍କୁ 'ଅଛୁଆଁ' ରୂପେ ଗଣନା କରି ହୀନ ଚକ୍ଷୁରେ ଦେଖୁଥିଲେ, ଏହି ପ୍ରକାର ବ୍ୟକ୍ତିମାନଙ୍କର ସେବା କରିବା ସହଜ ନଥିଲା । ଏଣୁ ଯେଉଁ ଯୁବତୀ ଝିଅମାନେ ଏହି ସଂଘରେ ପ୍ରବେଶ କରି ତାଲିମ ପାଉଥିଲେ, ସେମାନଙ୍କୁ ମଦର୍ ତେରେସା ଶିକ୍ଷା ଦେଇ କହୁଥିଲେ, 'ଈଶ୍ୱରଙ୍କ ଅନୁଗ୍ରହ ତୁମ ଆତ୍ମାରେ କାର୍ଯ୍ୟ କରିବାକୁ ଦିଅ । ଏଣୁ ଯାହା କିଛି ସେ ଦିଅନ୍ତି ସେ ସବୁ ଗ୍ରହଣ କର । ଆନନ୍ଦ ହେଉଛି ପ୍ରେମର ଜାଲ, ଯାହା ଦ୍ୱାରା ତୁମେ ଅନେକ ଆତ୍ମାକୁ ଧରିପାରିବ । ସର୍ବଦା ଦୟା ଦେଖାଅ । ଯିଏ ତୁମ ପାଖକୁ ଆସନ୍ତି ସେ ସମସ୍ତେ ଯେପରି ଅଧିକ ଖୁସୀ ହୋଇ ଫେରିଯାଆନ୍ତୁ । ସର୍ବଦା ଏବଂ ସମସ୍ତଙ୍କୁ ତୁମ ଆନନ୍ଦର ହସ ଦିଅ' ।

ମାଦର ତେରେସା ଈଶ୍ୱରଙ୍କୁ ଭରସା ରଖି କାର୍ଯ୍ୟ ଆରମ୍ଭ କଲେ । ସେ କହନ୍ତି 'ଟଙ୍କା ଚିନ୍ତା କେବେ ମୋ ମନକୁ ଆସି ନାହିଁ । ଟଙ୍କା ସବୁବେଳେ ଆସେ । ଆମେ ଈଶ୍ୱରଙ୍କ ପାଇଁ ସବୁ କାର୍ଯ୍ୟ କରୁ । ସେ ଆମର ଯତ୍ନ ନେବେ । ଏହିସବୁ ବିଷୟରେ ମୁଁ ଭୁଲିଯାଏ' ।

ବିଭିନ୍ନ ଦେଶରୁ ପୁଅ ଓ ଝିଅମାନେ ସଂଘରେ ପ୍ରବେଶ କରନ୍ତି । ଉତ୍ସାହର ସହିତ ସେମାନେ କାମ କରନ୍ତି । ଆମ୍ଭେ କୌଣସି ରାଜନୀତି କାମ କରୁନାହୁଁ । ସେ କହନ୍ତି, ବଡ଼ ବଡ଼ କାମ କରିବା ପାଇଁ ଯଥେଷ୍ଟ ଲୋକ ଅଛନ୍ତି । ମିଶିନାରୀ ଚାରିଟି କେବଳ ଛୋଟିଆ କାମ କରେ, ଯାହା ଅନ୍ୟ ଲୋକମାନେ କରିବାକୁ ଇଚ୍ଛା କରନ୍ତି ।

୧୯୫୦ ମସିହାରେ ମାଦର ତେରେସା ଭାରତୀୟ ନାଗରିକତା ପାଇଥିଲେ । ସେହି ବର୍ଷ ଅକ୍ଟୋବର ୭ ତାରିଖ, ମାଳାଜପ ରାଣୀଙ୍କ ପର୍ବ ଦିନ କଲିକତାରେ ମିଶନାରୀ ଚାରିଟି ସଂଘ ସ୍ଥାପନ କଲେ । ୧୯୬୩ ମସିହାରେ ମିଶନାରୀ ଚାରିଟି ବ୍ରଦେର ସଂଘ ଆରମ୍ଭ କଲେ । ଏହାପରେ କେତେ ଜଣ

ସିଷ୍ଟେରଙ୍କୁ କେବଳ ପ୍ରାର୍ଥନାରେ ମନୋନିବେଶ କରିବା ପାଇଁ Contemplative Sister ନାମରେ ଗୋଟିଏ ଶାଖା ୧୯୭୬ରେ ଆରମ୍ଭ କଲେ । ଠିକ୍ ସେହିପରି ବ୍ରଦେରମାନଙ୍କ ପାଇଁ ମଧ୍ୟ Contemplative Brother ଶାଖା ଆରମ୍ଭ କଲେ ୧୯୭୯ ମସିହାରେ । ୧୯୮୪ରେ Missionaries of Charity Fathers ନାମରେ ଅନ୍ୟ ଏକ ଶାଖା ସେ ଆରମ୍ଭ କଲେ । ନିଜର କାର୍ଯ୍ୟରେ ସହଯୋଗ କରିବା ପାଇଁ ମଦର ତେରେସାଙ୍କ ସହକର୍ମୀ ଭାବରେ ଅନ୍ୟ ଏକ ଦଳ ଗଠନ କରାଗଲା ଯେଉଁମାନେ ମାଦର ତେରେସାଙ୍କ ଆଧ୍ୟାତ୍ମିକ ପ୍ରାର୍ଥନାମୟ ଜୀବନ ଅନୁକରଣ କରି ସଂଘର ସାହାଯ୍ୟକାରୀ ହୁଅନ୍ତି । ଯଦିଓ ତାଙ୍କର ଆର୍ଥିକ ଅବସ୍ଥା ଭଲ ନ ଥିଲା, କୌଣସି Fund ନ ଥିଲା, ପ୍ରଭୁଙ୍କ ଉପରେ ନିର୍ଭର କରି Slum ପିଲାମାନଙ୍କ ପାଇଁ ଗୋଟିଏ ଖୋଲା ମେଲା ସ୍କୁଲଟି ଆରମ୍ଭ କଲେ । ରାସ୍ତା କଡ଼ରେ ପଡ଼ି ଯେଉଁମାନେ ଅସହାୟ ଥିଲେ, ସେମାନଙ୍କୁ ନେଇ ଯତ୍ନ କଲେ । ବୃଦ୍ଧ ଅବସ୍ଥାରେ ଥିବା ବ୍ୟକ୍ତିମାନଙ୍କ ପ୍ରତି ତଥା ପରିତ୍ୟକ୍ତ ଶିଶୁମାନଙ୍କୁ ସେବା କରି ସେମାନଙ୍କଠାରେ ଯୀଶୁଙ୍କର ଉପସ୍ଥିତି ଅନୁଭବ କରିଥିଲେ । Slum ରେ ଥିବା ପ୍ରତ୍ୟେକ ଘର ଘର ବୁଲି ବିଭିନ୍ନ ରୋଗରେ ପୀଡ଼ିତ ବ୍ୟକ୍ତିମାନଙ୍କୁ ସେବା କରି ଔଷଧ ଦେଉଥିଲେ । ପ୍ରତିଦିନ ଦିବ୍ୟ ଯଜ୍ଞରେ ଯୀଶୁଙ୍କୁ ଦିବ୍ୟ ପ୍ରସାଦ ମାଧ୍ୟମରେ ସହଭାଗିତା ଲାଭ କଲାପରେ, ହାତରେ ମାଳାଜପ ଧରି ସେ ବାହାରନ୍ତି ଅନାଥ, ଅସହାୟ ଏବଂ ପରିତ୍ୟକ୍ତ ବ୍ୟକ୍ତିମାନଙ୍କ ସେବାରେ । ମଦର୍ ତେରେସାଙ୍କ କାର୍ଯ୍ୟ ଦେଖି ଆସ୍ତେ ଆସ୍ତେ ତାଙ୍କର ପୂର୍ବ ଛାତ୍ରୀମାନେ ତାଙ୍କଠାରେ ଯୋଗଦେଲେ । ବିଭିନ୍ନ ଦେଶରେ ପ୍ରଭୁଙ୍କର ପ୍ରେମ ସେମାନେ ବିସ୍ତାର କଲେ ସେବା କାର୍ଯ୍ୟ ମାଧ୍ୟମରେ । ୧୯୯୭ ମସିହା ବେଳକୁ ତାଙ୍କ ସଂଘର ସଭ୍ୟ ସଂଖ୍ୟା ପ୍ରାୟ ୪୦୦୦କୁ ବଢ଼ିଥିଲା । ୧୨୩ଟି ଦେଶରେ ପ୍ରାୟ ୬୧୦ଟି ଅନୁଷ୍ଠାନ ଖୋଲା ହୋଇ ପାରିଥିଲା । ତାଙ୍କର କାର୍ଯ୍ୟ ଏପରି ବିସ୍ତାର ହେବାକୁ ଲାଗିଲା ଯେ, ଦେଶ ବିଦେଶରେ ତାଙ୍କୁ ସମ୍ମାନଜନକ ପୁରସ୍କାର ଦିଆଗଲା । ମାନବଜାତି ପ୍ରତି ସେ ଥିଲେ, ଦୟା ପ୍ରେମ ଓ ଶାନ୍ତିର ଅବତାର ।

୧୯୬୨ ମସିହାରେ ଗରିବମାନଙ୍କର ସେବା କାର୍ଯ୍ୟ ପାଇଁ ଭାରତ ତାଙ୍କୁ ପଦ୍ମଶ୍ରୀ ପୁରସ୍କାର ପ୍ରଦାନ କରିଥିଲେ । ୧୯୭୧ ମସିହାରେ ପୁଣ୍ୟପିତା

ଷଷ୍ଠ ପାଉଲ ମଦର ତେରେସାଙ୍କୁ ପୁଣ୍ୟପିତା ବିଂଶତ୍ରୟ ଯୋହନ 'ଶାନ୍ତି'ର ପୁରସ୍କାର ପ୍ରଦାନ କରିଥିଲେ । ୧୯୭୯ ମସିହାରେ ଅସହାୟ ଏବଂ ଅବହେଳିତ ମାନଙ୍କର ସେବା କାର୍ଯ୍ୟ ଦ୍ୱାରା ତାଙ୍କୁ ନୋବେଲ୍ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଥିଲା । ୧୯୭୧ରେ ଜନ୍ ଏଫ୍ କେନେଡ଼ି ଅନ୍ତର୍ଜାତୀୟ ପୁରସ୍କାର 'ଭାରତ ରତ୍ନ' ପ୍ରଦାନ କରାଯାଇଥିଲା । ଇଂଲଣ୍ଡର ରାଣୀ ଏଲିଜାବେଥଙ୍କ ଦ୍ୱାରା Medal of Freedom ଆମେରିକାର ସବୁଠାରୁ ଉଚ୍ଚ ସମ୍ମାନ ଜନକ ସ୍ୱାଧୀନତାର ପଦକ ସେ ଲାଭ କରିଥିଲେ । ପ୍ରାୟ ୧୨୪ଟି ସମ୍ମାନଜନକ ପୁରସ୍କାର ସେ ପାଇଛନ୍ତି । ପ୍ରତ୍ୟେକ ପୁରସ୍କାର ଗରିବମାନଙ୍କ ନାମରେ ଏବଂ ଈଶ୍ୱରଙ୍କ ଗୌରବ ନିମନ୍ତେ ସେ ଗ୍ରହଣ କରିଛନ୍ତି ।

୧୯୯୭ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ମଦର୍ ତେରେସା ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସେପ୍ଟେମ୍ବର ମାସ ୧୩ ତାରିଖ ଦିନ ତାଙ୍କର ଶବ ସତ୍କାର ହୋଇଥିଲା । ଭାରତ ସରକାର ଅତି ମର୍ଯ୍ୟାଦାର ସହିତ ପୃଥିବୀର ବିଭିନ୍ନ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ଶେଷ ରୀତି ସମ୍ପନ୍ନ କରାଯାଇଥିଲା । କଲିକତାର ମଦର୍‌ଙ୍କ ଗୃହରେ ତାଙ୍କୁ ସମାଧି ଦିଆଯାଇଛି । ୨୦୦୩ ଅକ୍ଟୋବର ୧୯ ତାରିଖରେ ପୁଣ୍ୟପିତା ଜନ ପଲ୍ ଦ୍ୱିତୀୟ ମଦର୍ ତେରେସାଙ୍କ ସାଧ୍ୱୀ ହେବା ପ୍ରକ୍ରିୟାର ପ୍ରଥମ ସୋପାନ ଯାହାକୁ ଆମେ Beatification ବୋଲି କହୁ, ତାହା ସେ ଘୋଷଣା କରିଥିଲେ ।

ମଦର ତେରେସା ଗରିବ ଅବହେଳିତ ଏବଂ ପରିତ୍ୟକ୍ତ ଜନତାର ସେବାରେ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ ।

**ସାଧ୍ୱୀ ମାଦେର ତେରେସାଙ୍କ କେତୋଟି ଉକ୍ତି**

* "ରକ୍ତରେ ମୁଁ ଜଣେ ଆଲ୍‌ବାନିଆନ୍, ନାଗରିକତାରେ ଜଣେ ଭାରତୀୟ, ବିଶ୍ୱାସରେ ମୁଁ ଜଣେ କାଥଲିକ ସେବାଭଗ୍ନୀ । ମୋର ଆହ୍ୱାନ ସାରା ବିଶ୍ୱବାସୀଙ୍କ ପାଇଁ ମୋର ହୃଦୟ ସମ୍ପୁର୍ଣ୍ଣ ରୂପେ ଯୀଶୁଙ୍କ ହୃଦୟ ପାଇଁ" ।
* "ଯିଏ ଯାହା କହୁନା କାହିଁକି ନିଜର କର୍ତ୍ତବ୍ୟ କର, ସବୁ ବିଷୟକୁ ହସର ସହିତ ଗ୍ରହଣ କରିବା ଉଚିତ" ।



# ସାଧୁ ପାଦ୍ରେ ପିଅ ପିଏତ୍ରେଲ୍‌ଚିନା

## (୧୮୮୭-୧୯୬୮, ସେପ୍ଟେମ୍ବର ୨୩)

ଦକ୍ଷିଣ ଇଟାଲୀର ବେନେଭେନ୍ତୋ ପ୍ରୋଭିନ୍ସ ଅନ୍ତର୍ଗତ ପିଏତ୍ରେଲଚିନା ନାମକ ଗୋଟିଏ ଛୋଟିଆ ଗ୍ରାମରେ ପିଅ ୧୮୮୭ ମସିହା ମଇ ମାସ ୨୫ ତାରିଖ ବୁଧବାର ଦିନ ଠିକ୍ ସନ୍ଧ୍ୟା ୫ ଘଣ୍ଟା ସମୟରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ହରାସିଓ ଫରଚ୍ଚୋନେ ଏବଂ ମାତା ମାରିଆ ଜୁସେପା ଦି ନୁନ୍‌ସିଓ ଫରଚ୍ଚୋନୋ ଦୁହେଁ ଛୋଟରୁ ପିଓଙ୍କୁ ସାଧୁ ଫ୍ରାନ୍‌ସିସ୍ ଆଶିସିଙ୍କ ଚରଣରେ ସମର୍ପଣ କରି ତାଙ୍କୁ ଫ୍ରାନ୍‌ସିସ୍ ନାମରେ ଦୀକ୍ଷା ସ୍ନାନ ଦେଇଥିଲେ । ଛୋଟ ସମୟରୁ ହିଁ ଅତି ସରଳ ଏବଂ ପ୍ରାର୍ଥନାଶୀଳ ବ୍ୟକ୍ତି ଥିଲେ । ଅନେକ ସମୟ ଗୀର୍ଜାରେ ଦିବ୍ୟ ମଞ୍ଜୁସା ସାମନାରେ ରହି ପ୍ରାର୍ଥନା କରୁଥିଲେ । ଦିବ୍ୟ ହୃଦୟ ଏବଂ ମାରୀଆଙ୍କ ଦର୍ଶନ ସେ ପାଉଥିଲେ । ପିଅଙ୍କୁ ଯେତେବେଳେ ୧୫ ବର୍ଷ ବୟସ ହୋଇଥିଲା, ଦର୍ଶନରେ ସେ ଦେଖିଲେ, ଦୁଇଟି ଦଳ । ଗୋଟିଏ ଦଳରେ ଥିଲେ, ଧଳା ପୋଷାକ ପରିହିତ ବ୍ୟକ୍ତିମାନେ ଯାହାଙ୍କ ମୁଖ ଦେଖିବାକୁ ଭୟଙ୍କର ଥିଲା । କିଛି ସମୟ ପରେ ପିଅ ଦେଖିଲେ, ତାଙ୍କ ସାମନାରେ ଜଣେ ଅତି ଲମ୍ବା ବ୍ୟକ୍ତି, ଯାହାର ମସ୍ତକ ଆକାଶକୁ ସ୍ପର୍ଶ କରୁଥିଲା । ପିଅ ସେହି ଅସୁର ପରି ବ୍ୟକ୍ତିଙ୍କ ସହିତ ଯୁଦ୍ଧ କରିବା ପାଇଁ ତାର ଆତ୍ମା ଡାକିଲା । ସେହି ସମୟରେ ସେ ଦେଖିବାକୁ ପାଇଲେ ତାଙ୍କ ସମ୍ମୁଖରେ ଜଣେ ଜାଜ୍ଜ୍ୱଲ୍ୟମୟ ବ୍ୟକ୍ତି ଠିଆ ହୋଇ ପିଅଙ୍କୁ କହିଲେ ତୁମକୁ ଆଘାତ ହେବାକୁ ମୁଁ ଦେବି ନାହିଁ, ମୁଁ ତୁମକୁ ସାହାଯ୍ୟ କରିବି । ଦୁଇଜଣଙ୍କ ମଧ୍ୟରେ ଭୟଙ୍କର ଲଢ଼େଇ ହେଲା । ଶେଷରେ ଫ୍ରାନ୍‌ସିସ୍ (ପିଅ) ସେହି ଅସୁର ପରି ବ୍ୟକ୍ତିଙ୍କୁ ଯୁଦ୍ଧରେ ପରାସ୍ତ କଲେ ।

କାପୁଚିଆନ୍ ସଂଘରେ ଯୋଗ ଦେଇ ଜଣେ ଉତ୍ତମ ଓ ପବିତ୍ର ଯାଜକ ହେବା ପାଇଁ ପିଅଙ୍କର ଗଭୀର ଇଚ୍ଛା ଥିଲା । ସେହି ସଂଘର ଜଣେ ସନ୍ୟାସୀ Friar କାମିଲଙ୍କ ଦ୍ୱାରା ସେ ପ୍ରେରଣା ପାଇଥିଲେ । ୧୯୦୭ ସାଲ ଜାନୁଆରୀ ୨୭ ତାରିଖରେ ବ୍ରତ ଗ୍ରହଣ କରି ପିଅ ନାମରେ ପରିଚିତ ହେଲେ । ୨୪ବର୍ଷ ବୟସରେ ଅର୍ଥାତ୍ ୧୯୧୦ ସାଲ ଅଗଷ୍ଟ ୧୦ ତାରିଖରେ ସେ ଯାଜକତା ଅଭିଷେକ ପାଇଥିଲେ ।

୧୯୧୬ ମସିହାରେ ପାଦ୍ରେ ପିଅ ଜଭାନି ରତନ୍ଦକୁ ବଦଳି ହୋଇଥିଲେ ଏବଂ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ୫୨ ବର୍ଷ ସେଠାରେ ଅତିବାହିତ କରିଥିଲେ । ଆସ୍ତେ ଆସ୍ତେ ବିଭିନ୍ନ ସ୍ଥାନରୁ ଲୋକେ ପାଦ୍ରେ ପିଅଙ୍କ ଆଶ୍ଚର୍ଯ୍ୟ କର୍ମ ଶୁଣି ତାଙ୍କୁ ଦେଖିବାକୁ ଜଭାନି ରତନ୍ଦ ଆସୁଥିଲେ । ଯେଉଁମାନେ ତାଙ୍କୁ ପଚାରୁଥିଲେ ତୁମେ ଆଶ୍ଚର୍ଯ୍ୟ କର୍ମ କର କି ? ସେ କହୁଥିଲେ, ମୁଁ କେବଳ ଜଣେ ସନ୍ୟାସୀ, ଯିଏ ପ୍ରାର୍ଥନା କରେ । ପ୍ରକୃତରେ ତାଙ୍କ ପ୍ରାର୍ଥନା ମାଧମରେ ଅନେକ ଆଶ୍ଚର୍ଯ୍ୟ ଜନକ କର୍ମ ଘଟୁଥିଲା ।

ଜେମା ଦି ଜର୍ଜି ନାମରେ ଜଣେ ଝିଅ ଜନ୍ମରୁ ଅନ୍ଧ ଥିଲା । ତା' ଆଖିରେ ବିନ୍ଦୁ ନ ଥିଲା ଏବଂ ସେ ଦେଖିବାକୁ ଅକ୍ଷମ ଥିଲା । ଦିନେ ଜେମା ପାଦ୍ରେ ପିଅଙ୍କଠାରେ ପାପ ସ୍ୱୀକାର କରି ପ୍ରଥମ ଥର ପାଇଁ ଦିବ୍ୟ ପ୍ରସାଦ ଗ୍ରହଣ କରିଥିଲା । ପାଦ୍ରେ ପିଅ ସେହି ସୁଯୋଗ ନେଇ ତାଙ୍କୁ ଦୁଇଟି ଚକ୍ଷୁରେ କ୍ରୁଶ ଚିହ୍ନ ଅଙ୍କନ କରିଥିଲେ । ଘରକୁ ଫେରିବା ସମୟରେ ସେ ଦୃଷ୍ଟି ଶକ୍ତି ପାଇଥିଲେ । ଡାକ୍ତର ନିଜେ ପରୀକ୍ଷା କରି ଜାଣିପାରିଲେ ଯେ ସେ ପ୍ରକୃତରେ ଦେଖି ପାରୁଛନ୍ତି ଯାହା ଔଷଧ କି ଅବା ବୈଜ୍ଞାନିକ ଅସ୍ତ୍ରୋପୋଚାର ଦ୍ୱାରା ସମ୍ଭବ ହୋଇ ନଥାନ୍ତା ।

୧୯୧୮ ମସିହା ସେପ୍ଟେମ୍ବର ୨୦ ତାରିଖ ଦିନ, ଦିବ୍ୟ ଯଜ୍ଞପରେ ଗୀର୍ଜାରେ ଝୁଲା ଯାଇଥିବା କ୍ରୁଶ ସମ୍ମୁଖରେ ରହି ପାଦ୍ରେ ପିଅ ଯେତେବେଳେ ପ୍ରାର୍ଥନା କରୁଥିଲେ ତାଙ୍କ ଶରୀରରେ ଯୀଶୁଙ୍କ ୫ଟି କ୍ଷତରୁ ରକ୍ତ ନିର୍ଗତ ହୋଇଥିଲା । ସେହିଦିନ ଠାରୁ ପାଦ୍ରେ ପିଅଙ୍କ ଶରୀରର ୫ଟି ଦାଗରୁ ସେ ଅଧିକ ପୀଡ଼ା ଅନୁଭବ କରୁଥିଲେ ।

ପାଦ୍ରେ ପିଅଙ୍କ ଆଶ୍ଚର୍ଯ୍ୟ କର୍ମ ଶୁଣି ଦିନକୁ ଦିନ ଜଭାନି ରତନ୍ଦରେ ଲୋକଙ୍କର ଭିଡ଼ ଜମୁଥାଏ । ପାପ ସ୍ୱୀକାରରେ ସେ ପ୍ରାୟ ୧୫ ଘଣ୍ଟା ବସୁଥିଲେ । ଦିବ୍ୟ ବେଦୀ ଏବଂ ପାପ ସ୍ୱୀକାର ଉକ୍ତ ଦୁଇଟି ସ୍ଥାନ ଥିଲା, ତାଙ୍କ ଜୀବନର କେନ୍ଦ୍ର ବିନ୍ଦୁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକାର ଆକାଶବାହିନୀ ଇଟାଲୀର ବାରିରେ ରହି ତାରି ଆଖପାଖ ସମସ୍ତ ଅଞ୍ଚଳ ତଦାରଖ

କରୁଥିଲେ । ସେହି ଆକାଶ ବାହିନୀ ମାନଙ୍କ ମଧ୍ୟରୁ କେତେକ ବ୍ରିଟେନ୍, ପୋଲାଣ୍ଡ ଏବଂ ଅନ୍ୟ କେତେକ ଆମେରିକା ଓ ପାଲେଷ୍ଟାଇନ୍‌ରୁ ମଧ୍ୟ ଥିଲେ । ସେମାନେ ବିଭିନ୍ନ ଧର୍ମର ଥିଲେ । ସେହି ପୁଲିଆ ଅଞ୍ଚଳର ବିଭିନ୍ନ ସ୍ଥାନ ଯଥା ଫଜା, ଗାରଗାନା, ବାରି ପ୍ରଭୃତି ସ୍ଥାନରେ ବମ୍ ପକାଇ ସବୁ କିଛି ଧ୍ୱଂସ କରୁଥିଲେ । ସେହି ଆକାଶ ବାହିନୀ ଶୁଣିବାକୁ ପାଇଲେ ଯେ ଜର୍ମାନୀ ସୈନ୍ୟମାନେ ଜଭାନି ରତନ୍ଦରେ ସେମାନଙ୍କ ଅସ୍ତ୍ରଶସ୍ତ୍ର ଲୁଚେଇ ରଖିଛନ୍ତି । ଏଣୁ ସେମାନେ ଜଭାନି ରତନ୍ଦ ଉପରେ ବୋମା ବିସ୍ଫୋରଣ କରିବା ପାଇଁ ଚେଷ୍ଟା କଲେ । ବେର୍ଣ୍ଣାଦ ରୋସିନିଙ୍କ ନେତୃତ୍ୱରେ ଆକାଶ ବାହିନୀ ଯେତେଥର ବୋମା ବର୍ଷଣ କରୁଥିଲେ, ସେହି ସମୟରେ ଜଣେ କାପୁଚିଆନ୍ ଯାଜକଙ୍କ ଛବି ଏବଂ ତାଙ୍କ ରକ୍ତାକ୍ତ ହସ୍ତ ତାଙ୍କୁ ପ୍ରତିରୋଧ କରୁଥାଏ । ଯାହାରି ଫଳରେ ବୋମାଟି ଠିକ୍ ସ୍ଥାନରେ ନ ପହଞ୍ଚି ଗଛ ଓ ଜଙ୍ଗଲରେ ପଡୁଥାଏ । ଉଡ଼ାଜାହାଜଟି ଲକ୍ଷ୍ୟ ସ୍ଥଳକୁ ନ ଯାଇ ଅନ୍ୟ ଦିଗକୁ ଗତି କରୁଥାଏ । ପାଇଲଟ୍‌ମାନେ ଏହି ବିଷୟଟି ଅନ୍ୟମାନଙ୍କ ଆଗରେ ପ୍ରକାଶ କଲେ । ଏହି ଖବର ଶୁଣି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । କେହି ଜଣେ ଆକାଶ ବାହିନୀର ନିର୍ଦ୍ଦେଶକ ଜେନେରାଲ୍‌ଙ୍କୁ କହିଲେ ଯେ ସେହି ସ୍ଥାନରେ ପାଦ୍ରେ ପିଅ ନାମକ ଜଣେ ସାଧୁ ପୁରୁଷ ବାସ କରନ୍ତି ଯେ ଅନେକ ଆଶ୍ଚର୍ଯ୍ୟ କର୍ମ କରନ୍ତି । ଜେନେରାଲ କମାଣ୍ଡର ଅନ୍ୟ କେତେକ ପାଇଲଟ୍‌ଙ୍କୁ ନେଇ ଜବାନି ରତନ୍ଦ ପହଞ୍ଚିଲେ । ଗୀର୍ଜାର ସାକ୍ରିସ୍ତି ଗୃହରୁ ଫେରିବା ସମୟରେ ଜେନେରାଲ୍ ଅନେକ କାପୁଚିଆନ୍ ଫାଦେରମାନଙ୍କୁ ଦେଖିଲେ, କିନ୍ତୁ ତାଙ୍କ ଦୃଷ୍ଟି ହଠାତ୍ ସେହି ବ୍ୟକ୍ତିଙ୍କ ଉପରେ ପଡ଼ିଲା, ଯାହାର ଛବି ଆସି ସେମାନଙ୍କ ଉଡ଼ାଜାହାଜକୁ ଅନ୍ୟ ଦିଗକୁ ନେଉଥିଲା । ଜେନେରାଲ ସେହି ବ୍ୟକ୍ତିଙ୍କ ବିଷୟରେ ଭାବୁଥିବା ସମୟରେ ପାଦ୍ରେ ପିଅ ତାଙ୍କ ସ୍କନ୍ଧରେ ହାତ ଦେଇ କହିଲେ, 'ତୁମେ ସେହି ବ୍ୟକ୍ତି ଯିଏ ଆମକୁ ଧ୍ୱଂସ କରିବା ପାଇଁ ଚାହୁଁଥିଲ' ।

ପାଦ୍ରେ ପିଅଙ୍କଠାରୁ ଏହି କଥା ଶୁଣି ଜେନେରାଲ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାଙ୍କ ସମ୍ମୁଖରେ ଜାନୁପାତ କଲେ । ଜେନେରାଲ୍ ଅନୁଭବ କଲେ

ଯେ, ସେ ତାଙ୍କୁ ଇଂରାଜୀରେ କହିଲେ ଯଦିଓ ପାଦ୍ରେ ପିଅ ନିଜ ଭାଷାରେ କହିଥିଲେ । ସେହି ଦିନଠାରୁ ଜେନେରାଲ୍ ଯିଏ ଜଣେ ପ୍ରୋଟେଷ୍ଟାଣ୍ଟ ଥିଲେ ମନ ପରିବର୍ତ୍ତନ କରି କାଥଲିକ୍ ହୋଇଥିଲେ ।

ପାଦ୍ରେ ପିଅ ପ୍ରଭୁଙ୍କଠାରୁ ବିଭିନ୍ନ ପ୍ରକାରର ଆଧ୍ୟାତ୍ମିକ ଦାନ ପାଇଥିଲେ । ସୁସ୍ଥତା ପ୍ରଦାନ କରିବା, ଭବିଷ୍ୟତ ବାଣୀ କହିବା, ସମାନ ସମୟରେ ଦୁଇଟି ସ୍ଥାନରେ ଉପସ୍ଥିତ ରହିବା, ବାସନାରେ ମହକାଇବା ପ୍ରଭୃତି । ପାପ ସ୍ୱୀକାର ସମୟରେ ସେ ଅନୁତାପୀମାନଙ୍କର ହୃଦୟର କଥା କହି ଦେଉଥିଲେ । କାର୍ଡିନାଲ୍ ମଣ୍ଟିନିଙ୍କୁ ଭବିଷ୍ୟତ ବାଣୀ ଦେଇ କହିଥିଲେ ଯେ ସେ ଦିନେ ପୁଣ୍ୟପିତା ହେବେ ଏବଂ ତାହା ସତ୍ୟରେ ପରିଣତ ହେଲା । ସେ ହେଉଛନ୍ତି ପୁଣ୍ୟପିତା ଷଷ୍ଠ ପାଉଲ ।

ପାଦ୍ରେ ପିଅ ଅନେକ ଯନ୍ତ୍ରଣା ଭୋଗ କରିଥିଲେ । ଏପରିକି ନିଜ ସଂଘର ସଭ୍ୟମାନେ ତାଙ୍କର ପରିସ୍ଥିତିକୁ ବୁଝି ପାରି ନଥିଲେ । ମଣ୍ଡଳୀର ଅଧିକାରୀ ଲୋକଙ୍କ ସହିତ ସାକ୍ଷାତ କରିବା ପାଇଁ କିଅବା ସେମାନଙ୍କ ପାଇଁ ଦିବ୍ୟ ଯଜ୍ଞ କରିବା ପାଇଁ ମନା କରି ଦେଇଥିଲେ । ୧୯୩୧ରୁ ୧୯୩୩ ପର୍ଯ୍ୟନ୍ତ ତାଙ୍କୁ ପ୍ରାଇଭେଟ୍‌ରେ ଯଜ୍ଞ କରିବାକୁ ପଡ଼ିଥିଲା ।

ପାଦ୍ରେ ପିଅଙ୍କ ସବୁଠାରୁ ବଡ଼ ଦାନ ଥିଲା ରୋଗୀମାନଙ୍କ ପାଇଁ ଗୋଟିଏ ହସ୍ପିଟାଲ୍‌ର ବ୍ୟବସ୍ଥା କରିବା, ଯାହା ଆଜି Casa Sollievo ବା କଷ୍ଟ ପାଉଥିବା ବ୍ୟକ୍ତିମାନଙ୍କ ପାଇଁ ଏକ ସାନ୍ତ୍ୱନାର ଗୃହ ରୂପେ ପରିଚିତ । ବର୍ତ୍ତମାନ ଏହି ହସ୍ପିଟାଲ୍‌ରେ ପ୍ରାୟ ୧୨୦୦ ରୋଗୀମାନେ ରହିପାରିବେ ଏବଂ ସବୁ ପ୍ରକାର ଚିକିତ୍ସା ପାଇଁ ଅତି ଆଧୁନିକ ଯନ୍ତ୍ରମାନ ରହିଅଛି । ୧୯୬୮ ମସିହା ସେପ୍ଟେମ୍ବର ୨୩ ତାରିଖ ସକାଳ ୨ଘଣ୍ଟା ୩୦ ମିନିଟ୍ ସମୟରେ ସେ ପ୍ରାଣ ତ୍ୟାଗ କରିଥିଲେ । ମୃତ୍ୟୁ ସମୟରେ ତାଙ୍କର ସେହି ରକ୍ତ ପ୍ରବାହିତ କ୍ଷତଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଅଦୃଶ୍ୟ ହୋଇଯାଇଥିଲା । ପୁଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ ୨୦୦୨ ସାଲ ଜୁନ୍ ୧୬ ତାରିଖରେ ତାଙ୍କୁ ସାଧୁ ରୂପେ ଘୋଷଣା କରିଥିଲେ ।

**ସାଧୁ ପାଦ୍ରେ ପିଅଙ୍କ କେତୋଟି ଉକ୍ତି :**

✸ "ପ୍ରାର୍ଥନା ଆମର ସବୁଠାରୁ ଉତ୍ତମ ଅସ୍ତ୍ର, ଈଶ୍ୱରଙ୍କ ହୃଦୟକୁ ଖୋଲିବାର ଚାବିକାଠି ପ୍ରାର୍ଥନା ଅଟେ" ।

✸ "ହେ ପ୍ରଭୁ ତୁମ ଦୟାରେ ଅଛି ମୋର ଅତୀତ, ତୁମର ପ୍ରେମରେ ଅଛି ମୋର ବର୍ତ୍ତମାନ ଏବଂ ତୁମ ଅନୁଗ୍ରହରେ ଅଛି, ମୋର ଭବିଷ୍ୟତ" ।

✸ "ଗୋଟିଏ ଯନ୍ତ୍ରଣାର ଆତ୍ମାକୁ ଆଶ୍ୱାସନା ଦେବା ପାଇଁ ସେହି ଆତ୍ମାର ଉତ୍ତମତା ଶକ୍ତିକୁ ଆମେ ଜଣାଇବା ଆବଶ୍ୟକ" ।

✸ "ନମ୍ରତା ଏବଂ ଉଦାରତା ଏକ ସ୍ରୋତରେ ବହେ । ଗୋଟିଏ ଗୌରବ ଆଣେ ଅନ୍ୟଟି ପବିତ୍ର କରେ" ।

✸ "ଦିବ୍ୟ ମଞ୍ଜୁଷାର ପାର୍ଶ୍ୱରେ ସର୍ବଦା ମାରୀୟା ଉପସ୍ଥିତ ଥିବା କଣ ତୁମ୍ଭେ ଦେଖୁନାହଁ" ?

✸ "ପୃଥିବୀ ସୂର୍ଯ୍ୟ ବିନା ଗୋଟିଏ ଦିନ ବଞ୍ଚିଯାଇ ପାରିବ କିନ୍ତୁ ଜଣେ ଖ୍ରୀଷ୍ଟିୟାନ ଦିବ୍ୟଯଜ୍ଞ ବିନା ମୂହୁର୍ତ୍ତକ ସୁଦ୍ଧା ବଞ୍ଚି ପାରିବ ନାହି" ।

✸✸✸

# ସାଧୁ ଭିନ୍‌ସେଣ୍ଟ ଦେ ପାଉଲ
# (୧୫୮୧-୧୬୬୦ , ସେପ୍ଟେମ୍ବର ୨୭)

ଦକ୍ଷିଣ ଫ୍ରାନ୍ସର ଗାସକନି ନିକଟବର୍ତ୍ତୀ ପଉଇ ଗ୍ରାମରେ ଭିନ୍‌ସେଣ୍ଟ ୧୫୮୧ ମସିହା ଏପ୍ରିଲ୍ ୨ ତାରିଖରେ ଗୋଟିଏ ଆଭିଜାତ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ବର୍ତ୍ତମାନ ସେହି ଜନ୍ମ ସ୍ଥାନ ସାଧୁ ଭିନ୍‌ସେଣ୍ଟଙ୍କ ନାମରେ ନାମିତ ହୋଇଅଛି । ତାଙ୍କ ପିତା ଥିଲେ, ଜଣେ କୃଷକ । ପିତା ଜିନ୍ ଦେ ପାଉଲଙ୍କ ସେ ଥିଲେ, ତୃତୀୟ ସନ୍ତାନ । ଛୋଟରୁ ଭିନ୍‌ସେଣ୍ଟ ପିତାଙ୍କୁ କୃଷି କାର୍ଯ୍ୟରେ ସାହାଯ୍ୟ କରୁଥିଲେ ଏବଂ ଗାଈ, ମେଣ୍ଢା ଏବଂ ଘୁଷୁରି ନେଇ ବଣକୁ ଚରାଇବାକୁ ଯାଉଥିଲେ । ଭିନ୍‌ସେଣ୍ଟଙ୍କୁ ଯେତେବେଳେ ୧୨ ବର୍ଷ ହୋଇଥିଲା, ନିଜ ଗ୍ରାମ ପଉଇ ଠାରୁ ୫ କିଲୋମିଟର ଦୂର ଡାକ୍ସ ଟାଉନ୍‌ରେ ଥିବା ଫ୍ରାନ୍‌ସିସ୍କିଆନ୍ ସ୍କୁଲ୍‌ରେ ଅଧ୍ୟୟନ କରିବା ପାଇଁ ସୁଯୋଗ ମିଳିଲା । କୃଷି କାମ ବନ୍ଦ କରି ଭିନ୍‌ସେଣ୍ଟ ପାଠ ପଢିବା ପାଇଁ ଆଗ୍ରହୀ ହେଲେ । ସେ ନିଜର ଜନ୍ମ ସ୍ଥାନ ଏବଂ ପିତାଙ୍କର ପରିଚୟ ଦେବା ପାଇଁ ଲଜ୍ଜିତ ହେଉଥିଲେ । ଭିନ୍‌ସେଣ୍ଟ ଛୋଟବେଳର କଥା ମନେ ପକାଇ କହନ୍ତି, ମୋ ବାପା ଯେତେବେଳେ ସ୍କୁଲ୍‌କୁ ନାମ ଲେଖାଇବା ପାଇଁ ନେଲେ, ତାଙ୍କ ସହିତ ମିଶି ଯିବା ପାଇଁ ଏବଂ ତାଙ୍କୁ ନିଜର ପିତା ବୋଲି ଅନ୍ୟ ଆଗରେ ପରିଚୟ ଦେବା ପାଇଁ ମୋତେ ଲଜ୍ଜା ଲାଗିଥିଲା । କାରଣ ସେ ଭଲ ପୋଷାକ ପିନ୍ଧି ନଥିଲେ ଏବଂ ଛୋଟେଇ ହୋଇ ଚାଲୁଥିଲେ । ଦିନକର ଘଟଣା, ଯେତେବେଳେ ମୁଁ ସ୍କୁଲ୍‌ରେ ଅଧ୍ୟୟନ କରୁଥିଲି, କେହି ଜଣେ କହିଲେ ଯେ, ଜଣେ ଗରିବ କୃଷକ ତାଙ୍କ ପୁଅକୁ ଦେଖିବା ପାଇଁ ଆସିଛନ୍ତି । ଏହାଶୁଣି ମୁଁ ତାଙ୍କୁ ଦେଖି ଯିବା ପାଇଁ ଇଚ୍ଛା କଲି ନାହିଁ । ପିତା ତାଙ୍କ ପାଇଁ ଯେଉଁ ସମ୍ପତ୍ତି ରଖି ଦେଇଥିଲେ, ତାହା ଦ୍ୱାରା ଅଧ୍ୟୟନ ଶେଷ କଲାପରେ ୧୬୦୦ ମସିହା ସେପ୍ଟେମ୍ବର ୨୩ରେ ତାଙ୍କୁ ଯେତେବେଳେ ୧୯ ବର୍ଷ ବୟସ ହୋଇଥିଲା ସେ ଯାଜକ ଅଭିଷେକ ପାଇଥିଲେ ।

ଯାଜକତାର ୫ ବର୍ଷ ପରେ ଦିନେ ମାର୍ସେଇଲେରୁ ନାରବୋନକୁ ସମୁଦ୍ର ପଥ ଦେଇ ଯାତ୍ରା କରୁଥିଲେ । ତୁର୍କୀର ଡକାୟତମାନେ ସେହି ଜାହାଜକୁ ଆକ୍ରମଣ କରି ଯାତ୍ରୀମାନଙ୍କୁ ଘେନିଗଲେ । ଭିନ୍‌ସେଣ୍ଟଙ୍କୁ ସେମାନେ କ୍ରୀତଦାସ ରୂପେ ବିକ୍ରି କଲେ । ଭିନ୍‌ସେଣ୍ଟ ପ୍ରାୟ ଚାରି ଜଣ ମାଲିକଙ୍କଠାରେ କ୍ରୀତଦାସ

ରୂପେ କାର୍ଯ୍ୟ କରିଥିଲେ । ସେମାନେ ହେଲେ ଜଣେ ମାଛ ଧରାଳି ଅନ୍ୟ ଜଣକ ଥିଲେ ଡାକ୍ତର ପୁଣି ଡାକ୍ତରଙ୍କ ଭଣଜା ଓ ଶେଷରେ ଜଣେ ବିଶ୍ୱାସ ତ୍ୟାଗ କରିଥିବା ଖ୍ରୀଷ୍ଟିଆନ୍ । ଦୁଇ ବର୍ଷ ମଧ୍ୟରେ ତାର ମାଲିକର ମନ ପରିବର୍ତ୍ତନ କରି ପ୍ୟାରିସ୍କୁ ତାଙ୍କ ସଙ୍ଗେ ଯିବା ପାଇଁ ସକ୍ଷମ ହୋଇପାରିଥିଲେ ।

ପ୍ୟାରିସ୍ ପହଞ୍ଚିବା ପରେ ୧୬୦୯ ସାଲରେ ପିଏରେ ଦି. ବେରୁଲେଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ପିଏରେ ଦି ବେରୁଲଙ୍କ ଦୁଇଟି ମୁଖ୍ୟ ଆହ୍ୱାନ ଥିଲା, ଆତ୍ମାକୁ ସୁସ୍ଥତା ପ୍ରଦାନ କରିବା ଏବଂ ଆଧାତ୍ମିକ ଯାଜକମାନଙ୍କୁ ନେଇ ସଂଘ ଗଢ଼ିବା । ଯୁଦ୍ଧ ପରେ ଯାଜକମାନଙ୍କ ଜୀବନ ଦୁର୍ଦ୍ଦଶାଗ୍ରସ୍ତ ଥିଲା । ଟ୍ରେଣ୍ଟ କାଉନ୍ସିଲ୍‌ରେ ଯାଜକମାନଙ୍କର ତାଲିମ୍ ଉପରେ ଯେଉଁ ଶିକ୍ଷା ଦିଆଯାଇଛି ତାହା କେହି ପୂର୍ଣ୍ଣ କରୁ ନଥିଲେ । ଅନେକ ବିଶପ୍ ଧନୀ ମାଲିକମାନଙ୍କ ପରି ବିଳାସବ୍ୟସନରେ ଜୀବନ ବିତାଉଥିଲେ । ସୁତରାଂ ଯାଜକମାନଙ୍କ ମଧ୍ୟରେ ନବୀକରଣ ଆଣିବା ପାଇଁ ଅନେକ ଅଭିଯାନ ଆରମ୍ଭ ହୋଇଥିଲା । ଇଟାଲୀରେ ଫିଲପ୍ ନେରି 'ଓରେଟେରୀର ଯାଜକ ସମାଜ' ପ୍ରତିଷ୍ଠା କରିଥିଲେ । ସେହି ଅନୁରୂପ ମିଲାନ୍‌ରେ Carlos Boromeo ଙ୍କ ଦ୍ୱାରା ଆରମ୍ଭ ହୋଇଥିଲା Oblates ଯେଉଁମାନେ ଯାଜକ ଜୀବନକୁ ଉତ୍ତମ ଭାବେ ଗଢ଼ିବା ପାଇଁ ଆଗ୍ରହୀ ଥିଲେ । ପ୍ୟାରିସ୍‌ର ଆର୍ଚ୍ଚବିଶପ ଏବଂ ହେନେରୀ ଡି ଗଣ୍ଡିଙ୍କ ସହାୟତାରେ ୧୬୧୧ ମସିହାରେ ପିଏରେ ବେରୁଲେ ଗୋଟିଏ ନୂଆ Foundation ଆରମ୍ଭ କଲେ, ଏହି Foundation ର ଉଦ୍ଦେଶ୍ୟ ଥିଲା କୌଣସି ପଦପଦବୀ, ଉଚ୍ଚ ଅଭିଳାଷ କିଅବା ବ୍ୟକ୍ତିଗତ ସ୍ୱାର୍ଥ ମନରେ ନ ରଖି ଦାରିଦ୍ର୍ୟ ଜୀବନ ମାଧ୍ୟମରେ ମଣ୍ଡଳୀର କାର୍ଯ୍ୟ କରିବା । ବେରୁଲେଙ୍କ ଅନୁରୋଧ ଯଦିଓ ସେ ରକ୍ଷା କରିପାରି ନଥିଲେ, ସେ ଚାହୁଁଥିଲେ ଯାଜକମାନଙ୍କ ନବୀକରଣ । କ୍ଲିଚିଲା ଗାରନେ ପ୍ୟାରିସ୍‌ର ଦାୟିତ୍ୱ ନେଇଥିଲେ, ଫାଦର ଭିନ୍‌ସେନ୍ତ । ସେହି ପାରିସ୍‌ର ପ୍ରାୟ ୬୦୦ ସଭ୍ୟମାନଙ୍କ ମଧ୍ୟରୁ ଅନେକ ଥିଲେ ଗ୍ରାମାଞ୍ଚଳର କୃଷକ ପରିବାରରୁ । ଧର୍ମ ଶିକ୍ଷା ଏବଂ ଅନ୍ୟାନ୍ୟ ଯାଜକୀୟ କାର୍ଯ୍ୟରେ ସଂଶ୍ଳିଷ୍ଟ ହୋଇ ସେ ଅନେକଙ୍କୁ ପ୍ରଭୁଙ୍କ ଆଡକୁ ନେଇପାରିଥିଲେ । ବେରୁଲେ ଭିନ୍‌ସେନ୍ତଙ୍କୁ ଜଣେ ବଡ଼ ପରିବାରର ଶିକ୍ଷକ ଭାବରେ ସମ୍ମାନିତ କରୁଥିଲେ । ପ୍ୟାରିସ୍‌ର ଆର୍ଚ୍ଚବିଶପ୍ଙ୍କ ଭଣଜା ଫିଲିପ୍ ଓ ଡ଼ି ମାନୁୟେଲ୍ ଡ଼ି ଗଣ୍ଡି ମେଡ଼ିଟେରିଆନ୍ ଫ୍ରେଞ୍ଚ ନେଭିର ଆଡ଼ମିରାଲ୍ ଥିଲେ । ଫିଲିପେ ଡି ଗଣ୍ଡି ପରିବାରରେ ଜଣେ ଚାପଲେଇନ୍ ଭାବରେ

ସେ ନିଯୁକ୍ତି ପାଇଥିଲେ ଓ ଶେଷରେ ଜଣେ ବିଶ୍ୱାସ ତ୍ୟାଗ କରିଥିବା ବ୍ୟକ୍ତିଙ୍କୁ ଖ୍ରୀଷ୍ଟଙ୍କ ଆଡ଼କୁ ଆଣି ପାରିଥିଲେ । ଦୁଇ ବର୍ଷ ମଧ୍ୟରେ ତାର ମାଲିକର ମନ ପରିବର୍ତ୍ତନ କରି ପ୍ୟାରିସ୍‌କୁ ତାଙ୍କ ସଙ୍ଗେ ଯିବା ପାଇଁ ସକ୍ଷମ କରି ପାରିଥିଲେ ।

ସେଠାରେ ପ୍ରାୟ ୪ ବର୍ଷ ରହି ଭିନ୍‌ସେନ୍ତ ବିଭିନ୍ନ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସି ପାରିଥିଲେ । ଭିନ୍‌ସେନ୍ତଙ୍କ ଜୀବନରେ ଦୁଇଟି ଘଟଣା ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ପ୍ରଥମଟି ହେଲା ୧୬୧୭ ସାଲରେ ଗାନେରେ ଗଣ୍ଡିଙ୍କ ପରିବାର ନିକଟରେ ରହୁଥିବା ଜଣକ ଯିଏ ବହୁତ କଷ୍ଟ ପାଉଥିଲେ । ସେହି ବ୍ୟକ୍ତିଙ୍କୁ ସାକ୍ଷାତ କରିଥିଲେ । ଏହି ବ୍ୟକ୍ତି ଜଣକ ସମସ୍ତଙ୍କ ଆଗରେ ଜଣେ ଭଲ ବ୍ୟକ୍ତି ଭାବରେ ଜଣାଶୁଣା । ସେ ନିଜର ଦୋଷକୁ କେବେହେଲେ କୌଣସି ଯାଜକଙ୍କଠାରେ ପ୍ରକାଶ କରି ନ ଥିଲେ, ଲାଜ ଏବଂ ଗର୍ବ ଯୋଗୁ ତାହା କେବଳ ଭିନ୍‌ସେନ୍ତଙ୍କ ନିକଟରେ ପ୍ରକାଶ କରିପାରିଥିଲେ । ଏହି ଘଟଣା ପରେ ସମସ୍ତଙ୍କୁ ପାପ ସ୍ୱୀକାର କରିବା ପାଇଁ ସେ ପ୍ରେରଣା ଦେଲେ । ଏହି ସଂସ୍କାର ମାଧ୍ୟମରେ ସେ ଅନ୍ୟମାନଙ୍କୁ ଈଶ୍ୱରଙ୍କ କୋମଳତା ଓ ସେ ଯେ କେଡ଼େ ଦୟାଳୁ ଏବଂ ସ୍ନେହଶୀଳ ତାହା ପ୍ରକାଶ କରୁଥିଲେ ।

ଫ୍ରାନ୍ସର ଲିୟନ ଏବଂ ଜେନେଭା ମଧ୍ୟରେ ଥିବା ବ୍ରେସେ ଅନ୍ତର୍ଗତ ଛାତିଲନ୍ ଲେସ୍ ଦମ୍ବେସରେ ଯେତେବେଳେ ପ୍ରଧାନ ଯାଜକ ରୂପେ ନିଯୁକ୍ତି ପାଇଲେ ସେଠିକାର ଜଣେ ୩୬ ବର୍ଷ ବୟସର ବ୍ୟକ୍ତିଙ୍କ ଦ୍ୱାରା ଅନ୍ୟ ଏକ ଅନୁଭୂତି ସେ ପାଇଥିଲେ, ଯାହା ଅତି ସ୍ମରଣୀୟ । ଦିନକର ଘଟଣା, ମୁଁ ଯେତେବେଳେ ଯଜ୍ଞ ପୋଷାକ ପିନ୍ଧି ବାହାରିଥିଲି କେତେଜଣ ଆସି କହିଲେ ଯେ ଗୋଟିଏ ପରିବାରରେ ସମସ୍ତେ ଅସୁସ୍ଥ ଅଛନ୍ତି । ସେମାନଙ୍କୁ ଯତ୍ନ ନେବା ପାଇଁ କେହି ନାହାନ୍ତି । ସେମାନଙ୍କ ଅବସ୍ଥା ଅବର୍ଣ୍ଣନୀୟ ଏବଂ ଶୋଚନୀୟ । ଏହା ମୋର ହୃଦୟକୁ ଗଭୀର ଭାବେ ସ୍ପର୍ଶ କରିଥିଲା । ଭିନ୍‌ସେନ୍ତ ସମସ୍ତ ବିଶ୍ୱାସୀମାନଙ୍କୁ ଏହି ପରିବାରକୁ ସାହାଯ୍ୟ କରିବା ପାଇଁ ଆହ୍ୱାନ କରିଥିଲେ । ଭିନ୍‌ସେନ୍ତଙ୍କ ପାଇଁ ଏହି ପ୍ରକାର ସ୍ୱତଃ ପ୍ରବୃତ୍ତି ପ୍ରତିକ୍ରିୟା ଯଥେଷ୍ଟ ନଥିଲା, କାରଣ ଏହାଦ୍ୱାରା ଏହି ପ୍ରକାର ସେବା କାର୍ଯ୍ୟ ଠିକ୍ ଭାବରେ ଚାଲୁ ରହି ନ ପାରେ । ଏଣୁ ସେ କେତେ ଜଣ ଦୟାଳୁ ମା' ମାନଙ୍କୁ ନେଇ, ଗୋଟିଏ ସଂସ୍ଥା Societies of Charity ଆରମ୍ଭ କଲେ । ଏହି ସଂସ୍ଥା ବା ସମାଜର କାର୍ଯ୍ୟ ହେଲା ଗରିବ ଦୀନ ଦୁଃଖୀଙ୍କ ଯତ୍ନ ନେବା, ବିଶେଷ ଭାବରେ ଯେଉଁମାନେ ଅସୁସ୍ଥ ଅବସ୍ଥାରେ

କଷ୍ଟ ପାଆନ୍ତି । ୧୬୩୩ ସାଲ୍‌ରେ ୭୧୨ ଜଣ ଝିଅଙ୍କୁ ନେଇ ଲୁଇସ ଡି ମାରିଲାକା ଭିନ୍‌ସେନ୍ତଙ୍କ ସହିତ Sisters of Charity ସମାଜ ସ୍ଥାପନ କଲେ । ସେମାନଙ୍କର ଆଧ୍ୟାତ୍ମିକ ଆବଶ୍ୟକତା ଫାଦେର ଭିନ୍‌ସେନ୍ତ ଦେଖୁଥିଲେ । ଆସ୍ତେ ଆସ୍ତେ ଗରିବମାନଙ୍କ ସେବାରେ ଏହି ସମାଜ ଅନ୍ୟାନ୍ୟ ଦେଶମାନଙ୍କରେ କାର୍ଯ୍ୟ ଆରମ୍ଭ କରିଥିଲେ । ଭିନ୍‌ସେନ୍ତଙ୍କ ମୁଖ୍ୟ କାର୍ଯ୍ୟ ଥିଲା ରୋଗୀମାନଙ୍କ ସେବା ଏବଂ ଉତ୍ତମ ଯାଜକ ଗଠନ କରିବା । ଏହି କାର୍ଯ୍ୟ ମାଧ୍ୟମରେ ସେ ସୁସମାଚାରର ସାକ୍ଷ୍ୟ ଦେଇ ପାରିଥିଲେ । ଭିନ୍‌ସେନ୍ତ ସର୍ବଦା କହୁଥିଲେ "ଗରିବମାନଙ୍କ ସେବାକୁ ସବୁ କାର୍ଯ୍ୟଠାରୁ ପ୍ରଥମ ସ୍ଥାନ ଦେବା ଉଚିତ୍ ଏବଂ ବିନା ବିଳମ୍ବରେ ତାହା କରିବା ବିଧେୟ । ଯେକୌଣସି ନିୟମ ଉପରେ ସେବା କାର୍ଯ୍ୟ ପ୍ରଥମ ସ୍ଥାନ ପାଇବା ଉଚିତ୍" । ଯାଜକମାନଙ୍କ ସମ୍ବନ୍ଧରେ ସେ କହୁଥିଲେ । "ଯାଜକତା ଗୋଟିଏ ପଦବୀ ନୁହଁ ମାତ୍ର ସେବା ଏବଂ ମିଶନ୍ । ଏଣୁ ଜଣେ ଯାଜକ ଅନ୍ୟମାନଙ୍କ ପାଇଁ ହୁଅନ୍ତି" ।

୧୬୬୦ ମସିହା ସେପ୍ଟେମ୍ବର ୨୭ତାରିଖରେ ପ୍ୟାରିସ୍‌ର ଭିନ୍‌ସେନ୍ତ ସଂଘର ଗୃହରେ ସେ ପ୍ରାଣ ତ୍ୟାଗ କରିଥିଲେ । ୧୭୩୭ ମସିହାରେ ପୁଣ୍ୟପିତା ଦ୍ୱିତୀୟ କ୍ଲେମେନ୍ତ ତାଙ୍କୁ ସାଧୁରୂପେ ଘୋଷଣା କରିଥିଲେ । ପୁଣ୍ୟପିତା ଲିୟ ତ୍ରୟୋଦଶ ସାଧୁ ଭିନ୍‌ସେନ୍ତଙ୍କୁ ସେବା କାର୍ଯ୍ୟର ଇଷ୍ଟ ସାଧୁ ରୂପେ ଘୋଷଣା କରିଥିଲେ ।

**ସାଧୁ ଭିନ୍‌ସେନ୍ତ ଡି ପାଉଲ**

✸ "ଗୋଟିଏ ସମାଜକୁ ଇଶ୍ୱରଙ୍କ ସହିତ ଓ ଜଣେ ବ୍ୟକ୍ତିଙ୍କୁ ଅନ୍ୟମାନଙ୍କ ସହିତ ଯୋଡ଼ିବାର ସିମେଣ୍ଟ ହେଉଛି ପ୍ରେମର କାର୍ଯ୍ୟ" ।

✸ "ଯଦି ପରମେଶ୍ୱର ତୁମ ଜୀବନର କେନ୍ଦ୍ରବିନ୍ଦୁ ତେବେ କୌଣସି ଶବ୍ଦର ଆବଶ୍ୟକତା ନୁହେଁ । ତୁମର ଉପସ୍ଥିତି ଦ୍ୱାରା ସମସ୍ତଙ୍କର ହୃଦୟକୁ ତୁମ୍ଭେ ସ୍ପର୍ଶ କରିପାରିବ" ।

✸✸✸

# ଲିସିଉକ୍ସର ସାଧ୍ୱୀ ତେରେସା

## (୧୮୭୩-୧୮୯୭ , ଅକ୍ଟୋବର ୧)

ସାଧ୍ୱୀ ତେରେସା ଫ୍ରାନ୍‌ସ ଦେଶର ଆଲେନକନ୍ ଗ୍ରାମରେ ୧୮୭୩ ମସିହା ଜାନୁଆରୀ ମାସ ୨ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଲୁଇସ ଓ ଜେଲିଏ ମାର୍ଟିନଙ୍କ ୯ଟି ସନ୍ତାନ ମଧ୍ୟରୁ ତେରେସା ଥିଲେ କନିଷ୍ଠା । ସେମାନଙ୍କ ମଧ୍ୟରୁ କେବଳ ପାଞ୍ଚ ଜଣ ଝିଅ ବଞ୍ଚିଥିଲେ ଏବଂ ସମସ୍ତେ ସେବା ଭଗ୍ନି ହୋଇ ପାରିଥିଲେ । ତେରେସାଙ୍କ ପୂରା ନାମ ଥିଲା, ମାରିଏ ଫ୍ରାଙ୍କଇସ୍ ତେରେସା ମାର୍ଟିନ । ଶ୍ରଦ୍ଧାରେ ସମସ୍ତେ ତାଙ୍କୁ ଟିକି ପୁଷ୍ପ ବୋଲି ଡାକୁଥିଲେ । ତେରେସାଙ୍କୁ ୪ ବର୍ଷ ହେଉଥିବା ବେଳେ ସେ ନିଜ ମାତାଙ୍କୁ ହରାଇଲେ ଏବଂ ବଡ଼ ଭଉଣୀ ପାଉଲିନାଙ୍କ ସ୍ନେହ ମମତାରେ ବଢ଼ିବାକୁ ଲାଗିଲେ । ମା'ଙ୍କ ମୃତ୍ୟୁ ପରେ ସେମାନେ ଲିସିଉକ୍ସ ଯାଇ ବାସ କଲେ । ତେରେସା ଛୋଟରୁ ଜିଦ୍‌ଖୋର ଥିଲେ, ଯେତେବେଳେ କୌଣସି ବିଷୟ ତାଙ୍କ ଇଚ୍ଛା ଅନୁଯାୟୀ ନ ହୁଏ ସେ ଚଟାଣରେ ଗଡ଼ି ତାର ଇଚ୍ଛାପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ ଛାଡୁ ନଥିଲେ ।

୧୮୮୨ ମସିହା ଅକ୍ଟୋବର ମାସରେ ଯେତେବେଳେ ପାଉଲିନା କାର୍ମେଲାଇଟ୍ ସଂଘରେ ସିଷ୍ଟର ହେବାପାଇଁ ଯୋଗ ଦେଲେ, ସେତେବେଳେ ତେରେସାଙ୍କୁ ୯ ବର୍ଷ ହୋଇଥିଲା । ଏହା ଥିଲା ତାଙ୍କ ପାଇଁ ଦ୍ୱିତୀୟ ଦୁଃଖଦାୟକ ଘଟଣା, କାରଣ ନିଜ ମା' ପରି ତାଙ୍କୁ ସ୍ନେହ କରୁଥିଲେ । ସେହିଦିନ ଠାରୁ ସେ ବେମାର ପଡ଼ିଲେ । ବହୁତ କଷ୍ଟ ପାଇଲେ । ତୃତୀୟ ଦୁଃଖଦାୟକ ଘଟଣା ଥିଲା, ପାଉଲିନ୍ କନ୍‌ଭେଣ୍ଟରେ ପ୍ରବେଶ କରିବାର ୫ ବର୍ଷ ପରେ ଅର୍ଥାତ୍ ୧୮୮୬ ମସିହାରେ ତାଙ୍କର ଦ୍ୱିତୀୟ ଭଉଣୀ 'ମାରି' ସେହି ସମାନ ସଂଘରେ ପ୍ରବେଶ କଲେ । ସେହି ସମୟରେ ତେରେସାଙ୍କୁ ମାତ୍ର ୧୩ ବର୍ଷ ହୋଇଥିଲା । ଛୋଟ ଦିନରୁ ବିଶ୍ୱାସ, ଭକ୍ତି ଏବଂ ପ୍ରାର୍ଥନାମୟ ପରିବେଶରେ ସେ ବଢିଥିଲେ । ତାଙ୍କ ବଡ଼ ଭଉଣୀ ପାଉଲିନ୍ ତେରେସାଙ୍କୁ ଶିଖାଇଥିଲେ, କିପରି ସ୍ୱର୍ଗରେ ସମସ୍ତେ ପୂର୍ଣ୍ଣମାତ୍ରାରେ ଆନନ୍ଦ ପାଆନ୍ତି, ଯଦିଓ ସେମାନଙ୍କ ମଧ୍ୟରେ ଜଣେ ଅନ୍ୟ ଜଣଠାରୁ ଅଧିକ ଗୌରବ ପାଇଥାଏ । ଏହି ବିଷୟଟି ଗୋଟିଏ ଉଦାହରଣ ମାଧ୍ୟମରେ

ତେରେସାଙ୍କୁ ସେ ଦେଖାଇଥିଲେ । ପାଉଲିନ୍ କେତୋଟି କପ୍‌ରେ ଜଳପୂର୍ଣ୍ଣ କରି ଢାଙ୍କୁଣିରେ ଘୋଡ଼େଇ ତେରେସାଙ୍କୁ ପ୍ରତ୍ୟେକ କପ୍‌ଟିକୁ ନିରୀକ୍ଷଣ କରିବା ପାଇଁ କହିଲେ । ତେରେସାଙ୍କୁ ତାପରେ ପଚାରିଲେ, କେଉଁ କପ୍‌ଟି ସମ୍ପୂର୍ଣ୍ଣ ଭାବରେ ପୂର୍ଣ୍ଣ ଅଛି ? ତେରେସା ଦ୍ୱନ୍ଦରେ ପଡ଼ିଗଲେ କାରଣ ପ୍ରତ୍ୟେକ କପ୍‌ଟି ଜଳରେ ଏପରି ପୂର୍ଣ୍ଣ ଥିଲା ଯେ ସେଥିରେ ଟୋପାଏ ଜଳ ଧରିବା ପାଇଁ ସ୍ଥାନ ନ ଥିଲା । ଏହା ପରେ ପାଉଲିନ୍ କହିଲେ, ସ୍ୱର୍ଗରେ ପ୍ରବେଶ କରୁଥିବା ବ୍ୟକ୍ତିମାନେ ଏହିପରି ହେବେ । ପ୍ରତ୍ୟେକ ଆତ୍ମା ଆନନ୍ଦରେ ସମ୍ପୂର୍ଣ୍ଣ ରୂପେ ପୂର୍ଣ୍ଣ ହେବେ । କିନ୍ତୁ ସେମାନଙ୍କ ମଧ୍ୟରୁ କେତେକ ଆହୁରି ଅଧିକ ଆନନ୍ଦ ପାଇବେ, କାରଣ ପୃଥିବୀରେ ଥିବା ସମୟରେ ସେମାନେ ଈଶ୍ୱରଙ୍କୁ ଅଧିକ ପରିମାଣରେ ଭଲ ପାଇଛନ୍ତି । ତତ୍‌କ୍ଷଣାତ୍ ତେରେସା ସ୍ଥିର କଲେ ଯେ, ତାଙ୍କ ଆତ୍ମାକୁ ସେ ପ୍ରଭୁଙ୍କ ପ୍ରେମରେ ଭରିଦେବ । ପାଉଲିନ୍ ଯେଉଁ ଧର୍ମ ଶିକ୍ଷା ଦେଉଥିଲେ, ସେ ମଧ୍ୟରୁ ତେରେସାଙ୍କୁ ସବୁଠାରୁ ଖ୍ରୀଷ୍ଟଙ୍କ ଶରୀର ଓ ରୁଧିର ପର୍ବ ବହୁତ ସ୍ପର୍ଶ କରିଥିଲା । ସେହି ପର୍ବ ଦିନ ଯେତେବେଳେ ଯୀଶୁଙ୍କ ଶରୀରକୁ ଦିବ୍ୟ ମଞ୍ଜୁଷାରେ ରଖାଯାଇ ଶୋଭାଯାତ୍ରା କରାଯାଏ ଏବଂ କୁନି କୁନି ପିଲାମାନେ ସେହି ଦିବ୍ୟ ମଞ୍ଜୁସାକୁ ଭକ୍ତି ଓ ଆରାଧନା କରି ଫୁଲ ପକାନ୍ତି, ସେହି ସମୟରେ ତେରେସା ଭାବନ୍ତି ଯେ ପ୍ରତ୍ୟେକ ଫୁଲ ସେହି ରୋଟିରେ ଥିବା ଯୀଶୁଙ୍କ ପାଇଁ ଗୋଟିଏ ଗୋଟିଏ ଚୁମ୍ବନ ଅଟେ ।

ଯେଉଁଦିନ ତେରେସା ପ୍ରଥମଥର ଦିବ୍ୟ ପ୍ରସାଦ ଗ୍ରହଣ କଲେ, ସେ ଆନନ୍ଦରେ ବିଭୋର ହୋଇ ପଡ଼ିଥିଲେ ଏବଂ ସେହିଦିନ ଯୀଶୁଙ୍କୁ ସମ୍ପୂର୍ଣ୍ଣ ରୂପେ ନିଜକୁ ଉତ୍ସର୍ଗ କରି କେତୋଟି ଶପଥ ନେଇଥିଲେ । ସେହି ଶପଥଗୁଡ଼ିକ ମଧ୍ୟରୁ ମୁଖ୍ୟ ତିନୋଟି ହେଲା –

'ମୁଁ କେବେହେଲେ ନିଜକୁ ହତୋତ୍ସାହିତ ହେବାକୁ ଦେବିନାହିଁ ।'

'ପ୍ରତିଦିନ ନମସ୍ତେ ରାଣ୍ଡୀ କରୁଣାମୟୀ ପ୍ରାର୍ଥନା କରିବି ।'

'ନମ୍ର ବ୍ୟକ୍ତି ହେବା ପାଇଁ ଚେଷ୍ଟା କରିବି ।'

ଦୃଢ଼ୀକରଣ ସଂସ୍କାର ପାଇଲା ପରେ ତେରେସା ଅନୁଭବ କଲେ ଯେ, ତାଙ୍କୁ ଆଧାତ୍ମିକ ଯୁଦ୍ଧ କରିବାକୁ ପଡ଼ିବ । କାର୍ମେଲ ସଂଘରେ ଯୋଗ ଦେଇ ସେବା

ଋଷି ହେବା ପାଇଁ ତାଙ୍କ ପ୍ରବଳ ଇଚ୍ଛା ଥିଲା । ସେ ତାଙ୍କ ପିତାଙ୍କୁ ଏହି ବିଷୟ କହିଥିଲେ । ପିତା ସହଜରେ କନ୍‌ଭେଣ୍ଟକୁ ଛାଡ଼ିବା ପାଇଁ ରାଜି ନଥିଲେ । ବାରମ୍ବାର ପିତାଙ୍କୁ ତାଙ୍କର ଅଭିଳାଷ କହିଲା ପରେ ଶେଷରେ ସେ ରାଜି ହେଲେ । କିନ୍ତୁ ତେରେସାଙ୍କ ମାମୁଁ ଯିଏ ତାଙ୍କର Legal guardian ରାଜି ହେଲେ ନାହିଁ । ସେ କହିଲେ, ତୁମେ ସଂଘରେ ପ୍ରବେଶ କରିବା ପାଇଁ ତୁମର ବୟସ ହୋଇନାହିଁ । ମାମୁଁଙ୍କଠାରୁ ଏହି କଥା ଶୁଣି ତେରେସା କାନ୍ଦିଲେ କିନ୍ତୁ ପ୍ରାର୍ଥନା ଓ ଧର୍ଯ୍ୟର ସହିତ ସମୟ ଅପେକ୍ଷା କରି ରହିଲେ । ତେରେସାଙ୍କର ମନୋଭାବ ଜାଣି ଶେଷରେ ତାଙ୍କ ମାମୁଁ ରାଜି ହେଲେ । କନ୍‌ଭେଣ୍ଟରେ ଯୋଗ ଦେବା ପାଇଁ ଯେତେବେଳେ ଅଧିକାରୀ ସିଷ୍ଟେରଙ୍କୁ ସାକ୍ଷାତ କଲେ, ତେରେସାଙ୍କୁ ଦେଖି ସେ କହିଲେ, ଝିଅ ତୋର ବୟସ ହୋଇନାହିଁ । ତୁମ ପରି ଏତେ ଛୋଟ ଝିଅକୁ ଆମେ ଗ୍ରହଣ କରିପାରିବୁ ନାହିଁ । ଅଧିକାରୀ ସିଷ୍ଟେରଙ୍କଠାରୁ ଏହି ବାକ୍ୟ ଶୁଣି ସେ ହତାଶ ହେଲେନାହିଁ । ତେରେସା ସ୍ଥିର କଲେ ଯେ ସେ ଯାଇ ବିଶପ୍‌ଙ୍କୁ ସାକ୍ଷାତ କରିବେ । ଯେତେବେଳେ ସେ ବିଶପ୍ ପାଖକୁ ଯାଇଛନ୍ତି, ସେ ମଧ ତେରେସାଙ୍କୁ ଦେଖି ସେହି କଥା ହିଁ କହିଲେ । ତଥାପି ତେରେସା ହତୋତ୍ସାହ ହେଲେ ନାହିଁ । ରୋମକୁ ଯାଇ ପୁଣ୍ୟପିତାଙ୍କୁ ଏହି ବିଷୟରେ ସାକ୍ଷାତ କରିବା ପାଇଁ ଚାହିଁଲେ । ତୀର୍ଥଯାତ୍ରୀମାନଙ୍କ ସହିତ ତେରେସା ତାଙ୍କ ପିତା ଓ ଭଉଣୀ ସେଲିନ୍ ଏକତ୍ର ରୋମକୁ ଯାତ୍ରା ଆରମ୍ଭ କଲେ । ଯେତେବେଳେ ରୋମ୍‌ରେ ପୁଣ୍ୟପିତାଙ୍କୁ ଦେଖିବାକୁ ଗଲେ ଅନ୍ୟମାନେ ତେରେସାଙ୍କୁ କହିଲେ, ପୁଣ୍ୟପିତାଙ୍କୁ କିଛି ନ କହିବା ପାଇଁ । କିନ୍ତୁ ତେରେସା ହୃଦୟର ଗଭୀର ଇଚ୍ଛାକୁ ଚାପି ରଖି ପାରିଲେ ନାହିଁ । ପୁଣ୍ୟପିତା ଲିୟ ତ୍ରୟଦଶ ସମ୍ମୁଖରେ ଆଣ୍ଠୁପାତି ତାଙ୍କ ଅଙ୍ଗୁଳିରେ ଥିବା ମୁଦିକୁ ଚୁମ୍ବନ ଦେଇ ଅନୁରୋଧ କରି କହିଲେ, 'ହେ ପିତା, ଦୟାକରି ମୋତେ ଏହି ୧୫ ବର୍ଷ ବୟସରେ କାର୍ମେଲ ସଂଘରେ ପ୍ରବେଶ କରି ଜଣେ ସେବାଭଗ୍ନୀ ହେବା ପାଇଁ ଅନୁମତି ଦିଅନ୍ତୁ ।' ପୁଣ୍ୟପିତା ଉତ୍ତର ଦେଲେ 'ଝିଅ' ଈଶ୍ୱରଙ୍କର ଯଦି ଏହା ତୁମ ପାଇଁ ଇଚ୍ଛା, ତେବେ ତୁମେ ନିଶ୍ଚୟ କନ୍‌ଭେଣ୍ଟରେ ପ୍ରବେଶ କରିବ । ତେରେସାଙ୍କ ପିତା ଏବଂ ତାଙ୍କ ଭଉଣୀ ସେଲିନ୍ ପୁଣ୍ୟପିତାଙ୍କଠାରୁ ଏହି ବାକ୍ୟ ଶୁଣି ଫ୍ରାନ୍ସକୁ ଦୁଃଖରେ ଫେରି ଗଲେ । କିନ୍ତୁ ତେରେସା କେବେ ତାଙ୍କର ଆଶାକୁ ଛାଡ଼ି ନ ଥିଲେ । ପ୍ରାର୍ଥନାରେ

ତେରେସା ନିଜର ଇଚ୍ଛାକୁ ସମର୍ପଣ କଲେ । ଶେଷରେ ଘରକୁ ଫେରିବାର ଗୋଟିଏ ମାସ ପରେ ଅଚାନକ ବିଶପ ଜଣକ କନ୍‌ଭେଣ୍ଟରେ ପ୍ରବେଶ କରିବା ପାଇଁ ଅନୁମତି ଦେଲେ ।

ଏହି ଖବର ଶୁଣି ତେରେସା ଅତ୍ୟଧିକ ଆନନ୍ଦିତ ହେଲେ । ୧୮୮୮ ଏପ୍ରିଲ୍ ୯ ତାରିଖରେ ସେ ପ୍ରଥମେ କନ୍‌ଭେଣ୍ଟରେ ପ୍ରବେଶ କଲେ । ତିନି ବର୍ଷ ପର୍ଯ୍ୟନ୍ତ ତାଙ୍କର କାର୍ଯ୍ୟ ଥିଲା ଚଟାଣ ଧୋଇବା, ଲୁଗା ସଫା କରିବା ଓ ମଇଳା ବାହାର କରିବା । ୧୮୯୦ ମସିହାରେ ସେ ବ୍ରତ ଗ୍ରହଣ କଲେ । କାର୍ମେଲ ସଂଘର ସିଷ୍ଟେର୍ ହେବା ଉଦ୍ଦେଶ୍ୟ ପ୍ରକାଶ କରି କହନ୍ତି 'ଆତ୍ମାକୁ ଉଦ୍ଧାର କରିବା ଏବଂ ଯାଜକମାନଙ୍କ ନିମନ୍ତେ ପ୍ରାର୍ଥନା କରିବା' ।

କେହି ଯେପରି ନର୍କକୁ ନ ଯିବେ, ସେଇଥିପାଇଁ ସେ ସର୍ବଦା ପ୍ରାର୍ଥନା କରୁଥିଲେ । ଯୀଶୁ ଚାହାନ୍ତି, ସମସ୍ତେ ତାହାଙ୍କ ସହିତ ସ୍ୱର୍ଗରେ ସଦାକାଳ ଆନନ୍ଦରେ ରହିବେ । ଯେଉଁମାନେ ଈଶ୍ୱରଙ୍କ ପ୍ରେମକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ଏବଂ ତାଙ୍କର ଆଜ୍ଞାକୁ ଅବମାନନା କରୁଛନ୍ତି, ସେମାନଙ୍କ ମନ ପରିବର୍ତ୍ତନ ପାଇଁ ତେରେସା ପ୍ରାର୍ଥନା, ଉପବାସ ଓ ପଶ୍ଚାତ୍ତାପ କରୁଥାନ୍ତି ।

ଦିନେ ଜଣେ ହତ୍ୟାକାରୀଙ୍କର ମୃତ୍ୟୁଦଣ୍ଡ ଖବରକାଗଜରେ ପ୍ରକାଶ ପାଇଲା । ସେ କେବେହେଲେ ନିଜର ପାପ ପାଇଁ ଅନୁତାପ କରି ନଥିଲେ । ଏହି ନିର୍ଦ୍ଦିଷ୍ଟ ବ୍ୟକ୍ତିର ମନ ପରିବର୍ତ୍ତନ ପାଇଁ ତେରେସା ପ୍ରାର୍ଥନା କରି କହିଲେ, 'ହେ ପ୍ରିୟ ପ୍ରଭୁ, ଯୀଶୁଙ୍କର ଯାତନାର ପୁଣ୍ୟଫଳ ଯୋଗୁଁ ଏହି ପାପୀକୁ ଅନୁତାପ କରିବା ପାଇଁ ତୁମ୍ଭେ ଅନୁଗ୍ରହ ଦିଅ ସେ ପୁଣି ଯୀଶୁଙ୍କୁ ପ୍ରାର୍ଥନା କରି କହିଲେ, ହେ ପ୍ରଭୁ, ଏହି ବ୍ୟକ୍ତି ମୋର ପ୍ରଥମ ପାପୀ । ଏଣୁ ଦୟାକରି ତୁମ୍ଭେ ଯେ ମୋର ପ୍ରାର୍ଥନା ଶ୍ରବଣ କର, ଏହା ଜାଣିବା ପାଇଁ ମୋତେ କିଛି ଚିହ୍ନ ଦିଅନ୍ତୁ' ।

ମୃତ୍ୟୁଦଣ୍ଡ ପାଇବା ପୂର୍ବ ଦିନ ସେହି ହତ୍ୟାକାରୀ ଅନୁତାପ କରି ଯାଜକଙ୍କୁ ଡକାଇଥିଲେ । ଯାଜକ ଯେଉଁ କ୍ରୁଶକୁ ଧରିଥିଲେ ସେହି କ୍ରୁଶକୁ ତିନି ଥର ଚୁମ୍ବନ ଦେଇଥିଲେ । ଏହି ଘଟଣାଟି ଖବର କାଗଜରେ ଚାରିଆଡ଼େ ପ୍ରକାଶିତ ହେଲା । ସେହି ବ୍ୟକ୍ତିଟି ପ୍ରକୃତରେ ଅନୁତାପ କଲା । ତେରେସା ଜାଣିପାରିଲେ ଯେ ପ୍ରଭୁ ତାଙ୍କ ପ୍ରାର୍ଥନା ଶୁଣି ସେହି ବ୍ୟକ୍ତିର ମନ ପରିବର୍ତ୍ତନ

କରିଥିଲେ ।

ତେରେସାଙ୍କ ଗଭୀର ଇଚ୍ଛା ଥିଲା, ଯେ ଦିନେ ସେ ଜଣେ ସାଧ୍ୱୀ ହେବେ । ଏଥିପାଇଁ ସେ ସର୍ବଦା ପ୍ରାର୍ଥନା କରୁଥିଲେ । ଯୀଶୁଙ୍କ ପ୍ରେମ ସକାଶେ ସେ ଯେପରି ପ୍ରତ୍ୟେକ କର୍ତ୍ତବ୍ୟକୁ ସବୁଠାରୁ ଉତ୍ତମ ଭାବରେ ସମ୍ପାଦନ କରିପାରିବେ । ସେ ଦୃଢ ଭାବରେ ହୃଦବୋଧ କଲେ ଯେ କୌଣସି ବ୍ୟକ୍ତି ଯିଏ ଈଶ୍ୱରଙ୍କୁ ପ୍ରକୃତରେ ପ୍ରେମ କରନ୍ତି ଏବଂ ପ୍ରତ୍ୟେକ ଛୋଟ କାର୍ଯ୍ୟକୁ ଉତ୍ତମ ଭାବରେ କରନ୍ତି, ସେମାନେ ସାଧୁ ବା ପବିତ୍ର ହୋଇପାରିବେ ।

ତାଙ୍କର ପ୍ରସିଦ୍ଧ ଆଧାତ୍ମିକ ଉକ୍ତି ଥିଲା, 'ପବିତ୍ରତା ପାଇଁ କ୍ଷୁଦ୍ର ପଥ' । ଏହି କ୍ଷୁଦ୍ର ପଥରେ କ'ଣ ଅନ୍ତର୍ଗତ ଥିଲା ? ଦୈନନ୍ଦିନ ପ୍ରାର୍ଥନା, ନମ୍ରତା ଏବଂ ପ୍ରେମ । ତେରେସା ପ୍ରତ୍ୟେକ ଛୋଟିଆ କାମକୁ, ଯେପରି ହଲଟିକୁ ଝାଡୁ କରିବା କିମ୍ବା ଜଣେ ରୋଗୀ ଭଉଣୀର ଯତ୍ନ ନେବା କିମ୍ବା ପ୍ରାର୍ଥନା କରିବା ଏହି ସବୁକୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାମ ମନେ କରି ଅତି ଉତ୍ତମତାର ସହିତ ସେ କରୁଥିଲେ । ଏହି ଆଧାତ୍ମିକତାର କ୍ଷୁଦ୍ର ପଥ ମାଧ୍ୟମରେ ତେରେସା ଅସାଧାରଣ କାର୍ଯ୍ୟ କରିପାରୁଥିଲେ । ଯେଉଁ ସେବାଭଗ୍ନୀମାନେ ତାଙ୍କ ପ୍ରତି କ୍ରୋଧ କରୁଥିଲେ ସେମାନଙ୍କୁ ଗ୍ରହଣ କରିବା ପାଇଁ ସେ ସାହସ ପାଉଥିଲେ । ଥଣ୍ଡା ଦିନ ହେଉ କିମ୍ବା ଖରା ଦିନ ହେଉ, କଷ୍ଟ ହେଲେ ମଧ୍ୟ କେବେ ଅଭିଯୋଗ କରୁ ନଥିଲେ । ସଦାବେଳେ ଖୁସି ଦେଖାଯାଉଥିଲେ । ବ୍ରତ ପାଇବା ପରେ ନଭିସମାନଙ୍କ ଦାୟିତ୍ୱରେ ଥିଲେ, ଏବଂ ସେମାନଙ୍କୁ ଏହି କ୍ଷୁଦ୍ର ପଥର ଆଧାତ୍ମିକତା ଶିଖାଇଥିଲେ । ଦିନକୁ ଦିନ ତାଙ୍କ ଶରୀର ଦୁର୍ବଳ ହେବାକୁ ଲାଗିଲା । ପ୍ରତ୍ୟେକ ଯନ୍ତ୍ରଣା ପାପୀମାନଙ୍କ ମନ ପରିବର୍ତ୍ତନ ପାଇଁ କ୍ରୁଶରେ ଅର୍ପଣ କରୁଥିଲେ । ଟ୍ୟୁବରକୁଲସ ରୋଗରେ ପ୍ରାୟ ତିନି ବର୍ଷ କଷ୍ଟ ପାଇ ୨୪ ବର୍ଷ ବୟସରେ ଅର୍ଥାତ୍ ୧୮୯୭ ମସିହା ସେପ୍ଟେମ୍ବର ମାସ ୩୦ ତାରିଖ ଦିନ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମୃତ୍ୟୁ ପୂର୍ବରୁ ସେ ଧରୁଥିବା କ୍ରୁଶକୁ ନିରୀକ୍ଷଣ କରି କହିଲେ, 'ମୁଁ ତାଙ୍କୁ ପ୍ରେମ କରେ', କିଛି ସମୟ ପରେ ପୁଣି କହିଲେ, 'ପ୍ରଭୁ ମୁଁ ତୁମକୁ ପ୍ରେମ କରେ' । ୧୯୨୫ ମସିହାରେ ତାଙ୍କୁ ସାଧ୍ୱୀ ରୂପେ ଘୋଷଣା କରାଗଲା । ୧୯୯୭ ମସିହାରେ ପୁଣ୍ୟପିତା ଯୋହନ ପାଉଲ ଦ୍ୱିତୀୟ ତାଙ୍କୁ ମଣ୍ଡଳୀର ପଣ୍ଡିତ

ବୋଲି ଘୋଷଣା କରିଥିଲେ । ଫ୍ରାନ୍‌ସିସ ଜେଭିୟର୍‌ଙ୍କ ସହ ତାଙ୍କୁ କାଥଲିକ୍ ମିଶନ୍‌ର ଇଷ୍ଟ ସାଧ୍ବୁ ରୂପେ ଗଣ୍ୟ କରାଯାଇଛି ।

**ସାଧ୍ୱୀ ତେରେସାଙ୍କ କେତୋଟି ଉକ୍ତି :**

✸ "ନମ୍ରତା, ସରଳତା ଏବଂ ଈଶ୍ୱରଙ୍କଠାରେ ଦୃଢ଼ତା ଥିଲା ତାଙ୍କ ବ୍ୟକ୍ତିତ୍ୱର ମହନୀୟତା । ତାଙ୍କର ବିଶେଷ ଉକ୍ତି : "ଦୃଢତାର ଅଭାବ, ଯୀଶୁଙ୍କୁ ଦୁଃଖ ଦିଏ ଏବଂ ତାଙ୍କ ହୃଦୟକୁ ଆଘାତ ଦିଏ" ।

✸ "ଏହି ପୃଥିବୀରେ ଉତ୍ତମ କାର୍ଯ୍ୟ କରି ମୋର ସ୍ୱର୍ଗ ବିତାଇବି ଏବଂ ଗୋଲାପ ଫୁଲ ବର୍ଷଣ କରାଇବି" ।

✸✸✸

# ଆସିସିର ସାଧୁ ଫ୍ରାନ୍ସିସ୍

## (୧୧୮୧-୧୨୨୬, ଅକ୍ଟୋବର ୪)

ଆସିସିର ସାଧୁ ଫ୍ରାନ୍ସିସ୍ ୧୧୮୨ ମସିହାରେ ଇଟାଲୀର ଆସିସିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ପିତର ବେର୍ଣ୍ଣାଦିନ ଜଣେ ବିଖ୍ୟାତ୍ ଧନଶାଳୀ, ଲୁଗା ବ୍ୟବସାୟୀ ଥିଲେ ଓ ମା' ପିକା ଫ୍ରାନ୍ସର ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ । ଫ୍ରାନ୍ସିସ୍ଙ୍କର ଜନ୍ମ ସମୟରେ ତାଙ୍କ ପିତା ବ୍ୟବସାୟରେ ଫ୍ରାନ୍ସ୍ରେ ଥିଲେ । ତାଙ୍କ ମା' ପିକା ଫ୍ରାନ୍ସିସ୍ଙ୍କୁ ଜନ୍ ନାମରେ ଦୀକ୍ଷାସ୍ନାନ ଦେଇଥିଲେ ।

ଫ୍ରାନ୍ସିସ୍ ଯୁବକ ବୟସରେ ବହୁତ ମୂଲ୍ୟବାନ ବସ୍ତ୍ର ପରିଧାନ କରୁଥିଲେ, ଏବଂ ସାଙ୍ଗସାଥିମାନଙ୍କ ସହିତ ମଜା ମଜଲିସ୍ରେ ଅଯଥା ଟଙ୍କା ଖର୍ଚ୍ଚ କରୁଥିଲେ । ସୈନିକ ହୋଇ ନିଜ ଦେଶ ପକ୍ଷରେ ଯୁଦ୍ଧ କରିବା ପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ୧୨୦୧ ମସିହାରେ ଆସିସିକୁ ରକ୍ଷା କରିବାକୁ ଯାଇ ଯୁଦ୍ଧ କରିଥିଲେ ଏବଂ ଗୋଟିଏ ବର୍ଷ ବନ୍ଦୀରେ ରହିବାକୁ ପଡ଼ିଥିଲା । ଦ୍ୱିତୀୟଥର ପୁଣି ୧୨୦୫ ମସିହାରେ ଯୁଦ୍ଧ କରିବା ସମୟରେ ଗୋଟିଏ ଦୃଶ୍ୟ ତାଙ୍କ ଜୀବନରେ ପରିବର୍ତ୍ତନ ଆଣି ଦେଇଥିଲା । ଦିନକର ଘଟଣା, ସନ୍ଧ୍ୟା ସମୟରେ ଘୋଡ଼ାରେ ବସି ଫ୍ରାନ୍ସିସ୍ ରାଜ ପ୍ରାସାଦରେ ବୁଲିବା ସମୟରେ ଜଣେ କୁଷ୍ଠ ରୋଗୀଙ୍କୁ ରାସ୍ତା କଡ଼ରେ ବସିଥିବାର ଦେଖିଲେ । ସେହି ରୋଗୀଙ୍କ ଶରୀରରେ ବସ୍ତ୍ର ନ ଥିଲା ଏବଂ ଥଣ୍ଡାରେ ସେ ଥରୁ ଥିଲେ । ଏହି ଦୃଶ୍ୟଟି ଦେଖି ଫ୍ରାନ୍ସିସ୍ ଘୋଡାଟିକୁ ଆହୁରି ଅଧିକ ଦ୍ରୁତ ଗତିରେ ଆଗକୁ ବଢ଼ାଇଲେ । କିନ୍ତୁ ଆଗକୁ ବଢ଼ି ପାରିଲା ନାହିଁ । କାରଣ ତା' ଅନ୍ତର ମଧ୍ୟରେ ପଛକୁ ଯିବା ପାଇଁ ଗୋଟିଏ ସ୍ୱର ଆସିଲା । ସେ ଘୋଡାରୁ ଓହ୍ଲେଇ ସେହି କୁଷ୍ଠ ରୋଗୀ ନିକଟକୁ ଗଲେ ଏବଂ ତାଙ୍କୁ ଆଲିଙ୍ଗନ କଲେ । ତାଙ୍କ ପକେଟ୍ରେ ଯାହା କିଛି ଥିଲା ସବୁତକ ଟଙ୍କା ସେହି କୁଷ୍ଠ ରୋଗୀକୁ ଦେଇ ନିଜ ଘରକୁ ଫେରି ଆସିଲେ । ଏହି କାର୍ଯ୍ୟ କଲାପରେ ସେ ଅଧିକ ଆନନ୍ଦ ଅନୁଭବ କଲେ । ସେହିଦିନଠାରୁ ତାଙ୍କ ମନ କେବଳ ଗରିବ ଏବଂ ରୋଗୀମାନଙ୍କ ପ୍ରତି ଦୟା ଓ ସେବା କରିବାର ଆଗ୍ରହ ଓ ପ୍ରେରଣା ଆସିଲା ।

ଫ୍ରାନ୍ସିସିଙ୍କର ଏହି ପ୍ରକାର ବ୍ୟବହାର ଦେଖି ତାଙ୍କ ପିତା ବିଚଳିତ

ହେଲେ । ତାଙ୍କ ପିତାଙ୍କ ଇଚ୍ଛା ଥିଲା ଯେ, ସେ ତାଙ୍କ ପରି ଜଣେ ବିଖ୍ୟାତ ବଣିକ ହେବେ, ବିବାହ କରିବେ ଏବଂ ପରିବାରର ନାମ ରଖିବେ । ଫ୍ରାନ୍‌ସିସ୍‌ଙ୍କ ଏହି ପ୍ରକାର କାର୍ଯ୍ୟ ବନ୍ଦ କରିବା ପାଇଁ ଦିନେ ତାଙ୍କ ପିତା ତାଙ୍କ ହାତ ଓ ଗୋଡ଼ରେ ଶିକୁଳି ବାନ୍ଧି ଗୋଟିଏ ଛୋଟିଆ ଅନ୍ଧକାର ଗୃହରେ ବିନା ଖାଦ୍ୟରେ ରଖିଲେ । କିନ୍ତୁ ତାଙ୍କ ହୃଦୟରେ ଗରିବମାନଙ୍କ ପ୍ରତି ଏତେ ଦୟା ବଢ଼ିଥିଲା ଯେ, ସେ ଦିନ ବିଶପ୍ ତଥା ଲୋକଙ୍କ ସାମ୍ନାରେ ନିଜର ମୂଲ୍ୟବାନ୍ ବସ୍ତ୍ରକୁ ଓହ୍ଲେଇ ଦେଇ ଉଲଗ୍ନ ଅବସ୍ଥାରେ ସବୁକିଛି ତ୍ୟାଗ କରି ପ୍ରଭୁଙ୍କ ସେବାରେ ନିଜକୁ ସମର୍ପଣ କରିଥିଲେ । ସେହି ସମୟରେ ସେ କହିଥିଲେ, 'ଆଜିଠାରୁ ପିତର ବେର୍ଣ୍ଣାଦିନ୍ ମୋର ପିତା ନୁହନ୍ତି କିନ୍ତୁ ବାସ୍ତବରେ ସ୍ୱର୍ଗସ୍ଥ ପିତା ମୋର ପିତା ଅଟନ୍ତି' । ୧୨୦୬ ମସିହା ଏପ୍ରିଲ୍ ୧୨ ତାରିଖରେ ଦିନେ ସାଧୁ ଦାମିଆନ୍ ଗୀର୍ଜାରେ ବସି ପ୍ରାର୍ଥନା କରିବା ସମୟରେ ଫ୍ରାନ୍‌ସିସ୍ ତିନିଥର ସେହି ଗୀର୍ଜାର କାନ୍ଥରେ ଟଙ୍ଗା ହୋଇଥିବା କ୍ରୁଶରୁ ଏହି ସ୍ୱର ଶୁଣିଥିଲେ । 'ଫ୍ରାନ୍‌ସିସ୍ ଯାଅ, ମୋର ଯେଉଁ ଗୃହ ଭାଙ୍ଗି ଯାଉଛି, ତାକୁ ପୁନଃ ନିର୍ମାଣ କର' । ଏହାପରେ ଫ୍ରାନ୍‌ସିସ୍ ତାଙ୍କ ପୂର୍ବ ଜୀବନକୁ ପରିତ୍ୟାଗ କରି, ସନ୍ନ୍ୟାସୀ ବେଶ ଧାରଣ କରି ଗୃହକୁ ଗୃହ ଯାଇ ଗୀର୍ଜା ନିର୍ମାଣ ପାଇଁ କିଛି ଅନୁଦାନ ମାଗିଲେ । ଯାହା ପାଇଲେ ସେଥିରୁ ସାଧୁ ଦାମିଆନ ଗୀର୍ଜାର ମରାମତି କରିବା ସାଥେ ସାଥେ ସେଠାରେ ଥିବା ସାଧୁ ପିତର ଗୀର୍ଜା ଏବଂ ଦୂତମାନଙ୍କ ସାଧ୍ୱୀ ମାରୀୟା (ପର୍ତ୍ତିଉଙ୍କୁଲା) ଗୀର୍ଜା ମଧ୍ୟ ମରାମତି କରିଥିଲେ ।

ଦିନେ ଯଜ୍ଞ ସମୟରେ ପ୍ରଭୁଙ୍କର ବାକ୍ୟ (ମାଥିଉ ୧୦:୯-୧୦) ଯେଉଁଠି ଯୀଶୁ ଶିଷ୍ୟମାନଙ୍କୁ ତାଙ୍କ ଯାତ୍ରା ପଥରେ କୌଣସି ସୁନା, ଟଙ୍କା କିମ୍ବା ପୋଷାକ, ମୋଜା କିମ୍ବା ଯଷ୍ଟି ନ ନେବା ପାଇଁ ନିର୍ଦ୍ଦେଶ ଦେଇଥିଲେ, ତାହା ଶୁଣି ଏପରିକି ନିଜେ ପିନ୍ଧିଥିବା ସନ୍ନ୍ୟାସୀର ବେଶ ତ୍ୟାଗ କରି ଖଦଡ଼ ବସ୍ତ୍ର ଏବଂ ଶିକୁଳି ପିନ୍ଧି ଯୀଶୁଖ୍ରୀଷ୍ଟଙ୍କ ପ୍ରଚାର ଉଦ୍ଦେଶ୍ୟରେ ବାହାରିଲେ । ତାଙ୍କ ସହିତ ଆହୁରି ୧୧ଜଣ ଯୋଗଦେଲେ । ସେମାନଙ୍କ ପାଇଁ ଫ୍ରାନ୍‌ସିସ୍ ନିୟମ ଲେଖିଲେ । ୧୨୦୯ ମସିହାରେ ପୁଣ୍ୟପିତା ତୃତୀୟ ଇନସେନ୍ତଙ୍କ ଅନୁମତି ପାଇବା ପାଇଁ ରୋମ୍ ଅଭିମୁଖେ ଯାତ୍ରା କଲେ । ସେଠାରୁ ଫେରି ଆସି ଆସିସିର

ସେହି ପର୍ତ୍ତଉଙ୍କୁଲା ଗୀର୍ଜାର ଛୋଟିଆ କୁଡ଼ିଆରେ ସେମାନେ ଏକତ୍ର ଅତି ସରଳ ଏବଂ ଦାରିଦ୍ର୍ୟ ଜୀବନଯାପନ କଲେ । ୧୨୧୨ ମସିହାରେ ଫ୍ରାନ୍‌ସିସ୍‌ଙ୍କ କାର୍ଯ୍ୟରେ ଯୋଗଦେଲେ ଆସିସିର ଜଣେ ଧାର୍ମିକା ନାରୀ କ୍ଲାରେ, ଯାହା ନାରୀମାନଙ୍କ ନିମନ୍ତେ ପ୍ରଭୁଙ୍କ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ ଥିଲା । ୧୨୧୯ ମସିହା ବେଳକୁ ସଂଘରେ ପ୍ରାୟ ୫୦୦୦ ରୁ ଉର୍ଦ୍ଧ୍ୱ ସଭ୍ୟ ଥିଲେ । ୧୨୨୧ ମସିହାରେ ସାଧାରଣ ବିଶ୍ୱାସୀ ପୁରୁଷ ଓ ସ୍ତ୍ରୀମାନଙ୍କ ନିମନ୍ତେ ଫ୍ରାନ୍‌ସିସ୍ ସଂଘର ତୃତୀୟ Order ଆରମ୍ଭ କରିଥିଲେ ।

୧୨୨୩ ମସିହାରେ ସାଧୁ ଫ୍ରାନ୍‌ସିସ୍ ତାଙ୍କ ସଂଘର ସଦସ୍ୟମାନଙ୍କ ସହିତ ଗ୍ରେଚର ନାମକ ଗୋଟିଏ ପାହାଡ଼ର ଗୁହାରେ ବଡ଼ଦିନ ପର୍ବ ପାଳନ କରିଥିଲେ । ସେଠାରେ ତଳେ ନଡ଼ା ପକାଇ, ଗାଈ ଓ ଗଧ ନେଇ ପ୍ରଥମ ଥର ପାଇଁ ସାଧୁ ଫ୍ରାନ୍‌ସିସ୍ ଗୋଶାଳା ତିଆରି କରିଥିଲେ । ଆଜି ସାରା ପୃଥିବୀରେ ବଡ଼ ଦିନ ପର୍ବରେ ଲୋକେ ଗୋଶାଳା ତିଆରି କରି ଯେଉଁ ଆନନ୍ଦ ଓ ଉତ୍ସବ ପାଳନ କରୁଛନ୍ତି ତାହା କେବଳ ସାଧୁ ଫ୍ରାନ୍‌ସିସ୍ ପ୍ରଥମେ ଆରମ୍ଭ କରିଥିଲେ ।

୧୨୨୪ ମସିହା ସେପ୍ଟେମ୍ବର ୧୪ ତାରିଖ କ୍ରୁଶ ଯାତ୍ରା ପର୍ବ ଦିନ, ସାଧୁ ଫ୍ରାନ୍‌ସିସ୍ ଯୀଶୁଙ୍କ ଯନ୍ତ୍ରଣା ଉପରେ ଧ୍ୟାନ କରିବା ସମୟରେ ନିଜ ଶରୀରରେ ଯୀଶୁଙ୍କ ୫ଟି କ୍ଷତ Stigma ପାଇଥିଲେ । ପ୍ରଥମ ଥର ପାଇଁ ଏହି Stigma ମାଧ୍ୟମରେ ସାଧୁ ଫ୍ରାନ୍‌ସିସ୍ ଈଶ୍ୱରଙ୍କ ଅସାଧାରଣ ଅନୁଗ୍ରହ ପାଇଥିଲେ । ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ଏହି stigma ତାଙ୍କ ଶରୀରକୁ ଅଧିକ ଯନ୍ତ୍ରଣା ଦେଉଥିଲା । ଏହା ଯୋଗୁଁ ସେ ଅନ୍ଧ ହୋଇ ଯାଇଥିଲେ । ୧୨୨୬ ମସିହା ଅକ୍ଟୋବର ୩ରେ ଈଶ୍ୱରଙ୍କ ସ୍ତୁତି ଗାନ କରି ସେ ମୃତ୍ୟୁ ବରଣ କରିଥିଲେ । ମୃତ୍ୟୁ ସମୟରେ ତାଙ୍କ ବୟସ ଥିଲା ୪୫ ବର୍ଷ । ଆସିସିର ସାଧୁ ଜର୍ଜ ଗୀର୍ଜାରେ ତାଙ୍କ ମର ଶରୀରକୁ କବର ଦିଆଗଲା । ୧୨୨୮ ମସିହା ଜୁନ୍ ୧୬ ତାରିଖରେ ତାଙ୍କ ବନ୍ଧୁ ପୁଣ୍ୟପିତା ନବମ ଗ୍ରେଗରୀ ତାଙ୍କୁ ସାଧୁ ରୂପେ ଘୋଷଣା କରିଥିଲେ । ତାଙ୍କ ନାମରେ ନିର୍ମିତ ନୂତନ ବାସିଲିକାକୁ ମେ ୨୪ ତାରିଖ ୧୨୩୦ ମସିହାରେ ତାଙ୍କ ଶରୀରକୁ ସ୍ଥାନାନ୍ତରିତ କରାଗଲା ।

ସାଧୁ ଫ୍ରାନ୍‌ସିସ୍ ଜଣେ ଡିକେନ୍ ଥିଲେ ଏବଂ ଯାଜକ ପଦ ପାଇଁ ନିଜକୁ

ଅଯୋଗ୍ୟ ମନେ କରୁଥିଲେ । କେବଳ ଯୀଶୁଙ୍କୁ ଅନୁକରଣ କରିବା ତାଙ୍କର ଲକ୍ଷ୍ୟ ଥିଲା । ଭାତୃତ୍ୱ ବନ୍ଧନର ପ୍ରେମ ଏବଂ ଶାନ୍ତିର ପ୍ରେରିତ ଥିଲେ ସାଧୁ ଫ୍ରାନ୍‌ସିସ୍ । ତାଙ୍କ ସାର୍ବଜନୀନ ପ୍ରେମ କେବଳ ମାନବ ଜାତି ମଧ୍ୟରେ ସୀମିତ ନ ଥିଲା । କିନ୍ତୁ ସୃଷ୍ଟିର ସମସ୍ତ ପ୍ରାଣୀ ପାଇଁ ତାହା ଉଦ୍ଦିଷ୍ଟ ଥିଲା । ଏଣୁ ତାଙ୍କ ଲେଖାରେ ଆମ୍ଭେ ଶୁଣିବାକୁ ପାଉ କିପରି ଅନ୍ୟ ପ୍ରାଣୀମାନଙ୍କୁ ପ୍ରେମର ସହିତ ସମ୍ବୋଧନ କରିଛନ୍ତି, ଯେପରି ପକ୍ଷୀ ଭଉଣୀ, ଗଧିଆ ଭାଇ, ସୂର୍ଯ୍ୟ ଭାଇ, ମୃତ୍ୟୁ ଭଉଣୀ । ସମସ୍ତଙ୍କୁ ଶାନ୍ତି ଏବଂ ଉତ୍ତମତାର ସହିତ ଅଭିଭାଦନ ସେ ଜଣାଉଥିଲେ । ଆମର ଧନ, ସମ୍ମାନ ଏବଂ ପ୍ରାଚୁର୍ଯ୍ୟ ସମାଜରେ ଯେବେ ସୁସମାଚାରର ମୂଲ୍ୟକୁ ଅନୁଭବ କରି ସମାଜର ଗରିବ, ଅବେହଳିତ ଏବଂ ରୋଗୀମାନଙ୍କ ସେବାରେ ନିଜର ଜୀବନ ଉତ୍ସର୍ଗ କଲେ, ସାଧୁ ଫ୍ରାନ୍‌ସିସ୍‌ଙ୍କ ସ୍ୱପ୍ନ ଆମ ଜୀବନରେ ସାର୍ଥକ ହୋଇପାରିବ ।

**ଆସିସିର ସାଧୁ ଫ୍ରାନ୍‌ସିସଙ୍କ କେତୋଟି ଉକ୍ତି :**

* "ଯେଉଁଠାରେ ଘୃଣା ଅଛି, ସେହିଠାରେ ମୁଁ ପ୍ରେମ ଆଣିପାରେ, ଯେଉଁଠାରେ ଅଛି କ୍ଷତ, ସେହିଠାରେ କ୍ଷମା, ଯେଉଁଠାରେ ସନ୍ଦେହ, ସେହିଠାରେ ବିଶ୍ୱାସ"।
* "ତୁମେ ସମାଜକୁ ପବିତ୍ର କରିବ ଯେବେ ନିଜକୁ ତୁମେ ପବିତ୍ର କର"।

✸✸✸

# ସାଧ୍ୱୀ ମାରିଆ ଫାଉସ୍ତିନା କୋୱାଲସକା
# (୧୯୦୫ -୧୯୩୮, ଅକ୍ଟୋବର ୫)

୧୯୦୫ ମସିହା ଅଗଷ୍ଟ ୨୫ ତାରିଖରେ ପୋଲାଣ୍ଡ ଦେଶର ଗ୍ଲୋଗୋୱ୍ୟାଏକ ରେ ମାରିଆ ଫାଉସ୍ତିନା ଜନ୍ମ ଗ୍ରହଣ କରିଥିଲେ । ଛୋଟରୁ ତାଙ୍କୁ ହେଲେନା ବୋଲି ଡାକୁଥିଲେ । ତାଙ୍କ ପିତା ଷ୍ଟାନୋସଲ ଓ ମାତା ମାରିଆନାଙ୍କ ୧୦ଟି ସନ୍ତାନ ମଧ୍ୟରୁ ଫାଉସ୍ତିନା ଥିଲେ ପରିବାରର ତୃତୀୟ । ଫାଉସ୍ତିନାଙ୍କ ପିତା ଥିଲେ ଜଣେ କୃଷକ ଓ ବଢ଼େଇ । ପରିବାର ଯଦିଓ ଗରୀବ ଥିଲା କିନ୍ତୁ ସେମାନେ ପ୍ରଭୁଭୟ ଓ ଧାର୍ମିକ ଜୀବନ ଯାପନ କରୁଥିଲେ । ଛୋଟ ବୟସରୁ ପ୍ରାର୍ଥନା କରିବାର ସ୍ୱାଦ ସେ ଅନୁଭବ କରିଥିଲେ ଏବଂ ଗରୀବମାନଙ୍କ ପ୍ରତି ତାଙ୍କର ହୃଦୟ ଦୟାରେ ପୂର୍ଣ୍ଣ ଥିଲା । ୭ ବର୍ଷ ବୟସରୁ ଧାର୍ମିକ ଜୀବନ ବିତାଇବାର ଆହ୍ୱାନ ସେ ଅନୁଭବ କରିଥିଲେ । ୯ ବର୍ଷ ବୟସରେ ଦିବ୍ୟପ୍ରସାଦ ଗ୍ରହଣ କରି ଯୀଶୁଙ୍କୁ ନିଜ ଆତ୍ମାରେ ପାଇ ସ୍ୱର୍ଗୀୟ ଆନନ୍ଦ ଅନୁଭବ କରିଥିଲେ । କେବଳ ତିନିବର୍ଷ ସେ ଅଧ୍ୟୟନ କରିଥିଲେ । ସ୍କୁଲ ଶିକ୍ଷା ସମାପ୍ତ କଲା ପରେ, କନଭେଣ୍ଟରେ ପ୍ରବେଶ କରିବା ପାଇଁ ଇଚ୍ଛା ପ୍ରକାଶ କଲେ କିନ୍ତୁ ତାଙ୍କ ପିତାମାତା ତାଙ୍କୁ ଅନୁମତି ଦେଇ ନ ଥିଲେ । ୧୬ ବର୍ଷ ବୟସରେ ହେଲେନା ପରିବାରକୁ ଆର୍ଥିକଭାବେ ସାହାଯ୍ୟ କରିବା ପାଇଁ ନିଜେ ଜଣେ ଗୃହପାଳିକା ରୂପେ କାର୍ଯ୍ୟ କଲେ । ଛୋଟରୁ ତାଙ୍କ ହୃଦୟରେ ଜଣେ ସିଷ୍ଟେର ହେବା ପାଇଁ ଯେଉଁ ଗଭୀର ଇଚ୍ଛା ଜାତ ହୋଇଥିଲା ତାହା କେବେ ହେଲେ ହଜି ଯାଇ ନ ଥିଲା । ଯନ୍ତ୍ରିତ ଯୀଶୁଙ୍କ ଦର୍ଶନ ପାଇ ୧୯୨୫ ମସିହା ଅଗଷ୍ଟ ୧ ତାରିଖରେ ଦୟାର ମାଁ ନାମକ ଗୋଟିଏ ସଂଘରେ ପ୍ରବେଶ କଲେ । ଏହି ସଂଘରେ ମହାନ ଦିବ୍ୟ ସଂସ୍କାରର ସିଷ୍ଟେର ଫାଉସ୍ତିନା ବୋଲି ସେ ନିଜ ନାମକୁ ପରିବର୍ତ୍ତନ କରିଥିଲେ । ପ୍ରାୟ ୧୩ ବର୍ଷ ଧରି ବିଭିନ୍ନ ସ୍ଥାନରେ ସେ ବିଶ୍ୱସ୍ତ ଭାବରେ ସଂଘର ନୀତି ନିୟମ ଅନୁଯାୟୀ କାର୍ଯ୍ୟ କଲେ । ପୋଲାଣ୍ଡର କ୍ରାକୋ, ପ୍ଲକ ଓ ଭିଲନଉସ ପରି ବିଭିନ୍ନ କନଭେଣ୍ଟରେ ଜଣେ ରାନ୍ଧୁଣୀ, ମାଳି ଏବଂ ଅତିଥୀମାନଙ୍କ ସେବା ଦାୟିତ୍ୱରେ କାର୍ଯ୍ୟ କରିଥିଲେ । ପ୍ରତ୍ୟେକ ସ୍ଥାନରେ ସେ ବିଶ୍ୱସ୍ତ ଓ ଆଗ୍ରହ ସହକାରେ କାର୍ଯ୍ୟ କରୁଥିଲେ । କିନ୍ତୁ ତାଙ୍କ ଅନ୍ତରରେ ଥିବା

ସେହି ଗଭୀର ରହସ୍ୟମୟ ବିଷୟଟିକୁ ସେ କେବେ ପ୍ରକାଶ କରୁ ନ ଥିଲେ । ତାଙ୍କର ପଡ଼ୋଶୀ ପ୍ରତି ଦୟା ଓ ନିଃସ୍ୱାର୍ଥପର ପ୍ରେମ ସେ ପ୍ରକାଶ କରୁଥିଲେ । ବାହ୍ୟିକ ଭାବେ ଯଦିଓ ତାଙ୍କର କାର୍ଯ୍ୟ ଅତି ନଗଣ୍ୟ, ସମାନ ପ୍ରକାରର ଓ ଶୀତଳ ଥିଲା ତଥାପି ହୃଦୟ ଭିତରେ ଈଶ୍ୱରଙ୍କ ସହିତ ତାଙ୍କର ଅସାଧାରଣ ଓ ଗଭୀର ଏକତାର ସମ୍ପର୍କ ଯୋଡ଼ି ହୋଇ ରହିଥିଲା । ପ୍ରଭୁଙ୍କର ଦୟାର ରହସ୍ୟ ଓ ନିଜ ଦୈନନ୍ଦିନ କାର୍ଯ୍ୟକୁ ପ୍ରଭୁଙ୍କର ବାକ୍ୟ ଦ୍ୱାରା ଚିନ୍ତନ କରିବା, ସିଷ୍ଟେର ଫାଉସ୍ତିନାଙ୍କ ଆଧ୍ୟାତ୍ମିକତାର ମୂଳ ବିଷୟ । ଧ୍ୟାନ ଚିନ୍ତନ ଦ୍ୱାରା ପ୍ରଭୁଙ୍କର ଦୟାକୁ ବୁଝି ସେ ଈଶ୍ୱରଙ୍କ ସହିତ ଜଣେ ଶିଶୁ ତୁଲ୍ୟ ସମ୍ପର୍କ ରଖିବା ସାଥେ ସାଥେ ପଡ଼ୋଶୀମାନଙ୍କ ପ୍ରତି ସେହି ଦୟା ସେ ପ୍ରକାଶ କରୁଥିଲେ ।

ଯୀଶୁ ଖ୍ରୀଷ୍ଟଙ୍କ ରହସ୍ୟମୟ ଶରୀର ରୂପକ ମଣ୍ଡଳୀକୁ ଜଣେ ମାଁ ସଦୃଶ ସେ ଭଲ ପାଉଥିଲେ କାରଣ ସେ ମଣ୍ଡଳୀର ଜଣେ ବିଶ୍ୱସ୍ତ କନ୍ୟା ଥିଲେ । ଏଣୁ ହଜିଯାଇ ଥିବା ଆତ୍ମାମାନଙ୍କର ଉଦ୍ଧାର କରିବା ପାଇଁ ତାହାଙ୍କର ଯେଉଁ କର୍ତ୍ତବ୍ୟ ଅଛି ତାହା ସେ ସଚେତନ ହୋଇ ଈଶ୍ୱରଙ୍କ ଦୟା ଉପରେ ନିର୍ଭର କରୁଥିଲେ । ଏଣୁ ଯୀଶୁଙ୍କ ଅନୁରୋଧକୁ ରକ୍ଷାକରି ଓ ତାହାଙ୍କୁ ଅନୁକରଣ କରି ସେ ନିଜ ଜୀବନକୁ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ଥିଲେ । ଦିବ୍ୟ ପ୍ରସାଦ ସଂସ୍କାର ଓ ମାତା ମାରିୟାଙ୍କ ଦୟା ପ୍ରତି ଥିବା ଭକ୍ତି ତାହାଙ୍କୁ ଅନ୍ୟମାନଙ୍କଠାରୁ ଆଧ୍ୟାତ୍ମିକ ଦିଗରେ ଭିନ୍ନ କରିଥିଲା ।

**ଦର୍ଶନର ବିବରଣୀ:**

୧୯୩୧ ମସିହାରେ ସିଷ୍ଟେର ଫାଉସ୍ତିନାଙ୍କୁ ଯୀଶୁ ଦର୍ଶନ ଦେବା ବିଷୟ ନିମ୍ନରେ ବର୍ଣ୍ଣନା କରାଯାଇଛି । ଶୁଭ୍ର ବସ୍ତ୍ର ପରିଧାନ କରି, ଦକ୍ଷିଣ ହସ୍ତ ଉତ୍ତୋଳନ କରି ଆଶୀର୍ବାଦ ଦେବାର ଦୃଶ୍ୟ ସିଷ୍ଟେର ଫାଉସ୍ତିନା ଦେଖିବାକୁ ପାଇଲେ । ପୁଣି ଯୀଶୁଙ୍କର ବାମ ହସ୍ତ ନିଜ ହୃଦୟକୁ ସ୍ପର୍ଶ କରିଥିବା ଏବଂ ହୃଦୟରୁ ଦୁଇଟି ରଶ୍ମି ବାହାରିବା ଦୃଶ୍ୟ ମଧ୍ୟ ସେ ଦେଖନ୍ତି । ଗୋଟିଏ ରଶ୍ମି ଲାଲ ରଙ୍ଗ ଏବଂ ଅନ୍ୟଟି ପାଉଁଶିଆ ଦେଖା ଯାଉଥିଲା । ଏହି ଦୁଇଟି ରଶ୍ମି ଯୀଶୁଙ୍କର ରକ୍ତ ଓ ଜଳକୁ ସୂଚାଏ । ପାଉଁଶିଆ ରଙ୍ଗର ରଶ୍ମି ସେହି ଜଳକୁ ସୂଚାଏ ଯାହା ଜଣେ ବ୍ୟକ୍ତିର ଆତ୍ମାକୁ ଧାର୍ମିକ କରେ । ସେହିପରି ଯୀଶୁଙ୍କ ହୃଦୟରୁ ବାହାରୁଥିବା ଲାଲ ରଶ୍ମି

ରକ୍ତକୁ ସୂଚାଏ ଯାହା ଆତ୍ମାର ଜୀବନ ଅଟେ । ଏହି ଦୁଇଟି ରଶ୍ମି ମୋର ଦୟାର ଚିହ୍ନ। କ୍ରୁଶରେ ଝୁଲୁଥିବା ସମୟରେ ଯେଉଁ ବର୍ଚ୍ଛା ଦ୍ୱାରା ମୋର ହୃଦୟ ଖୋଲିଗଲା, ଧନ୍ୟ ସେମାନେ ଯେଉଁମାନେ ସେହି ହୃଦୟରେ ଆଶ୍ରୟ ପାଆନ୍ତି, ପରମେଶ୍ୱରଙ୍କ ନ୍ୟାୟ ହସ୍ତ ତାହାଙ୍କ ବିପକ୍ଷରେ ଯିବ ନାହିଁ । ଏହି ଛବି ଦ୍ୱାରା ମୁଁ ତୁମ୍ଭ ଆତ୍ମାରେ ପ୍ରଚୁର ଅନୁଗ୍ରହ ଢାଳିବି । ଏହାଦ୍ୱାରା ମୋର ଦୟା ସେମାନଙ୍କୁ ସ୍ମରଣ କରାଇ ଦେବ କାରଣ କାର୍ଯ୍ୟ ବିନା ବଳିଷ୍ଠ ବିଶ୍ୱାସର ମୂଲ୍ୟ ନାହିଁ ।

ଯେତେବେଳେ ସିଷ୍ଟେର ଫାଉସ୍ତିନା ଏହି ଦୃଶ୍ୟ ଦେଖିଲେ ତାର ହୃଦୟ ଆଶ୍ଚର୍ଯ୍ୟ ଓ ଆନନ୍ଦରେ ପୂର୍ଣ୍ଣ ହେଲା । ପ୍ରଭୁ ଯୀଶୁ ତାଙ୍କୁ ଆଦେଶ ଦେଲେ ଯେ ସେହି ଛବି ଅଙ୍କନ କରି, ତାରି ତଳେ 'ହେ ଯୀଶୁ, ତୁମଠାରେ ମୁଁ ଭରସା ରଖେ' ବୋଲି ସେ ଲେଖିବା ଆବଶ୍ୟକ । ଯୀଶୁ ପୁଣି ତାଙ୍କୁ କହିଲେ, "ଯେଉଁ ଆତ୍ମା ଏହି ଛବିକୁ ସମ୍ମାନ କରିବେ ସେମାନେ କେବେହେଲେ ନଷ୍ଟ ହେବେ ନାହି । ଶତ୍ରୁ ଉପରେ ସେମାନେ ଏହି ପୃଥିବୀରେ ବିଜୟ ଲାଭ କରିବେ ବିଶେଷ ଭାବରେ ମରଣ ସମୟରେ ମୁଁ ସେମାନଙ୍କୁ ରକ୍ଷା କରି ମୋର ଗୌରବ ପ୍ରଦର୍ଶନ କରିବି । ମୁଁ ଲୋକମାନଙ୍କୁ ଏକ ପାତ୍ର ପ୍ରଦାନ କରିବି ଯେପରି ସେମାନେ ଏହି ସ୍ଥାନକୁ ଆସି ସେହି ଦୟାର ଝରଣାରୁ ଅନୁଗ୍ରହ ସଂଗ୍ରହ କରିବେ । ସେହି ପାତ୍ର ହେଉଛି ଏହି ଛବି ଯାହାରି ତଳେ "ଯୀଶୁ ମୁଁ ତୁମଠାରେ ଭରସା ରଖେ" ଲେଖି ସ୍ୱାକ୍ଷର କରିବେ । ମୁଁ ଚାହେଁ ଏହି ଛବିକୁ ପ୍ରଥମେ ତୁମ ଦେବାଳୟରେ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରାଯିବ ଓ ଏହା ପରେ ସାରା ବିଶ୍ୱରେ ପ୍ରଚାର କରାଯିବ ।

ପ୍ରଭୁଙ୍କ ନିର୍ଦ୍ଦେଶରେ ଅଙ୍କନ କରାଯାଇଥିବା ଛବିକୁ ଦେଖି ଫାଉସ୍ତିନା କ୍ରନ୍ଦନ କରି କହିଲେ, ତୁମେ ଯେ ଏତେ ସୁନ୍ଦର କିଏ ବା ତୁମ୍ଭକୁ ଏହି ରୂପେ ଅଙ୍କନ କରି ପାରିବ ? ଏହାପରେ ଫାଉସ୍ତିନା ଯୀଶୁଙ୍କ ସ୍ୱର ଶୁଣିବାକୁ ପାଇଲେ, "ଏହି ଛବିର ମହାନତା କୌଣସି ତୁଳୀ ଦ୍ୱାରା ନୁହେ କିମ୍ବା କୌଣସି ରଙ୍ଗର ସୌନ୍ଦର୍ଯ୍ୟତାରେ ନୁହେଁ ବରଂ ମୋର ଅନୁଗ୍ରହରେ ଅଙ୍କନ କରାଯିବ" ।

ଏହାପରେ ଯୀଶୁ ତାଙ୍କୁ ନିର୍ଦ୍ଦେଶ ଦେଲେ କିପରି ସେମାନେ କରୁଣାର ମାଳା ପ୍ରାର୍ଥନା କରିବେ । ସେ ମଧ୍ୟ ପ୍ରତିଶ୍ରୁତି ଦେଲେ ଯେ, ଯେଉଁମାନେ ଏହି କରୁଣାର ମାଳା ପ୍ରାର୍ଥନା କରିବେ, ସେମାନେ ମୃତ୍ୟୁ ସମୟରେ ଦୟା ପ୍ରାପ୍ତ କରିବେ । ପୁଣି

ମୃତ୍ୟୁ ବ୍ୟକ୍ତିଙ୍କ ଉପସ୍ଥିତିରେ ଯେତେବେଳେ ଏହି ପ୍ରାର୍ଥନା କରାଯିବ, ସେହି ମୃତ୍ୟୁ ବ୍ୟକ୍ତି ଓ ମୋ ପିତାଙ୍କ ମଧ୍ୟରେ ମୁଁ ଜଣେ ଶେଷ ବିଚାରକ ରୂପେ ଉପସ୍ଥିତ ରହିବି ନାହିଁ ବରଂ ଜଣେ ଦୟାଳୁ ତ୍ରାଣକର୍ତ୍ତା ରୂପେ ଠିଆ ହେବି । ପରିତ୍ରାଣର ଶେଷ ଆଶା ସ୍ୱରୂପ ସେହି ପାପୀମାନଙ୍କୁ ଯାଜକ ମୋ ହସ୍ତରେ ଅର୍ପଣ କରିବେ ଯେତେବଡ଼ ପାପୀ ହୁଅନ୍ତୁ ନା କାହିଁକି, ଯଦି ସେ କେବଳ ଥରେ ବି ଏହି କରୁଣା ମାଳା ପ୍ରାର୍ଥନା କରେ, ସେ ମୋର ଅସୀମ ଦୟାରୁ ଅନୁଗ୍ରହ ପ୍ରାପ୍ତ କରିବ । ଯେଉଁମାନେ ମୋର ଦୟାରେ ବିଶ୍ୱାସ କରନ୍ତି ମୁଁ ସେମାନଙ୍କର ଆତ୍ମାକୁ ପ୍ରଚୁର ଅନୁଗ୍ରହ ପ୍ରଦାନ କରିବି । ଏହି ମାଳା ଦ୍ୱାରା, ତୁମେ ଯଦି ଇଶ୍ୱରଙ୍କ ଇଚ୍ଛା ଅନୁଯାୟୀ ଯାହା ମାଗିବ ମୁଁ ସବୁକିଛି ପ୍ରଦାନ କରିବି ।

କେଉଁ ସମୟରେ କରୁଣାର ମାଳାଜପ କରିବା ପାଇଁ ଯୀଶୁ ସିଷ୍ଟେର ଫାଉଷ୍ଟିନାଙ୍କୁ କହିଥିଲେ ? କେଉଁ ସମୟକୁ ଦୟାର ମହାନତା ସମୟ କୁହାଯାଏ ? ସବୁଠାରୁ ଦୟାର ମହାନତା ସମୟ ହେଲା ଅପରାହ୍ନ ୩ ଘଣ୍ଟା ସମୟ । କାରଣ ଏହି ସମୟରେ ଯୀଶୁ ଦାରୁଣ ଦୁଃଖ ଅନୁଭବ କରି ମୃତ୍ୟୁ ବରଣ କରିଥିଲେ ।

ଦ୍ୱିତୀୟତଃ, ପ୍ରତି ଦିବ୍ୟଯଜ୍ଞରେ ପ୍ରଭୁଯୀଶୁଙ୍କୁ ହୃଦୟରେ ଗ୍ରହଣ କଲାପରେ କରୁଣାର ମାଳାଜପ କରାଯାଇ ପାରିବ । ଏହି ପ୍ରାର୍ଥନାଟି ଯୀଶୁଙ୍କର ଶରୀର ଓ ରୁଧିର ସହିତ ଜଡ଼ିତ ଅଛି ।

ତୃତୀୟତଃ, ପାସ୍କା ପର୍ବର ପରବର୍ତ୍ତୀ ରବିବାରକୁ ଦୟାର ରବିବାର କୁହାଯାଏ । ତେଣୁ ଏହି ପର୍ବର ୯ ଦିନ ପୂର୍ବରୁ ଯେଉଁ ନବୀନା ଆରମ୍ଭ କରୁ ସେହି ସମୟରେ କରୁଣାର ମାଳାଜପ କୁହାଯାଇ ପାରିବ ।

ଏହା ବ୍ୟତୀତ ସବୁ ସମୟରେ ଓ ସବୁଠାରେ ଏହି କରୁଣା ମାଳାଜପ କରିବା ପାଇଁ ସିଷ୍ଟେର ଫାଉଷ୍ଟିନାଙ୍କୁ ପ୍ରଭୁ ଯୀଶୁ କହିଥିଲେ ।

ଏହି ଦର୍ଶନ ମାଧ୍ୟମରେ ପ୍ରଭୁ ଯୀଶୁ ତାଙ୍କର ଅପରିମେୟ କରୁଣା ଓ ଦୟା ମାନବ ଜାତିକୁ ପ୍ରଦାନ କରିବା ପାଇଁ ଇଚ୍ଛା କରନ୍ତି । ସିଷ୍ଟେର ଫାଉଷ୍ଟିନାଙ୍କୁ ଏହି ଗୁରୁ ଦାୟିତ୍ୱ ଦେଲେ ଯେପରି ତାଙ୍କ ମାଧ୍ୟମରେ ସାରା ବିଶ୍ୱରେ ଲୋକେ ପ୍ରଭୁ ଯୀଶୁଙ୍କ ଦୟା ଲାଭ କରି ଅନ୍ୟ ପ୍ରତି ଦୟା ପ୍ରଦର୍ଶନ କରି ପାରିବେ ।

କିପରି ଆମ୍ଭେ ଅନ୍ୟ ପ୍ରତି ଦୟା ପ୍ରକାଶ କରି ପାରିବା ?

ସାତୋଟି ଶାରିରୀକ ପରୋପକାର କ୍ରିୟା ।

୧) କ୍ଷୁଧାର୍ତ୍ତର କ୍ଷୁଧା ନିବାରଣ କରିବା
୨) ତୃଷାର୍ତ୍ତର ତୃଷା ନିବାରଣ କରିବା
୩) ବସ୍ତ୍ରହୀନକୁ ବସ୍ତ୍ର ପ୍ରଦାନ କରିବା
୪) ବାସହୀନକୁ ଆଶ୍ରୟ ଦେବା
୫) ରୋଗୀକୁ ସାକ୍ଷାତ କରିବା
୬) ବନ୍ଦୀକୁ ପରିଦର୍ଶନ କରିବା
୭) ଶବ ସତ୍କାର କରିବା

ସାତୋଟି ଆଧ୍ୟାତ୍ମିକ ପରୋପକାର କ୍ରିୟା

୧) ଅଜ୍ଞାନକୁ ଶିକ୍ଷା ଦେବା
୨) ସନ୍ଦେହକାରୀକୁ ସତ୍ ପରାମର୍ଶ ଦେବା
୩) ଭ୍ରାନ୍ତକୁ ସତପଥ ଦର୍ଶାଇବା
୪) ଦୁଃଖୀଙ୍କୁ ସାନ୍ତ୍ୱନା ଦେବା
୫) ପରୋପକାର ସହ୍ୟ କରିବା
୬) ପର ତ୍ରୁଟି ମାର୍ଜନା କରିବା
୭) ଜୀବନ୍ତ ଓ ମୃତକଙ୍କ ପାଇଁ ପ୍ରାର୍ଥନା କରିବା ।

**ପରମେଶ୍ୱରଙ୍କ ଦୟାର ପ୍ରେରିତ:**

ସିଷ୍ଟର ଫାଉଷ୍ଟିନାଙ୍କୁ ପ୍ରଭୁ ବାଛିଲେ ତାହାଙ୍କ ଦୟାର ପ୍ରେରିତ ହେବା ପାଇଁ ଯେପରି ସାରା ବିଶ୍ୱରେ ଏହି ସନ୍ଦେଶ ପ୍ରଚାରିତ ହେବ । ପରମେଶ୍ୱରଙ୍କ ଦୟାର ରହସ୍ୟ ଉପରେ ସିଷ୍ଟର ଫାଉଷ୍ଟିନାଙ୍କର କାର୍ଯ୍ୟର ଆଲୋକ ଅସାଧାରଣ ଭାବେ ପ୍ରତିଫଳନ କରେ । ଫାଉଷ୍ଟିନାଙ୍କ କାର୍ଯ୍ୟ କେବଳ ଯେ ସାଧାରଣ ଲୋକଙ୍କୁ ଆନନ୍ଦ ଦିଏ ତାହା ନୁହେଁ, ଏପରିକି ଶିକ୍ଷାବିତମାନଙ୍କ ପାଇଁ ମଧ୍ୟ ଇଶଶାସ୍ତ୍ର ସମ୍ବନ୍ଧରେ ତାହା ଏକ ଉତ୍ସହୋଇ ରହି ପାରିବ । ସିଷ୍ଟର ଫାଉଷ୍ଟିନାଙ୍କ ଡାଇରି ପ୍ରାୟ ୨୦ଟି ଭାଷାରେ ଅନୁବାଦିତ ହୋଇଅଛି, ସେ ଗୁଡ଼ିକ ହେଲା ଇଂରାଜୀ, ଜର୍ମାନୀ, ଇଟାଲୀ, ସ୍ପାନିସ, ଫ୍ରେଞ୍ଚ, ପର୍ତୁଗୀଜ, ଆରାବିକ, ଋଷିଆ, ହଙ୍ଗେରିଆ,

ଚେକ, ସ୍ଲୋଭାକ, ପଲିସ, କାଷ୍ଟାଲିଆନ, ବ୍ରାଜିଲିଆନ, ଭିଏତନାମି, କୋରିଆ, ଚାଇନିଜ, ସুଇଡିସ, ୟୁକ୍ରାଇନିଆନ୍, ଡଚ୍, ଜାପାନୀ ।

ଯକ୍ଷ୍ମା ରୋଗରେ ସିଷ୍ଟର ଫାଉଷ୍ଟିନା ପୀଡ଼ିତ ଥିଲେ ଓ ବିଭିନ୍ନ ଯନ୍ତ୍ରଣା ଯାହା ସେ ଅନୁଭବ କରୁଥିଲେ ସେଗୁଡ଼ିକୁ ପାପୀମାନଙ୍କ ନିମନ୍ତେ ନିଜେ ତ୍ୟାଗ ସ୍ୱୀକାର କରୁଥିଲେ । ୩୩ ବର୍ଷ ବୟସରେ ଅର୍ଥାତ୍ ୧୯୩୮ ମସିହା ଅକ୍ଟୋବର ୫ ତାରିଖରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଫାଉଷ୍ଟିନାଙ୍କ ମାଧ୍ୟମରେ ଯେଉଁ ସବୁ ଅନୁଗ୍ରହ ପରମେଶ୍ୱରଙ୍କଠାରୁ ପ୍ରାପ୍ତ କରୁଥିଲେ, ସେଥିରୁ ତାହାଙ୍କ ପବିତ୍ରତା ଚାରିଆଡ଼େ ବିସ୍ତାର ହେବାକୁ ଲାଗିଲା । ୧୯୬୫ ରୁ ୧୯୬୭ ପର୍ଯ୍ୟନ୍ତ ତାହାଙ୍କ ଜୀବନୀ, କାର୍ଯ୍ୟ ତଥା ସଦ୍‌ଗୁଣ ଗୁଡ଼ିକ ଉପରେ ସନ୍ଧାନ କରାଯାଇ ୧୯୬୮ ମସିହାରେ ତାହାଙ୍କର ସାଧ୍ୱୀ ପ୍ରକ୍ରିୟା ଆରମ୍ଭ ହୋଇଥିଲା । ୧୯୯୩ ମସିହା ଏପ୍ରିଲ ମାସ ୧୮ ତାରିଖରେ ପୁଣ୍ୟପିତା ଜନ୍ ପଲ ଦ୍ୱିତୀୟ ତାହାଙ୍କୁ ବେଦୀର ଗୌରବ ସ୍ଥାନକୁ ଉନ୍ନୀତ କଲେ । ୨୦୦୦ ମସିହା ଏପ୍ରିଲ ମାସ ୩୦ ତାରିଖରେ ତାଙ୍କୁ ସାଧ୍ୱୀରୂପେ ଘୋଷଣା କରାଗଲା । ସିଷ୍ଟର ଫାଉଷ୍ଟିନାଙ୍କ ମର ଶରୀରକୁ ସ୍ୱର୍ଗୀୟ ଦୟାର ପୀଠ କ୍ରାକୋ ଲାଜିଉନିକିରେ ରଖାଯାଇଛି ।

ସିଷ୍ଟେର ଫାଉଷ୍ଟିନାଙ୍କ ପ୍ରାର୍ଥନା ମାଧ୍ୟମରେ ଅନେକ ଆଶ୍ଚର୍ଯ୍ୟ କର୍ମ ଘଟିଛି । ସେଗୁଡ଼ିକ ମଧ୍ୟରେ ଜଣେ ବିଶ୍ୱାସୀ ମାଉରିନ ଦିଗାନଙ୍କ ସାକ୍ଷ୍ୟ ନିମ୍ନରେ ଉଲ୍ଲେଖ କରାଯାଏ ।

୧୫ ବର୍ଷ ପର୍ଯ୍ୟନ୍ତ ମାଉରିନ ଦିଗାନଙ୍କ ସ୍ୱାସ୍ଥ୍ୟ ବହୁତ ଭଲ ରହୁଥିଲା । କିନ୍ତୁ ୧୫ ବର୍ଷ ପରେ ଲିମ୍ଫେଦେବା ନାମକ ଏକ ସାଂଘାତିକ ରୋଗରେ ସେ ପ୍ରପୀଡ଼ିତ ହେଲେ । ଏହା ଏକ ପ୍ରକାର ରୋଗ ଯାହା କୌଣସି ଔଷଧ ଦ୍ୱାରା ସୁସ୍ଥ ହେବା ଅସମ୍ଭବ । ୧୦ ବର୍ଷ ମଧ୍ୟରେ ପ୍ରାୟ ୫୦ ଟି ଅପରେସନ ତାଙ୍କ ଶରୀରରେ କରାଯାଇଥିଲା । ପୁଣି ବହୁ ବର୍ଷ ଧରି ତାହାଙ୍କୁ ହସପିଟାଲ ଭିତରେ ରହି ଚିକିତ୍ସିତ ହେବାକୁ ପଡ଼ିଥିଲା । ମାଉରିନଙ୍କ ଆତ୍ମୀୟ ବନ୍ଧୁମାନେ ପ୍ରଭୁଙ୍କଠାରେ ଭରସା ରଖି ପ୍ରାର୍ଥନା କରିବା ପାଇଁ ଫାଉଷ୍ଟିନାଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ଫାଉଷ୍ଟିନା ପ୍ରଭୁଙ୍କଠାରେ ନିଜର ବିଶ୍ୱାସ ହରାଇଥିଲେ । କାହିଁକି ପ୍ରଭୁ ତାଙ୍କୁ ଏହି ବୟସରେ ସେହି ପ୍ରକାର ରୋଗରେ କଷ୍ଟ ପାଇବା ପାଇଁ ଅନୁମତି ଦେଲେ ବୋଲି ସେ

ପ୍ରଶ୍ନ କରୁଥିଲେ । ତାଙ୍କର ଅବସ୍ଥା ଏପରି ରୂପ ଧାରଣ କଲା ଯେ ତାଙ୍କର ଗୋଟିଏ ଗୋଡ଼କୁ କାଟିବା ପାଇଁ କୁହାଗଲା ।

ଗୋଟିଏ ଦିନ ସଂଧ୍ୟାରେ ଯେତେବେଳେ ମାଉରିନ ହସପିଟାଲରେ ଥାନ୍ତି ତାଙ୍କ ସ୍ୱାମୀ ବବ୍ ଦିବ୍ୟ କରୁଣା ଫିଲିମ ଦେଖିବାର ସୁଯୋଗ ପାଇଲେ ଏବଂ ଫାଉଷ୍ଟିନାଙ୍କ ମାଧ୍ୟସ୍ଥତାରେ ସୁସ୍ଥତାର ଶକ୍ତି ଦେଖି ସେ ଅଶ୍ଚର୍ଯ୍ୟ ହେଲେ ଓ ବିଶ୍ୱାସ କଲେ ନିଜର ସ୍ତ୍ରୀ ମାଉରିନଙ୍କୁ ସେ ବାଧ୍ୟ କଲେ ଯେ ସେମାନେ ପୋଲାଣ୍ଡ ଯାଇ ସାଧ୍ୱୀ ଫାଉଷ୍ଟିନାଙ୍କ ସମାଧିରେ ପ୍ରାର୍ଥନା କରିବେ । ଫାଦେର ସେରାଫିମ ମାଇକେଲଙ୍କ ସହିତ ବବ୍ ମାଉରିନ ଓ ସେମାନଙ୍କ ପୁଅ ମିଶି ପୋଲାଣ୍ଡର କ୍ରାକୋକୁ ଯାତ୍ରା କଲେ । ସେଠାରେ ପହଞ୍ଚି ବହୁତ ବର୍ଷ ପରେ ମାଉରିନ ୧୯୮୧ ମସିହା ମାର୍ଚ୍ଚ ମାସ ୨୩ ତାରିଖ ଦିନ ପାପ ସ୍ୱୀକାର କଲେ । ସମାଧିରେ ପହଞ୍ଚିବା ପରେ ମାଉରିନ ଏହିପରି ପ୍ରାର୍ଥନା କରି କହିଲେ, "ବହୁତ ଦୂରରୁ ଯାତ୍ରା କରି ଆସିଛି, ବର୍ତମାନ ତୁମେ କିଛି ମୋ ପାଇଁ କର" । ମାଉରିନ ହୃଦୟ ଭିତରେ ଫାଉଷ୍ଟିନାଙ୍କ ସ୍ୱର ଶୁଣିବାକୁ ପାଇଲେ , "ତୁମେ ଯଦି ମୋର ସାହାଯ୍ୟ ଭିକ୍ଷା କର, ମୁଁ ତୁମଙ୍କୁ ନିଶ୍ଚୟ ଦେବି"। ମାଉରିନ ହଠାତ୍ ଅନୁଭବ କଲେ ସତେ ଯେମିତି ସେ ପାଗଳ ହୋଇ ଯାଉଛି । ଯେଉଁ ଫୁଲା ଗୋଡ଼ଟିକୁ କାଟିବା ପାଇଁ କୁହା ଯାଇଥିଲା ସେଥିରୁ ଏବଂ ସମଗ୍ର ଶରୀରରୁ ଯନ୍ତ୍ରଣା ବାହାରି ଗଲା ଓ ସେ ଆଶ୍ୱସ୍ତ ଅନୁଭବ କଲେ । ସେହି ରୋଗରୁ ସେ ସମ୍ପୂର୍ଣ୍ଣ ଭାବେ ସୁସ୍ଥତା ଅନୁଭବ କଲେ । ଆମେରିକାକୁ ଫେରିଯିବା ପରେ ପ୍ରାୟ ୫ ଜଣ ଡାକ୍ତର ତାଙ୍କୁ ପରୀକ୍ଷା କରି କହିଲେ ଯେ ସେ ସମ୍ପୂର୍ଣ୍ଣ ରୂପେ ସୁସ୍ଥ ହୋଇଛନ୍ତି ଏବଂ ଏହି ପ୍ରକାର ରୋଗରୁ ସୁସ୍ଥତା ପାଇବା ଯେ କିପରି ସମ୍ଭବ ତାହା ଡାକ୍ତରୀ ବିଜ୍ଞାନ ତାହାର କୌଣସି କାରଣ ଦେଇପାରି ନ ଥିଲା ।

୧୯୯୫ ମସିହା ଅକ୍ଟୋବର ମାସ ୫ ତାରିଖ ଫାଉଷ୍ଟିନାଙ୍କ ପର୍ବ ଦିନ ଫାଦେର ରନ୍ ପାଇଟେଲ ଏବଂ ତାଙ୍କ କେତେଜଣ ବନ୍ଧୁ ବାଲଟିମର ଧର୍ମପ୍ରଦେଶର ପବିତ୍ର ମାତାଜପ ଗୀର୍ଜାରେ ସମବେତ ହୋଇଥିଲେ ପ୍ରାର୍ଥନା କରିବା ପାଇଁ । ଫାଦେର ରନ୍‌ଙ୍କର ସୁସ୍ଥତା ପାଇଁ ସେମାନେ ସିଷ୍ଟେର ଫାଉଷ୍ଟିନାଙ୍କ ମାଧ୍ୟସ୍ଥତାରେ ପ୍ରାର୍ଥନା କରୁଥିଲେ । ସେହି ସମୟରେ ଫାଦେର ରନ୍ ଫାଉଷ୍ଟିନାଙ୍କ ସେହି ରେଲିକିସ

(ଫାଉଷ୍ଟିନା ଶରୀରର କିଛି ସ୍ମୃତି) କୁ ସମ୍ମାନ ଦେବା ସମୟରେ ହଠାତ୍ ମୂର୍ଚ୍ଛା ହୋଇଗଲେ । ସେ ପକ୍ଷଘାତୀ ପରି ଅନୁଭବ କଲେ କିନ୍ତୁ ସମ୍ପୂର୍ଣ୍ଣ ରୂପେ ଶାନ୍ତିରେ ଥିଲେ । ଏହାପରେ ଫାଦେର ରନ୍ ତାଙ୍କୁ ଚିକିତ୍ସା କରୁଥିବା ହୃଦରୋଗ ଡାକ୍ତରଙ୍କ ନିକଟକୁ ଯାଇ ପରୀକ୍ଷା କରି ଜାଣି ପାରିଲେ ଯେ ସେ ସମ୍ପୂର୍ଣ୍ଣ ରୂପେ ସୁସ୍ଥତା ଲାଭ କରିଛନ୍ତି । ଫାଦେର ରନ୍ କହିଲେ ଯେ ଯୀଶୁ ତାଙ୍କୁ ସୁସ୍ଥତା ପ୍ରଦାନ କରିଛନ୍ତି । ବାସ୍ତବରେ ପୁଣି ସେ କହିଲେ ଯେ "ମୋର ହୃଦୟରେ ଯୀଶୁଙ୍କ ସହିତ ଫାଉଷ୍ଟିନା ଯେଉଁ ବାକ୍ୟ ଦେଲେ ସେଥିରେ ଯୀଶୁଙ୍କ ହୃଦୟ ମୋତେ ସ୍ପର୍ଶ କଲା" । ଏହିପରି ସେ ପରେ ବର୍ଣ୍ଣନା କରିଥିଲେ ।

ପ୍ରାୟ ତିନି ବର୍ଷ ଫାଦେର ରନ୍‌ଙ୍କ ମେଡିକାଲ ରିପର୍ଟ ଏବଂ ଡାକ୍ତର ତଥା ଧର୍ମତତ୍ତ୍ୱବିତମାନଙ୍କର ବିଭିନ୍ନ ପ୍ରକାରର ପରୀକ୍ଷା ପରେ ମତ ଦେଇଥିଲେ ଯେ ବାସ୍ତବରେ ଫାଦେର ରନ୍‌ଙ୍କ ସୁସ୍ଥତା ସିଷ୍ଟେର ଫାଉଷ୍ଟିନାଙ୍କ ପ୍ରାର୍ଥନା ମାଧ୍ୟମରେ ସମ୍ଭବପର ହୋଇଅଛି । ୧୯୯୯ ମସିହା ଏପ୍ରିଲ ୩୦ ତାରିଖ ଦୟାର ରବିବାର ଦିନ ଭାଟିକାନରେ ତାହାଙ୍କୁ ସାଧ୍ୱୀ ରୂପେ ଘୋଷଣା କରାଗଲା । ଫାଉଷ୍ଟିନାଙ୍କୁ ଯୀଶୁ ଏହିପରି କହିଥିଲେ, "ହେ ମୋର ଅତି ପ୍ରିୟ, ଗଭୀର ରହସ୍ୟର ସମ୍ପାଦିକା, ମୋର ଦୟା ବିଷୟରେ ଯେଉଁ ସବୁ ବିଷୟ ତୁମ୍ଭଙ୍କୁ ଯଣାଉଛି ସେହି ସବୁ ତୁମ୍ଭ ଡାଇରିରେ ଲେଖି ରଖ ଯେପରି ଯେଉଁମାନେ ଏହା ପଠନ କରିବେ ସେମାନେ ଆତ୍ମାରେ ଆଶ୍ୱାସନା ପାଇବେ ଓ ମୋ ନିକଟକୁ ଆସିବା ପାଇଁ ସାହାସ ପାଇ ପାରିବେ" ।

ଆମର ପବିତ୍ର ଧର୍ମ ଶାସ୍ତ୍ରରେ ଲିଖିତ ମାନବ ଜାତି ପ୍ରତି ପରମେଶ୍ୱରଙ୍କ ଦୟାକୁ ଏବଂ ଆମର ବିଶ୍ୱାସର ସତ୍ୟତାକୁ ପ୍ରକାଶ କରି ବିଶ୍ୱାସୀମାନଙ୍କୁ ସେହି ବିଷୟରେ ସ୍ମରଣ କରାଇବା ଫାଉଷ୍ଟିନାଙ୍କ ପ୍ରଥମ କାର୍ଯ୍ୟ ବା ଦାୟିତ୍ୱ ଅଟେ । ଦ୍ୱିତୀୟ ଦାୟିତ୍ୱ ହେଲା, ସାରା ବିଶ୍ୱବାସୀଙ୍କୁ ବିଶେଷ ଭାବରେ ପାପୀମାନଙ୍କ ନିକଟରେ ପରମେଶ୍ୱରଙ୍କ ଦୟାକୁ ପହଞ୍ଚଇବା । ଏହି ଭକ୍ତି କ୍ରିୟା ଦ୍ୱାରା ଯେପରି ସେମାନେ ପରମେଶ୍ୱରଙ୍କ ଦୟାର ଛବିଟିକୁ ସମ୍ମାନ ଦେବେ, ତାହାଙ୍କଠାରେ ଭରସା ରଖି ପାରିବେ, ପାସ୍କାର ପ୍ରଥମ ରବିବାର ପାଳନ କରିବେ, ଦିବସର ତିନି ଘଣ୍ଟା ସମୟରେ କରୁଣାର ମାଳା ପ୍ରାର୍ଥନା କରବେ । ଜଣେ

ପରମେଶ୍ୱରଙ୍କଠାରେ ସମ୍ପୂର୍ଣ୍ଣ ରୂପେ ନିଜର ଜୀବନ ଉତ୍ସର୍ଗ କରି ଅନ୍ୟମାନଙ୍କର ପ୍ରତି ସକ୍ରିୟ ପ୍ରେମ ପ୍ରକାଶ କରିବା ଦ୍ୱାରା ପ୍ରଭୁଙ୍କର ପ୍ରଚୁର ଅନୁଗ୍ରହ ଆଶୀର୍ବାଦ ଲାଭ କରିବାର ପ୍ରତିଜ୍ଞା ପ୍ରଭୁ ଦେଇଛନ୍ତି ।

ଫାଉଷ୍ଟିନାଙ୍କ ତୃତୀୟ ମିଶନ ହେଲା ପରମେଶ୍ୱରଙ୍କ ଦୟାକୁ ପ୍ରସାରିତ କରିବା । ଖ୍ରୀଷ୍ଟିୟ ଜୀବନରେ ପରିପୂର୍ଣ୍ଣତା ଲାଭ କରିବା, ଶିଶୁ ସନ୍ତାନ ପରି ତାହାଙ୍କଠାରେ ଭରସା ରଖି ତାଙ୍କ ଇଛା ଅନୁଯାୟୀ କାର୍ଯ୍ୟ କରିବା ଏବଂ ଅନ୍ୟମାନଙ୍କ ପ୍ରତି ଦୟା ପ୍ରକାଶ କରିବା । ଏହି ଆଧ୍ୟାତ୍ମିକ ପ୍ରାର୍ଥନା ଓ କାର୍ଯ୍ୟ ଯେପରି ସମସ୍ତ ଧାର୍ମିକ ଅନୁଷ୍ଠାନ ଓ ବିଶ୍ୱାସୀମାନଙ୍କ ଦ୍ୱାରା ପ୍ରଚଳିତ ହେବ । ସିଷ୍ଟେର ଫାଉଷ୍ଟିନାଙ୍କୁ ପ୍ରଭୁ ଯେଉଁ ସନ୍ଦେଶ ଦେଇଛନ୍ତି ତାହା ଯେପରି ସମସ୍ତେ ବୁଝି ପାରିବେ ଏବଂ ପ୍ରଭୁଙ୍କ ଦୟା ଯେପରି ସମସ୍ତେ ଲାଭ କରି ପାରିବେ ।

**ସାଧ୍ୱୀ ମାରିଆ ଫାଉଷ୍ଟିନା କୋୱାଲସ୍କାଙ୍କ କେତୋଟି ଉକ୍ତି:**

* "ପୃଥିବୀରେ ସବୁଠାରୁ ମହାନ ସମ୍ପଦ ହେଲା; ଯାହା ଆମର ଆତ୍ମାକୁ ପବିତ୍ର କରେ" ।
* "ଯଦି ଦୂତମାନଙ୍କଠାରେ ଇର୍ଷା ହେବାର ସ୍ୱଭାବ ଥାଆନ୍ତା ତେବେ ସେମାନେ ଆମକୁ ଦୁଇଟି ବିଷୟରେ ଇର୍ଷା କରିଥାନ୍ତେ; ଗୋଟିଏ ହେଲା ଦିବ୍ୟ ପ୍ରସାଦ ଗ୍ରହଣ ଓ ଅନ୍ୟଟି ହେଲା ଯନ୍ତ୍ରଣା" ।

***

# ଧନ୍ୟ କାରଲୋ ଆକ୍ୟୁଟିସ
# (୧୯୯୧-୨୦୦୬, ଅକ୍ଟୋବର ୧୨)

୧୯୯୧ ମସିହା ମଇ ମାସ ୩ ତାରିଖ ଲଣ୍ଡନରେ କାରଲୋ ଆକ୍ୟୁଟିସଙ୍କ ଜନ୍ମ । ସେ ଥିଲେ ଇଟାଲୀର ଜଣେ ଧନୀଶାଳୀ ପରିବାରରୁ । ତାଙ୍କ ପିତା ଆନ୍ଦ୍ରିୟ ଆକ୍ୟୁଟିସ ଓ ମାତା ଆନ୍ତୋଣୀୟା ସାଲଜାନୋ ଲଣ୍ଡନ ଓ ଜର୍ମାନୀରେ କିଛି ବର୍ଷ କାମ କଲା ପରେ ୧୯୯୧ ମସିହାରୁ ଇଟାଲୀର ମିଲାନରେ ସ୍ଥାୟୀ ରୂପେ ବାସ କରୁଥିଲେ । ଯଦିଓ କାରଲୋଙ୍କ ପିତାମାତା ଧାର୍ମିକ ନ ଥିଲେ ତଥାପି କାରଲୋ ୭ ବର୍ଷ ବୟସରେ ପ୍ରଥମଥର ଦିବ୍ୟପ୍ରସାଦ ସଂସ୍କାର ଗ୍ରହଣ କରିଥିଲେ । ଦିବ୍ୟ ମଞ୍ଜୁଷା ସମ୍ମୁଖରେ ପ୍ରତିଦିନ ଦିବ୍ୟଯଜ୍ଞ ପୂର୍ବରୁ କିମ୍ବା ପରେ ସେ ଧ୍ୟାନରେ ପ୍ରାର୍ଥନା କରୁଥିଲେ । ପ୍ରତି ସପ୍ତାହରେ ସେ ପାପ ସ୍ୱୀକାର କରୁଥିଲେ । ଯେଉଁମାନଙ୍କ ଆଦର୍ଶ ଜୀବନ ଦ୍ୱାରା ସେ ପ୍ରେରଣା ପାଇଥିଲେ ସେମାନେ ହେଲେ ଆସିସିର ସାଧୁ ଫ୍ରାନ୍‌ସିସ, ପର୍ତ୍ତୁଗାଲର ଫ୍ରାଞ୍ଚିସ୍କୋ ଓ ଯସିନ୍ତା ମାର୍ତୋ, ଦମ୍‌ନିକ ସାଭିଓ ଏବଂ ସାଧ୍ୱୀ ବେର୍ଣ୍ଣାଦିତା । ଯୀଶୁ ସଂଘ ଦ୍ୱାରା ପରିଚାଳିତ ମିଲାନର ତ୍ରୟୋଦଶ ଲିଓନେ ଉଚ୍ଚ ବିଦ୍ୟାଳୟରେ ସେ ଅଧ୍ୟୟନ କରୁଥିଲେ । ସାମାଜିକ କ୍ଷେତ୍ରରେ ନିଜ ବନ୍ଧୁମାନଙ୍କର ପିତାମାତା ମାନେ ଯେଉଁମାନେ ଛାଡ଼ପତ୍ର ଦେଇଥିଲେ ସେହି ବନ୍ଧୁମାନଙ୍କୁ ନିଜ ଘରକୁ ଡାକି ସେମାନଙ୍କୁ ସାନ୍ତ୍ୱନା ଦେଉଥିଲେ । ସ୍କୁଲରେ ଯେଉଁ ସାଙ୍ଗମାନେ ଶାରିରୀକ ଭାବେ ଅକ୍ଷମ ଥିଲେ ଓ ଯେଉଁମାନଙ୍କୁ ଅନ୍ୟମାନେ ପରିହାସ କରୁଥିଲେ ସେମାନଙ୍କ ସପକ୍ଷ ସେ ସବୁବେଳେ ଠିଆ ହେଉଥିଲେ । ସ୍କୁଲ୍ ବାହାରେ ସ୍ୱେଚ୍ଛାସେବକ ଭାବରେ ସେ ଗୃହହୀନ ଓ ପରିତ୍ୟକ୍ତ ବ୍ୟକ୍ତିମାନଙ୍କ ସେବା କରୁଥିଲେ । ଯଦିଓ ବିଭିନ୍ନ ସ୍ଥାନ ପରିଦର୍ଶନ କରି ସେ ଆନନ୍ଦ ଉପଭୋଗ କରୁଥିଲେ ତଥାପି ତାର ସବୁଠାରୁ ଅତି ପ୍ରିୟ ସ୍ଥାନ ଥିଲା ଆସିସି ।

କମ୍ପ୍ୟୁଟର ଓ ଇଣ୍ଟରନେଟ ପ୍ରତି ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା ଓ ସେ କମ୍ପ୍ୟୁଟରରେ ପାରଙ୍ଗମ । କେବଳ ଦିବ୍ୟପ୍ରସାଦର ଆଶ୍ଚର୍ଯ୍ୟ କର୍ମ ପ୍ରଚାର ଓ ପ୍ରସାର କରିବା ପାଇଁ ନିଜେ ଗୋଟିଏ Website ଖୋଲିଥିଲେ । ୧୧ ବର୍ଷ ବୟସରେ ସେ ଗୋଟିଏ ତାଲିକା ପ୍ରସ୍ତୁତ କରି ୨୦୦୫ରେ ତାହା ସମ୍ପୁର୍ଣ୍ଣ କରିଥିଲେ । ମିଡିଆ

ମାଧ୍ୟମରେ ସୁସମାଚାର ପ୍ରଚାର କରିବା ପାଇଁ ଧନ୍ୟ ଯାକମ ଆଲ୍‌ବେରିଆନ ପ୍ରଥମେ ଆରମ୍ଭ କରିଥିବା ଯୋଗୁଁ ତାଙ୍କ ପ୍ରତି କାର୍‌ଲୋଙ୍କର ଯଥେଷ୍ଟ ସମ୍ମାନ ଥିଲା । ଚଳଚିତ୍ର ଓ କୌତୁହଳ ଅଭିନୟ ଗୁଡ଼ିକୁ ସଂକଳନ କରିବା ପାଇଁ ସେ ଭଲ ପାଉଥିଲେ । ତାଙ୍କ Website ରେ ସେ କହିଥିଲେ, "ଯେତେ ଅଧିକ ଆମ୍ଭେ ଦିବ୍ୟପ୍ରସାଦ ଗ୍ରହଣ କରିବା ସେତେ ଅଧିକ ଆମ୍ଭେ ଯୀଶୁଙ୍କ ପରି ହେବା ଓ ସ୍ୱର୍ଗର ସ୍ୱାଦ ଏହି ପୃଥିବୀରେ ଅନୁଭବ କରି ପାରିବା" ।

ଲ୍ୟୁକେମିଆ ରୋଗରେ ଆକ୍ରାନ୍ତ ହେବା ପରେ ନିଜର କଷ୍ଟକୁ ପୂଣ୍ୟପିତା ଷୋଡ଼ଦଶ ବେନେଦିକ୍ତ ଏବଂ ସାର୍ବଜନୀନ ମଣ୍ଡଳୀ ଉଦ୍ଦେଶ୍ୟରେ ସେ ଉତ୍ସର୍ଗ କରୁଥିଲେ । ସେ କହୁଥିଲେ, "ପ୍ରଭୁଙ୍କ ଉଦ୍ଦେଶ୍ୟରେ ତଥା ପୂଣ୍ୟପିତା ଓ ସାର୍ବଜନୀନ ମଣ୍ଡଳୀ ନିମନ୍ତେ ମୋର ଯାତନାକୁ ମୁଁ ଉତ୍ସର୍ଗ କରେ" । ଦିବ୍ୟପ୍ରାସାଦିକ ଆଶ୍ଚର୍ଯ୍ୟକର୍ମ ଘଟିଥିବା ପୃଥିବୀର ପ୍ରତ୍ୟେକ ସ୍ଥାନକୁ ତୀର୍ଥଯାତ୍ରା କରିବା ପାଇଁ ପିତାମାତାଙ୍କୁ ନିଜର ଇଚ୍ଛା ପ୍ରକାଶ କରିଥିଲେ କିନ୍ତୁ ତାଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ତାହା ସମ୍ଭବପର ହୋଇ ନ ଥିଲା ।

କାର୍‌ଲୋଙ୍କୁ ଚିକିତ୍ସା କରୁଥିବା ଡାକ୍ତରମାନେ ଦିନେ ତାଙ୍କୁ ପଚାରିଥିଲେ, "କାର୍‌ଲୋ, ତୁମକୁ ଏହି ରୋଗ ବହୁତ ଯନ୍ତ୍ରଣା ଦିଏ କି" ? ଉତରରେ ସେ କହିଥିଲେ, "ଏହି ଜଗତରେ ଲୋକ ଅଛନ୍ତି ଯେଉଁମାନେ ମୋ ଠାରୁ ଅଧିକ କଷ୍ଟ ପାଆନ୍ତି" । ୭ ବର୍ଷ ବୟସରୁ ଅର୍ଥାତ ଯେଉଁଦିନ ଠାରୁ ପ୍ରଥମେ ଦିବ୍ୟପ୍ରସାଦ ସଂସ୍କାର ଗ୍ରହଣ କଲେ ସେହି ଦିନ ଠାରୁ ଦିନେ ମଧ୍ୟ ଦିବ୍ୟପ୍ରସାଦ ନ ପାଇ ସେ ରହି ନାହାନ୍ତି ।

ମାରୀୟାଙ୍କ ପ୍ରତି ମଧ୍ୟ ତାଙ୍କର ଗଭୀର ଭକ୍ତି ଥିଲା । ଏଣୁ ପ୍ରତିଦିନ ମାଳାଜପ ପ୍ରାର୍ଥନା ଆବୃତି କରୁଥିଲେ । ଦିବ୍ୟମଞ୍ଜୁଷାରେ ଯୀଶୁଙ୍କର ଉପସ୍ଥିତିକୁ ଓ ମାଳାଜପ ପ୍ରାର୍ଥନା ଦ୍ୱାରା ମାରୀୟାଙ୍କୁ ଭକ୍ତି କରିବା ଏହି ଦୁଇଟି ଥିଲା କାର୍‌ଲୋଙ୍କର ମୁଖ୍ୟ ଆଧ୍ୟାତ୍ମିକ ଅସ୍ତ୍ର ।

କାର୍ଡିନାଲ ଆଞ୍ଜେଲ କମାସ୍ତ୍ରୀ କାର୍‌ଲୋଙ୍କ ବିଷୟରେ କହନ୍ତି, "ଅନ୍ୟ ଯୁବକମାନଙ୍କ ପରି ସର୍ବଦା ନିଜ ସାଙ୍ଗମାନଙ୍କ ସହିତ ସେ ରହୁଥିଲେ, ପଢ଼ାରେ

ବ୍ୟସ୍ତ ରହୁଥିଲେ, କମ୍ପ୍ୟୁଟର କାମରେ ପାରଙ୍ଗମ ଥିଲେ । ଏହି ସବୁ କାର୍ଯ୍ୟ କରି ମଧ୍ୟ ଯୀଶୁ ଖ୍ରୀଷ୍ଟଙ୍କୁ ସେ ଅନୁଭବ କରି ପାରିଥିଲେ" ।

ଖେଳିବାକୁ ସେ ଭଲ ପାଉଥିଲେ । ତାଙ୍କର ଅତି ପ୍ରିୟ ଖେଳ ଥିଲା ଫୁଟବଲ ଏବଂ ଭିଡିଓ ଗେମ୍ । ଆଇସକ୍ରିମ୍ ଖାଇବାକୁ ସେ କେବେ ମନା କରୁ ନ ଥିଲେ । ନିଜର ଶରୀରର ଓଜନ ବଢ଼ିବା ଯୋଗୁଁ ସେ ଅନୁଭବ କଲେ ଯେ ତାଙ୍କୁ ଆତ୍ମ ସଂଯମ ହେବାକୁ ପଡ଼ିବ ଓ ନିଜର କ୍ରୋଧକୁ ସଂଯତ କରିବା ପାଇଁ ଶିଖିବା ଆବଶ୍ୟକ ।

ନିଜ ସଞ୍ଚୟର ପ୍ରଥମ ଟଙ୍କା ସେ ରାସ୍ତାରେ ପଡ଼ି ରହିଥିବା ଗୃହହୀନ ମାନଙ୍କ ପାଇଁ ଶୋଇବାର ବ୍ୟାଗ କିଣିଥିଲେ ବିଶେଷ ଭାବରେ ଦିବ୍ୟଯଜ୍ଞକୁ ଯିବା ସମୟରେ ଯେଉଁମାନଙ୍କୁ ରାସ୍ତାରେ ପଡ଼ି ରହିଥିବାର ସେ ଦେଖୁଥିଲେ, ସେମାନଙ୍କ ପ୍ରତି ତାଙ୍କର ଦୟାଭାବ ଜାତ ହେଉଥାଏ ।

କାର୍‌ଲୋଙ୍କୁ ଉପହାର ଭାବେ ଗୋଟିଏ ଡାଏରି ଦିଆଯାଇଥିଲା । ସେଥିରେ ସେ କିପରି ଦିନକୁ ଦିନ ଆଗକୁ ବଢ଼ୁଛନ୍ତି ସେହି ବିଷୟରେ ଲେଖିବା ପାଇଁ ମନସ୍ଥ କଲେ । ଯଦି ସେ ଭଲ କରନ୍ତି ତେବେ 'ଭଲ ମାର୍କ' ବୋଲି ଲେଖିବେ ପୁଣି ଯଦି ସେ ଖରାପ କରନ୍ତି ତେବେ 'ଖରାପ ମାର୍କ' ବୋଲି ଲେଖିବେ ।

ରାଜେଶ ନାମକ ଜଣେ ହିନ୍ଦୁ ବ୍ୟକ୍ତି ଯିଏ କାର୍‌ଲୋଙ୍କ ଅତି ସରଳ ଜୀବନ ଯାପନ କରୁଥିବା ଦେଖି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ରାଜେଶ କାର୍‌ଲୋଙ୍କ କୋଠରୀକୁ ସଫା କରୁଥିଲେ । କାର୍‌ଲୋ ଯେ ଜଣେ ସୁନ୍ଦର, ଧନଶାଳୀ ଯୁବକ ହୋଇ ମଧ୍ୟ ଯେଉଁ ଗଭୀର ବିଶ୍ୱାସ, ସେବା, ପବିତ୍ର ଓ ସରଳ ଜୀବନ ଯାପନ କରୁଥିଲେ ତାହା ତାଙ୍କୁ ଆପ୍ୟାୟିତ କରିଥିଲା । ନିଜର ସାଙ୍ଗମାନଙ୍କ ଅନୈତିକ ଜୀବନ ଦେଖିଲେ ତାଙ୍କୁ ବହୁତ ଦୁଃଖ ଲାଗୁଥାଏ । ତାଙ୍କ ମାଁ କହନ୍ତି, "କାର୍‌ଲୋ ଜନ୍ମ ହେବା ପୂର୍ବରୁ ସେ କେବଳ ନିଜର ପ୍ରଥମ ଦିବ୍ୟପ୍ରସାଦ ଗ୍ରହଣ, ଦୃଢ଼ୀକରଣ ଏବଂ ନିଜର ବିବାହ ପାଇଁ ହିଁ ଗୀର୍ଜାକୁ ଯାଇଥିଲେ" । ଯେଉଁ ବସ୍ତ୍ର ସେ ପରିଧାନ କରୁଥିଲେ ବିଶେଷ ଭାବରେ ଜିନ୍ ପ୍ୟାଣ୍ଟ, ନିକ୍‌ସ ସେହି ବସ୍ତ୍ର ଦ୍ୱାରା ହିଁ ତାଙ୍କ ଶରୀରକୁ ବିଶ୍ୱାସୀଙ୍କ ଦର୍ଶନ ନିମନ୍ତେ ଗୋଟିଏ କାଚ ବକ୍ସରେ ରଖାଯାଇଅଛି ।

ସକାଳୁ କୁକୁରକୁ ଧରି ବୁଲେଇ ନେବା ସମୟରେ ଯାହା ରାସ୍ତାରେ ମଇଳା ଦେଖନ୍ତି ତାହାକୁ ବାହାର କରି ଫିଙ୍ଗି ଦିଅନ୍ତି । ଏହିପରି ପୃଥିବୀ ପ୍ରତି ନିଜର ଦାୟିତ୍ୱ ସେ ଜାଣି ପାରିଥିଲେ ।

୧୫ ବର୍ଷୀୟ କାର୍‌ଲୋଙ୍କ ଜୀବନକୁ ଅନୁଧ୍ୟାନ କରି ପୁଣ୍ୟପିତା ଫ୍ରାନ୍‌ସିସ କହନ୍ତି, "ଦିବ୍ୟଯଜ୍ଞ ପ୍ରତି ପ୍ରେମରେ ପଡ଼ିଥିବା ଜଣେ ଯୁବକ" । ଗୋଟିଏ ଆରାମ ଦାୟକ ସ୍ଥାନରେ ବିଶ୍ରାମ ନ ନେଇ ସମୟର ଆବଶ୍ୟକତା ଜାଣି ପାରିଥିଲେ ଏବଂ ସବୁଠାରୁ ଦୁର୍ବଳ ମାନଙ୍କ ମଧ୍ୟରେ ଯୀଶୁଙ୍କର ମୁଖକୁ ଦେଖିପାରୁଥିଲେ ।

୨୦୦୬ ମସିହା ଅକ୍ଟୋବର ୧୨ ତାରିଖରେ ଲୁକେମିଆ ରୋଗରେ ଆକ୍ରାନ୍ତ ହୋଇ କାର୍‌ଲୋ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ଏବଂ ତାଙ୍କ ଅନୁରୋଧ କ୍ରମେ ଆସିସିରେ ତାଙ୍କୁ ସମାଧି ଦିଆ ଯାଇଥିଲା । ଅକ୍ଟୋବର ମାସ ୧୦ ତାରିଖ ୨୦୨୦ ମସିହାରେ ଇଟାଲୀର ଆସିସିରେ 'ଇଶ୍ୱରଙ୍କ ସେବକ' ବୋଲି ତାଙ୍କୁ ଘୋଷଣା କରାଗଲା ।

୨୦୧୩ ମସିହାରେ ସାଧୁ ହେବାର ପ୍ରକ୍ରିୟା ଆରମ୍ଭ ହୋଇଥିଲା । ୨୦୧୮ ମସିହାରେ ତାଙ୍କୁ ସମ୍ମାନସ୍ପଦ (Venerable) ବା ସମ୍ମାନ ପାଇବାର ଯୋଗ୍ୟ ବୋଲି ଆଖ୍ୟା ଦିଆଗଲା ।

**କାର୍‌ଲୋଙ୍କ କେତୋଟି ଉକ୍ତି:**

* "ଆମର ଲକ୍ଷ୍ୟ ସସୀମତା ନୁହଁ ଅସୀମତା ହେବା ଉଚିତ । ଆମର ବାସ୍ତବ ଗୃହ ହେଉଛି ଅସୀମତା । ସ୍ୱର୍ଗରେ ରହିବା ପାଇଁ ଆମେ ସର୍ବଦା ଆଶାତୀତ ହେବା" ।
* "ସମସ୍ତେ ଜନ୍ମ ହୁଅନ୍ତି ମୂଳ ରୂପ ନେଇ କିନ୍ତୁ ମରନ୍ତି ଫୋଟ କପି ପରି" । ଦିବ୍ୟପ୍ରସାଦ ସମ୍ବନ୍ଧରେ ସେ କହନ୍ତି, "ସ୍ୱର୍ଗକୁ ଯିବା ପାଇଁ ମୋର ମୁଖ୍ୟ ରାସ୍ତା ହେଲା ଦିବ୍ୟପ୍ରସାଦ" ।
* କାର୍‌ଲୋଙ୍କ ସଂକ୍ଷିପ୍ତ ଜୀବନର ସାରମର୍ମ ଥିଲା "ଯୀଶୁଙ୍କ ସହିତ ବଞ୍ଚିବା, ଯୀଶୁଙ୍କ ପାଇଁ ବଞ୍ଚିବା ଏବଂ ଯୀଶୁଙ୍କଠାରେ ରହିବା" ।
* "ମୁଁ ମରିବା ପାଇଁ ଖୁସୀ କାରଣ ଗୋଟିଏ ମିନିଟ୍ ସୁଦ୍ଧା ଇଶ୍ୱରଙ୍କୁ ସନ୍ତୁଷ୍ଟ ନ କରି ମୋର ସମୟକୁ ବ୍ୟର୍ଥ କରି ନାହିଁ" ।

✸ ସେ କହନ୍ତି, "ଯିଏ ନିଜକୁ ଚାହେଁ ସେ ଦୁଃଖ ପାଏ କିନ୍ତୁ ଯିଏ ଇଶ୍ୱରଙ୍କୁ ଚାହେଁ ସେ ଆନନ୍ଦ ପାଏ" ।

✸ କେବଳ ଗୋଟିଏ ବିଷୟ ଆମ୍ଭେ ପ୍ରଭୁଙ୍କଠାରେ ପ୍ରାର୍ଥନା କରିବା, ତାହା ହେଲା "ପବିତ୍ରତା ହେବାର ଅଭିଳାଷ" ।

✸ ସେ କହନ୍ତି, "ଚକ୍ଷୁର ଚାଳନା ହେଉଛି ପରିବର୍ତ୍ତନ" ।

✸ ସେ କହନ୍ତି, "ହଜାରେ ଯୁଦ୍ଧରେ ଜୟଯୁକ୍ତ ହୋଇ ନିଜର ଆବେଗକୁ (passion) ଯଦି ଆୟତତ୍ତକରି ପାରିବା ନାହିଁ ସେଥିରେ କି ଲାଭ" ?

✸ ସେ କହନ୍ତି, "ଆମର ଶରୀର ଯେ ଇଶ୍ୱରଙ୍କ ଦାନ ଏବଂ ଆମର ଯୌନାଙ୍ଗ ଯେଉଁ ଉଦ୍ଦେଶ୍ୟ ନେଇ ଇଶ୍ୱର ଗଢ଼ିଛନ୍ତି, ତାହାର ଉଦ୍ଦେଶ୍ୟ ସଫଳ ହେବା ଆବଶ୍ୟକ । ପ୍ରତ୍ୟେକ ବ୍ୟକ୍ତିର ପଦମର୍ଯ୍ୟଦା ଅଛି । ଇଶ୍ୱରଙ୍କ ସୃଷ୍ଟିରେ ଯୌନାଙ୍ଗର ବିଶେଷତ୍ୱ ହେଲା ତାଙ୍କର ସୃଷ୍ଟିକୁ ତ୍ୱରାନ୍ୱିତ କରିବା" ।

✸ ସେ କହନ୍ତି, "ଆମର ଆତ୍ମା ଗରମ ବାୟୁରେ ପୂର୍ଣ୍ଣ ଗୋଟିଏ ବେଲୁନ ପରି । ଆତ୍ମାଟି ଭୂମିରେ ପଡ଼େ ଯଦି ତାହା ଗୁରୁତର ପାପ ଦ୍ୱାରା ପ୍ରଭାତିତ ହୁଏ । ଆତ୍ମାଟିକୁ ଉପରକୁ ଉଠିବା ପାଇଁ ବେଲୁନ ଭିତରେ ଯେଉଁ ଅଗ୍ନି ଥାଏ ତାହା ହେଉଛି ପାପ ସ୍ୱୀକାର ସଂସ୍କାର । ଏଣୁ ବାରମ୍ବାର ପାପସ୍ୱୀକାର ସଂସ୍କାର ପାଇଁ ଯିବା ଆବଶ୍ୟକ" ।



## ଆଭିଲାର ସାଧ୍ୱୀ ତେରେସା (୧୫୧୫-୧୫୮୨, ଅକ୍ଟୋବର ୧୫)

ସ୍ପେନ୍ ଦେଶ ଅନ୍ତର୍ଗତ ଆଭିଲା ଗ୍ରାମରେ ତେରେସା ୧୫୧୫ ମସିହା ମାର୍ଚ୍ଚ ମାସ ୨୮ ତାରିଖରେ ଗୋଟିଏ ଧନଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଆଲନସ ଜଣେ ସରଳ ଏବଂ ଉଦାର ସ୍ୱଭାବର ବ୍ୟକ୍ତି ଥିଲେ । ତାଙ୍କ ମାତା ବେଆଟ୍ରିଜଙ୍କ ଆଧ୍ୟାତ୍ମିକ ଜୀବନ ତେରେସାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଆଲ୍‌ନସ୍‌ଙ୍କ ୧୦ଟି ସନ୍ତାନ ମଧ୍ୟରୁ ତେରେସା ଥିଲେ କନିଷ୍ଠ । ସାଧୁ ସାଧ୍ୱୀମାନଙ୍କ ଜୀବନ କାହାଣୀ ପଢି ସେ ପ୍ରଭୁଙ୍କ ସକାଶେ ଜଣେ ଶହୀଦ ହେବା ପାଇଁ ଇଚ୍ଛା କଲେ । ୧୫୨୨ ମସିହାରେ ଯେତେବେଳେ ତାଙ୍କୁ ୭ ବର୍ଷ ହୋଇଥାଏ, ଦିନେ ତାଙ୍କ ଭାଇ ରଡ୍ରିଗୋଙ୍କ ସହିତ ମୁର୍‌ସମାନଙ୍କ ବିରୁଦ୍ଧରେ ଲଢ଼େଇ କରି ଯୀଶୁଙ୍କ ସକାଶେ ଶହୀଦ୍ ହେବା ପାଇଁ ଇଚ୍ଛା କରି ଘରୁ ପଳାଇ ଆସି ଆଫ୍ରିକା ଅଭିମୁଖେ ଯାତ୍ରା କରୁଥିଲେ । ସହରର ଦ୍ୱାର ଦେଶରେ ତାଙ୍କ ମାମୁଁ ତାଙ୍କୁ ବାଧ କରି ଘରକୁ ଫେରେଇ ଆଣିଥିଲେ । ୧୪ ବର୍ଷରୁ ୧୮ ବର୍ଷ ବୟସ ପର୍ଯ୍ୟନ୍ତ ତେରେସା ବିଭିନ୍ନ ସାହସ ପ୍ରଦର୍ଶନ କରିଥିବା ବ୍ୟକ୍ତିମାନଙ୍କ ଜୀବନୀ ପଢ଼ି ସେମାନଙ୍କ ପରି ହେବା ପାଇଁ ଅଭିଳାଷ ପୋଷଣ କରିଥିଲେ । ତେରେସା ଦେଖିବାକୁ ବହୁତ ସୁନ୍ଦର ଏବଂ ମେଳାପୀ ଥିଲେ । ତାଙ୍କର ସ୍ୱାଭାବିକ ଏବଂ ଉତ୍ସାହିତ ବ୍ୟକ୍ତିତ୍ୱ ଦ୍ୱାରା ଅନେକଙ୍କର ବନ୍ଧୁ ହୋଇ ପାରିଥିଲେ । ଏହି ସମୟରେ ସେ ପ୍ରଭୁଙ୍କ କଥା ଚିନ୍ତା କରୁ ନଥିଲେ । ଆଧୁନିକ ପୋଷାକ ପିନ୍ଧି ନାଚ କରିବାକୁ ଏବଂ ସାଙ୍ଗ ସାଥୀଙ୍କ ସହିତ ବୁଲିବାରେ ତାଙ୍କର ଆଗ୍ରହ ଥିଲା । ସୁଗନ୍ଧ ବାସନାର Perfume ମାରି ନିଜ କୋଠରୀକୁ ମହକାଇ ଦେଉଥିଲେ । ୧୫ ବର୍ଷ ବୟସରେ ତେରେସା ନିଜ ମାତାଙ୍କୁ ହରେଇଥିଲେ । ଏହାପରେ ତାଙ୍କ ପିତା ଅଗସ୍ତିଆନ୍ ସିଷ୍ଟରମାନଙ୍କ ଦ୍ୱାରା ପରିଚାଳିତ କନ୍‌ଭେଣ୍ଟ ସ୍କୁଲ୍‌କୁ ଅଧ୍ୟୟନ ପାଇଁ ପଠେଇଥିଲେ । ସ୍କୁଲ୍ ଅଧ୍ୟୟନ ଶେଷ କରିବା ସମୟରେ ତେରେସା ସାଧୁ ଯେରମ୍‌ଙ୍କ ଦ୍ୱାରା ଲିଖିତ ପତ୍ର ପଢ଼ିବାର ସୁଯୋଗ ପାଇଥିଲେ । ଏହାପରେ କେବଳ ଜଣେ ସିଷ୍ଟର୍ ହେବା ପାଇଁ ତାଙ୍କ ମନରେ ଗୋଟିଏ ଦୃଢ଼ତା ଆସିଲା । ତାଙ୍କ ପିତାଙ୍କ ୧୦ଟି ସନ୍ତାନ ସନ୍ତତି ମଧ୍ୟରୁ ତେରେସାଙ୍କୁ ସେ ଅଧିକ ଭଲ ପାଉଥିଲେ । ଏଣୁ ତେରେସାଙ୍କୁ ଜଣେ ସିଷ୍ଟର ହେବା ପାଇଁ ଛାଡ଼ିବାକୁ ତାଙ୍କର

ଇଚ୍ଛା ନଥିଲା । ତଥାପି ତେରେସାଙ୍କ ଆଗ୍ରହ ଜାଣି ସେ ରାଜି ହେବାକୁ ବାଧ୍ୟ ହେଲେ ।

୨୦ବର୍ଷ ବୟସରେ ତେରେସା କାର୍ମେଲ ଆଶ୍ରମର Convent of the Incarnation ରେ ଜଣେ ସିଷ୍ଟେର ହେବା ପାଇଁ ପ୍ରବେଶ କଲେ । ସେହି ସମୟରେ ସେହି କନ୍‌ଭେଣ୍ଟଟି ବାହ୍ୟିକ ଦୃଷ୍ଟିରୁ କନ୍‌ଭେଣ୍ଟ ପରି ଦେଖାଯାଉଥିଲା କିନ୍ତୁ ଭିତରେ ଉଚ୍ଚ ଶ୍ରେଣୀର ନାରୀମାନଙ୍କ ନିମନ୍ତେ ପ୍ରଯୁଜ୍ୟ ଗୋଟିଏ ହୋଟେଲ୍ ପରି ସେମାନେ ରହୁଥିଲେ । କେହି ଠିକ୍‌ରେ ନିୟମ ପାଳନ କରୁ ନଥିଲେ । ସେମାନେ ପ୍ରକୃତରେ ପ୍ରାର୍ଥନା କରୁଥିଲେ କିନ୍ତୁ ଅଧିକାଂଶ ସମୟ ଅନ୍ୟମାନଙ୍କ ବିଷୟରେ ସମାଲୋଚନା କରୁଥିଲେ, ଅତିଥିମାନଙ୍କୁ ପାରଲରରେ ନେଇ ଆମୋଦ ପ୍ରମୋଦ କରୁଥିଲେ ଏବଂ ସାଙ୍ଗ ସାଥିମାନଙ୍କ ସହିତ ବାହାରକୁ ଛୁଟିରେ ବୁଲି ଯାଉଥିଲେ । ସାଜସଜ୍ଜାରେ ବହୁତ ସମୟ ନେଉଥିଲେ ଏବଂ ଅଳଙ୍କାର ପିନ୍ଧି ପାର୍ଟିକୁ ଯାଉଥିଲେ । ତେରେସାଙ୍କୁ ଯଦିଓ ନାଚିବା, ଗୀତ ଗାଇବା ଏବଂ ହସିବା ତଥା ଅନ୍ୟମାନଙ୍କୁ ଖୁସି କରିବାର ସ୍ୱଭାବ ଥିଲା, ତଥାପି କନ୍‌ଭେଣ୍ଟରେ ସିଷ୍ଟରମାନେ ଯେଉଁ ଭାବରେ ଜୀବନ ବିତାଉଛନ୍ତି ତାହା ନିରୀକ୍ଷଣ କଲା ପରେ ସେ ଦ୍ୱନ୍ଦରେ ପଡ଼ିଲେ । ପ୍ରାୟ ୧୮ ବର୍ଷ ପ୍ରାର୍ଥନା ଜୀବନ ମଧ୍ୟରେ ବହୁତ କିଛି ସେ ପ୍ରାର୍ଥନାରେ ଆଗକୁ ବଢ଼ି ପାରୁ ନଥିଲେ । ଦିନେ ପ୍ରାର୍ଥନା କରିବା ସମୟରେ ଯୀଶୁଙ୍କର କ୍ରୁଶବିଦ୍ଧ ଛବିଟି ଉପରେ ତେରେସାଙ୍କ ଦୃଷ୍ଟି ପଡ଼ିଲା । ସେହି ଛବି ଉପରେ ଧ୍ୟାନ କରିବା ସମୟରେ ଯୀଶୁଙ୍କୁ ଗଭୀର ଭାବରେ ପ୍ରେମ କରିବା ପାଇଁ ପ୍ରେରଣା ଆସିଲା । ସେ ଜାଣିପାରିଲେ ଯେ, ପ୍ରଭୁ ତାଙ୍କୁ ଏହା ଦ୍ୱାରା ବିଶେଷ ଅନୁଗ୍ରହ ଦେଇଛନ୍ତି । ସେହି ସମୟରୁ ତେରେସାଙ୍କୁ ପ୍ରାର୍ଥନା କରିବାକୁ ସହଜ ଲାଗିଲା ।

ପରବର୍ତ୍ତି ସମୟରୁ ତେରେସା ଦୁଇ ଜଣ ସାଧୁ ବ୍ୟକ୍ତିଙ୍କଠାରୁ ଆଧ୍ୟାତ୍ମିକ ଦିଗରେ ଯଥେଷ୍ଟ ପ୍ରେରଣା ପାଇଥିଲେ । ସେମାନେ ହେଲେ ସାଧୁ ଫ୍ରାନ୍‌ସିସ୍ ବରଜିଆ ଏବଂ ସାଧୁ ପିତର ଆଲାକାନ୍ତାରା । ପ୍ରଭୁଙ୍କଠାରୁ ସେ ଦର୍ଶନ ପାଇବାର ବରଦାନ ପାଇଲେ । ସେହି ସମୟରୁ ସେ ଅନୁଭବ କଲେ ଯେ ତାଙ୍କୁ କାର୍ମେଲ ସଂଘରେ ନବୀକରଣ ଆଣିବାକୁ ପଡ଼ିବ । ସେହି କନ୍‌ଭେଣ୍ଟ ଜୀବନ ପ୍ରଣାଳୀ

ତାଙ୍କୁ ପ୍ରାର୍ଥନାରେ ସାହାଯ୍ୟ କଲାନାହିଁ । ତାଙ୍କ ବନ୍ଧୁମାନଙ୍କ ସହାୟତାରେ ସେହି କାର୍ମେଲ ସଂଘ ଠାରୁ ଭିନ୍ନ ହୋଇ ନୂତନ ସଂଘ ଆରମ୍ଭ କରିବା ପାଇଁ ପୁଣ୍ୟପିତାଙ୍କୁ ଅନୁମତି ମାଗିଲେ । ଯେଉଁ ସଂଘ ସେ ଆରମ୍ଭ କଲେ, ସେହି ସଂଘକୁ Discalced Carmelite ନାମ ରଖିଲେ କାରଣ ସେମାନେ ମୋଜା ବା Shoe ପିନ୍ଧିବା ବଦଳରେ କେବଳ ଜୋତା Sandal ପିନ୍ଧିବେ । କାର୍ମେଲ ସଂଘଠାରୁ ଅଧିକ ଭାବରେ ନିୟମକାନୁନ୍ ପାଳନ କରିବେ । ଦରିଦ୍ର ଜୀବନ ଯାପନ କରିବେ । ଦରିଦ୍ର ଜୀବନର ଅର୍ଥ ନୁହେଁ ଯେ, ସେମାନେ ଆତ୍ମାରେ ମାନ୍ଦା ହୋଇ ରହିବେ । ତେରେସା କହୁଥିଲେ, 'ନାଚ କରିବା ପାଇଁ ଜୋତାର ଆବଶ୍ୟକ ନାହିଁ' । ୧୩ଜଣ ନାରୀମାନେ ଏକତ୍ର ହୋଇ ସାଧୁ ଯୋସେଫଙ୍କ ନାମରେ ଗୋଟିଏ ନୂତନ Convent ଖୋଲିଲେ । ସେମାନେ ଯୀଶୁଙ୍କ ପ୍ରେମ ସକାଶେ ଦରିଦ୍ର ଜୀବନ ଯାପନ କରିବା ପାଇଁ ସ୍ଥିର କଲେ, ଯେପରି ନଡ଼ା ତିଆରି ଗଦିରେ ଶୋଇବେ ଏବଂ ମାଂସ ତ୍ୟାଗ କରିବେ । କୌଣସି ଅତିଥିମାନଙ୍କୁ ଆମୋଦ ନ କରି ନିଜର ପରିଶ୍ରମରେ ଯାହା ରୋଜଗାର କରିବେ, ସେଥିରେ ଚଳିବେ । ଏହି ସମୟରେ ତେରେସା, କ୍ରୁଶର ସାଧୁ ଯୋହନ John of the Cross ସଂସ୍ପର୍ଶରେ ଆସିଲେ ଓ କାର୍ମେଲ ସଂଘର ସିଷ୍ଟେର ତେରେସାଙ୍କୁ ଅନୁରୋଧ କଲେ ଓ ତାଙ୍କ ସିଷ୍ଟେର୍‌ମାନଙ୍କୁ ତାଲିମ ଦେବା ପାଇଁ ନୂତନ Convent ଖୋଲିବା ପାଇଁ ବିଭିନ୍ନ ଦେଶକୁ ଯାଇ ରାଜାମାନଙ୍କ ସହିତ ସାକ୍ଷାତ କଲେ । ଦିନେ ତେରେସା ଟଣା ଗାଡ଼ି Carriage ରେ ଯାତ୍ରା କରିବା ସମୟରେ କାଦୁଅରେ ଲାଗି ଗାଡ଼ିଟି ଆଗକୁ ବଢ଼ି ପାରିଲା ନାହିଁ ଏବଂ ସେ ଅନ୍ୟ ଆଡ଼େ କଚାଡ଼ି ହୋଇ ତଳେ ପଡ଼ିଗଲେ । ତେରେସା ପ୍ରଭୁଙ୍କୁ ଅଭିଯୋଗ କରି କହିଲେ, କାହିଁକି ସେ ତାଙ୍କ ପାଇଁ କାର୍ଯ୍ୟ କରିବା ବ୍ୟକ୍ତିମାନଙ୍କୁ ଏହିପରି ବ୍ୟବହାର କରୁଛନ୍ତି ? ପ୍ରଭୁ ତାଙ୍କୁ ଉତ୍ତର ଦେଲେ ଯେଉଁମାନେ ମୋର ବନ୍ଧୁ ସେମାନଙ୍କୁ ମୁଁ ଏହିପରି ହିଁ ବ୍ୟବହାର କରିଥାଏ । ତେରେସା ଉତ୍ତର ଦେଲେ ଯଦି ତୁମର ଏ ପ୍ରକାର ବ୍ୟବହାର ମୁଁ ଜାଣିପାରୁଛି, କାହିଁକି ତୁମର ଏତେ କମ୍ ବନ୍ଧୁ ଅଛନ୍ତି ?

ତେରେସାଙ୍କ ଲେଖା ବହୁତ ହୃଦୟସ୍ପର୍ଶୀ ଥିଲା । ତାଙ୍କ ଅନେକ ଲେଖା ମଧ୍ୟରୁ ନିମ୍ନଲିଖିତ ପୁସ୍ତକ ଆଧ୍ୟାତ୍ମିକ ଦିଗରେ ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ

ହୋଇପାରିଛି । ୧୫୬୬ ମସିହାରେ ସେ ଲେଖିଲେ Camino de perfection ପୂର୍ଣ୍ଣତାର ମାର୍ଗ ଯେଉଁ ମାଧ୍ୟମରେ ଜଣେ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବ ।

୧୫୮୦ରେ ତାଙ୍କର ସବୁଠାରୁ ମହତ ଲେଖା ପ୍ରକାଶିତ ହେଲା, ତାହା ଥିଲା Castillo Interior (Las Moradae) ଅନ୍ତର୍ନିହିତ ଦୁର୍ଗ / ପ୍ରସାଦ । ଏହି ପୁସ୍ତକରେ ତେରେସା ଆଧ୍ୟାତ୍ମିକ ଜୀବନର ପ୍ରଗତି କିପରି ବିଭିନ୍ନ ପର୍ଯ୍ୟାୟରେ ହୁଏ ଏବଂ ପ୍ରାର୍ଥନାର ପୂର୍ଣ୍ଣ ମାତ୍ରାରେ ଜଣେ ପହଞ୍ଚିପାରେ ସେହି ବିଷୟରେ ଉଲ୍ଲେଖ କରାଯାଇଛି ।

୧୫୭୩ ରୁ ୧୫୮୨ ମଧ୍ୟରେ ସେ ଲେଖିଲେ Las Foundaciones ସଂଘର ମୂଳଦୁଆ ଯେପରି ନିଜ ସଂଘର ପ୍ରଥମ ଇତିହାସ ସେମାନେ ଜାଣିପାରିବେ । ତେରେସାଙ୍କ ସବୁଠାରୁ ପ୍ରସିଦ୍ଧ ପଦ୍ୟ ହେଲା,

'ଈଶ୍ୱର କେବଳ ଯଥେଷ୍ଟ ।
କୌଣସି ବିଷୟ ତୁମକୁ ଉଦ୍‌ବିଗ୍ନ ନ କରାଉ ।
କୌଣସି ବିଷୟ ତୁମକୁ ଆଶ୍ଚର୍ଯ୍ୟ ନ କରାଉ ।
ସବୁ କିଛି ଅତିକ୍ରାନ୍ତ ହେବ, କିନ୍ତୁ ଈଶ୍ୱର ଅପରିବର୍ତ୍ତନୀୟ ।
ସବୁଥିରେ ଧୈର୍ଯ୍ୟ ଜୟଯୁକ୍ତ ହୁଏ' ।

ଯାହାଙ୍କଠାରେ ଈଶ୍ୱର ଅଛନ୍ତି ତାର କିଛି ଅଭାବ ନାହିଁ । ଈଶ୍ୱର କେବଳ ଯଥେଷ୍ଟ ।

୧୯୭୦ ମସିହାରେ ତାଙ୍କୁ ମଣ୍ଡଳୀର ପଣ୍ଡିତ ବୋଲି ଘୋଷଣା କରାଗଲା । ପ୍ରାର୍ଥନା ବିଷୟରେ ସେ ଲେଖିଛନ୍ତି ଯେଉଁମାନେ କେବେ ପ୍ରାର୍ଥନା (ନିୟମିତ ବା ପ୍ରତିଦିନ) କରି ନାହାନ୍ତି, ମୁଁ ସେମାନଙ୍କୁ ପ୍ରଭୁଙ୍କର ପ୍ରେମ ସକାଶେ ଅନୁରୋଧ କରେ ଯେ ସେମାନେ ଏହିପରି ଏକ ମହତ୍ ଆଶୀର୍ବାଦକୁ କେବେହେଲେ ନ ହରାନ୍ତୁ । ଏହି କନ୍‌ଭେଣ୍ଟରେ ଭୟ ପାଇଁ ସ୍ଥାନ ନାହିଁ ଅଛି କେବଳ ସ୍ଥାନ, ଇଚ୍ଛା ପାଇଁ ।

'ପ୍ରାର୍ଥନା ପ୍ରେମର କାର୍ଯ୍ୟ ଅଟେ । ଏଣୁ ବାକ୍ୟର ଆବଶ୍ୟକତା ନୁହଁ ଯଦିଓ ଆମର ଭାବନା ଅସୁସ୍ଥତା ଦ୍ୱାରା ପ୍ରତିବନ୍ଧକ ହୁଏ, ତଥାପି ପ୍ରେମ କରିବାର ଇଚ୍ଛା ସବୁଠାରୁ ଅତ୍ୟାବଶ୍ୟକ' ।

ତେରେସା ବୁଝିପାରୁ ନଥିଲେ, କିପରି ଜଣେ ବିନା ଆନନ୍ଦରେ ରହିପାରିବ । ସେ ପ୍ରଭୁଙ୍କୁ କହୁଥାନ୍ତି, ହେ ପ୍ରଭୁ, ମୋତେ ଆମ୍ବିଳା ମୁଖ ସାଧୁମାନଙ୍କଠାରୁ ରକ୍ଷା କର ।

ତେରେସାଙ୍କ ଅନୁଯାୟୀ ମାନସିକ ପ୍ରାର୍ଥନା ହେଲା, ବନ୍ଧୁମାନଙ୍କ ମଧ୍ୟରେ ଆତ୍ମୀୟତା ସହ ଆଦାନ ପ୍ରଦାନ । ଏହାର ଅର୍ଥ ହେଲା, ଆମ୍ଭେ ଜାଣୁ ଯିଏ ଆମକୁ ଭଲ ପାଆନ୍ତି ତାଙ୍କଠାରେ ଅଧିକାଂଶ ସମୟ ଏକତ୍ର ବିତାଇବା । ସବୁଠାରୁ ମୁଖ୍ୟ ବିଷୟ ହେଲା ଅଧିକ ଭାବନା ନ କରି ଅଧିକ ପ୍ରେମ କରିବା ଏବଂ ପ୍ରେମ କରିବା ପାଇଁ ଯାହା ପ୍ରବର୍ତ୍ତାଇବ ତାହା କରିବା ।

ଆଧ୍ୟାତ୍ମିକ ଜୀବନ ତାଙ୍କ ପାଇଁ ଗୋଟିଏ ନିୟମ ନ ଥିଲା, କିନ୍ତୁ ପ୍ରେମର ଭାବ । ଯଦିଓ ସେ ଦାରିଦ୍ର୍ୟ ଜୀବନ ବିତେଇବା ପାଇଁ ଶିକ୍ଷା ଦେଉଥିଲେ, ତଥାପି ସେ ଅନ୍ୟଠାରୁ ଭିକ୍ଷା ନ ମାଗି କାମ କରିବାରେ ବିଶ୍ୱାସ କରୁଥିଲେ । ପ୍ରାୟଶ୍ଚିତ ଅପେକ୍ଷା ଈଶ୍ୱରଙ୍କ ପ୍ରତି ଆଜ୍ଞାବହତା ଉପରେ ଅଧିକ ବିଶ୍ୱାସ କରୁଥିଲେ । ଯଦି କେହି କିଛି ଭୁଲ୍ କରନ୍ତି, ତେବେ ଦଣ୍ଡ ଦେବା ପରିବର୍ତ୍ତେ, ପରିବର୍ତ୍ତନ ହେବା ସବୁଠାରୁ ମୁଖ୍ୟ ବିଷୟ ବୋଲି ସେ ଭାବୁଥିଲେ । ଯଦି କେହି depression ଅତ୍ୟଧିକ ଦୁଃଖ ଅନୁଭବ କରୁଥିଲେ, ସେମାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ଖୋଲା ଆକାଶକୁ ଚାହିଁବା ପାଇଁ କହୁଥିଲେ । ତେରେସା ଭଲ ଖାଇବାରେ ଆନନ୍ଦ ଉପଭୋଗ କରୁଥିଲେ । ଦିନେ ଖାଇବା ସମୟରେ ଜଣେ Visitor ତେରେସାଙ୍କୁ ଦେଖି ବିଶ୍ୱାସ କରିପାରିଲେ ନାହିଁ ଯେ, କିପରି ସାଧୁ ଲୋକମାନେ ଭଲ ଖାଦ୍ୟ ଖାଉଛନ୍ତି, ସେ ଭାବୁଥିଲେ ସେମାନେ କେବଳ ରୋଟି ଓ ଜଳ ଖାଇ ବଞ୍ଚନ୍ତି । ଖାଉଥିବା ଅଙ୍ଗୁଳିକୁ ଚାଟି ରୁମାଲ୍‌ରେ ପୋଛି ତେରେସା କହିଲେ ଲୋକମାନେ ଯାହା ଭାବନ୍ତୁ ନା କାହିଁକି ବର୍ତ୍ତମାନ ଆମ ପାଇଁ ମାଂସ ଖାଇବା ସମୟ । ସମୟ ଅଛି, ପରେଇ୍ ଖାଇବା ପାଇଁ ଏବଂ ପ୍ରାୟଶ୍ଚିତ କରିବା ପାଇଁ । ପୁଣ୍ୟପିତା ଗ୍ରେଗରୀ ଷୋଡ଼ଶ ୧୬୨୨ ମସିହାରେ ତାଙ୍କୁ ସାଧ୍ୱୀରୂପେ ଘୋଷଣା କଲେ । ୧୫୮୨ ମସିହା ଅକ୍ଟୋବର ୪ (ଜୁଲିଆନ୍ କ୍ୟାଲେଣ୍ଡର ଅନୁଯାୟୀ) ଏବଂ (ଗ୍ରେଗରୀ କ୍ୟାଲେଣ୍ଡରରେ ଅକ୍ଟୋବର ୧୫) ତାରିଖରେ ସେ ମୃତ୍ୟୁବରଣ କଲେ । ୧୯୭୦ ମସିହାର ପୁଣ୍ୟପିତା ଷଷ୍ଠ ପାଉଲ୍ ତାଙ୍କୁ ମଣ୍ଡଳୀର ପଣ୍ଡିତ ବୋଲି ଆଖ୍ୟା ଦେଲେ ।

✸ "ଯାହା କିଛି ଆସୁ ନା କାହିଁକି ଯେଉଁଠି ସାହସ ଅଛି ସେଥିରେ ସବୁକିଛି ଅଛି"।

✸ "ଯଦି ମୋତେ ଉପଦେଶ ଦେବାକୁ କୁହାଯାଏ, ତେବେ ପ୍ରଥମେ ପିତାମାତାଙ୍କୁ କହିବି ଯେ ସେମାନେ ସାବଧାନ ହେବା ଉଚିତ କେଉଁମାନଙ୍କ ସହ ସେମାନଙ୍କ ପିଲାମାନେ ଯୌବନ ଅବସ୍ଥାରେ ମିଳାମିଶା ବା ସାଙ୍ଗ ହୁଅନ୍ତି, କାରଣ ଅଧିକାଂଶ ଭୂଲ୍ ସେହି ସମୟରେ ଘଟିଥାଏ ଏବଂ ଭଲ ଅପେକ୍ଷା ମନ୍ଦ କରିବାର ପ୍ରବୃତ୍ତି ଅତି ସହଜରେ ଆସିଥାଏ" ।

✸ "ମାନସିକ ପ୍ରାର୍ଥନା ମୋ ମତରେ ଦୁଇଜଣ ବନ୍ଧୁଙ୍କ ମଧ୍ୟରେ ଘନିଷ୍ଠ ଭାବେ ଜଡ଼ିତ ହୋଇ ସବୁକିଛି ପ୍ରକାଶ କରିବା । ଏହାର ଅର୍ଥ ତାହାଙ୍କ ସହିତ ଏକାକୀ ଅଧିକାଂଶ ସମୟ ବିନିଯୋଗ କରିବା ଯିଏ ଆମକୁ ଭଲ ପାଆନ୍ତି ବୋଲି ଆମେ ଜାଣୁ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ଅଧିକ ଭାବିବା ଅପେକ୍ଷା ଅଧିକ ପ୍ରେମ କରିବା ପୁଣି ଯାହା ପ୍ରେମକୁ ଉଦ୍ଦୀପୀତ କରିବ ତାହା କରିବା । ପ୍ରେମ ମହା ଆନନ୍ଦ ନୁହେଁ କିନ୍ତୁ ଇଶ୍ୱରଙ୍କୁ ସବୁଥିରେ ସନ୍ତୁଷ୍ଟ କରିବାର ଅଭିଳାଷ" ।

✸✸✸

# ସାଧ୍ୱୀ ମାର୍ଗାରେଟ ମେରୀ ଆଲାକୋକ
# (୧୬୪୭-୧୬୯୦, ଅକ୍ଟୋବର ୧୬)

୧୬୪୭ ମସିହା ଜୁଲାଇ ୨୨ ତାରିଖ ଦିନ ଫ୍ରାନ୍ସ ଦେଶର ବୁରଗୁଣ୍ଡି ଅଞ୍ଚଳର ଲାହାତୁଟେକୋର ଗ୍ରାମରେ ମାର୍ଗାରେଟ ଜନ୍ମ ଗ୍ରହଣ କରିଥିଲେ । ପିତା କ୍ଲାଉଦେ ଆଲାକୋକ୍ ଓ ମାତା ଫିଲିବେଟେ ଲାମିନଙ୍କ ଅନେକ ସନ୍ତାନ ମଧ୍ୟରୁ ମାର୍ଗାରେଟ ଥିଲେ କେବଳ ଜଣେ ଝିଅ । ବାଲ୍ୟକାଳରୁ ଦିବ୍ୟ ମଞ୍ଜୁଷା ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ଆଠ ବର୍ଷ ବୟସରେ ସେ ନିଜ ପିତାଙ୍କୁ ହରାଇଥିଲେ । ଏହା ପରେ ଚାରଲେସରେ ଥିବା କ୍ଲେର ସ୍କୁଲରେ ସେ ନିଜ ନାମ ଲେଖାଇ ଥିଲେ । 'ନ' ବର୍ଷ ବୟସରେ ପ୍ରଥମ ଥର ଦିବ୍ୟପ୍ରସାଦ ସଂସ୍କାର ଗ୍ରହଣ କଲାପରେ ଗୁପ୍ତରେ ସେ ପ୍ରାର୍ଥନା କରୁଥିଲେ ଏବଂ କଠୋର ଶାରିରୀକ ପ୍ରାୟଶ୍ଚିତ କରୁଥିଲେ । କଠୋର ଶାରିରୀକ ପ୍ରାୟଶ୍ଚିତ ଦ୍ୱାରା ତାଙ୍କ ଶରୀର ଦୁର୍ବଳ ହେବାକୁ ଲାଗିଲା ଏବଂ ସେ ଜ୍ୱର ଅନୁଭବ କଲେ ଓ ଗଣ୍ଠିଗୁଡିକ ଫୁଲିବାକୁ ଲାଗିଲା, ଯାହାରି ଫଳରେ ତାଙ୍କୁ ଚାରିବର୍ଷ ପର୍ଯ୍ୟନ୍ତ ଖଟରେ ପଡ଼ି ରହିବାକୁ ପଡ଼ିଥିଲା । ଏହି ସମୟରେ ଧନ୍ୟା କୁମାରୀ ମାରୀୟାଙ୍କଠାରେ ନିଜକୁ ଉତ୍ସର୍ଗ କରି ସେ ପ୍ରତିଜ୍ଞା କଲେ ଯେ ଯଦି ପ୍ରଭୁ ତାଙ୍କୁ ସୁସ୍ଥ କରନ୍ତି, ତେବେ ପ୍ରଭୁଙ୍କ ପାଇଁ ସାରା ଜୀବନ ସେ ସନ୍ନ୍ୟାସିନୀ ହୋଇ ରହିବେ । ପ୍ରଭୁ ତାଙ୍କୁ ସେହିକ୍ଷଣି ସୁସ୍ଥତା ପ୍ରଦାନ କଲେ । ପ୍ରଭୁଙ୍କର ଏହି ଅନୁଗ୍ରହ ସ୍ମରଣ କରି ତାଙ୍କର ଦୀକ୍ଷାସ୍ନାନ ନାମ ମାର୍ଗାରେଟ ମାରୀୟା ନାମ ଯୋଗ କଲେ । ବିବାହ ହେବାକୁ ସେ ମନା କରିଦେଲେ ଏବଂ ୧୬୭୧ ମସିହାରେ ପାରାୟେଲ ମୋନିଆଲ୍ ଠାରେ ଅବସ୍ଥିତ ଭିଜିଟେସନ କନ୍‌ଭେଣ୍ଟରେ ଜଣେ ସିଷ୍ଟେର ହେବା ପାଇଁ ଯୋଗଦେଲେ । ନିଜ ଆହ୍ୱାନର ସତ୍ୟତାକୁ ପ୍ରମାଣ କରିବାକୁ ଯାଇ ତାଙ୍କୁ ବିଭିନ୍ନ ପ୍ରକାରର ପରୀକ୍ଷାର ସମ୍ମୁଖିନ ହେବାକୁ ପଡ଼ିଥିଲା । ୧୬୭୧ ମସିହା ଅଗଷ୍ଟ ୨୫ ତାରିଖ ଦିନ ତାଙ୍କୁ ସଂଘରେ ଧାର୍ମିକ ବସ୍ତ୍ର ପରିଧାନ ନିମନ୍ତେ ଅନୁମତି ଦିଆଗଲା କିନ୍ତୁ ବ୍ରତ ନେଇ ପାରି ନ ଥିଲେ, ଏଣୁ ତାଙ୍କୁ ବହୁତ ଦୁଃଖ ଲାଗିଲା ।

୧୬୭୩ ମସିହା ଡିସେମ୍ବର ୨୭ ତାରିଖ ଦିନଠାରୁ ପ୍ରାୟ ଗୋଟିଏ ବର୍ଷରୁ ଅଧିକ ମାରୀୟାଙ୍କ ସେ ଦର୍ଶନ ପାଇଥିଲେ । ସେହି ଦର୍ଶନ ଗୁଡ଼ିକରେ ଯୀଶୁ ତାଙ୍କୁ ଜଣାଇଲେ ଯେ ଦିବ୍ୟ ହୃଦୟ ପ୍ରତି ଭକ୍ତି ଜାଗରଣ  କରିବା ପାଇଁ ପ୍ରଭୁ ତାଙ୍କୁ

ମନୋନୀତ କରିଛନ୍ତି । କେଉଁ ଭାବରେ ଦିବ୍ୟପ୍ରସାଦ ଭକ୍ତି ପ୍ରଦର୍ଶନ କରାଯିବ, ତାହା ମଧ୍ୟ ଯୀଶୁ ଦର୍ଶନରେ ତାଙ୍କୁ ପ୍ରକାଶ କରିଥିଲେ । ପ୍ରତି ମାସର ପ୍ରଥମ ଶୁକ୍ରବାର ଦିନ ପାପସ୍ୱୀକାର କରି ଦିବ୍ୟପ୍ରସାଦ ଗ୍ରହଣ କରି ଯୀଶୁଙ୍କ ସହିତ ରହିବା, ପୁଣି ପୂର୍ବ ଦିନ ଅର୍ଥାତ ଗୁରୁବାର ସଂଧ୍ୟା ସମୟରେ ଆରାଧନାରେ କିଛି ସମୟ ବିତାଇବା ପାଇଁ ପ୍ରଭୁ ଯୀଶୁ ମାର୍ଗାରେତାଙ୍କୁ ନିର୍ଦ୍ଦେଶ ଦେଲେ । ପ୍ରତି ଗୁରୁବାର ସଂଧ୍ୟା ସମୟରେ ଗୋଟିଏ ଘଣ୍ଟା ଗେଥ୍ସେମାନି ଉଦ୍ୟାନରେ ଯୀଶୁ ପ୍ରାର୍ଥନା କରୁଥିବା ଦୃଶ୍ୟଟିକୁ ଧ୍ୟାନ କରିବା ପାଇଁ ଯୀଶୁ ମାର୍ଗାରେତାଙ୍କୁ କହିଥିଲେ । ଦିବ୍ୟ ହୃଦୟ ପର୍ବ ଦିନ ମଧ୍ୟ ସେହି ପ୍ରକାରେ ପ୍ରାର୍ଥନା କରିବା ପାଇଁ ମାର୍ଗାରେତ ସନ୍ଦେଶ ପାଇଥିଲେ । ଦର୍ଶନରେ ମାର୍ଗାରେତା ଯେଉଁ ନିର୍ଦ୍ଦେଶ ପାଇଥିଲେ ତାହା କାର୍ଯ୍ୟକାରୀ କରିବା ପାଇଁ ସୁଯୋଗ ସେ ପାଇଲେ ନାହିଁ । ଦର୍ଶନର ସତ୍ୟତା ନିଜର ଅଧିକାରୀଙ୍କ ନିକଟରେ ପ୍ରକାଶ କରିଥିଲେ । ତାଙ୍କ କନ୍‌ଭେଣ୍ଟର ଅଧିକାରୀ ସିଷ୍ଟେର ସେହି ବିଷୟକୁ ଅନ୍ୟ ସିଷ୍ଟେରମାନଙ୍କୁ ଦୃଢ଼ତାର ସହ ପ୍ରକାଶ କରିଥିଲେ ମଧ୍ୟ କେହି ବିଶ୍ୱାସ କରି ନ ଥିଲେ । ମାର୍ଗାରେତାଙ୍କ ଦର୍ଶନର ସତ୍ୟତାକୁ କେତେକ ଧର୍ମତତ୍ତ୍ୱବିତମାନେ ମଧ୍ୟ ସହଜରେ ବିଶ୍ୱାସ କରି ପାରି ନ ଥିଲେ ।

ଶେଷରେ ତାଙ୍କର ଆଧ୍ୟାତ୍ମିକ ପିତା, ଯୀଶୁ ସଂଘର ଯାଜକ, କ୍ଲାଉଦେ ଡି ଲା କଲମ୍ବିଏରେଙ୍କ ନିକଟରେ ମାର୍ଗାରେତା ସବୁକିଛି ପ୍ରକାଶ କରିଥିଲେ । ଯାଜକ କ୍ଲାଉଦେ ବିଶ୍ୱାସ କଲେ ଯେ ମାର୍ଗାରେତାଙ୍କ ଦର୍ଶନରେ କିଛି ସତ୍ୟତା ଅଛି । ନିଜ ସଂଘର ସଦସ୍ୟମାନେ ଯଦିଓ ତାଙ୍କୁ ବିରୋଧ କରିଥିଲେ, ତଥାପି ଯେତେବେଳେ ସିଷ୍ଟେର ମେଲିନ୍ ଅଧିକାରୀ ରୂପେ ନିଯୁକ୍ତି ପାଇଲେ ସମସ୍ତ ବିବାଦ ସମାପ୍ତ ହେଲା । ସିଷ୍ଟେର ମେଲିନ୍ ମାର୍ଗାରେତାଙ୍କୁ ନିଜ ପାଖରେ ସହକରୀ ସିଷ୍ଟେର ରୂପେ ନିଯୁକ୍ତି ଦେଇଥିଲେ । କିଛି ବର୍ଷ ପରେ ନଭିସମାନଙ୍କ ଆଶ୍ରମରେ ସେ ଦିବ୍ୟହୃଦୟ ପର୍ବ ଘରୋଇ ଭାବେ ପାଳନ କରିଥିଲେ । ଦୁଇ ବର୍ଷ ପରେ ପାରାୟେଲେ ମାନିଆଲ୍‌ଠାରେ ଦିବ୍ୟହୃଦୟ ଯୀଶୁଙ୍କୁ ଭକ୍ତି ପ୍ରଦର୍ଶନ କରିବା ସକାଶେ ଗୋଟିଏ ଦେବାଳୟ ନିର୍ମାଣ କରାଯାଇଥିଲା ।

୧୬୯୦ ମସିହା ଅକ୍ଟୋବର ମାସ ୧୭ ତାରିଖ ଦିନ ପରାୟେଲେ ମୋନିଆଲ୍‌ରେ ମାର୍ଗାରେତା ମୃତ୍ୟୁ ବରଣ କରିଥିଲେ । ୧୭୬୫ ମସିହାରେ

ଅର୍ଥାତ ତାଙ୍କର ମୃତ୍ୟୁର ୭୫ ବର୍ଷ ପରେ ପୂଣ୍ୟପିତା ତ୍ରୟୋଦଶ କ୍ଲେମନ୍ତ 'ଦିବ୍ୟ ହୃଦୟ ପ୍ରତି ଭକ୍ତି' ପର୍ବ ଆନୁଷ୍ଠାନିକ ଭାବେ ଘୋଷଣା କରିଥିଲେ । ସାଧୁ ୟୁଦେସ ଓ ଧନ୍ୟ କ୍ଲାଉଦେ ଲା କୋଲମବିଏରେଙ୍କୁ ଦିବ୍ୟ ହୃଦୟର ସାଧୁ ବୋଲି କହନ୍ତି ।

୧୮୩୦ ମସିହା ଜୁଲାଇ ମାସରେ ତାଙ୍କ ସମାଧି ଖୋଲାଯିବା ସମୟରେ ଦୁଇଟି ଆଶ୍ଚର୍ଯ୍ୟକର୍ମ ଘଟିଥିଲା । ଯେଉଁ ସ୍ଥାନରେ ମାର୍ଗାରେତା ଦର୍ଶନ ପାଇଥିଲେ, ତାରି ଉପରେ ଗୋଟିଏ ଦେବାଳୟ ନିର୍ମାଣ କରାଯାଇଛି । ମୂଖ୍ୟ ଦେବାଳୟ ପାର୍ଶ୍ୱରେ ଥିବା ବେଦୀ ଉପରେ ତାଙ୍କର ଶରୀର ରଖାଯାଇଛି, ଯାହା ଆଜି ପର୍ଯ୍ୟନ୍ତ ଅକ୍ଷୟ ଅବସ୍ଥାରେ ଅଛି ।

ବିଶ୍ୱର ବିଭିନ୍ନ ସ୍ଥାନରୁ ତୀର୍ଥଯାତ୍ରୀମାନେ ଏହି ସ୍ଥାନକୁ ଆସି ମହାନ ଆଶୀର୍ବାଦମାନ ପାଇଛନ୍ତି । ମାର୍ଗାରେତା ଆଲାକୋକଙ୍କ ଶିକ୍ଷା, ଆଦର୍ଶ ଜୀବନ, ଆଧ୍ୟାତ୍ମିକ ମାର୍ଗ ବିଶେଷ ଭାବରେ ଦିବ୍ୟ ହୃଦୟ ପ୍ରତି ତାଙ୍କର ଯେଉଁ ଗଭୀର ଭକ୍ତି ଥିଲା ସେଗୁଡିକୁ ପୁଙ୍ଖାନୁପୁଙ୍ଖ ପରୀକ୍ଷା କରି ମଣ୍ଡଳୀ ତାଙ୍କୁ 'ଇଶ୍ୱରଙ୍କ ସେବିକା ପଦକୁ ଉନ୍ନିତ କରିଥିଲା । ପୂଣ୍ୟପିତା ପଞ୍ଚଦଶ ବେନେଦିକ୍ତ ୧୯୨୦ ମସିହାରେ ତାଙ୍କୁ ସାଧ୍ୱୀ ରୂପେ ଘୋଷଣା କରିଥିଲେ ।

୧୯୨୮ (May 8) ମସିହାରେ ପୂଣ୍ୟପିତା ଏକାଦଶ ପୀୟୁସ ତାଙ୍କର ପ୍ରଚାର ପାଇଁ ଉଦ୍ଦିଷ୍ଟ ପତ୍ରରେ (encyclical) Miserentissimus Redemptor ("ମହା ଦୟାମୟ ତ୍ରାଣକର୍ତା") ମାର୍ଗାରେତା ମେରୀଙ୍କ ଦର୍ଶନକୁ ଆନୁଷ୍ଠାନିକ ଭାବେ ମଣ୍ଡଳୀର ସମର୍ଥନ ଜଣାଇ କହିଥିଲେ, "ପ୍ରଭୁ ଯୀଶୁ ନିଜେ ମାର୍ଗାରେତା ମାରୀୟାଙ୍କୁ ଦର୍ଶନ ଦେଇ କହିଛନ୍ତି ଯେ, ଯେଉଁମାନେ ଦିବ୍ୟ ହୃଦୟ ପ୍ରତି ବିଶ୍ୱାସର ସହ ସମ୍ମାନ ପ୍ରଦର୍ଶନ କରନ୍ତି ସେମାନେ ପ୍ରଚୁର ସ୍ୱର୍ଗୀୟ ଅନୁଗ୍ରହମାନ ପ୍ରାପ୍ତ କରିବେ ବୋଲି ପ୍ରତିଜ୍ଞା କରିଛନ୍ତି" । ୧୬୯୮ ମସିହାରେ ମାର୍ଗାରେତା ମାରୀୟାଙ୍କ ଦ୍ୱାରା ଲିଖିତ "ଯୀଶୁଙ୍କ ଦିବ୍ୟ ହୃଦୟ ପ୍ରତି ଭକ୍ତି" ପୁସ୍ତକ (La Devotion au Sage-coeror de Jaera) ଜେ. କ୍ରୋଇସେଟ ପ୍ରକାଶ କରିଥିଲେ ଯାହା କାଥଲିକ ବିଶ୍ୱାସୀମାନଙ୍କ ମଧ୍ୟରେ ବହୁଳ ଭାବରେ ପ୍ରଚାରିତ ହୋଇଅଛି ।

**ସାଧ୍ୱୀ ମାର୍ଗାରେତା ମାରୀୟାଙ୍କ କେତୋଟି ଉକ୍ତି:**

✸ "ଈଶ୍ୱରଙ୍କ ନିକଟକୁ ସାହାସର ସହ ଯାତ୍ରା କର । ସେ ତୁମ୍ଭମାନଙ୍କୁ ଯେଉଁ ମାଧ୍ୟମ ପ୍ରଦାନ କରିଛନ୍ତି ତାହାକୁ ଦୃଢ଼ତାର ସହ ଆଲିଙ୍ଗନ କର" ।

✸ "ସବୁଠାରୁ ହୃଦୟର ଶାନ୍ତିକୁ ସଂରକ୍ଷଣ କର । କାରଣ ଯେ କୌଣସି ସମ୍ପଦଠାରୁ ତାହା ଅତି ମୂଲ୍ୟବାନ" ।

✸ "ବିଶ୍ୱାସ ତୁମର ମଶାଲ ହେଉ, ଯାହା ତୁମଙ୍କୁ ପ୍ରଜ୍ୱଳିତ, ଅନୁପ୍ରାଣୀତ ଓ ସବୁବେଳେ ଧରି ରଖିବ" ।

✸ "ସମସ୍ତ ଉତମତାରେ ପୂର୍ଣ୍ଣ ସାଗର ହେଉଛି ଯୀଶୁଙ୍କ ସ୍ୱର୍ଗୀୟ ହୃଦୟ, ଯେଉଁଠାରେ ଦରିଦ୍ର ଆତ୍ମାମାନେ ନିଜର ଆବଶ୍ୟକତାକୁ ଅଜାଡ଼ି ଦେଇ ପାରିବେ; ଆମର ସମସ୍ତ ଦୁଃଖକୁ ସେହି ଆନନ୍ଦର ସାଗର ଭିତରେ ବୁଡ଼ାଇ ଦେଇ ପାରିବା, ଆମର ମୂର୍ଖତାକୁ ତାଙ୍କ ନମ୍ରତାର ସାଗରରେ ବୁଡାଇ ଦେଇ ପାରିବା, ଯେଉଁମାନେ ଦୁର୍ଦ୍ଦଶାରେ ଅଛନ୍ତି ସେହି ଦୟାର ସାଗରରେ ଶରଣ ନେଇ ପାରିବା, ପୁଣି ଆମର ଦାରିଦ୍ରତାକୁ ତାଙ୍କ ପ୍ରେମର ସାଗରରେ ଭସାଇ ଦେବା" ।



# ସାଧୁ ଯୋହନ ପାଉଲ ଦ୍ୱିତୀୟ

## (୧୯୨୦-୨୦୦୫, ଅକ୍ଟୋବର ୨୨)

ପୋଲାଣ୍ଡ ଦେଶର ଓ୍ୱାଦୋଇସ ସହରରେ ୧୯୨୦ ମସିହାରେ କାରୋଲ୍ ଯୋସେଫ ଓଇଟିଲା ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ କାରୋଲ୍ ଓଇଟିଲା ଓ ମାତାଙ୍କ ନାମ ଥିଲା ଏମିଲିଆ କାକ୍‌ଜୋରକ୍ସା । ସେମାନଙ୍କର ତିନୋଟି ସନ୍ତାନ ମଧ୍ୟରୁ ଯୋସେଫ ଓଇଟିଲା ଥିଲେ ସମସ୍ତଙ୍କଠାରୁ ଛୋଟ । ତାଙ୍କ ମାତା ଥିଲେ ଜଣେ ସ୍କୁଲ ଶିକ୍ଷୟତ୍ରୀ । ଯୋସେଫ ଓଇଟିଲାଙ୍କୁ ଯେତେବେଳେ ୮ ବର୍ଷ ହେଉଥିଲା, ଅର୍ଥାତ୍ ୧୯୨୯ ମସିହାରେ ସେ ମୃତ୍ୟୁ ବରଣ କଲେ । ତାହାଙ୍କ ବଡ଼ ଭଉଣୀ ଅଲ୍‌ଗା, ଯୋସେଫଙ୍କ ମୃତ୍ୟୁ ପୂର୍ବରୁ ମୃତ୍ୟୁବରଣ କରିଥିଲେ । ଯୋସେଫ ଓଇଟିଲା ନିଜ ଭାଇ ଏଣ୍ଡମଣ୍ଡଙ୍କ ସହିତ ବହୁତ ଘନିଷ୍ଠ ଭାବେ ରହୁଥିଲେ । ଏଣ୍ଡମଣ୍ଡ ଯାହାଙ୍କୁ ସ୍ନେହରେ ମଣ୍ଡେକ୍ ବୋଲି କହୁଥିଲେ ସେ ଯୋସେଫଙ୍କ ଠାରୁ ୧୩ ବର୍ଷ ବଡ଼ ଥିଲେ ।

ଛୋଟ ବୟସରୁ ସେ ଜଣେ ଖେଳାଳୀ ଥିଲେ । ଅଧିକାଂଶ ସମୟରେ ଫୁଟବଲ୍ ଖେଳରେ ଗୋଲ କିପେର ଅଂଶ ଗ୍ରହଣ କରୁଥିଲେ । ନିଜ ଗ୍ରାମ ଓ୍ୱାଡୋଇସର ଯୀହୁଦୀ ସମାଜ ସହିତ ତାଙ୍କର ଉତ୍ତମ ସମ୍ପର୍କ ଥିଲା । ଯୀହୁଦୀ ଓ କାଥଲିକ ସମ୍ପ୍ରଦାୟ ମଧ୍ୟରେ ଅନେକ ସମୟରେ ସ୍କୁଲ ତରଫରୁ ପ୍ରତିଯୋଗିତା ହୋଇଥାଏ । ଯୋସେଫ ଯୀହୁଦୀମାନଙ୍କ ତରଫରୁ ପ୍ରାୟ ଖେଳନ୍ତି । ଯୌବନ ଅବସ୍ଥାରେ ଜିଙ୍କା ବିଏର ନାମକ ଜଣେ ଝିଅ ସହ ଯୋସେଫଙ୍କ ବନ୍ଧୁତ୍ୱ ସମ୍ପର୍କ ଥିଲା । ସେ ତାହାଙ୍କୁ ଏହିପରି ବର୍ଣ୍ଣନା କରନ୍ତି, "ସୌନ୍ଦର୍ଯ୍ୟତାରେ ଜଣେ ଯୀହୁଦୀ, ବିସ୍ମୟକର ଚକ୍ଷୁ, ଅଗ୍ନିଶିଖା ପରି କଳା କେଶ, କ୍ଷୀଣ ଓ ଚମତ୍କାର କଳାକାର" ।

୧୯୩୭ ମସିହା, ତାଙ୍କ ମାଁଙ୍କ ମୃତ୍ୟୁର "ନ' ବର୍ଷ ପରେ ଯୋସେଫ ଓ ତାଙ୍କ ପିତା ଓ୍ୱାଡୋଇସ୍‌ରୁ କ୍ରାକୋକୁ ଗଲେ ଯେଉଁଠାରେ ଜାଗିଯେଲୋନିଆନ୍ ମହାବିଦ୍ୟାଳୟରେ ସେ ନାମ ଲେଖାଇଲେ । ସେଠାରେ ଦର୍ଶନ ଶାସ୍ତ୍ର ଓ ବିଭିନ୍ନ ପ୍ରକାର ଭାଷା ଅଧ୍ୟୟନ କରିବା ସମୟରେ ଲାଇବ୍ରେରିର ଜଣେ ସ୍ୱେଚ୍ଛାସେବୀ ରୂପେ କାର୍ଯ୍ୟ କଲେ । ସେହି ସମୟରେ ସାମରିକ ଶିକ୍ଷା ପ୍ରାପ୍ତ କରିବା ଅଧ୍ୟୟନର

ଏକ ବାଧ୍ୟତାମୂଳକ ଅଂଶ ଥିଲା । ଯୋସେଫ ଅସ୍ତ୍ରଦ୍ୱାରା ଗୁଳି କରିବା ପାଇଁ ମନା କଲେ । ସେ ବିଭିନ୍ନ ଅଭିନୟ ସମ୍ବନ୍ଧୀୟ ଦଳରେ ଯୋଗ ଦେଇ କେବଳ ଯେ ନାଟ୍ୟକାର ରୂପେ ବେଶ୍ ପରିଚିତ ଥିଲେ ତା ନୁହଁ ସେ ମଧ୍ୟ ଜଣେ ଭାଷାବିତ୍ ଥିଲେ । ପ୍ରାୟ ୧୨ଟି ଭାଷା ସେ ଶିଖିପାରିଥିଲେ ଯଥା- ପଲିସ୍, ଲାଟିନ୍, ଇଟାଲିଆନ୍, ସ୍ପାନିସ୍, ପର୍ତ୍ତୁଗୀଜ, ଫ୍ରେଞ୍ଚ, ଇଂରାଜୀ, ଜେର୍ମାନ, ୟୁକ୍ରେନିଆନ, ସେର୍ବ କ୍ରୋଏସିଆନ, ସ୍ଲୋଭାକ ଓ ସ୍ପେରାନ୍ତୋ । ଏଥି ମଧ୍ୟରୁ ପ୍ରାୟ ୯ଟି ଭାଷା ବିଭିନ୍ନ ସମୟରେ ବ୍ୟବହାର କରୁଥିଲେ ।

୧୯୩୯ ମସିହାରେ ଜେର୍ମାନୀର ନାଜି ଦଳ ପୋଲାଣ୍ଡକୁ ନିଜ ଅଧିନରେ ରଖିଥିଲା । ସେମାନେ ସବୁ ବିଶ୍ୱବିଦ୍ୟାଳୟଗୁଡ଼ିକ ବନ୍ଦ କଲେ । ଶାରିରୀକ ଭାବେ ଯେଉଁମାନେ ମଜ୍‌ବୁତ ସେମାନଙ୍କୁ କାମ କରିବା ପାଇଁ ନିଆ ଯାଉଥିଲା । ୧୯୪୦ ମସିହାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଯୋସେଫଙ୍କୁ ରେଷ୍ଟୁରାଣ୍ଟର ଜଣେ ବାର୍ତ୍ତାବହ ରୂପେ କାର୍ଯ୍ୟ କରିବାକୁ ପଡ଼ିଥିଲା । ତା ପରେ ଚୂନ ପଥର ଖଣିରେ ଜଣେ ମଜୁରିଆ ରୂପେ କାର୍ଯ୍ୟ କରିଥିଲେ । ସେ ମଧ୍ୟ ସଲ୍‌ଭାଇମାନଙ୍କ ରାସାୟନିକ କାରଖାନାରେ କାମ କରିଥିଲେ । ଏହିପରି ଭାବରେ ସେଥିରୁ ସେ ମୁକ୍ତ ହୋଇପାରିଥିଲେ ।

୧୯୪୦ ମସିହାରେ ଗୋଟିଏ ଟ୍ରାମ ଦ୍ୱାରା ଆଘାତ ପାଇ ଖପୁରୀରେ ସେ ଯନ୍ତ୍ରଣା ଅନୁଭବ କଲେ । ସେହି ବର୍ଷରେ ହିଁ ପୁଣି ଥରେ ଟ୍ରକ ଦ୍ୱାରା ସେହି ପଥର ଖଣିରେ ଆଘାତ ପାଇଥିଲେ ଯାହାଦ୍ୱାରା ତାହାଙ୍କ ଗୋଟିଏ ସ୍କନ୍ଧ ଅନ୍ୟ ସ୍କନ୍ଧଠାରୁ କିଛି ମାତ୍ରାରେ ଉଚ୍ଚା ହୋଇ ରହିଲା ଏବଂ ସବୁଦିନ ପାଇଁ ତାଙ୍କୁ ମୁଣ୍ଡ ନୁଏଇ ଚାଲିବାକୁ ପଡ଼ିଥିଲା ।

ତାଙ୍କ ପିତା ଯିଏ ପୋଲାଣ୍ଡ ସୈନ୍ୟ ଦଳର ଜଣେ ଉଚ୍ଚ କର୍ମଚାରୀ ଥିଲେ ସେ ୧୯୪୧ ମସିହାରେ ହୃଦ୍‌ଘାତ ଦ୍ୱାରା ଯୋସେଫଙ୍କୁ ଏକା ଛାଡ଼ି ସବୁଦିନ ପାଇଁ ବିଦାୟ ନେଇଗଲେ । ପିତାଙ୍କ ମୃତ୍ୟୁ ପରେ ଜଣେ ଯାଜକ ହେବାର ଅଭିଳାଷ ତାଙ୍କ ମନକୁ ଛୁଇଁଲା ଓ ଏହି ବିଷୟରେ ଗଭୀର ଭାବେ ଚିନ୍ତା କରିବାକୁ ଲାଗିଲେ । ୧୯୪୨ ମସିହାରେ ଯେତେବେଳେ ଯୁଦ୍ଧର ଭୟାବହତା ଚାଲିଥିଲା ସେହି ସମୟରେ ପୋଲାଣ୍ଡର କ୍ରାକୋ ମହା ଧର୍ମ ପ୍ରଦେଶରେ ଯୋଗ ଦେଲେ । ଯୁଦ୍ଧ କାଳୀନ ସମୟ ହୋଇଥିବାରୁ କ୍ରାକୋ ମହା ଧର୍ମପ୍ରଦେଶର ସେମିନାରୀଗୁଡିକ

ବନ୍ଦ କରାଯାଇଥିଲା । ସେମିନାରୀଆନ୍ ମାନଙ୍କୁ ଭୂମି ତଳେ ଗୋପନରେ ଶିକ୍ଷା ଦିଆଯାଉଥିଲା ।

୧୯୪୪ ମସିହା ଅଗଷ୍ଟ ୬ ତାରିଖ ଥିଲା 'କଳା ରବିବାର' ଯେଉଁଦିନ କ୍ରାକୋର ବିଦ୍ରୋହୀ ଯୁବକ ମାନଙ୍କୁ ଘେରା କରାଯାଇଥିଲା । ଓଇଟିଲା ସେଠାରୁ ପଳାୟନ କରି ନିଜ ମାମୁଙ୍କ ଘର ଭୂତଳ କୋଠରୀରେ ଲୁଚି ରହିଲେ । ସେହିଦିନ ପ୍ରାୟ ୮୦୦୦ ରୁ ଉର୍ଦ୍ଧ ଯୁବକ ତଥା ଲୋକମାନଙ୍କୁ ଧରି ନେଇଥିଲେ । ଓଇଟିଲା ସେଠାରୁ ପଳାୟନ କରି ମହାଧର୍ମାଧ୍ୟକ୍ଷଙ୍କ ବସାକୁ ଗଲେ । ଜର୍ମାନୀ ସୈନ୍ୟମାନେ ସେଠାରୁ ନ ଯିବା ପର୍ଯ୍ୟନ୍ତ ଯୋସେଫ ସେହିଠାରେ ରହିଲେ ।

୧୯୪୫ ମସିହା ଜାନୁୟାରୀ ୧୭ ତାରିଖ ରାତ୍ରି ସମୟରେ ଜର୍ମାନୀ ସୈନ୍ୟମାନେ ସହର ଛାଡ଼ି ଫେରିଗଲେ । ଭଗ୍ନ ସେମିନାରୀକୁ ବିଦ୍ୟାର୍ଥୀମାନେ ନିଜ ଆୟତ୍ତରେ ରଖିଲେ । ଯୋସେଫ ଅନ୍ୟ ଜଣେ ସେମିନାରୀଆନ୍ ସହିତ ଘରଟିର ଆବର୍ଜନା ଗୁଡ଼ିକ ବାହାର କରି ପାଇଖାନା ପରିଷ୍କାର କଲେ । ୧୪ ବର୍ଷର ଜଣେ ଯିହୁଦୀ ଶରଣାର୍ଥୀ ଏଡିଥ ଜଏରେର୍ ଯିଏ ଚେସ୍ତକୋଆ ନାଜି ଶ୍ରମିକ ଶିବିରରୁ ପଳାୟନ କରିଥିଲା, ତାହାଙ୍କୁ ଯୋସେଫ ସାହାଯ୍ୟ କରିଥିଲେ । ଏଡିଥ ମୂର୍ଚ୍ଛା ହୋଇ ରେଳ ପ୍ଲାଟ୍ ଫର୍ମରେ ପଡ଼ିରହିଥିଲା, ଯୋସେଫ ତାହାଙ୍କୁ ଉଠାଇ ଟ୍ରେନ୍ ଭିତରକୁ ନେଇ କ୍ରାକୋ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କ ସହିତ ଗଲେ । ଏଡିଥଙ୍କ ଜୀବନ ସେ ରକ୍ଷା କରିଥିବାରୁ ତାଙ୍କୁ କୃତଜ୍ଞତା ପ୍ରକାଶ କଲେ ।

ସେମିନାରୀରେ ଯାଜକତା ତାଲିମ୍ ଶେଷ ହେବା ପରେ ୧୯୪୬ ମସିହା ନଭେମ୍ବର ୧ ତାରିଖ ସାଧୁମାନଙ୍କ ପର୍ବ ଦିନରେ କ୍ରାକୋର ମହାଧର୍ମାଧ୍ୟକ୍ଷ କାର୍ଡ଼ିନାଲ୍ ସାପିଏଙ୍କ ଦ୍ୱାରା ଯାଜକତା ଅଭିଷେକ ପ୍ରାପ୍ତ କଲେ । ଏହାପରେ ତାଙ୍କୁ ରୋମ୍‌ର ଆଞ୍ଜେଲିକୁମ୍ ୟୁନିଭେରସିଟିକୁ ଉଚ୍ଚ ଶିକ୍ଷା ପାଇଁ ପଠାଗଲା । ୧୯୪୭ ମସିହା ଜୁଲାଇ ୧୪ ତାରିଖରେ ଓଇଟିଲା ଲାଇସେନ୍‌ସ ସମାପ୍ତ କରନ୍ତେ ପୁଣି ୧୯୪୮ ମସିହା ଜୁନ୍ ୧୯ ତାରିଖରେ ଡକ୍ଟରେଟ ଉପାଧି ଲାଭ କଲେ । ତାଙ୍କ ଡକ୍ଟରେଟ ଥିସିସ୍‌ର ଶୀର୍ଷକ ଥିଲା The Doctrine of Faith in St. John of the Cross ("ପୁଣ୍ୟକ୍ରୁଶ ପ୍ରେମୀ ସାଧୁ ଯୋହନଙ୍କ ବିଶ୍ୱାସର ମୂଳତତ୍ତ୍ୱ") ।

ରୋମ୍‌ର ଆଞ୍ଜେଲିକୁମ ୟୁନିଭେରସିଟିରେ ଓଇଟିଲା ଅଧ୍ୟୟନ କରିବା ସମୟରେ ପାଦ୍ରେ ପିଓଙ୍କୁ ସାକ୍ଷାତ୍ କରି ତାହାଙ୍କଠାରେ ପାପ ସ୍ୱୀକାର କରିଥିଲେ । ସେହି ସମୟରେ ପାଦ୍ରେ ପିଓ ତାଙ୍କୁ କହିଥିଲେ, "ତୁମେ ଦିନେ ଚର୍ଚ୍ଚର ସବୁଠାରୁ ଉଚ୍ଚ ସ୍ଥାନକୁ ଉନ୍ନୀତ ହେବ"। ଯେତେବେଳେ ଓଇଟିଲା କାର୍ଡିନାଲ ହେଲେ ସେହି ସମୟରେ ପାଦ୍ରେ ପିଓଙ୍କ ଭବିଷ୍ୟତ ବାଣୀ ଯେ ପୂର୍ଣ୍ଣ ହେଲା ତାହା ସେ ବିଶ୍ୱାସ କଲେ ।

୧୯୪୮ ମସିହାରେ ଯେତେବେଳେ ଓଇଟିଲା ପୋଲାଣ୍ଡକୁ ପ୍ରତ୍ୟାବର୍ତ୍ତନ କଲେ, କ୍ରାକୋଠାରୁ ପ୍ରାୟ ୨୪ କିଲୋମଟର ଦୂରରେ ଅବସ୍ଥିତ ନେଗୋଉଇକ୍ ନାମକ ଗୋଟିଏ ଚର୍ଚ୍ଚରେ ନିଯୁକ୍ତି ପାଇଲେ । ସେଠାରେ ପହଞ୍ଚିବା ପରେ ପ୍ରଥମେ ଜାନୁପାତ କରି ସେହି ଭୂମିକୁ ଚୁମ୍ବନ ଦେଲେ । ଓଇଟିଲାଙ୍କ ଏହି କାର୍ଯ୍ୟ ଫ୍ରାନ୍ସର ସାଧୁ ଜନ୍ ମାରିଆ ଭିଆନିଙ୍କ ଠାରୁ ଅନୁକରଣ କରିଥିଲେ ଏବଂ ତାଙ୍କ ଜୀବନ କାଳରେ ସେ ଏହି ବ୍ୟବହାରଟି ସବୁଠାରେ ଏବଂ ସବୁବେଳେ ପ୍ରଦର୍ଶନ କରୁଥିଲେ ।

୧୯୪୯ ମସିହା ମାର୍ଚ୍ଚ ମାସରେ ସେ କ୍ରାକୋର ସାଧୁ ଫ୍ଲୋରିଆନ୍ ଧର୍ମାଞ୍ଚଳକୁ ବଦଳି ହୋଇଥିଲେ । ଜାଗେଲୋନିଆନ ୟୁନିଭେରସିଟିରେ ସେ ନୀତିଶାସ୍ତ୍ର ଶିକ୍ଷା ଦେଉଥିଲେ ଏବଂ ପରେ ଲୁବଲିନ୍‌ର କାଥଲିକ ୟୁନିଭେରସିଟିରେ ମଧ୍ୟ ଜଣେ ପ୍ରଫେସର ରୂପେ ପଢ଼ାଉଥିଲେ । ଶିକ୍ଷା ଦେବା ସମୟରେ ପ୍ରାୟ ୨୦ ଜଣ ଯୁବକ ଛାତ୍ର ମାନଙ୍କୁ ନେଇ ଗୋଟିଏ ଦଳ ଗଠନ କରିଥିଲେ ଯାହାର ନାମ ରଖିଥିଲେ 'Rodzinka'ଅର୍ଥାତ୍ 'କ୍ଷୁଦ୍ର ପରିବାର'। ସେମାନେ ଏକତ୍ର ହେଉଥିଲେ ପ୍ରାର୍ଥନା କରିବା ପାଇଁ, ଦର୍ଶନଶାସ୍ତ୍ର ଆଲୋଚନା କରିବା ପାଇଁ ଏବଂ ଅନ୍ଧ ଓ ରୋଗୀମାନଙ୍କୁ ସାହାଯ୍ୟ କରିବା ପାଇଁ । ଆସ୍ତେ ଆସ୍ତେ ସେହି ଦଳଟିର ସଂଖ୍ୟା ୨୦୦କୁ ବୃଦ୍ଧି ପାଇଲା । ବର୍ଷକୁ ଥରେ ସେମାନେ ବରଫାବୃତ ସ୍ଥାନକୁ ଯାଇ ସ୍କେଟିଙ୍ଗ କରୁଥିଲେ ।

ଯାଜକ ହେବାର ପ୍ରଥମ କେତେ ବର୍ଷ ସେ ସାହିତ୍ୟ ଲେଖିବାର ଆଗ୍ରହ ଜନ୍ମାଇଥିଲେ । ଓଇଟିଲାଙ୍କ ସାହିତ୍ୟରେ ପ୍ରକାଶ ହେଉଥିଲା ଯୁଦ୍ଧର ଭୟାବହତା, ସାମ୍ୟବାଦଙ୍କ ଶାସନ କାଳର ଜୀବନ ଏବଂ ପ୍ରେରିତିକ ଦାୟିତ୍ୱ । ଷ୍ଟାଲିନ ଶାସକଙ୍କ

ସମୟରେ ଯାଜକମାନେ ନିଜର ଛାତ୍ର ମାନଙ୍କୁ ନେଇ ଅନ୍ୟତ୍ର ଯିବା ସହଜ ନ ଥିଲା । କିନ୍ତୁ ସେହି ବିଦ୍ୟାର୍ଥୀମାନଙ୍କୁ ନେଇ ସେ ବିଭିନ୍ନ ସ୍ଥାନକୁ ଯାଉଥିଲେ, ପ୍ରାର୍ଥନା କରୁଥିଲେ । ସାଇକେଲ ଚଲାଇବା, ବରଫରେ ସ୍କେଟିଙ୍ଗ କରିବା, ପାଦରେ ଚାଲିବା ଏବଂ ବାହାରେ ମଧ୍ୟ ସେମାନଙ୍କ ସହିତ ଦିବ୍ୟଯଜ୍ଞ କରୁଥିଲେ ଏବଂ ଈଶଶାସ୍ତ୍ର ସମ୍ବନ୍ଧରେ ଚର୍ଚ୍ଚା କରୁଥିଲେ । ତାହାଙ୍କଠାରୁ ଛୋଟ ସାଙ୍ଗ ମାନଙ୍କୁ ସେ ସର୍ବଦା ସମ୍ମାନ କରୁଥିଲେ ଏବଂ ତାଙ୍କୁ ପଲିସ୍ ଭାଷାରେ ଉଜେକ୍ ବା uncle ଡାକିବା ପାଇଁ କହୁଥିଲେ, ଯେପରି ଅନ୍ୟମାନେ ଜାଣି ନ ପାରନ୍ତି ଯେ ସେ ଜଣେ ଯାଜକ । ସ୍ନେହରେ ଅନ୍ୟମାନେ ମଧ୍ୟ ତାଙ୍କୁ uncle ବୋଲି ଡାକୁଥିଲେ ।

ପୂଣ୍ୟପିତା ଦ୍ୱାଦଶ ପୀୟୁସ ଓଇଟିଲାଙ୍କୁ କ୍ରାକୋର ସହାୟକ ଧର୍ମାଧ୍ୟକ୍ଷ ଭାବେ ନିଯୁକ୍ତି ଦେଲେ । ପୋଲାଣ୍ଡର ସମସ୍ତ ଧର୍ମାଧ୍ୟକ୍ଷମାନଙ୍କ ମଧ୍ୟରୁ ସେ ଥିଲେ ଯୁବକ ଧର୍ମାଧ୍ୟକ୍ଷ । ୩୮ ବର୍ଷ ବୟସରେ ସେ ଧର୍ମାଧ୍ୟକ୍ଷ ହୋଇଥିଲେ । ଦ୍ୱିତୀୟ ଭାଟିକାନ୍ ମହାସଭାରେ (୧୯୬୨-୧୯୬୫) ସେ ଅଂଶ ଗ୍ରହଣ କରି ଦୁଇଟି ଐତିହାସିକ ଦଲିଲ୍ ଯଥା Decree on Religious Freedom (ଧାର୍ମିକ ସ୍ୱାଧିନତା ଦଲିଲ) and Pastoral Constitution on the Church in the Modern World (ଆଧୁନିକ ଜଗତରେ ମଣ୍ଡଳୀର ଭୂମିକା) ପ୍ରସ୍ତୁତି କରିବାରେ ତାହାଙ୍କ ସ୍ୱତନ୍ତ୍ର ଅବଦାନ ଥିଲା ।

୧୯୬୪ ମସିହା ଜାନୁୟାରୀ ୧୩ ତାରିଖ ଦିନ ପୂଣ୍ୟପିତା ଷଷ୍ଠ ପାଉଲ ଜନ୍ ପଲ ଦ୍ୱିତୀୟଙ୍କୁ କ୍ରାକୋର ମହାଧର୍ମାଧ୍ୟକ୍ଷ ରୂପେ ନିଯୁକ୍ତି ଦେଲେ । ପୁଣି ୩୦ ମାସ ପରେ ଅର୍ଥାତ୍ ୧୯୬୭ ମସିହା ଜୁନ୍ ମାସ ୨୬ ତାରିଖ ଦିନ ଜନ୍ ପଲ ଦ୍ୱିତୀୟଙ୍କୁ କାର୍ଡ଼ିନାଲ୍ ପାହ୍ୟାକୁ ଉନ୍ନୀତ କରାଗଲା । ପୂଣ୍ୟପିତା ଷଷ୍ଠ ପାଉଲଙ୍କ ମୃତ୍ୟୁ ପରେ ୧୯୭୮ ମସିହାରେ କାର୍ଡ଼ିନାଲ ଓଇଟିଲା ପୂଣ୍ୟପିତାଙ୍କୁ ନିର୍ବାଚନ କରିବା ପ୍ରକ୍ରିୟାରେ ଯୋଗ ଦେଇଥିଲେ ଏବଂ ଜନ୍ ପଲ୍ ପ୍ରଥମଙ୍କୁ ଭୋଟ ଦେଇଥିଲେ ଯିଏ ପୂଣ୍ୟପିତା ରୂପେ ନିର୍ବାଚିତ ହୋଇପାରିଥିଲେ । ୩୩ ଦିନ ପରେ ପୂଣ୍ୟପିତା ପ୍ରଥମ ଜନ୍ ପଲ ମୃତ୍ୟୁ ବରଣ କରିଥିଲେ । ତାଙ୍କ ପରେ ଅନ୍ୟ ଏକ ଗୁପ୍ତ ସଭା ଭାଟିକାନ୍‌ରେ ଡକାଗଲା ପୂଣ୍ୟପିତାଙ୍କ ନିର୍ବାଚନ ପାଇଁ । ପୂଣ୍ୟପିତା ଜନ୍ ପଲ୍ ପ୍ରଥମଙ୍କ ମୃତ୍ୟୁର ୧୦ ଦିନ ପରେ ଅର୍ଥାତ୍ ୧୯୭୮ ମସିହା ଅକ୍ଟୋବର ୧୪

ତାରିଖରେ ଦ୍ୱିତୀୟ ଗୁପ୍ତ ସଭା ଡକାଗଲା । କନ୍‌କ୍ଲେଭର ତୃତୀୟ ଦିବସରେ ଅର୍ଥାତ୍ ଅକ୍ଟୋବର ୧୬ ତାରିଖରେ ୧୧୧ ଜଣ କାର୍ଡିନାଲ ଅଂଶ ଗ୍ରହଣ କରିଥିଲେ । ସେଥି ମଧ୍ୟରୁ ପ୍ରାୟ ୯୯ ଜଣ ଓଇଟିଲାଙ୍କୁ ସମର୍ଥନ କରିଥିଲେ । ଜନ୍ ପଲ୍ ପ୍ରଥମଙ୍କ ଉତ୍ତରାଧିକାରୀ ଭାବରେ ତାହାଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସାଥେ ସାଥେ ପୂଣ୍ୟପିତା ଷଷ୍ଠ ପାଉଲଙ୍କ ସମ୍ମାନାର୍ଥେ ସେ ନିଜର ନାମକୁ ବଦଳାଇ ଜନ୍ ପଲ୍ ଦ୍ୱିତୀୟ ନାମରେ ଅଭିହିତ ହେବା ପାଇଁ ଇଛା କଲେ ।

ପୂଣ୍ୟପିତାମାନଙ୍କ କ୍ରମିକ ସଂଖ୍ୟାରେ ଜନ୍ ପଲ୍ ଦ୍ୱିତୀୟଙ୍କ ନାମ ୨୬୪ରେ ସ୍ଥାନ ପାଏ । ପୁଣି ୪୫୫ ବର୍ଷ ପରେ ସେ ହେଉଛନ୍ତି ଇଟାଲୀ ଦେଶରୁ ବାହାର ପ୍ରଥମ ପୂଣ୍ୟପିତା ।

ପୂଣ୍ୟପିତା ନବମ ପୀୟଙ୍କ ପରେ ୧୮୪୬ ମସିହା ପରଠାରୁ ସେ ହେଉଛନ୍ତି ପୂଣ୍ୟପିତା ମାନଙ୍କ ମଧ୍ୟରୁ ୫୮ ବର୍ଷ ବୟସର ପ୍ରଥମ ଯୁବକ ପୂଣ୍ୟପିତା । ୧୯୭୮ ମସିହା ଅକ୍ଟୋବର ୨୨ ତାରିଖ ଦିନ ସେ କାଥଲିକ ମଣ୍ଡଳୀର ସର୍ବୋଚ୍ଚ ସ୍ଥାନ ପାଇବାର ଯୋଗ୍ୟ ବିବେଚିତ ହୋଇଥିଲେ । ତାଙ୍କ ସମୟରେ ସେ ପ୍ରାୟ ୧୨୯ ଦେଶକୁ ପରିଭ୍ରମଣ କରିଥିଲେ । ସବୁଠାରୁ ମାନିଲାର ଆନ୍ତର୍ଜାତିକ ଯୁବ ଦିବସ ବିରାଟ ଧରଣର ଥିଲା ଯେଉଁଥିରେ ୪ ମିଲିୟନ୍‌ରୁ (୪୦ ଲକ୍ଷ) ଅଧିକ ଜନ ସମାବେଶ ହୋଇଥିଲା । ୧୯୭୯ ମସିହା ଜୁନ୍ ମାସରେ ନିଜ ଦେଶ ପୋଲାଣ୍ଡକୁ ସେ ପ୍ରଥମ ଯାତ୍ରା କରିଥିଲେ । ସେଠିକାର ବିଶାଳ ଜନ ସମାବେଶ ସମସ୍ତଙ୍କୁ ମୁଗ୍ଧ କରିଥିଲା ଏବଂ ସେଠାରୁ ସୃଷ୍ଟି ହୋଇଥିଲା ଏକ ସଂହତିର ଅଭିଯାନ ୧୯୮୦ ମସିହାରେ । ଏହି ଅଭିଯାନ ଦ୍ୱାରା ନିଜ ମାତୃ ଭୂମିରେ ସ୍ୱାଧିନ ଓ ମାନବିକତା ଅଧିକାର ଆଣି ପାରିଥିଲେ ।

ପ୍ରାୟ ୧୪ଟି ସାର୍ବଜନୀନ ଶିକ୍ଷା ଭିତିକ ପତ୍ର (Encyclical) ସେ ଲେଖିଥିଲେ । ଶାରିରୀକ ସମ୍ବନ୍ଧୀୟ ଇଶ ଶାସ୍ତ୍ର (Theology of the Body) ପୁସ୍ତକ ମାଧ୍ୟମରେ ଯୌନ ଭିତିକ ଶିକ୍ଷା ପ୍ରଦାନ କରିଥିଲେ । ନାରୀମାନଙ୍କୁ ଅଭିଷିକ୍ତ ଯାଜକ କରିବା ଏବଂ ମାନବ ଯୌନ ପ୍ରଜନନ ସମ୍ବନ୍ଧୀୟ ଧାର୍ମିକ ନୀତି ଉପରେ ତାଙ୍କର ମତ ନିଷ୍ଠାପର ଥିଲା ।

ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟ ଦୁଇଥର ଭାରତକୁ ଆସିଥିଲେ । ୧୯୮୬ ମସିହାରେ ଦଶ ଦିନ ପାଇଁ ଭାରତରେ ସେ ପ୍ରେରିତିକ ତୀର୍ଥ ଯାତ୍ରୀ ରୂପେ ଆସିଥିଲେ । ସେହି ସମୟରେ ପ୍ରଥମେ କଲିକତାର ମାଦେର୍ ତେରେସାଙ୍କ ନିର୍ମଳ ହୃଦୟ ଗୃହ ପରିଦର୍ଶନ କରିଥିଲେ ଏବଂ ଦ୍ୱିତୀୟତଃ କ୍ଲେର ସଂଘର ସେବାଭଗ୍ନି ଆଲଫନ୍‌ସା (୧୯୧୦-୧୯୪୬) ଏବଂ CMI ଓ CMC ସଂଘର ପ୍ରତିଷ୍ଠାତା ଫାଦେର୍ କୁରିଆକୁସ୍ ଚାଭାରଙ୍କୁ (୧୮୦୫-୧୮୭୧) ସମ୍ମାନସ୍ପଦ (Beatification) ବୋଲି ଘୋଷଣା କରିଥିଲେ । ପୁଣି ଥରେ ୧୯୯୯ ମସିହାରେ ଦିଲ୍ଲୀକୁ ସେ ଆସିଥିଲେ । ୧୯୯୯ ମସିହା ନଭେମ୍ବର ମାସ ୬ ତାରିଖରେ ନୁଆ ଦିଲ୍ଲୀର ଦିବ୍ୟ ହୃଦୟ ମହା ଦେବାଳୟରେ ବିଶପମାନଙ୍କ ଦ୍ୱାରା ପ୍ରସ୍ତୁତ ଏସିଆରେ ମଣ୍ଡଳୀ (Ecclesia in Asia) ନାମର ଗୋଟିଏ ଦଲିଲକୁ ଉନ୍ମୋଚନ କରିଥିଲେ ।

ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟଙ୍କୁ ୭୦ ବର୍ଷ ହୁଅନ୍ତେ ସେ ପାରକିନସନ ନାମକ ଗୋଟିଏ ରୋଗରେ ଆକ୍ରାନ୍ତ ହେଲେ । ଆସ୍ତେ ଆସ୍ତେ ତାଙ୍କ ଶରୀର ଦୁର୍ବଳ ହେବାକୁ ଲାଗିଲା । କଥା କହିବା ବେଳେ ବାତୁଳ ହେବା, ଚାଲିବା ବେଳେ ଥରିବା ଭଳି ବିଭିନ୍ନ ସମସ୍ୟା ବଢ଼ିବାକୁ ଲାଗିଲା । ତାଙ୍କ ଜୀବନର ଶେଷ ସମୟରେ ନିଜର କର୍ତ୍ତବ୍ୟ ଗୁଡିକୁ ସମ୍ପାଦନ କରିବା ପାଇଁ ଅନ୍ୟ ମାନଙ୍କୁ ପ୍ରେରଣ କରୁଥିଲେ । ୨୦୦୫ ଫେବୃୟାରୀ ମାସରେ ତାହାଙ୍କୁ ହସ୍ପିଟାଲ୍‌ରେ ଭର୍ତି କରାଯାଇଥିଲା । ଏହାର ଦୁଇମାସ ପରେ ସେ ମୃତ୍ୟୁବରଣ କରିଥିଲେ ।

ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟଙ୍କ କେତୋଟି କାର୍ଯ୍ୟ ସର୍ବଦା ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୋଇ ରହିବ । ବିଶେଷ ଭାବରେ ସାମ୍ୟବାଦକୁ ସେ ଦମନ କରିବାରେ ସଫଳ ହୋଇଥିଲେ । ଅନ୍ୟ ବିଶ୍ୱାସୀମାନଙ୍କ ସହିତ ସମ୍ପର୍କର ସେତୁ ସେ ଗଢ଼ି ପାରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କାଥଲିକ ମଣ୍ଡଳୀର କେତୋଟି ନିନ୍ଦନୀୟ ବିଷୟ ଯୋଗୁଁ ସେ କ୍ଷମା ମାଗିଥିଲେ ।

ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟଙ୍କର ମୃତ୍ୟୁ ହେବାର ଏକ ମାସ ପରେ ଅର୍ଥାତ୍ ୨୦୦୫ ମସିହାରେ ସାଧୁ ପ୍ରକ୍ରିୟା ଆରମ୍ଭ ହୋଇଥିଲା । ନିୟମ ପ୍ରକାରେ ମୃତ୍ୟୁ ପରେ ପ୍ରାୟ ପାଞ୍ଚ ବର୍ଷ ଅପେକ୍ଷା କରିବାକୁ ପଡ଼ିଥାଏ । ୨୦୧୧ ମସିହା ମଇ

ମାସ ୧ ତାରିଖ ଦୟାର ରବିବାର ଦିନ ପ୍ରଥମତଃ 'ପ୍ରଭୁଙ୍କ ସେବକ' ରୂପେ ଘୋଷଣା କରାଗଲା । ୨୦୧୪ ମସିହା ଏପ୍ରିଲ ମାସ ୨୭ ତାରିଖ ଦିନ ପୁଣି ଦୟାର ରବିବାର ଦିନ ପୂଣ୍ୟପିତା ତ୍ରୟୋଦଶ ଜନ୍‌ଙ୍କ ସହିତ ତାଙ୍କୁ 'ସାଧୁ' ବୋଲି ପୋପ୍ ଫ୍ରାଞ୍ଚିସ ଘୋଷଣା କଲେ । ୨୦୧୪ ମସିହା ସେପ୍ଟେମ୍ବର ୧୧ ତାରିଖ ଦିନ ପୂଣ୍ୟପିତା ଫ୍ରାନ୍‌ସିସ୍ ସାରା ବିଶ୍ୱର ବିଶ୍ୱାସୀମାନଙ୍କ ଅନୁରୋଧ କ୍ରମେ ସାଧୁମାନଙ୍କ ରୋମୀୟ କ୍ୟାଲେଣ୍ଡର ଅନୁଯାୟୀ ଏହି ଦିନକୁ ସ୍ମରଣ କରିବା ପାଇଁ ତାଙ୍କ ପର୍ବଦିନ ରଖାଗଲା ।

ମଣ୍ଡଳୀର ପ୍ରତ୍ୟେକ ସାଧୁଙ୍କର ମରଣ ଦିବସକୁ ତାଙ୍କ ପର୍ବ ଦିବସ ରୂପେ ପାଳନ କରାଯାଇଥାଏ କିନ୍ତୁ ପୂଣ୍ୟପିତା ଜନ୍ ପଲ୍ ଦ୍ୱିତୀୟଙ୍କୁ ପୂଣ୍ୟପିତା ହେବାର ଦିନଟିକୁ ଅର୍ଥାତ୍ ଅକ୍ଟୋବର ମାସର ୨୨ ତାରିଖ ଦିବସଟିକୁ ପର୍ବ ଦିବସ ରୂପେ ପାଳନ କରାଯାଏ ।

**ସାଧୁ ଯୋହନ ପାଉଲ ଦ୍ୱିତୀୟଙ୍କ କେତୋଟି ଉକ୍ତି:**

✸ "ନିଜକୁ ନିରାଶ ହେବାକୁ ଦିଅ ନାହିଁ । ଆମ୍ଭେ ପାସ୍କାର ଜନତା ଏବଂ ଆଲ୍ଲେଲୁୟା ଆମର ସଂଗୀତ" ।

✸ "ସବୁଠାରୁ ଖରାପ ବନ୍ଦିଶାଳା ହେଉଛି ଆମର ବନ୍ଦ ହୃଦୟ" ।

✸ ଦିବ୍ୟ ଯଜ୍ଞ ସମ୍ବନ୍ଧରେ ସେ କହନ୍ତି, "ତୁମେ କଣ ସ୍ୱର୍ଗ ଦେଖିବା ପାଇଁ ଚାହଁ, ତେବେ ଏହି ଯଜ୍ଞ ବେଦିକୁ ଆସ କାରଣ ଏହି ଯଜ୍ଞ ବେଦି ଏହି ପୃଥିବୀର ସ୍ୱର୍ଗ" ।

✸ "ଆମେ ସମସ୍ତେ ପ୍ରେମ ପାଇବା ପାଇଁ ଚାହୁଁ ଓ ପ୍ରେମ କରିବା ପାଇଁ ଚାହୁଁ । କାରଣ ପ୍ରେମ ହେଉଛି ମନୁଷ୍ୟର ଅର୍ନ୍ତନିହିତ ସ୍ୱଭାବ" ।

✸ "ଯେତେବେଳେ ଆମେ ଆନନ୍ଦର ସ୍ୱପ୍ନ ଦେଖୁ, ଆମ୍ଭେ ଯୀଶୁଙ୍କୁ ହିଁ ଖୋଜିଥାଉ । ପୁଣି ଯେତେବେଳେ କୌଣସିଠାରେ ସନ୍ତୁଷ୍ଟ ନ ହେଉ ଯୀଶୁ ସେଠାରେ ତୁମ ଅପେକ୍ଷାରେ ରହନ୍ତି" ।



# ସାଧୁ ଯୁଡ ଥାଦିଉସ (ଅକ୍ଟୋବର ୨୮)

ଯୀଶୁଙ୍କ ବାର ଜଣ ପ୍ରେରିତମାନଙ୍କ ମଧ୍ୟରୁ ସାଧୁ ଯୁଡ ଥାଦିଉସ ଅନ୍ୟତମ । କୁହାଯାଏ ସେ ଯୀଶୁଙ୍କ ଜ୍ଞାତି ସମ୍ପର୍କ ଅଟନ୍ତି । ଥାଦିଉସ ହେଉଛନ୍ତି କ୍ଲିଓଫାସଙ୍କ ପୁତ୍ର ଯିଏ କୁମାରୀ ମାରୀୟାଙ୍କ ସମ୍ପର୍କୀୟ ଭାଇ । ବିଭିନ୍ନ ସ୍ଥାନରେ ସୁସମାଚାର ପ୍ରଚାର କଲାପରେ ପ୍ରେରିତ ସାଇମନ ଜେଲାଟଙ୍କ ସହିତ ବର୍ତ୍ତମାନର ବିରୁଟରେ ୬୫ ମସିହାରେ ଶହୀଦ ହୋଇଥିଲେ । ଆଶାଶୂନ୍ୟ, ନିରାଶ ବ୍ୟକ୍ତିମାନଙ୍କ ସେ ଅଟନ୍ତି ଇଷ୍ଟ ସାଧୁ ।

ପ୍ରେରିତମାନଙ୍କ ନାମ ତାଲିକାରେ ବିଶେଷ ଭାବରେ (ମାଥ୍ୟୁ ୧୦:୧୮) ରେ ଯୁଡ ନାମ ଲେଖାଯାଇ ନାହିଁ । ତାରି ପରିବର୍ତ୍ତେ ସେଠାରେ 'ଥାଦିଉସ' ନାମ ସ୍ଥାନ ପାଇଅଛି । କେତେକ କହନ୍ତି 'ଥାଦିଉସ' ତାହାଙ୍କ ଡକା ନାମ ଏବଂ ଆଉ କେତେକ କହନ୍ତି ତାହା ତାଙ୍କର କୂଳ ନାମ । 'ଯୁଦ୍'ର ଅର୍ଥ ହେଲା ଯିଏ ଆନନ୍ଦ ଦିଅନ୍ତି ଏବଂ ଥାଦିଉସର ଅର୍ଥ ହେଲା ଜଣେ ଉଦାରଶୀଳ ବା ଦୟାଳ ବ୍ୟକ୍ତି ।

ଖ୍ରୀଷ୍ଟିୟାନ ପରମ୍ପରାରୁ ଜଣାଯାଏ ଯେ ଗାଲିଲୀ ନଗରର ପାନିଆସଠାରେ ଗୋଟିଏ ଯିହୁଦୀ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ପ୍ରାଚୀନ ପାଲେଷ୍ଟାଇନର ସେହି ଅଞ୍ଚଳରେ ହି ଯୀଶୁ ବଢ଼ିଥିଲେ । ସେହି ସମୟରେ ସେହି ଅଞ୍ଚଳରେ ସେମାନେ ଗ୍ରୀକ ଓ ଆରାମିକ ଭାଷା ବ୍ୟବହାର କରୁଥିଲେ, ଏଣୁ ଥାଦିଉସଙ୍କୁ ମଧ୍ୟ ସେହି ଭାଷାର ଜ୍ଞାନ ଥିବା ଅନୁମାନ କରାଯାଏ । ବୃତ୍ତିରେ ସେ ଜଣେ କୃଷକ ଥିଲେ । ପରମ୍ପରା କହେ କ୍ଲିଓପାସ ଓ ତାଙ୍କ ପତ୍ନୀ ମେରୀଙ୍କର ପୁତ୍ର ଥିଲେ ଥାଦିଉସ । ଏଣୁ ସମ୍ପର୍କରେ କୁମାରୀ ମାରୀୟାଙ୍କର ସେ ହେବେ ଭାଇ । ମାଥ୍ୟୁ ତାହାଙ୍କ ସୁସମାଚାରରେ (ମାଥ୍ୟୁ ୧୩:୫୫) ଯୁଦ୍‌ଙ୍କୁ ଯୀଶୁଙ୍କ ଭାଇ ରୂପେ ଉପସ୍ଥାପନ କରନ୍ତି । ଯୁଦ୍‌ଙ୍କ ମାଁ ମେରୀ ଓ ଯୀଶୁଙ୍କ ମାଁ ମେରୀ ଦୁହେ ସମ୍ପର୍କୀୟ (ମାଉସୀ ଝିଅ) ଭଉଣୀ ଥିଲେ ଏବଂ ଯୁଦଙ୍କ ପିତା କ୍ଲିଓଫାସ ଥିଲେ ସାଧୁ ଯୋସେଫଙ୍କ ଭାଇ ସାଧୁ ପ୍ରେରିତ ଯାକୁବ ମଧ୍ୟ ଯୁଦ୍‌ଙ୍କ ଭାଇ ଅଟନ୍ତି । ପୁଣି ପରମ୍ପରା କହେ, ଯୁଦେଆ, ସାମାରିଆ, ଇଦୁମିଆ, ସିରିଆ, ମେସୋପଟାମିଆ ଓ ଲିବିଆରେ ସାଧୁ ଯୁଦ୍ ସୁସମାଚାର ପ୍ରଚାର କରିଥିଲେ । ବିରୁଟ ଓ ଏଡେସାରେ ମଧ୍ୟ ଧର୍ମ ପ୍ରଚାର କରିଥିବା ବିଷୟ ଲେଖାଯାଏ । ପ୍ରେରିତ ଯୁଦ୍ ଓ ବାର୍ଥଲୋମି

ଦୁହେ ଆର୍‌ମେନିଆରେ ପ୍ରଥମେ ଖ୍ରୀଷ୍ଟ ଧର୍ମ ପ୍ରଚାର କରିଥିଲେ, ଏଣୁ ବର୍ତ୍ତମାନ ପର୍ଯ୍ୟନ୍ତ ସେ ଦୁହେଁଙ୍କୁ ସେଠିକାର ଇଷ୍ଟ ସାଧୁ ରୂପେ ସମ୍ମାନ ଓ ଭକ୍ତି ଜଣାନ୍ତି । ବର୍ତ୍ତମାନର ଉତ୍ତର ଇରାନରେ ସ୍ଥାପିତ ଥାଦିଉସ ଆଶ୍ରମ ଏବଂ ଦକ୍ଷିଣ ପୂର୍ବ ତୁର୍କୀରେ ଅବସ୍ଥାପିତ ବାର୍ଥଲୋମି ଆଶ୍ରମ ସେହି ସମୟରେ ଆରମେନିଆ ମଣ୍ଡଳୀର ଅଧିନରେ ଥିଲା । ବାସ୍ତବରେ ସାଧୁ ଯୁଦ୍ ଥିଲେ ଜଣେ ଆନ୍ତର୍ଜାତିକ ଭ୍ରାମ୍ୟମାନ୍ ବ୍ୟକ୍ତି ଯିଏ ମେସୋପଟାମିଆ, ଲିବିଆ, ତୁର୍କୀ ଏବଂ ପେରସିଆ ପ୍ରଭୃତି ସ୍ଥାନକୁ ଯାତ୍ରା କରି ଅନେକଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷୀତ କରିଥିଲେ । ଆର୍ମେନିଆ ମଣ୍ଡଳୀର ସ୍ଥାପକ କେବଳ ସେ ଥିଲେ ତା ନୁହେଁ ରୋମୀୟ ରାଜ୍ୟ ସୀମା ବାହାରେ ମଧ୍ୟ ସେ ଧର୍ମ ପ୍ରଚାର କରିଥିଲେ । ଐତିହାସିକ ୟୁସେବିୟୁସଙ୍କ ଅନୁଯାୟୀ ୬୨ ମସିହାରେ ଯେରୁସାଲେମକୁ ଫେରିଯାଇ ସେଠାରେ ନିଜର ଭାଇ ସାଧୁ ସାଇମନଙ୍କୁ ଯେରୁସାଲେମର ଧର୍ମାଧିକ୍ଷ ରୂପେ ନିର୍ବାଚନ କରିବାର ପ୍ରକ୍ରିୟାରେ ସାହାଯ୍ୟ କରିଥିଲେ ।

୬୦ ମସିହାରେ ସାଧୁ ଯୁଦ୍ ନୂତନ ଭାବରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ଯୀହୁଦୀମାନଙ୍କୁ ବିଶେଷ ଭାବରେ ଯେଉଁମାନେ ତାଡ଼ନା ପାଉଥିଲେ ସେମାନଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ ଯାହା ନୂତନ ସୁସମାଚାରରେ ସ୍ଥାନ ପାଇଅଛି । ଏହି ପତ୍ରରେ ଯୁଦ୍ ଧର୍ମମତର ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତି ଓ ସେମାନଙ୍କର ନୀତି ଧାରଣା ପ୍ରତି ସତର୍କ ରହିବା ପାଇଁ ସେ ଆହ୍ୱାନ କରନ୍ତି, ବିଶେଷ ଭାବରେ (Simonian, Nicolites and Gnostics) ଯେଉଁମାନେ ଖ୍ରୀଷ୍ଟ ବିଶ୍ୱାସ ବିରୁଦ୍ଧରେ ଏକ ଭ୍ରାନ୍ତ ଶିକ୍ଷା ପ୍ରଚାର କରୁଥିଲେ ।

ଆରମେନିୟାଙ୍କ ପରମ୍ପରା ଅନୁଯାୟୀ ସିରିୟାର ରୋମୀୟ ପ୍ରଦେଶସ୍ଥ ବିରୁଟରେ, ପ୍ରେରିତ ଉଗ୍ରସମର୍ଥକ ସାଇମନଙ୍କ ସହିତ ଯୁଦ୍ ୬୫ ମସିହାରେ ଶହୀଦ ହୋଇଥିଲେ । ହସ୍ତରେ ସେ ଯେଉଁ କୁରାଢ଼ି ବା ଗଦା ଧରିଛନ୍ତି ତାହାର ପ୍ରତୀକ ସୂଚାଇ ଦିଏ ଯୁଦ୍ କେଉଁ ଭାବରେ ମୃତ୍ୟୁବରଣ କରିଥିଲେ । ତାହାଙ୍କର ମସ୍ତକକୁ ସେହି କୁରାଢ଼ି ଦ୍ୱାରା ଛେଦନ କରାଯାଇଥିଲା । ବାସ୍ତବରେ ନିଜର ବିଶ୍ୱାସ ପାଇଁ ସେ ନିଜର ମୂଲ୍ୟ ପ୍ରଦାନ କରିଥିଲେ । ତାଙ୍କର ମୃତ୍ୟୁ ଶରୀରକୁ ରୋମକୁ ଅଣା ଯାଇ ପିତର ମହାଦେବାଳୟର ନିମ୍ନସ୍ଥ ସମାଧି ସ୍ଥାନରେ ରଖାଯାଇଅଛି ଯାହାକୁ ବିଶ୍ୱାସୀମାନେ ଆଜି ପର୍ଯ୍ୟନ୍ତ ସମ୍ମାନ ଦେଇ ଆସୁଛନ୍ତି ।

ଯୀଶୁ ଛବିଟିକୁ ଯୁଦ୍ ହସ୍ତରେ ଧରି ନିଜ ବକ୍ଷରେ ଆଉଜି ରଖିବା ଦୃଶ୍ୟଟିକୁ କାହିଁକି ଚିତ୍ରଣ କରାଯାଇଥାଏ ? କିମ୍ବଦନ୍ତି କହେ ଏଡେସାର ଗୋଟିଏ ଛୋଟ ସହର ଆବାଗାର ଯାହାକି ବର୍ତ୍ତମାନର ଦକ୍ଷିଣ ପୂର୍ବ ତୁର୍କୀ ରୂପେ ପରିଚିତ ସେଠିକାର ରାଜା ଦିନେ ଜଣେ ବାର୍ତ୍ତାବାହକଙ୍କୁ ଯୀଶୁଙ୍କ ନିକଟକୁ ପଠାନ୍ତି । ଆବାଗାରର ରାଜା କୁଷ୍ଠରୋଗରେ ପ୍ରପିଡ଼ୀତ ଥିଲେ । ଯୀଶୁ ବି ଅନେକଙ୍କୁ ସୁସ୍ଥ କରିବା ବିଷୟ ସେ ଶୁଣିଥିଲେ । ଏଣୁ ସେ ଜଣେ ଚିତ୍ରକାରଙ୍କୁ ପଠାଇଲେ ଯେପରି ସେ ଯୀଶୁଙ୍କ ଛବି ଅଙ୍କନ କରି ନେଇ ଆସିବେ ଏବଂ ସେହି ଛବିକୁ ଦେଖି ସେ ପ୍ରାର୍ଥନା କରିବେ । ଯୀଶୁଙ୍କର ମୁଖର ଉଜ୍ଜ୍ୱଳତା ଦେଖି ଚିତ୍ରକାର ଜଣକ ତାଙ୍କ ଛବିଟିକୁ ଅଙ୍କନ କରିପାରି ନ ଥିଲେ । ଯୀଶୁ ତାଙ୍କ ପ୍ରତି ଦୟା ପ୍ରଦର୍ଶନ କରି, ଗୋଟିଏ ବସ୍ତ୍ରରେ ନିଜର ମୁଖକୁ ଛାପି ଦେଇ ସେହି ବସ୍ତ୍ରଟିକୁ ତାଙ୍କୁ ପ୍ରଦାନ କରିଥିଲେ । ସେହି ବାର୍ତ୍ତାବାହକ ଜଣକ ରାଜାଙ୍କ ନିକଟକୁ ଫେରିଯାଇ ଯାଇ କହିଲେ ଯେ ଯୀଶୁଙ୍କର ଜଣେ ଶିଷ୍ୟ ସେଠାକୁ ଯାଇ ତାଙ୍କୁ ସୁସ୍ଥ କରିବେ । ଯୁଦ୍ ତାଙ୍କ ମିଶନାରୀ ଯାତ୍ରାରେ ଏଡେସାରେ ପହଞ୍ଚି ରାଜାଙ୍କ ଉପରେ ହସ୍ତ ରଖି ପ୍ରାର୍ଥନା କରନ୍ତେ ସେ ସୁସ୍ଥତା ଲାଭ କରିଥିଲେ । ଏହାପରେ ରାଜା ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ଏବଂ ଯେଉଁମାନେ ତାଙ୍କ ଅଧିନରେ ଥିଲେ ସେ ସମସ୍ତେ ମନ ପରିବର୍ତ୍ତନ କରି ଖ୍ରୀଷ୍ଟଙ୍କୁ ଗ୍ରହଣ କରିଥିଲେ ।

ଯୁଦ୍ଙ୍କ ମସ୍ତକ ଉପରେ ଅଗ୍ନି ଶିଖା ଚିତ୍ରଣ କରିବାର ପ୍ରତୀକ କଣ ? ପେନ୍ତେକସ୍ତ ଦିବସରେ ଯୁଦ୍ ଅନ୍ୟ ପ୍ରେରିତମାନଙ୍କ ସହିତ ସେ ମଧ୍ୟ ପବିତ୍ର ଆତ୍ମାଙ୍କୁ ଗ୍ରହଣ କରିଥିବା ଘଟଣାଟିକୁ ସ୍ମରଣ କରି ସେହିପରି ଚିତ୍ରଣ କରାଯାଇଛି । ସାଧୁ ଯୁଦ୍ଙ୍କ ପ୍ରତି ବିଶ୍ୱାସୀମାନଙ୍କ ଭକ୍ତି କିପରି ଜାଗ୍ରତ ହୋଇଥିଲା ? ଦମନିକ ସଂଘର ସଭ୍ୟମାନେ ୧୨୧୬ ମସିହାରେ ଆରମେନିଆରେ ପହଞ୍ଚି ନିଜର ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ । ସେହି ସମୟରେ ସେମାନେ ସାଧୁ ଯୁଦ୍ଙ୍କ ପ୍ରତି ଥିବା ବିଶ୍ୱାସ ଲୋକଙ୍କ ମଧ୍ୟରେ ପରିଲିକ୍ଷିତ ହୋଇଥିଲା । ସେହି ବିଶ୍ୱାସ ଦୀର୍ଘ ଦିନ ଧରି ବଞ୍ଚିରହିଥିଲା । ୧୮୦୦ ଶତାବ୍ଦୀରେ ଧର୍ମ ତାଡ଼ନା ଯୋଗୁ ସେହି ଭକ୍ତି ଲୋପ ପାଇ ଯାଇଥିଲା । ୧୯୦୦ ଶତାବ୍ଦୀରେ ପୁଣି ସେହି ଭକ୍ତି ଜାଗରିତ ହୋଇଥିଲା । ଇଟାଲୀ, ସ୍ପେଇନ, ଦକ୍ଷିଣ ଆମେରିକା ଓ ଯୁକ୍ତ ଆମେରିକାରେ ଯୁଦ୍ଙ୍କ ପ୍ରତି

ବିଶ୍ୱାସୀମାନଙ୍କର ଭକ୍ତି ବର୍ତ୍ତମାନ ଯୁଗରେ ମଧ୍ୟ କାହିକି ଅଧିକରୁ ଅଧିକ ବୃଦ୍ଧି ପାଉଛି ? ଯଦିଓ ବିଜ୍ଞାନ ଓ ପ୍ରଯୁକ୍ତି ବିଜ୍ଞାନ ଦ୍ୱାରା ବହୁତ କିଛି ପରିବର୍ତ୍ତନ ହୋଇଅଛି ତଥାପି ମନୁଷ୍ୟର ଚିନ୍ତା, ମାନସିକ ଚାପ ଦିନକୁ ଦିନ ବଢ଼ିବାରେ ଲାଗିଛି । ଏଣୁ ମନୁଷ୍ୟ ସେଥିରୁ ମୁକ୍ତି ପାଇବା ପାଇଁ ଧାର୍ମିକ ଚିନ୍ତାଧାରା ଓ ଭକ୍ତି ଭାବରେ ଆଶ୍ରୟ ନେଉଥିବାରୁ ସାଧୁ ଯୁଦ୍‌ଙ୍କ ପରି ମହାନ ବ୍ୟକ୍ତିମାନଙ୍କ ପ୍ରାର୍ଥନାରେ ବିଶ୍ୱାସୀମାନେ ପ୍ରେରଣା ପାଇଛନ୍ତି । ମଧ୍ୟ ଯୁଗରେ ସୁଇଡେନର ସାଧ୍ୱୀ ବ୍ରିଜିଟ ବିଶ୍ୱାସ ଦ୍ୱାରା ସାଧୁ ଯୁଦ୍‌ଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରିବା ପାଇଁ ଗୋଟିଏ ଦର୍ଶନ ପାଇଥିଲେ । ଯୁଦ୍‌ଙ୍କ କୂଳ ନାମ 'ଥାଦିଉସ' ଅର୍ଥାତ୍ ସେ ଯେପରି ଉଦାରଶୀଳ, ଦୟାଳୁ ଓ ସାହସିକତା ପ୍ରଦର୍ଶନ କରିଥିଲେ, ସେହିପରି ହେବା ପାଇଁ ଯୀଶୁ ତାଙ୍କୁ କହିଥିଲେ, ନିରାଶ ବ୍ୟକ୍ତିମାନଙ୍କ ଆଶା ଓ ଅସହାୟ ବ୍ୟକ୍ତିମାନଙ୍କର ସହାୟ ହେବା ନିମନ୍ତେ ପ୍ରଭୁ ସାଧୁ ଯୁଦ୍‌ଙ୍କୁ ଆମ ନିମନ୍ତେ ପ୍ରେରଣ କରିଛନ୍ତି । ଯେତେବଡ଼ କଷ୍ଟସାଧ୍ୟ ପରିସ୍ଥିତି ହେଉନା କାହିକି ପ୍ରଭୁ ଆମକୁ ସେଥିରୁ ମୁକ୍ତି ପ୍ରଦାନ କରିବେ, ଯେବେ ଆମ୍ଭେ ସାଧୁ ଯୁଦ୍‌ଙ୍କ ମାଧ୍ୟସ୍ଥତାରେ ଯୀଶୁଙ୍କ ନିକଟରେ ପ୍ରାର୍ଥନା କରିବା ।

**ସାଧୁ ଯୁଦ ଥାଦେଉସଙ୍କ ଉକ୍ତି:**

* ପ୍ରଭୁ କାହିଁକି ତୁମେ ଆମକୁ ପ୍ରକାଶ କରିବ ଏବଂ ଜଗତକୁ ନୁହଁ ?
(ଯୋହନ ୧୪:୨୨)



## ସାଧୁ ମାର୍ଟିନ ଟୁର୍‌ସ (୩୧୬-୩୯୭, ନଭେମ୍ବର ୧୧)

୩୧୬ ସାଲରେ ମାର୍ଟିନ ହଙ୍ଗେରିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଓ ମାତା ଖ୍ରୀଷ୍ଟିଆନ୍ ନ ଥିଲେ, କିନ୍ତୁ ଅନ୍ୟ ଦେବଦେବୀମାନଙ୍କୁ ପୂଜା କରୁଥିଲେ । ତାଙ୍କ ପିତା ରୋମୀୟ ସୈନ୍ୟ ବିଭାଗର ଜଣେ ମୁଖ୍ୟ କର୍ମଚାରୀ ଥିଲେ । ମାର୍ଟିନଙ୍କ ଜନ୍ମ ପରେ ତାଙ୍କ ପିତା ମାତା ଇଟାଲୀର ପାଭିଆରେ ବସତି ସ୍ଥାପନ କଲେ । ତାଙ୍କୁ ଯେତେବେଳେ ୧୦ ବର୍ଷ ହେଉଥିଲା, ସେ ଖ୍ରୀଷ୍ଟିଆନ୍ ଗୀର୍ଜା ଯାଇ ପ୍ରାର୍ଥନା କରୁଥିଲେ ଏବଂ ଦୀକ୍ଷାସ୍ନାନ ପାଇବା ପାଇଁ ନାମ ଲେଖାଇଲେ । ଏହି ଖବର ପାଇ ମାର୍ଟିନଙ୍କ ପିତା ତାଙ୍କୁ ସୈନ୍ୟ ବିଭାଗରେ ଭର୍ତ୍ତି କରାଇଲେ । ଦିନକର ଘଟଣା । ଥଣ୍ଡାଦିନରେ ମାର୍ଟିନ ତାଙ୍କ ସୈନ୍ୟମାନଙ୍କ ସହିତ ଫ୍ରାନ୍ସର ଗାଉଲ୍ ନିକଟବର୍ତ୍ତୀ ଆମିଏନ୍ ସହର ପରିକ୍ରମା କରୁଥିଲେ । ସହର ଦ୍ୱାର ଦେଶରେ ସେ ଦେଖିଲେ ଜଣେ ଭିକାରି ଥଣ୍ଡାରେ ଥରୁଥାନ୍ତି । ତାଙ୍କ ଦେହରେ ବସ୍ତ୍ର ନଥିଲା । ଭିକାରି ମାର୍ଟିନଙ୍କୁ ଦେଖି କିଛି ପାଇବା ଆଶାରେ ତାଙ୍କୁ ଭିକ୍ଷା ମାଗିଲା । ମାର୍ଟିନ ପାଖରେ କିଛି ଟଙ୍କା ନଥିଲା, କିନ୍ତୁ ସେ ଅଶ୍ୱରୁ ଓହ୍ଲାଇ ଆସି ନିଜ ପାଖରେ ଥିବା ଖଣ୍ଡା ନେଇ ନିଜର ଅତି ମୂଲ୍ୟବାନ୍ ପୋଷାକକୁ ଦୁଇ ଭାଗ କଲା । ଗୋଟିଏ ଭାଗ ଭିକାରିକୁ ଘୋଡ଼ାଇ ଦେଇ କହିଲେ, 'ଦେଖ ଭାଇ, ମୋ ଠାରେ କିଛି ଟଙ୍କା ନାହିଁ, ତୁମକୁ ଦେବା ପାଇଁ । ଏହି ବସ୍ତ୍ର ଖଣ୍ଡିକ ଯାହା ମୋ ପାଖରେ ଅଛି । ଏଥିରୁ ଖଣ୍ଡେ ତୁମେ ନିଅ ଏବଂ ମୁଁ ଅନ୍ୟ ଖଣ୍ଡିକ ନେଇ ଯାଉଛି' ।

ସେହିଦିନ ସନ୍ଧ୍ୟାରେ ଯୀଶୁ ମାର୍ଟିନ ଦେଇଥିବା ଖଣ୍ଡିକ ବସ୍ତ୍ର ପିନ୍ଧି ମାର୍ଟିନଙ୍କୁ ଦର୍ଶନ ଦେଇଥିଲେ । ପ୍ରଭୁ ଯୀଶୁ ତାଙ୍କ ସଙ୍ଗରେ ଥିବା ଦୂତମାନଙ୍କୁ କହିଥିଲେ, ଏହି ବସ୍ତ୍ର ମାର୍ଟିନ ମୋତେ ଦେଇଛନ୍ତି ଯିଏ ଦୀକ୍ଷାସ୍ନାନ ପାଇ ଯୀଶୁଙ୍କୁ ନିଜର ତ୍ରାଣ କର୍ତ୍ତାରୂପେ ଗ୍ରହଣ କରିଥିଲେ । ଦୀକ୍ଷାସ୍ନାନ ପ୍ରାପ୍ତ କଲାପରେ ସେ ସୈନ୍ୟ ଦଳର ନିର୍ଦ୍ଦେଶକ ପାଖକୁ ଯାଇ କହିଲେ, 'ମୋତେ ମୁକ୍ତ କରନ୍ତୁ ମୁଁ ଯୀଶୁଖ୍ରୀଷ୍ଟଙ୍କ ପାଇଁ ଲଢ଼େଇ କରିବି' । ସୈନ୍ୟ ବିଭାଗର ନିର୍ଦ୍ଦେଶକ ଜୁଲିଆନ୍ ରାଗିଯାଇ ତାଙ୍କୁ କହିଲେ, ତୁମେ ଜଣେ ଭୟାଳୁ ବ୍ୟକ୍ତି । ଭାବିଥିଲି ସୈନ୍ୟମାନଙ୍କ ମଧ୍ୟରେ ତୁମେ ହିଁ ସାହସିକ ବ୍ୟକ୍ତି । ମାର୍ଟିନଙ୍କୁ ବନ୍ଦିଶାଳାରେ ନିକ୍ଷେପ କରିବାକୁ

ସେ ଆଦେଶ ଦେଲେ । କିଛିଦିନ ପରେ ସେ ବନ୍ଦୀଶାଳାରୁ ମୁକ୍ତ ହୋଇ ସୈନ୍ୟ ବିଭାଗରୁ ମଧ୍ୟ ବାହାରି ପଡ଼ିଲେ, ଏହାପରେ ଜଣେ ତୀର୍ଥଯାତ୍ରୀ ଭାବେ ବିଭିନ୍ନ ସ୍ଥାନ ଦର୍ଶନ କରି ଶେଷରେ ସନ୍ନ୍ୟାସୀମାନଙ୍କ ନିମନ୍ତେ ଗୋଟିଏ ସମାଜ ଆରମ୍ଭ କଲେ । ଗରିବମାନଙ୍କ ପ୍ରତି ତାଙ୍କ ହୃଦୟ ସର୍ବଦା ଦୟା ଓ ଉଦାରତାରେ ପୂର୍ଣ୍ଣ ଥିଲା । ଦିନେ ସେ ଦେଖିଲେ ଜଣେ କୁଷ୍ଠ ରୋଗୀଙ୍କୁ ଅନ୍ୟମାନେ ଥଟ୍ଟା ଏବଂ ପରିହାସ କରୁଛନ୍ତି । ଏହା ଦେଖି ସେ ଭାବିଲେ ଦୟାର କାର୍ଯ୍ୟ କେବଳ ଲୋକଙ୍କୁ ଖାଦ୍ୟ ଦେବା କିଅବା ବସ୍ତ୍ର ଦେବା ତାହା ନୁହେଁ, ମାତ୍ର ସେମାନଙ୍କୁ ସାନ୍ତ୍ୱନାର ବାଣୀ ଶୁଣାଇବା ଏବଂ ତାଙ୍କ ମୁଖରେ ହସ ଆଣିବା । ମାର୍ଟିନ ସେହି କୁଷ୍ଠ ରୋଗୀ ପାଖକୁ ଯାଇ ତାଙ୍କୁ ଆଲିଙ୍ଗନ କଲେ ଏବଂ କହିଲେ 'ଭାଇ, ତୁମଠାରେ ଯୀଶୁ କଷ୍ଟ ପାଉଛନ୍ତି' ।

ପୁଣି ଅନ୍ୟ ଦିନ ସେ ଦେଖିଲେ, ଗୋଟିଏ ଗ୍ରାମର ବାପା ଓ ମା'ମାନଙ୍କୁ ହାତରେ ଶିକୁଳି ପିନ୍ଧାଇ ରଖାଯାଇଛି । ମାର୍ଟିନ ପଚାରି ଜାଣିପାରିଲେ ଯେ ପରବର୍ତ୍ତୀ ଦିନ ସେମାନଙ୍କର ମୁଣ୍ଡ କଟାଯିବ କାରଣ ସେମାନେ ସେଠାର Count Avitius ଙ୍କୁ କର ଦେଇପାରି ନଥିଲେ । ଏହି ଦୃଶ୍ୟ ଦେଖି ମାର୍ଟିନ ଅତିଶୀଘ୍ର ପ୍ରସାଦକୁ ଗଲେ କିନ୍ତୁ ରାତି ଥିବାରୁ ସମସ୍ତ ଦ୍ୱାରା ବନ୍ଦ ହୋଇଥିଲା । ମୁଖ୍ୟ ଦ୍ୱାର ସମ୍ମୁଖରେ ଆଣ୍ଠୁପାତି ସେ ପ୍ରାର୍ଥନା କଲେ ହେ ପ୍ରଭୁ ତୁମ ଦୂତ ପଠାଅ, ଯେପରି ସେ ମୋ କଥା ରଖିପାରିବ । ପ୍ରିୟ ପ୍ରଭୁ, ଏହି ପ୍ରକାର ଦୁଃଖ ଅବସ୍ଥାରୁ ସେହି ନିରୀହ ଲୋକମାନଙ୍କୁ ଉଦ୍ଧାର କର' ।

ସେହିଦିନ ରାତ୍ରି Count Avitius ସ୍ୱପ୍ନରେ ଦେଖିଲେ ସ୍ୱର୍ଗର ଆଲୋକମାଳା ତାଙ୍କ ଚତୁର୍ଦ୍ଦିଗରେ ଝଲସି ଯାଉଛି ଏବଂ ସେହି ସମୟରେ ପ୍ରଭୁଙ୍କର ଦୂତ ତାଙ୍କୁ କହିଲେ 'ଉଠ ଅଭିତୁସ, ପ୍ରଭୁଙ୍କର ଦାସ ତୁମ୍ଭ ଦ୍ୱାର ବାହାରେ ତୁମକୁ ଅପେକ୍ଷା କରୁଛନ୍ତି । ତତ୍‌କ୍ଷଣାତ୍ ଶଯ୍ୟାରୁ ଉଠି ପୋଷାକ ପରିଧାନ କଲେ ଏବଂ ଥରି ଥରି ମୁଖ୍ୟ ଦ୍ୱାର ଆଡ଼କୁ ଗତି କଲେ । ମାର୍ଟିନ ସେହି ଶକ୍ତିଶାଳୀ ଯୋଦ୍ଧାଙ୍କୁ ତାଙ୍କ ବାହୁରେ ଆଲିଙ୍ଗନ କରି କହିଲେ, 'ଯେଉଁ ନିରୀହ ବ୍ୟକ୍ତିମାନଙ୍କୁ ତୁମେ ମୃତ୍ୟୁଦଣ୍ଡ ଦେବା ପାଇଁ ନିର୍ଦ୍ଦେଶ ଦେଇଅଛ, ସେମାନଙ୍କୁ ମୁକ୍ତ କର । ସେମାନଙ୍କର ପାପକୁ ତୁମେ କ୍ଷମା କର, ପ୍ରଭୁ ତୁମର ପାପକୁ କ୍ଷମା କରିବେ' ।

ଦିନେ ଜଣେ ଯୁବକ ତାଙ୍କ ଆଶ୍ରମରେ ରହି ଦୀକ୍ଷାସ୍ନାନ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେଉଥିଲେ । ମାର୍ଟିନ କିଛି ଦିନ ପାଇଁ ବାହାରକୁ ଯାଇଥିଲେ । ସେ ଫେରିବା ପରେ ଜାଣିପାରିଲେ ଯେ ସେହି ଯୁବକଟି ହଠାତ୍ ଦୀକ୍ଷାସ୍ନାନ ନେବା ପୂର୍ବରୁ ମୃତ୍ୟୁବରଣ କରିଛନ୍ତି । ସେ ସମସ୍ତ ସନ୍ନ୍ୟାସୀଙ୍କୁ କୋଠରିରୁ ବାହାରକୁ ଯିବା ପାଇଁ କହିଲେ ଏବଂ ସେହି ନିର୍ଜୀବ ଶରୀର ଉପରେ ହସ୍ତ ଦେଇ କ୍ରନ୍ଦନ କରି ପ୍ରାର୍ଥନା କଲେ । କିଛି ସମୟ ପରେ ଶରୀର ଉତପ୍ତ ହେବାକୁ ଲାଗିଲା ଏବଂ ଯୁବକଟି ଜୀବନ ଫେରି ପାଇଲା । ଏହାପରେ ଦୀକ୍ଷା ସ୍ନାନ ଗ୍ରହଣ କରି କିଛି ବର୍ଷ ସେହି ଯୁବକଟି ବଞ୍ଚିଲା ।

ମାର୍ଟିନଙ୍କ ଜୀବନର ଅନ୍ୟ ଘଟଣାଟି ଅତି ସ୍ମରଣୀୟ । ଦିନକର ଘଟଣା । ମାର୍ଟିନଙ୍କୁ କେତେଜଣ ସୈନ୍ୟ ପଥ ମଧ୍ୟରେ ନିଷ୍ଠୁର ଭାବରେ ମାଡ଼ ମାରି ତାଙ୍କୁ ଅଚେତ୍ କରିଦେଲେ । ମାର୍ଟିନଙ୍କ ମୁଖ ଦେଖି ସେହି ସ୍ଥାନରୁ ସେମାନଙ୍କ ଘୋଡ଼ା ଘୁଞ୍ଚିଲା ନାହିଁ । ମାର୍ଟିନଙ୍କ ସାଥୀମାନେ ତାଙ୍କୁ ସେଠାରୁ ବାହାର କରିନେଲେ, କିନ୍ତୁ ଘୋଡ଼ାଗୁଡ଼ିକ ସେଠାରୁ ପାଦେ ହେଲେ ଆଗକୁ ବଢ଼ିଲେ ନାହିଁ । ଯେତେବେଳେ ସୈନିକମାନେ ମାର୍ଟିନଙ୍କୁ ମାରିଥିବା ବ୍ୟକ୍ତିମାନଙ୍କୁ ଜାଣିଲେ ଏବଂ ସେମାନେ କ୍ଷମା ମାଗିଲେ, ସେତେବେଳେ ଘୋଡ଼ା ସେହି ସ୍ଥାନରୁ ଆଗକୁ ବଢ଼ିଲା । ମାର୍ଟିନଙ୍କ ସମୟରେ ସେହି ଅଞ୍ଚଳରେ ଅନେକେ ବିଭିନ୍ନ ଦେବଦେବୀଙ୍କୁ ପୂଜା କରୁଥିଲେ । ଗୋଟିଏ ଗ୍ରାମରେ ବିରାଟ ଗଛଟିଏ ଥାଏ । ଗଛଟି ଦେଖିବାକୁ ସୁନ୍ଦର । ସେହି ଗଛକୁ ସେମାନେ ପୂଜା କରୁଥାନ୍ତି । ସେହି ଗ୍ରାମବାସୀମାନଙ୍କୁ ମାର୍ଟିନ କହିଲେ, ପ୍ରକୃତରେ ଗଛଟି ସୁନ୍ଦର, କିନ୍ତୁ ପ୍ରତ୍ୟେକ ସୁନ୍ଦର ଜିନିଷ ପ୍ରଭୁଙ୍କଠାରୁ ଆସିଥାଏ । ଏଣୁ ଗଛ ନୁହେଁ, ମାତ୍ର ପ୍ରଭୁ ପୂଜା ପାଇବା ଯୋଗ୍ୟ, ଯଦି ସେମାନେ ଏଥିରେ ରାଜି ନ ହୁଅନ୍ତି ସେ ନିଜେ ସେହି ଗଛଟିକୁ କାଟିବେ । ଏଥିରେ ଗାଁ ଲୋକେ ତାଙ୍କ ପ୍ରତି କ୍ରୋଧାନ୍ୱିତ ହେଲେ ଏବଂ କହିଲେ ଯଦି ମାର୍ଟିନ ସେହି ଗଛ ତଳେ ରହିବେ ତେବେ ସେମାନେ ଗଛଟିକୁ କାଟିବା ପାଇଁ ରାଜି ହେବେ । ସେମାନେ ଭାବିଲେ ଯଦି ଏହା ଦ୍ୱାରା ମାର୍ଟିନର ଜୀବନ ଚାଲିଯିବ, ତେବେ ପବିତ୍ର ଗଛ କାଟିଲେ ମଧ୍ୟ ଦୁଃଖ ନାହିଁ । ମାର୍ଟିନ ରାଜି ହେଲେ ସେ କହିଲେ ଭାଇମାନେ ମୋତେ ସେହି ଗଛରେ ବାନ୍ଧି ତୁମ୍ଭେ

ଗଛଟିକୁ କାଟ । ଯଦି ମୁଁ ମିଥ୍ୟା କହୁଛି ଗଛଟି ମୋ ଉପରେ ପଡ଼ି ମୋତେ ଚୂର୍ଣ୍ଣ କରିଦେଉ । ଯେଉଁ ଆଡ଼କୁ ଗଛଟି ଢଳିବାର ବହୁତ ସମ୍ଭାବନା, ସେହି ଆଡ଼କୁ ମାର୍ଟିନକୁ ବାନ୍ଧିଲେ । ଯେପରି ଗଛଟି ତାଙ୍କ ଉପରେ ପଡ଼ି ତାର ଜୀବନ ଚାଲିଯିବ । କିନ୍ତୁ ଆଶ୍ଚର୍ଯ୍ୟର କଥା ଗଛଟି ବିପରୀତ ଆଡ଼କୁ ପଡ଼ିଲା । ଏହି ଦୃଶ୍ୟ ଦେଖି ସମସ୍ତେ ସ୍ତମ୍ଭୀଭୂତ ହେଲେ ଏବଂ ଈଶ୍ୱରଙ୍କଠାରେ ବିଶ୍ୱାସ କଲେ ।

ମାର୍ଟିନ ଜଣେ ସନ୍ନ୍ୟାସୀ, ବିଶପ, ମିଶନାରୀ ଏବଂ ଆଶ୍ଚର୍ଯ୍ୟ କର୍ମକାରୀ ବ୍ୟକ୍ତି ଥିଲେ । ସେ ମୂର୍ତ୍ତିପୂଜା ଏବଂ ଅନ୍ୟାନ୍ୟ ଅନ୍ଧ ବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ, ତାଙ୍କ ବିଷୟରେ କୁହାଯାଏ 'ଆବଶ୍ୟକତାରେ ସେ ଥିଲେ, ଜଣେ ସୈନିକ, କର୍ତ୍ତବ୍ୟରେ ଜଣେ ବିଶପ୍ ଏବଂ ନିଜ ଇଚ୍ଛାରେ ଜଣେ ସନ୍ନ୍ୟାସୀ' । ନିଜ ଡାଇସେସର କାଣ୍ଡେସ୍ ଗ୍ରାମକୁ ସେ ଯାଇଥିଲେ ଜଣେ ଶାନ୍ତିର ଦୂତ ଭାବରେ । ସେଠାରେ ଅସୁସ୍ଥ ହୋଇ ୩୯୭ ନଭେମ୍ବର ମାସ ୮ ତାରିଖରେ ସେ ପ୍ରାଣତ୍ୟାଗ କଲେ । ତାଙ୍କ ଶରୀରକୁ ଟୁର୍‌ରେ ନଭେମ୍ବର ୧୧ ତାରିଖରେ କବର ଦିଆଯାଇଥିଲା ।

**ସାଧୁ ମାର୍ଟିନ ଡି ପରେସଙ୍କ କେତୋଟି ଉକ୍ତି :**

* "ଦୟା ଓ କ୍ଷମା ପ୍ରେମର କାର୍ଯ୍ୟ ଅଟେ"।
* "ରୋଗୀ ସେବା, ବଗିଚା ସଫା, ପନିପରିବା କାଟିବା, ଝାଡୁ କରିବା ସବୁକିଛି ଯଦି ପରମେଶ୍ୱରଙ୍କୁ ଅର୍ପଣ କରାଯାଏ ତାହା ପ୍ରାର୍ଥନା ଅଟେ"।



# ସାଧ୍ୱୀ ସିସିଲିଆ
# (୨୦୦-୨୩୦, ନଭେମ୍ବର ୨୨)

ରୋମ ସହରରେ ଜଣେ କୁମାରୀ ବାସ କରୁଥିଲେ ଯାହାଙ୍କ ନାମ ଥିଲା ସିସିଲିଆ । ସେ ଗୋଟିଏ ବିଖ୍ୟାତ ଓ ଧନୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ଏବଂ ଭାଲେରିଆନ୍‌ଙ୍କୁ ବିବାହ କରିଥିଲେ । ନିଜର କୁମାରୀତ୍ୱକୁ ବଜାୟ ରଖିବା ପାଇଁ ଚିରା ଅଖା ପରିଧାନ କରି, ଉପବାସ ରହି ବିଭିନ୍ନ ସାଧୁ ସାଧ୍ୱୀ ତଥା ଦୂତ ଓ କୁମାରୀମାନଙ୍କ ପ୍ରାର୍ଥନା ଭିକ୍ଷା କରୁଥିଲେ । ତାଙ୍କ ବିବାହ ଉତ୍ସବ ଦିନ ପରମେଶ୍ୱରଙ୍କୁ ହୃଦୟଭରା ସଂଗୀତ ଗାନ କରିଥିଲେ ଏବଂ ବିବାହ ଦିନରେ ଏକତ୍ର ଶୋଇବା ପୂର୍ବରୁ ସେ ଯେ ନିଜର କୁମାରୀତ୍ୱକୁ ପ୍ରଭୁଙ୍କୁ ଦେବା ପାଇଁ ବ୍ରତ ନେଇଛନ୍ତି ତାହା ନିଜର ସ୍ୱାମୀଙ୍କୁ ଜଣାଇଥିଲେ । ଭାଲେରିଆନ ଦୂତଙ୍କୁ ଦେଖିବା ପାଇଁ ପ୍ରମାଣ ମାଗିଥିଲେ । ସିସିଲିଆ କହିଥିଲେ, ତାଙ୍କୁ ସେ ଦେଖି ପାରିବେ ଯେତେବେଳେ ସେ ତୃତୀୟ ମାଇଲ ଖୁଣ୍ଟର ଆପିଆନ ରାସ୍ତା ଦେଇ ଯିବେ ଏବଂ ପୂଣ୍ୟପିତା ଉର୍ବାନୁସଙ୍କ ଦ୍ୱାରା ଦୀକ୍ଷାସ୍ନାନ ପ୍ରାପ୍ତ କରିବେ ।

ସିସିଲିଆଙ୍କ କହିବା ପ୍ରକାରେ, ଭାଲେରିଆନ ନିଜ ସ୍ତ୍ରୀଙ୍କ ପାଖକୁ ଫେରିଯିବା ପରେ ସିସିଲିଆଙ୍କ ପାର୍ଶ୍ୱରେ ଦୂତଙ୍କୁ ଦେଖି ପାରିଥିଲେ ।

ଭାଲେରିଆନଙ୍କ ଭାଇ ତିବେରତିୟୁସ ଯେତେବେଳେ ଶୁଣିଲେ ଯେ ତାଙ୍କ ଭାଇ ଦୀକ୍ଷାସ୍ନାନ ନେଇଛନ୍ତି, ସେ ମଧ୍ୟ ଦୀକ୍ଷାସ୍ନାନ ଗ୍ରହଣ କଲେ ଏବଂ ଯେଉଁ ଖ୍ରୀଷ୍ଟିୟାନମାନେ ସହରର ଶାସକ ତୁର୍‌ସିୟୁସ ଆଲ୍‌ମାଖିଉସଙ୍କ ଦ୍ୱାରା ପ୍ରତିଦିନ ନିହତ ହେଉଥିଲେ ସେ ସେମାନଙ୍କୁ କବର ଦେଉଥିଲେ ।

ଶେଷରେ ଏହି ଦୁଇଜଣ ଭାଇଙ୍କର କାର୍ଯ୍ୟକୁ ଦେଖି ଶାସକ ସେମାନଙ୍କୁ ଗିରଫ କରି ବିଜାତୀୟ ଦେବଦେବୀଙ୍କ ସମ୍ମୁଖରେ ବଳିଦାନ ଉତ୍ସର୍ଗ କରିବା ପାଇଁ ବାଧ୍ୟ କଲେ କିନ୍ତୁ ତାହା ସେମାନେ କରିବା ପାଇଁ ରାଜି ନ ହେବାରୁ ସେମାନଙ୍କୁ ହତ୍ୟା କରାଗଲା । ସିସିଲିଆଙ୍କୁ ମଧ୍ୟ ଗିରଫ କରି ଅଣନିଃଶ୍ୱାସ କଲେ ଓ ଗାଧୁଆ ଗୃହକୁ ଠେଲି ଦେଇଥିଲେ । କିନ୍ତୁ ସେ ମୃତ୍ୟୁବରଣ ନ କରି ବଞ୍ଚି ଯାଇଥିଲେ । ଶାସକ ଆଲ୍‌ମାଖିଉସ ଏହା ଶୁଣିଲା ପରେ, ହତ୍ୟାକାରୀମାନଙ୍କୁ ଆଦେଶ ଦେଲେ ସିସିଲିଆଙ୍କ ମସ୍ତକକୁ ଛେଦନ କରିବା ପାଇଁ । ପ୍ରାୟ ତିନିଥର ହତ୍ୟାକାରୀମାନେ

ତାଙ୍କ ମସ୍ତକକୁ ଆଘାତ କରିଥିଲେ କିନ୍ତୁ ମସ୍ତକ ଛେଦନ କରିପାରି ନ ଥିଲେ । ସେହିପରି ରକ୍ତାକ୍ତ ଅବସ୍ଥାରେ ପୁଣି ତିନି ଦିନ ବଞ୍ଚି ଯାଇଥିଲେ । ଜନତା ତାଙ୍କ ରକ୍ତକୁ ସଂଗ୍ରହ କରିବା ପାଇଁ ତାଙ୍କ ନିକଟକୁ ଆସୁଥିଲେ କିନ୍ତୁ ସେ ସେମାନଙ୍କ ପାଇଁ ପ୍ରାର୍ଥନା ଓ ପ୍ରଚାର କରୁଥିଲେ । ତୃତୀୟ ଦିନରେ ସେ ମୃତ୍ୟୁ ବରଣ କରିଥିଲେ ଏବଂ ପୂଣ୍ୟପିତା ଉର୍ବାନ ତାଙ୍କୁ କବର ଦେଇଥିଲେ ।

ସିସିଲିଆ ସଂଗୀତକାର ମାନଙ୍କ ଇଷ୍ଟ ସାଧ୍ୱୀ ରୂପେ ମଣ୍ଡଳୀରେ ସମ୍ମାନୀତ ହୁଅନ୍ତି । ସିସିଲିଆଙ୍କୁ ହସ୍ତରେ ସଂଗୀତ ସମ୍ବନ୍ଧୀୟ ବାଦ୍ୟ ଯନ୍ତ୍ର ଧରିଥିବା ଛବି ଚିତ୍ରଣ କରାଯାଇଛି । ଯେଉଁ ଦିନ ସେ ବିବାହ ହୋଇଥିଲେ ସେହିଦିନ ନିଜ ହୃଦୟରେ ସ୍ୱର୍ଗୀୟ ସଂଗୀତ ଶୁଣି ପାରିଥିଲେ ।

୧୫୯୯ ଖ୍ରୀଷ୍ଟାବ୍ଦରେ ତାଙ୍କର କବର ଖୋଲାଗଲା ଏବଂ ଶରୀରଟି ଅକ୍ଷୟ ଅବସ୍ଥାରେ ଥିବା ଜଣାଯାଏ । ରେଶମ ବସ୍ତ୍ରରେ ତାଙ୍କ ଶରୀରକୁ ଆବୃତ କରାଯାଇଥିଲା ଏବଂ ସେହି ପୋଷାକର ଧଡିଟି ସୁନାରେ ସଜ୍ଜିତ କରାଯାଇଥିଲା । ଆନୁଷ୍ଠାନିକ ଭାବରେ ଯେଉଁମାନେ ପରୀକ୍ଷା କରିବା ପାଇଁ ଆସିଥିଲେ ସେମାନେ ତାଙ୍କ ଶରୀରରୁ ଏକ ରହସ୍ୟମୟ ଆନନ୍ଦର ସୁବାସିତ ଫୁଲର ସୁଗନ୍ଧ ବାହାରିବା ବିଷୟ ପ୍ରକାଶ କରିଥିଲେ । ରୋମର ତ୍ରାସ୍ତେଭେରେରେ ଥିବା ସାଧ୍ୱୀ ସିସିଲିଆଙ୍କ ଚର୍ଚ୍ଚର ମୂଖ୍ୟ ବେଦୀ ତଳେ ତାଙ୍କର ଅକ୍ଷୟ ଶରୀରକୁ ରଖାଯାଇଅଛି । କୁମାରୀ ମାରୀୟାଙ୍କ ବ୍ୟତୀତ ସାତଜଣ ନାରୀମାନଙ୍କ ମଧ୍ୟରୁ ସେ ହେଉଛନ୍ତି ଜଣେ ଯାହାଙ୍କ ନାମ ଦିବ୍ୟଯଜ୍ଞରେ ସ୍ମରଣ କରାଯାଇଥାଏ ।

ମଣ୍ଡଳୀରେ ବିଭିନ୍ନ ସଂଗୀତ ଗୁଡିକ ରଚନା କରାଯାଇ ତାଙ୍କ ନାମରେ ଉତ୍ସର୍ଗ କରାଯାଇଛି । ନଭେମ୍ବର ୨୨ ସାଧ୍ୱୀ ସିସିଲିଆଙ୍କ ପର୍ବଦିନରେ ୟୁରୋପର ବିଭିନ୍ନ ସ୍ଥାନରେ ସମ୍ମିଳିତ ସଂଗୀତ ଆୟୋଜନ କରାଯାଇଥାଏ ।

ସିସିଲିଆ ନାମର ଅର୍ଥ କଣ ? ଏହାର ଅର୍ଥ ହେଲା ଯିଏ ନିଜ ସୌନ୍ଦର୍ଯ୍ୟ ପ୍ରତି ଅଜ୍ଞ ବା ଅନ୍ଧ । କାହିଁକି ସାଧ୍ୱୀ ସିସିଲିଆଙ୍କୁ ମୃତ୍ୟୁ ଦଣ୍ଡ ଦିଆଗଲା ? ସିସିଲିଆଙ୍କ ଭାଇ ତିବୁରତିଉସ ଦୀକ୍ଷାସ୍ନାନ ପରେ ସିସିଲିଆଙ୍କୁ ଦୂତଙ୍କ ସହିତ କଥା ହେବାର ଦେଖିବାକୁ ପାଇଲେ । ଏହି ଦୃଶ୍ୟ ଦେଖି ସେ ମନ ପରିବର୍ତ୍ତନ କଲେ । ସିସିଲିଆ

ଗରୀବ ମାନଙ୍କୁ ନିଜର ସମ୍ପଦ ଦାନ କରିଥିଲେ । ଏହା ଦେଖି ଶାସକ ଆଲମାଖିଉସ କ୍ରୋଧାନ୍ୱିତ ହୋଇ ତାଙ୍କୁ ପୋଡ଼ି ଦେବା ପାଇଁ ଆଦେଶ ଦେଇଥିଲେ ।

ସାଧ୍ୱୀ ସିସିଲିଆଙ୍କ ପ୍ରତୀକ କଣ ଅଟେ ? କେତେକ କହନ୍ତି ଗୋଲାପ ଫୁଲ ତାଙ୍କ ପ୍ରତୀକ କାରଣ ଏହା ପ୍ରେମ ଓ ସୌନ୍ଦର୍ଯ୍ୟର ସଂକେତ ଦିଏ ।

**ସାଧ୍ୱୀ ସିସିଲିଆଙ୍କ ଉକ୍ତି:**

✸ "ଯୀଶୁଙ୍କ ପାଇଁ ମୃତ୍ୟୁବରଣ କରିବା ଯୌବନ ଅବସ୍ଥାର ଏକ ତ୍ୟାଗ ନୁହଁ ବରଂ ଏହା ଏକ ନବୀକରଣ ଅଟେ" ।



## ଜାଭିୟେରର ସାଧୁ ଫ୍ରାନ୍‌ସିସ୍ (୧୫୦୬-୧୫୫୨, ଡିସେମ୍ବର ୩)

ସ୍ପେନ୍ ରାଜ୍ୟର ପାମ୍ପଲାନା ନିକଟବର୍ତ୍ତୀ ଜାଭିୟେର ଦୁର୍ଗରେ ୧୫୦୬ ମସିହା ଏପ୍ରିଲ୍ ୭ ତାରିଖରେ ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ଫ୍ରାନ୍‌ସିସ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ସେ ଜଣେ ଉଚ୍ଚାଭିଳାଷୀ ଏବଂ ଉଦାର ହୃଦୟର ବ୍ୟକ୍ତି ଥିଲେ । ପାମ୍ପଲନାରେ ପ୍ରାଥମିକ ସ୍କୁଲ୍‌ରେ ଅଧ୍ୟୟନ ପରେ ୧୯ ବର୍ଷ ବୟସରେ ପ୍ୟାରିସ୍‌ର University ରେ ଉଚ୍ଚ ଶିକ୍ଷା ପ୍ରାପ୍ତ କରିଥିଲେ । ପ୍ୟାରିସ୍ ବିଶ୍ୱବିଦ୍ୟାଳୟରେ ତାଙ୍କର ଦୁଇ ଜଣ ଅନ୍ତରଙ୍ଗ ବନ୍ଧୁ ଥିଲେ । ସେମାନେ ହେଲେ, ପିଟେର୍ ଫାବେର ଏବଂ ଇଗ୍ନାସିୟସ ଲୟୋଲା । ଫ୍ରାନ୍‌ସିସ୍ ଇଗ୍ନାସିୟସ୍‌ଙ୍କ ଗୋଟିଏ ବାକ୍ୟରେ ଅନୁପ୍ରାଣିତ ହୋଇଥିଲେ, 'ଯଦି ଜଣେ ମନୁଷ୍ୟ ପୃଥିବୀର ସବୁ କିଛି ଜୟ କରି ନିଜର ଆତ୍ମା ହରାଏ, ସେଥିରେ କି ଲାଭ ?' ଏହି ବାକ୍ୟଟି ତାଙ୍କୁ ସ୍ପର୍ଶ କରିଥିଲା ଏବଂ ସେ ଯୀଶୁ ସଂଘର ପ୍ରଥମ ସଭ୍ୟ ଭାବରେ ଅନ୍ୟ ପାଞ୍ଚ ଜଣ ସହିତ ୧୫୩୪ ମସିହା ଅଗଷ୍ଟ ୧୫ତାରିଖରେ ବ୍ରତ ନେଇଥିଲେ । ଦରିଦ୍ରତା ଓ ପବିତ୍ରତାର ବ୍ରତ ନେଇ ପରିତ୍ରାଣ କାର୍ଯ୍ୟ ନିମନ୍ତେ ପବିତ୍ର ଭୂମି ପାଲେଷ୍ଟାଇନ୍ ଅଭିମୁଖେ ଯାତ୍ରା କଲେ । ତୁର୍କୀର ମୁସଲିମମାନଙ୍କ କଟକଣା ଯୋଗୁଁ ସେମାନଙ୍କୁ ଗୋଟିଏ ବର୍ଷ ଇଟାଲୀର ଭେନିସ୍‌ରେ ଅପେକ୍ଷା କରିବାକୁ ପଡ଼ିଥିଲା । ଯେତେବେଳେ ସେମାନେ ଭେନିସ୍‌ରେ ଥିଲେ ୧୫୩୭ ମସିହା ଜୁନ୍ ୨୪ ତାରିଖରେ ଫ୍ରାନ୍‌ସିସ ଏବଂ ଇଗ୍ନାସିୟସ୍ ଯାଜକତା ଅଭିଷେକ ପ୍ରାପ୍ତ ହୋଇଥିଲେ । ଇଟାଲୀର ବଲୋନ୍ୟାରେ ଫ୍ରାନ୍‌ସିସ୍ ହସ୍ପିଟାଲ୍‌ରେ କାର୍ଯ୍ୟ କରିବା ସମୟରେ ପ୍ରାୟ ତିନି ମାସ ଜ୍ୱରରେ ପୀଡ଼ିତ ଥିଲେ । ଇଗ୍ନାସିୟସ୍ ତାଙ୍କର ଦୁର୍ବଳ ଅବସ୍ଥା ଦେଖି ରୋମକୁ ଡାକିଲେ ଏବଂ ଆସ୍ତେ ସେ ଆରୋଗ୍ୟଲାଭ କଲେ ।

ସେହି ସମୟରେ ପର୍ତ୍ତୁଗାଲର ରାଜା ତୃତୀୟ ଯୋହନ ଯୀଶୁ ସଂଘର ଯାଜକମାନଙ୍କୁ ପ୍ରେରିତ କାର୍ଯ୍ୟରେ ପୂର୍ବ ଭାରତୀୟ (East Indies) ଦେଶକୁ ଯିବା ପାଇଁ ଅନୁରୋଧ କରିଥିଲେ । ଇଗ୍ନାସିୟସ୍ ଯେତେବେଳେ ଫ୍ରାନ୍‌ସିସଙ୍କୁ

ଭାରତ ଯିବା ପାଇଁ ପଚାରିଲେ, ସେ ଆନନ୍ଦରେ ବିମୋହିତ ହେଲେ । କେବଳ ଗୋଟିଏ ଦିନ ଭିତରେ ପ୍ରସ୍ତୁତ ହୋଇ, ପୁଣ୍ୟପିତା ତୃତୀୟ ପାଉଲଙ୍କ ଆଶୀର୍ବାଦ ଭିକ୍ଷାକରି ୧୫୪୦ ମସିହା ମାର୍ଚ୍ଚ ୧୫ ତାରିଖରେ ଫ୍ରାନ୍‌ସିସ ରୋମରୁ ଯାତ୍ରା ଆରମ୍ଭ କରି ଜୁନ୍ ମାସରେ ଲିସବନରେ ପହଞ୍ଚିଲେ । ୯ ମାସ ପର୍ଯ୍ୟନ୍ତ ସେଠାରେ ରହି ଧର୍ମଶିକ୍ଷା ପାପସ୍ୱୀକାର ଶୁଣି ବନ୍ଦୀମାନଙ୍କର ଯତ୍ନ ନେଲେ ।

ପୁଣ୍ୟପିତାଙ୍କ ପ୍ରତିନିଧି ରୂପେ ନିଯୁକ୍ତି ପାଇ ୧୫୪୧ ମସିହା ଏପ୍ରିଲ୍ ୭ ତାରିଖରେ ସେ ଭାରତ ଅଭିମୁଖେ ଜାହାଜଯାତ୍ରା ଆରମ୍ଭ କଲେ ।

ପ୍ରାୟ ୧୩ ମାସ ଯାତ୍ରା ପରେ ୧୫୪୨ ମସିହା ମାର୍ଚ୍ଚ ୧୬ ତାରିଖରେ ଫ୍ରାନ୍‌ସିସ ଗୋଆରେ ପହଞ୍ଚିଲେ । ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଭାଷା ଶିଖି ଗୋଟିଏ ଶିକ୍ଷା ସଂକ୍ଷେପ ପ୍ରସ୍ତୁତ କଲେ । ଗୋଆଠାରୁ ସେ ଗଲେ କନ୍ୟାକୁମାରୀ ଏବଂ ସେଠାରେ ଧୀବରମାନଙ୍କ ସହିତ ତିନି ବର୍ଷ କାମ କରି ସେମାନଙ୍କୁ ପ୍ରଭୁଙ୍କ ଆଡ଼କୁ ଟାଣି ଆଣିପାରିଥିଲେ । ୧୫୪୫ ମସିହା ଅଗଷ୍ଟ ମାସରେ ଫ୍ରାନ୍‌ସିସ ଚେନ୍ନାଇର ମାଇଲାପୁରମଠାରୁ ମାଲାକାକୁ ଯାତ୍ରା କଲେ । ସେଠାରୁ ୧୫୪୯ ମସିହା ଏପ୍ରିଲ୍ ମାସ ୧୭ ତାରିଖରେ ଜଣେ ବ୍ରଦେର ଜୁଆନ ଫେର୍ଣ୍ଣାଣ୍ଡଙ୍କ ସହ ଜାପାନ୍ ଅଭିମୁଖେ ଯାତ୍ରା କଲେ । ଜାପାନର କାଗୋସିମାରେ ପହଞ୍ଚି ସେ ଭାଷା ଶିଖିଲେ ଏବଂ ଶିକ୍ଷା ସଂକ୍ଷେପ ପ୍ରସ୍ତୁତ କଲେ । ଯଦିଓ ସେଠାର ଶାସକ ତାଙ୍କୁ ସ୍ୱାଗତ କଲେ, ବୁଦ୍ଧ ଧର୍ମୀମାନଙ୍କ ଦ୍ୱାରା ଅନେକ ନିର୍ଯ୍ୟାତନା ପାଇଥିଲେ । ଦୁଇବର୍ଷ ମଧ୍ୟରେ ପ୍ରାୟ ୨ ହଜାରରୁ ଅଧିକ ଲୋକଙ୍କୁ ପ୍ରଭୁଙ୍କ ଆଡକୁ ଆଣି ପାରିଥିଲେ । ୧୫୫୧ ମସିହାରେ ଭାରତରେ ନୂତନ ଭାବେ ସ୍ଥାପିତ Province ର(ପ୍ରଦେଶ)Provincial ରୂପେ ନିଯୁକ୍ତି ପାଇବା ପରେ ୧୫୫୨ ଫେବୃୟାରୀ ମାସରେ ଗୋଆକୁ ଫେରି ଆସିଲେ । ଡି ଟରେସଙ୍କ ତତ୍ତ୍ୱାବଧାନରେ ଖ୍ରୀଷ୍ଟିୟାନମାନଙ୍କୁ ଛାଡ଼ି ଫ୍ରାନ୍‌ସିସ ଭାରତକୁ ଆସିଲେ ।

ଚାଇନାରେ ମଧ୍ୟ ପ୍ରଭୁଙ୍କର ବାକ୍ୟ ପ୍ରଚାର ଓ ପ୍ରସାର ପାଇଁ ଦୂତ ବାସ

ସ୍ଥାପନ କରିବାରେ ବ୍ୟବସ୍ଥା କରିଥିଲେ । ୧୫୫୨ ମସିହା ଅଗଷ୍ଟ ମାସ ଶେଷ ଆଡ଼କୁ ବିଭିନ୍ନ ପ୍ରକାର ପ୍ରତିରୋଧ ସତ୍ତ୍ୱେ ଫ୍ରାନ୍‌ସିସ ଚାଇନା ନିକଟବର୍ତ୍ତୀ ଚାଙ୍ଗଚୀନ୍ ଦ୍ୱୀପରେ ଜାହାଜରେ ପହଞ୍ଚିଥିଲେ । ଚାଇନାକୁ ପ୍ରବେଶ ପାଇଁ ଚେଷ୍ଟା କଲାବେଳେ, ନଭେମ୍ବର ୨୧ ତାରିଖରେ ଅସୁସ୍ଥ ହେଲେ ଏବଂ ଡିସେମ୍ବର ୩ ତାରିଖରେ ହାତରେ ମହମବତୀ ଧରି, ତ୍ରିଏକେଶ୍ୱର ଓ ଯୀଶୁଙ୍କ ନାମ ଉଚ୍ଚାରଣ କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ମୃତ୍ୟୁ ବେଳକୁ ତାଙ୍କୁ ୪୬ ବର୍ଷ ହୋଇଥିଲା । ମୋଶାଙ୍କ ପରି ପ୍ରତିଜ୍ଞାତ ଦେଶରେ ପ୍ରବେଶ କରିବାର ଲକ୍ଷ୍ୟ ଥାଇ ପ୍ରବେଶ କରିପାରି ନଥିଲେ । ବିନା ସଂସ୍କାରରେ ତାଙ୍କର ଶରୀରକୁ କବର ଦିଆଯାଇଥିଲା । ଦୁଇ ମାସ ପରେ ତାଙ୍କ ଶରୀର ସତେଜ ଏବଂ ଅକ୍ଷୟ ଥିବାର ଜଣାଗଲା । ଗୋଆର ଯୀଶୁ ଜନ୍ମ ବାସିଲିକା (ବଡ଼ ଗୀର୍ଜାରେ) ତାଙ୍କ ଶରୀର ରଖାଯାଇଅଛି । ଫ୍ରାନ୍‌ସିସଙ୍କ ବାମ ବାହୁ ରୋମର ଯୀଶୁଙ୍କ ଗୀର୍ଜାକୁ ନିଆଯାଇ ସେଠାରେ ସମ୍ମାନିତ କରାଯାଉଛି । ୫୦୦ ବର୍ଷ ପରେ ମଧ୍ୟ ତାଙ୍କ ଶରୀର ଏପର୍ଯ୍ୟନ୍ତ ଅକ୍ଷୟ ହୋଇ ରହିଅଛି ।

ପ୍ରାୟ ୧୦ ବର୍ଷ ଅକ୍ଳାନ୍ତ ପରିଶ୍ରମ କରି ଫ୍ରାନ୍‌ସିସ ଭାରତ, ଜାପାନ ଓ ମାଳୟରେ ପ୍ରଭୁଙ୍କର ବାକ୍ୟ ପ୍ରଚାର କରିଥିଲେ । ଯେଉଁଠାରେ ସେ ପ୍ରଚାର କଲେ, ସେଠାରେ ସେ ମଣ୍ଡଳୀ ସ୍ଥାପନ କଲେ । ବିଭିନ୍ନ ବାଧାବିଘ୍ନ ସହ୍ୟ କରି ଏବଂ ନିଜ ସଂଘର ସଭ୍ୟମାନଙ୍କ ହିଂସାର ଶିକାର ହେବା ସତ୍ତ୍ୱେ ସେ ଅନେକଙ୍କ ଆତ୍ମାକୁ ରକ୍ଷା କରିପାରିଥିଲେ । ୧୦ ବର୍ଷ ଭିତରେ ପ୍ରାୟ ୮୦ ହଜାର କିଲୋମିଟର ଭ୍ରମଣ କରି ୩୦ ହଜାର ଲୋକଙ୍କ ମନ ପରିବର୍ତ୍ତନ କରିପାରିଥିଲେ । ବିଭିନ୍ନ ସ୍ଥାନର ଜଳବାୟୁ, ଭାଷା, ସଂସ୍କୃତି ଏବଂ ପ୍ରତିରୋଧକୁ ସାମନା କରି ଉତ୍ସାହର ସହିତ ଆତ୍ମାକୁ ରକ୍ଷା କରିବା ପାଇଁ କାର୍ଯ୍ୟ କରିଥିଲେ ।

ଇଗ୍ନାସିୟସ୍ ଲୟୋଲାଙ୍କ ସହିତ ଫ୍ରାନ୍‌ସିସଙ୍କୁ ୧୬୬୧ ମସିହାରେ ପୁଣ୍ୟପିତା ପଞ୍ଚଦଶ ଗ୍ରେଗରି ସାଧୁ ରୂପେ ଘୋଷଣା କରିଥିଲେ । ମିଶନର ଇଷ୍ଟ ସାଧୁ ରୂପେ ଫ୍ରାନ୍‌ସିସଙ୍କୁ ମଣ୍ଡଳୀରେ ମାନ୍ୟତା ଦିଆଯାଇଛି ।

# ସାଧୁ ଫ୍ରାନ୍ସିସ ଜାବୀୟେରଙ୍କ ବାଲ୍ୟଜୀବନ

୧୫୦୬ ର ଏପ୍ରେଲ ସାତ । ସେହି ଶୁଭ ଦିନ ସ୍ପେନ ଦେଶର ନବାର ପ୍ରଦେଶସ୍ଥ ଜାବୀୟେର ଦୂର୍ଗରେ ଫ୍ରାନସିସଙ୍କ ଜନ୍ମ । ତାଙ୍କ ପିତା ଡନ୍ ଯୋହନ ଜଣେ ସମ୍ଭ୍ରାନ୍ତ ବଂଶୀୟ ଓ ନବାରା ରାଜାଙ୍କ ଉଚ୍ଚ କର୍ମଚାରୀ ଥିଲେ । ତାଙ୍କ ମାତା ଜାବୀୟେର ଦୂର୍ଗର ଉତ୍ତରାଧିକାରିଣୀ ଥିଲେ । ବହୁ ଭାଇ ଭଉଣୀଙ୍କ ମଧ୍ୟରେ ଫ୍ରାନ୍ସିସ କନିଷ୍ଠ ।

ପିଲାଦିନେ ସେ ଅତି ଚଞ୍ଚଳ ଓ ଚପଳ ଥିଲେ । ସବୁ ନାଚ ଖେଳରେ ସେ ଆଗୁଆ ହେଉଥାନ୍ତି । ନିଜ ସରଳ ତରଳ ପ୍ରକୃତି ଯୋଗୁଁ ସେ ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ଥିଲେ । ତାଙ୍କ ଶିଷ୍ଟାଚାର ଓ ଆତ୍ମସଂଯମ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସମସ୍ତଙ୍କୁ ସନ୍ତୁଷ୍ଟ କରିବା ତାଙ୍କ ତରୁଣ ଜୀବନର ବ୍ରତ ଥିଲା । ସେ ଅତି ମେଧାବୀ ବୋଲି ଛୋଟ ବୟସରୁହିଁ ଜଣା ପଡ଼ିଥିଲା । ପଢ଼ାରେ ତାଙ୍କର ବିଶେଷ ଆଗ୍ରହ ଥିଲା । ରୋଗ ବ୍ୟାଧି କଣ ସେ ମୋଟ ଜାଣି ନ ଥିଲେ । ସେ ସର୍ବଦା ସୁସ୍ଥ ଓ ସବଳ ଥିଲେ ।

ତାଙ୍କ ଘର ହୋଇଥିଲା ତାଙ୍କର ପ୍ରଥମ ଚାଟଶାଳୀ । ତାଙ୍କ ମାତା ଥିଲେ ତାଙ୍କ ପ୍ରଥମ ଶିକ୍ଷୟିତ୍ରୀ । ସେ ନିଜ ମାତାଙ୍କଠାରୁ ବିଦ୍ୟାଶିକ୍ଷା ସଙ୍ଗେ ସଙ୍ଗେ ଧର୍ମ ପ୍ରାର୍ଥନା ଆଦିର ଶିକ୍ଷା ପାଇଥିଲେ । ତାଙ୍କ ମାତା ତାଙ୍କୁ ପୂଣ୍ୟ ଅଭ୍ୟାସ କରିବାର ବାଟ ଦେଖାଇ ଦେଇଥିଲେ । ଯେତେବେଳେ ସେ ନିଜ ମାତାଙ୍କଠାରୁ ଯେଉଁ ଛୋଟ ଛୋଟ ପ୍ରାର୍ଥନାମାନ ଶିଖିଥିଲେ, ସେଗୁଡ଼ିକ ସେ ମୃତ୍ୟୁଶଯ୍ୟାରେ ଥାଇ ମଧ୍ୟ ଆବୃତ୍ତି କରିଥିଲେ । ଫ୍ରାନ୍ସିସ ଯେ ଆଜି ଏଡ଼େ ବଡ଼ ସାଧୁ ତାହା ତାଙ୍କ ମାତାଙ୍କର ଶିକ୍ଷାର ଫଳ ମାତ୍ର ।

**ଛାତ୍ର ଓ ଅଧ୍ୟାପକ**

ଫ୍ରାନ୍ସିସ ନବଯୌବନରେ ପାଦ ଦେଇଥାନ୍ତି । ଏହି ସମୟରେ ନବାରା ଓ ସ୍ପେନ୍ ମଧ୍ୟରେ ଯୁଦ୍ଧ ହୁଏ । ନବାରା ହାରିଲା, ସ୍ପେନ୍‌ରେ ଭୁକ୍ତ ହେଲା । ତାଙ୍କ ବଡ଼ଭାଇ ସେ ଯୁଦ୍ଧରେ ଲଢ଼ିଥିଲେ । ତାଙ୍କୁ ମଧ୍ୟ ଯୁଦ୍ଧକୁ ନେବାକୁ ସେମାନେ ଚେଷ୍ଟା କରିଥିଲେ । କିନ୍ତୁ ସେ ଯୁଦ୍ଧରେ ନ ଯାଉଣୁଁ ଯୁଦ୍ଧଟି ସରି ଯାଇଥିଲା । ତେବେ ଯୁଦ୍ଧର

ଭିଷଣ ପରିଣାମରେ ଫ୍ରାଞ୍ଚିସଙ୍କ ମତି ଗତି ବଦଳି ଗଲା । ସେ ସ୍ପଷ୍ଟ ବୁଝିଲେ ଯେ ଲଢୁଆ ହେବା ବେଶୀ କିଛି ଫଳ ନାହିଁ । ପ୍ରାଣନାଶ ହିଁ ସାର ହୁଏ । ବିଦ୍ୟା ଅର୍ଜନ କରିବା ଉଚିତ । ବିଦ୍ୟା ଯୋଗେ ପାତ୍ର କି ସମ୍ପଦ କି ସୁଖ୍ୟାତି ଅର୍ଜନ କରି ହୁଏ । ଏ ଭାବ ତାଙ୍କୁ ବିଦ୍ୟାପ୍ରତି ଅଧିକ ଅନୁପ୍ରାଣିତ କଲା ପଢ଼ାରେ ସେ ବିଶେଷ ମନୋଯୋଗ କଲେ ।

ଅଠର ବର୍ଷ ବୟସରେ ଫ୍ରାଞ୍ଚିସ୍ ପାରିସ ବିଶ୍ୱବିଦ୍ୟାଳୟରେ ପଢ଼ିବା ଆରମ୍ଭ କଲେ । ସେ ଦର୍ଶନ ଶାସ୍ତ୍ର ଚର୍ଚ୍ଚା କରିଥିଲେ । ୧୫୩୦ରେ ସେ ଯୋଗ୍ୟତା ସହିତ ଏମ୍, ଏ, ଡିଗ୍ରୀ ହାସଲ କଲେ । ତାଙ୍କ ପୂର୍ବରୁ ତାଙ୍କଠାରୁ ଅଧିକ ମେଧାବୀ ଛାତ୍ର ପାରିସ ବିଶ୍ୱବିଦ୍ୟାଳୟରେ କଦାପି ଦେଖାଯାଇ ନ ଥିଲା । ତାଙ୍କ ପାଣ୍ଡିତ୍ୟ ସବୁଆଡ଼େ ପ୍ରଚାରିତ ହେବାକୁ ଲାଗିଲା । ସେ ପାରିସରେ ଦର୍ଶନ ଶାସ୍ତ୍ରର ଅଧ୍ୟାପକ ଭାବେ ନିଯୁକ୍ତି ହୋଇଥିଲେ ।

କଲେଜରେ ଛାତ୍ର ଓ ଅଧ୍ୟାପକ ଥିଲାବେଳେ ତାଙ୍କର ଅନେକ ବନ୍ଧୁଥିଲେ । ସେମାନଙ୍କ ମଧ୍ୟରୁ କେତେକ କାଥଲିକ୍ ଧର୍ମ ବିରୋଧୀ ଥିଲେ । ଫଳରେ ସେ ଯଦିଓ ଧର୍ମ ତ୍ୟାଗ କରି ନ ଥିଲେ, ତଥାପି ଧର୍ମରେ ଶିଥିଳ ହୋଇ ପଡ଼ିଥିଲେ ।

**ଯାଜକୀୟ ଆହ୍ୱାନ**

ଦିନେ ପାରିସ୍‌ଠାରେ ଫ୍ରାଞ୍ଚିସ ଓ ସାଧୁ ଇଗ୍ନେଶୀୟ ଲୟଲାଙ୍କ ଭେଟ ହେଲା । ଇଗ୍ନେଶୀୟ ଦେଖିଲେ ଯେ, ଫ୍ରାଞ୍ଚିସ ଯୁବକ ସୁଲଭ ଉଚ୍ଚାଭିଳାଷ ମରୀଚିକା ପଛରେ ଗୋଡାଇଛନ୍ତି । ଇଗ୍ନେଶୀୟ ତାଙ୍କୁ ଖ୍ରୀଷ୍ଟଙ୍କ ବାଣୀ ଉଦ୍ଧୃତ କରି କହିଲେ, "କି ହିତ ମନୁଷ୍ୟର ଯଦି ସେ ସର୍ବ ଜଗତ୍ ଅର୍ଜନ କରେ, କିନ୍ତୁ ନିଜ ଆତ୍ମା କ୍ଷତି କରି ପକାଏ ?" (ମାଥିଉ ୧୬ :୨୬) । ଏ କଥା ଶୁଣି ଫ୍ରାଞ୍ଚିସ ଉପହାସ କଲେ; ସେ ସେଥିରେ ମୋଟେ ମନ ଦେଲେ ନାହିଁ ।

ଉକ୍ତ ବାଣୀଟି କିନ୍ତୁ ତାଙ୍କ କାନେ କାନେ ହେଉଥାଏ । ତାହା ତାଙ୍କୁ ଭାରି ଗଞ୍ଜଣା ଦେଲା । ଯେତେ ଏଡିବାକୁ ଚେଷ୍ଟା କଲେ ହେଁ ସେତେ ଅଧିକ ଶୁଭୁଥାଏ । ସେ ଭାରୀ ବିରକ୍ତ ହେଲେ । ମଉଜ ମଜଲିସ୍‌ରେ ମନ ଲଗାଇବାକୁ ଚେଷ୍ଟା କଲେ । କାହିଁରେ ଶାନ୍ତି ଆସିଲା ନାହିଁ । ଶେଷରେ ପ୍ରାର୍ଥନାର ଆଶ୍ରୟ ନେଲେ । ଆତ୍ମାର

ଶାନ୍ତି ପାଇଁ ଈଶ୍ୱରଙ୍କଠାରେ କେତେ ବିନତି କଲେ; କିନ୍ତୁ ବାଣୀଟି ମୋଟେ ବନ୍ଦ ହେଲା ନାହିଁ, ବରଂ ତାହା ଅଧିକ ଶୁଭିଲା । ବାଣୀଟି ମଧୁର, ରୁକ୍ଷ ନୁହେଁ, ତାହା ମାନି ଚଳିବା କିନ୍ତୁ କଷ୍ଟସାଧ୍ୟ, ଅସମ୍ଭବ । ଏକ ଦିଗରେ ସାଂସାରିକ ବିଳାସ ପାଇଁ ଲାଳସା, ଅନ୍ୟ ଦିଗରେ ସଂସାର ତ୍ୟାଗ ପାଇଁ ଈଶ୍ୱର ପ୍ରଣୋଦନା । ଏ ଦୁଇଟି ମଧ୍ୟରୁ ତାଙ୍କୁ ଗୋଟିଏ ବାଛି ନେବାକୁ ହେବ । ତାଙ୍କ ଜୀବନରେ ଏହା ଅବଶ୍ୟ ଗୋଟିଏ ଘଡି ସନ୍ଧି । ଗୁଡିଏ ଭାବି ଫଳ ନାହିଁ । କିଛି ସିଦ୍ଧାନ୍ତ କରି ନେବାକୁ ହେବ । ଏହି ସମୟରେ ହଠାତ୍ ତାଙ୍କ ଆତ୍ମାର ଘନ ବାଦଲରେ ଦେଖା ଦେଲା ଶାନ୍ତିର କ୍ଷୀଣ ଆଲୁଅରେଖା । ସେ ଯେ ଈଶ୍ୱରଙ୍କ ଅନୁଗ୍ରହ । ଈଶ୍ୱରଙ୍କ ଏକ ମହତ୍ କର୍ମ ନିମନ୍ତେ ସେ ଆହୂତ ।

**ଯେଶୁଇଟ୍ ସଂଘର ସଭ୍ୟ**

୧୫୩୪ ଅଗଷ୍ଟ ପନ୍ଦର । ଯେଶୁଇଟ୍ ସଂଘର ପ୍ରତିଷ୍ଠା ଦିନ । ସାଧୁ ଇଗ୍ନେଶୀୟ ଲୟଲା ଏ ସଂଘଟି ପ୍ରତିଷ୍ଠା କରିଥିଲେ । ସଂଘଟିର ପ୍ରଥମ ସଭ୍ୟ ସଂଖ୍ୟା ମୋଟେ ସାତ ଥିଲା । ସେତେବେଳେ ପିଟର ଫାବେର ମାତ୍ର ଯାଜକ ଥାନ୍ତି । ସେଦିନ ସେ ମଣ୍ଟେମାଟ୍ରେ ଗୀର୍ଜାରେ ଦିବ୍ୟ ଯଜ୍ଞ ଅନୁଷ୍ଠାନ କରିଥିଲେ । ଯଜ୍ଞ ମଧ୍ୟରେ ସେ ଦିବ୍ୟ ପ୍ରସାଦ ହାତରେ ଉଠାଇ ଧରିଲା ବେଳେ ସଭ୍ୟମାନେ ବ୍ରତ ଗ୍ରହଣ କରିଥିଲେ। ସେମାନେ ପ୍ରତିଜ୍ଞା କରିଥିଲେ ଯେ, ସେମାନେ ପୁଣ୍ୟଭୂମି ପାଲେଷ୍ଟାଇନକୁ ତୀର୍ଥ ଯାତ୍ରା କରିବେ । ତାହା ଅସମ୍ଭବ ହେଲେ ପୂଣ୍ୟପିତା ତାଙ୍କ ମନ ମୁତାବକ ସେମାନଙ୍କୁ ଧର୍ମକାର୍ଯ୍ୟରେ ଲଗାଇ ପାରନ୍ତି ।

**ପୁଣ୍ୟଭୂମି ଅଭିମୁଖେ ଯାତ୍ରା**

୧୫୩୬ ଖ୍ରୀଷ୍ଟାବ୍ଦରେ ଯେଶୁଇଟ୍ ସଂଘର ସଭ୍ୟମାନେ ପାଲେଷ୍ଟାଇନ୍ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସମୁଦ୍ରଯାତ୍ରାର ଯୋଗାଡ କରିବା ଲାଗି ସାଧୁ ଇଗ୍ନେଶୀୟ ଆଗରୁ ଭେନିସ ଯାଇଥିଲେ । ସେ କାଳରେ ପାଲେଷ୍ଟାଇନ୍ ଯିବାକୁ ହେଲେ ଭେନିସ୍ ବନ୍ଦରରୁ ବୋଇତ ଚଢୁଥାନ୍ତି । ସେମାନେ ପାରିସ୍ ସହରରୁ ବାହାରି ପଡିଲେ । ପ୍ରତ୍ୟେକଙ୍କ ହାତରେ ବାଇବେଲ ଓ ବ୍ରେଭିୟାରୀ ବହି ଦ୍ୱିଖଣ୍ଡ ଛାଡି ଆଉ କିଛି ନ ଥାଏ । ଜର୍ମାନୀ, ସୁଇଜରଲାଣ୍ଡ ଆଦି ପ୍ରୋଟେଷ୍ଟାଣ୍ଟ ଦେଶ

ଦେଇ ଯିବାକୁ ପଡିଥିଲା । ସେ ଦେଶ ଲୋକଙ୍କ ଆଗରେ କାଥଲିକ ବୋଲି ପରିଚୟ ଦେବା ଉଚିତ । ସୁତରାଂ ସେମାନେ ଗଳାରେ ବଡ ବଡ ଜପମାଳା ଲମ୍ବାଇ ଚାଲିଥାନ୍ତି ।

ବଣ ଜଙ୍ଗଲରେ ପୂର୍ଣ୍ଣ ପାହାଡିଆ ବାଟ, ତା ପୁଣି ବରଫମୟ । କ୍ଷୁଧା, ତୃଷା, କ୍ଳାନ୍ତି ଆଦି, କାହିଁରେ ସେମାନଙ୍କ ଭ୍ରୂକ୍ଷେପ ନ ଥାଏ । ଖ୍ରୀଷ୍ଟଙ୍କର ପାଦଚିହ୍ନ ଅନୁସାରେ ଚାଲିଥାନ୍ତି ହୃଷ୍ଟଚିତରେ ସୁଦୂର ପୁଣ୍ୟ ଭୂମି ଅଭିମୁଖେ ।

ଭେନିସ୍ ସହରରେ ପହଞ୍ଚିବାକୁ ସାତ ସପ୍ତାହ ଲାଗିଲା । ସେତେବେଳେକୁ ଭେନିସ୍ ଓ ତୁରସ୍କ ମଧ୍ୟରେ ଯୁଦ୍ଧ ଘମାଘୋଟ ଲାଗି ଯାଇଛି । ଭେନିସ୍‌ରୁ ପାଲେଷ୍ଟାଇନ୍ ଯିବାକୁ ବୋଇତ ବନ୍ଦ । ସେମାନଙ୍କର ପାଲେଷ୍ଟାଇନ୍ ଯିବା ଅସମ୍ଭବ । ସାଧୁ ଇଗ୍ନେଶୀୟ ନିଜ ସଂଘର ସଭ୍ୟମାନଙ୍କୁ ସାଙ୍ଗରେ ନେଇ ରୋମ ଚାଲିଲେ । ସେଠାରେ ସେ ପୁଣ୍ୟପିତା ତୃତୀୟ ପାଉଲଙ୍କ ସହ ସାକ୍ଷାତ୍ କଲେ । ସଭ୍ୟମାନେ ସମସ୍ତେ ପୁଣ୍ୟପିତାଙ୍କ ପାଦ ତଳେ ପଡି ସେମାନଙ୍କୁ ଧର୍ମ ପ୍ରଚାର କାର୍ଯ୍ୟରେ ଲଗାଇବା ଲାଗି ସବିନୟ ପ୍ରାର୍ଥନା କଲେ । ପୁଣ୍ୟପିତା ସେମାନଙ୍କୁ ସାଦରେ ଗ୍ରହଣ କରି ସେମାନଙ୍କର ପ୍ରାର୍ଥନା ମଞ୍ଜୁର କରିଥିଲେ ।

**ଯାଜକତା ଅଭିଷେକ ଓ ମିଶିନାରୀ ଯାତ୍ରା**

୧୫୩୭ ମସିହାରେ ଫ୍ରାନ୍ସିସ ଜାବୀୟେର ଭେନିସ୍ ସହରରେ ଯାଜକତା ଗ୍ରହଣ କଲେ । ସେ ଅନେକ ଦିନ ପ୍ରସ୍ତୁତ ହେବା ପରେ ନିଜ ଆଦ୍ୟ ଯଜ୍ଞ ଅନୁଷ୍ଠାନ କଲେ । ଯଜ୍ଞ ମଧ୍ୟରେ ତାଙ୍କ ମୁଖ ଏକ ଅପୂର୍ବ ସ୍ୱର୍ଗୀୟ ଆଭାରେ ଜଳି ଉଠୁଥାଏ । ଯାଜକତା ଭଳି ମହାଦାନ ଯୋଗୁଁ ସେ ଈଶ୍ୱରଙ୍କ ନିକଟରେ ବିଶେଷ କୃତଜ୍ଞ ଥିଲେ । ତାର ବିନିମୟରେ ଈଶ୍ୱରଙ୍କୁ ନିଜ ଶ୍ରମ ଓ ତ୍ୟାଗ ଉତ୍ସର୍ଗ କରିବାକୁ ଦୃଢ ପ୍ରତିଜ୍ଞା ହୋଇଥିଲେ । ଈଶ୍ୱର କେବଳ ତାଙ୍କର ସଦିଚ୍ଛା ଚାହୁଁଥିଲେ । ସୁଦୂର ପ୍ରାଚ୍ୟରେ ତାଙ୍କର ଶ୍ରମ ଓ ତ୍ୟାଗ ପାଇଁ ପ୍ରଶସ୍ତ କ୍ଷେତ୍ର ପଡି ରହିଥିଲା ।

**ପ୍ରଚାରକ ମନୋନୟନ**

୧୫୪୦ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ ରାଜା ତୃତୀୟ ଯୋହନ ପୁଣ୍ୟ ପିତାଙ୍କଠାରୁ ଭାରତ ପାଇଁ ମିଶନାରୀ ମାଗିଲେ, ତାଙ୍କ ଅନୁରୋଧରେ ପ୍ରୀତ ହୋଇ ପୁଣ୍ୟପିତା ଯେଶୁଇଟ ସଂଘର ରଡ୍ରିଗୋ ସ୍ୱାମୀ ଓ ସାଧୁ ଫ୍ରାନ୍ସିସଙ୍କ ନାମ ପ୍ରସ୍ତାବ କଲେ ।

ଫ୍ରାନ୍ସିସ ଏହା ଶୁଣି  ଅତି ଆନନ୍ଦିତ ହେଲେ । ସେ ପୁଣ୍ୟପିତାଙ୍କ ପାଦ ତଳେ ପଡ଼ି ତାଙ୍କୁ ଧନ୍ୟବାଦ ଦେଇ ଆଶୀର୍ବାଦ ଭିକ୍ଷା କଲେ । ପୁଣ୍ୟପିତା ତାଙ୍କୁ ସୁଦୁର ପ୍ରାଚ୍ୟରେ ନିଜ ପ୍ରତିନିଧି ନିଯୁକ୍ତ କଲେ । ଫ୍ରାନ୍ସିସ ସାଧୁ ଇଗ୍ନେଶୀୟଙ୍କଠାରୁ ବିଦାୟ ନେଇ ପର୍ତ୍ତୁଗାଲର ରାଜାଙ୍କ ସହିତ ସାକ୍ଷାତ କରିବା ଲାଗି ରାଜଧାନୀ ଲିସ୍‌ବନ ସହରକୁ ଯାତ୍ରା କଲେ ।

**ବିଦାୟ ସମ୍ବର୍ଦ୍ଧନା ଓ ସମୁଦ୍ରଯାତ୍ରା**

୧୫୪୧ ଏପ୍ରିଲ ୬ ତାରିଖରେ ରାଜାଙ୍କ ସାଙ୍ଗରେ ତାଙ୍କର ସାକ୍ଷାତ ହେଲା । ରାଜା ଫ୍ରାନ୍ସିସଙ୍କଠାରେ ମିଶନାରୀ ସୁଲଭ ଉତ୍ସାହ ଦେଖି ଅତି ଆନନ୍ଦିତ ହେଲେ । ସେ ଫ୍ରାନ୍ସିସଙ୍କ ଲାଗି ପ୍ରାଚ୍ୟର ଦୁଇଟି ରାଜାଙ୍କ ନିକଟକୁ ପରିଚୟ ପତ୍ରମାନ ଦେଲେ । ରାଜା ତାଙ୍କୁ ଯେତେ ଉପହାର ଯାଚିଲେ ହେଁ, ସେ କିଛି ହିଁ ଗ୍ରହଣ କରି ନ ଥିଲେ । ବ୍ରେଭିୟାରୀ ଖଣ୍ଡିକ ମାତ୍ର ହାତରେ ଧରି ସୁଦୁର ଭାରତକୁ ଧର୍ମ ପ୍ରଚାର ପାଇଁ ବାହାରି ପଡିଲେ ।

କୌଣସି ବିଶେଷ ଅସୁବିଧା ଯୋଗୁଁ ରଡ୍ରିଗୋ ସ୍ୱାମୀ ପର୍ତ୍ତୁଗାଲରେ ରହିଗଲେ । ମିଶନାରୀ ହିସାବରେ ଫ୍ରାନ୍ସିସଙ୍କୁ ଏକାକୀ ଭାରତକୁ ଆସିବାକୁ ହେଲା । ତାଙ୍କ ବିଦାୟ ସମ୍ବର୍ଦ୍ଧନା ପାଇଁ ଶହ ଶହ ଲୋକ ବନ୍ଦରକୁ ଆସିଥିଲେ । ଫ୍ରାନ୍ସିସ୍ ସେମାନଙ୍କୁ ଧର୍ମର ଅପୂର୍ବ ସ୍ଫୂର୍ତ୍ତିରେ ଏକ ଭାଷଣ ଦେଇ ବିଦାୟ ଗ୍ରହଣ କରିଥିଲେ । ସହରବାସୀ ବ୍ୟଥିତ ଚିତରେ ବିଦାୟ ଦେଇ ଘରକୁ ଫେରିଗଲେ । ଜାହାଜ ବନ୍ଦର ଛାଡିଲା । ୟୁରୋପ କ୍ରମେ କ୍ରମେ ଅଦୃଶ୍ୟ ହୋଇ ଆସିଲା । ଦୁର ଅନ୍ତରୀକ୍ଷରେ କ୍ଷୁଦ୍ର ତାରାଟିଏ ତାର ଶୀର୍ଣ୍ଣ ମୁଖଟିକୁ ଦେଖାଇ ଦେଇ କ୍ଷଣରେ ମ୍ଳାନ ହୋଇଗଲା । ଫ୍ରାନ୍ସିସଙ୍କୁ ୟୁରୋପରୁ ଏ ଶେଷ ବିଦାୟ ।

ଫ୍ରାନ୍ସିସଙ୍କ ସହ ଜାହାଜରେ ପ୍ରାୟ ଏକ ହଜାର ଯାତ୍ରୀ । ଫ୍ରାନ୍ସିସ ସେହି ଯାତ୍ରୀମାନଙ୍କୁ ନିଜ ଧର୍ମ ସନ୍ତାନ କରି ନେଲେ । ପ୍ରତି ରବିବାର ସେ ସେମାନଙ୍କଠାରେ ଧର୍ମ ପ୍ରଚାର କରିଥାନ୍ତି । ପ୍ରତି ସପ୍ତାହ ସେ ସେମାନଙ୍କୁ ଅନେକ ବାର ଶିକ୍ଷା ସଂକ୍ଷେପରୁ ଧର୍ମଶିକ୍ଷା ଦେଉଥାନ୍ତି । ଯାତ୍ରୀମାନେ ସମୁଦ୍ର ଜ୍ୱରରେ ପୀଡିତ ହେଲେ, ସେ ସେମାନଙ୍କୁ ନିଜ ହାତରେ ଶୁଶ୍ରୂଷା କରୁଥାନ୍ତି । ବେଳେ ବେଳେ ଯାତ୍ରୀମାନଙ୍କ ମଝିରେ ଗଣ୍ଡଗୋଳ

ଉଠୁଥାଏ । ତେବେ ଫ୍ରାନ୍ସିସ ସେମାନଙ୍କର ମଧ୍ୟସ୍ଥ ହୋଇ ଶାନ୍ତି ସମାଧାନ କରି ଦେଉଥାନ୍ତି ।

## ମେଲିଣ୍ଡାରେ ସାଧୁ ଫ୍ରାନ୍ସିସ

ଷୋଡ଼ଶ ଶତାବ୍ଦୀରେ ସମଗ୍ର ଆଫ୍ରିକା ଉପକୂଳ ବୁଲି ୟୁରୋପରୁ ଭାରତକୁ ଆସିବାକୁ ହେଉଥାଏ । ଲିସ୍‌ବନରୁ ପାଞ୍ଚମାସ ଯାତ୍ରା କଲା ପରେ ଜାହାଜଟି ଆଫ୍ରିକା ପୂର୍ବକୂଳବର୍ତ୍ତୀ ମେଲିଣ୍ଡାରେ ଆସି ଲାଗିଲା । ସେଠାରେ ଭାସ୍କୋଡ଼ାଗାମା କ୍ରୁଶସ୍ତମ୍ଭ ପ୍ରତିଷ୍ଠା କରିଥିଲେ । ତାହା ଦେଖିଲା କ୍ଷଣି ଫ୍ରାନ୍ସିସ ଆନନ୍ଦରେ ମୁଗ୍ଧ ହୋଇଗଲେ । ମେଲିଣ୍ଡାରେ ୧୭ ଗୋଟି ମୁସଲମାନ ମସଜିଦ୍ ଥାଏ । ଜଣେ ମୁସଲମାନ ତାଙ୍କୁ କହିଲେ ଯେ, ସେଠାରେ ଲୋକଙ୍କ ଧର୍ମପ୍ରତି ଅବହେଳା ଯୋଗୁଁ ୧୪ଟି ମସ୍‌ଜିଦ୍ ବନ୍ଦ କରାଯାଇଥିଲା । ସେତିକି ବେଳେ ଜଣେ ମୁସଲମାନ ଗୁରୁ ଆସି କହିଲେ, "ଯଦି ଦୁଇବର୍ଷ ଭିତରେ ପ୍ରବକ୍ତା ମହମ୍ମଦ ଦେଖା ନ ଦିଅନ୍ତି, ତେବେ ମୁଁ ନିଶ୍ଚୟ ମୁସଲମାନ ଧର୍ମ ତ୍ୟାଗ କରିବି ।" ଫ୍ରାନ୍ସିସ ସେମାନଙ୍କୁ କାଥଲିକ ଧର୍ମ ସମ୍ବନ୍ଧରେ ଅନେକ ବୁଝାଇଲେ । କିଛି ଫଳ ହେଲା ନାହିଁ ।

## ଗୋଆରେ ସାଧୁ ଫ୍ରାନ୍ସିସ

୧୫୪୨ ରେ ମଇ ମାସ ୭ ତାରିଖ ଦିନ ଫ୍ରାନ୍ସିସ ଗୋଆ ସହରରେ ପହଞ୍ଚିଲେ । ଲିସବନଠାରୁ ଗୋଆକୁ ଦୀର୍ଘ ତେର ମାସ ଲାଗିଲା । ଏତେ ଦିନ ପରେ ତାଙ୍କ ହୃଦୟର କାମନା ପୂର୍ଣ୍ଣ ହେଲା । ଭାରତ କେବଳ ତାଙ୍କ କାମନାର ବସ୍ତୁ ଥିଲା । ଭାରତ ଭୂମିରେ ପାଦ ପକାଇ ସେ ଆନନ୍ଦରେ ବିଭୋର ହୋଇଗଲେ । ଆହୁରି ତାଙ୍କ ଆନନ୍ଦ ଅଧିକ ଅଧିକ ବଢ଼ିଗଲା, ଯେତେବେଳେ ସେ ଦେଖିଲେଯେ, ପ୍ରଚାର କର୍ମ ପାଇଁ ଭାରତରେ ପ୍ରଶସ୍ତ କ୍ଷେତ୍ର ପଡ଼ି ରହିଛି । ଈଶ୍ୱରଙ୍କ ଅନୁଗ୍ରହରେ ଆସ୍ଥା ରଖି ଉତ୍ସାହର ସହିତ ସେ ପ୍ରଚାର କର୍ମର ଅନୁକୂଳ କରି ନେଲେ ।

୧୫୧୦ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ୍‌ମାନେ ଗୋଆ ଆସିଥିଲେ । ସେମାନେ ପ୍ରଥମେ ସେଠାରେ କାଥଲିକ ଧର୍ମ ପ୍ରଚାର କରିଥିଲେ । ଗୋଆବାସୀଙ୍କ ମଧ୍ୟରୁ ଅନେକ କାଥଲିକ ଧର୍ମ ଗ୍ରହଣ କରିଥିଲେ । କେତେ ଜଣ ଦେଶୀୟ ଯାଜକ ଓ ଜଣେ ଧର୍ମାଧ୍ୟକ୍ଷ ମଧ୍ୟ ଥିଲେ ।

ଗୋଆରେ ପର୍ତ୍ତୁଗୀଜ୍‌ମାନଙ୍କ ଆଧ୍ୟାତ୍ମିକ ଅବସ୍ଥା ସେତେ ଆଦର୍ଶଜନକ ନଥିଲା । ଏଥି ଯୋଗୁଁ କାଥଲିକ ଧର୍ମର ଦୁର୍ନାମ ହେଉଥିଲା । ଫ୍ରାନ୍ସିସ ସେମାନଙ୍କର ଚରିତ୍ର ସଂଶୋଧନ ଲାଗି ପ୍ରାଣ ପଣେ ଚେଷ୍ଟାକଲେ । ଦେଶୀୟ କାଥଲିକମାନଙ୍କଠାରେ ବି ଧର୍ମଶିକ୍ଷାର ବିଶେଷ ଅଭାବ ଥିଲା । ତେବେ ଫ୍ରାନ୍ସିସଙ୍କ ଅକ୍ଳାନ୍ତ ପରିଶ୍ରମରେ ତାହା ଆସ୍ତେ ଆସ୍ତେ ଦୁର ହୋଇଗଲା ଛୋଟ ପିଲାମାନଙ୍କ ଧର୍ମଶିକ୍ଷା ପାଇଁ ଫ୍ରାନ୍ସିସ ବହୁ ପରିଶ୍ରମ କରୁଥାନ୍ତି । ନିତି ସେ ଘଣ୍ଟି ବଜାଇ ଗୋଆ ସହରଯାକ ବୁଲୁଥାନ୍ତି । ଘଣ୍ଟି ଶବ୍ଦ ଶୁଣି ପିଲେ ତାଙ୍କୁ ଅତି·ଆଗ୍ରହରେ ଗୋଡ଼ାଉଥାନ୍ତି ତେବେ ସେ ସେମାନଙ୍କୁ କୁମାରୀ ମାରୀୟା ଗୀର୍ଜାରେ ଜମା କରି ପ୍ରାର୍ଥନା ଆଦି ଶିଖାଉଥାନ୍ତି । ଖ୍ରିଷ୍ଟିୟାନ ସଭ୍ୟତାମାନ ନେଇ ସେ ଧର୍ମ ସଙ୍ଗୀତମାନ ରଚନା କରି ଦେଉଥାନ୍ତି । ସେମାନେ ତାଙ୍କଠାରୁ ସେ ସବୁ ଶିଖିଯାଇ ବାପା ମାଙ୍କ ସାମନାରେ ଗାଉଥାନ୍ତି । ଏହି ଭାବରେ କାଥଲିକ ଧର୍ମ ବିଷୟ ଜାଣି ଦେବପୂଜକମାନେ ବହୁ ସଂଖ୍ୟାରେ ମତ ପରିବର୍ତ୍ତନ କରୁଥାନ୍ତି ।

ଫ୍ରାନ୍ସିସ ଗୋଆ ସହର ଓ ମଫସଲ ଉଭୟ ଜାଗାରେ ବୁଲି ଧର୍ମ ପ୍ରଚାର କଲେ । ତେବେ ଲୋକେ ତାଙ୍କ ସଚରିତ୍ର ଓ ଧର୍ମଶିକ୍ଷାରେ ମୁଗ୍ଧ ହୋଇ ଯାଉଥାନ୍ତି । ତାଙ୍କ ପ୍ରଚାର ଶୁଣିବା ମାତ୍ରେ ଲୋକେ କାଥଲିକ ଧର୍ମର ମହାତ୍ମ୍ୟ ପୁରାପୁରି ହୃଦୟଙ୍ଗମ କରି ପକାଉଥାନ୍ତି । ଦେବଦେବୀଙ୍କୁ ତୁଚ୍ଛ କରି ଲୋକେ ବହୁ ସଂଖ୍ୟାରେ କାଥଲିକ ଧର୍ମ ଗ୍ରହଣ କରୁଥାନ୍ତି । ରୋଗୀମାନେ ତାଙ୍କ ଆର୍ଶିବାଦ ପାଇ ସୁସ୍ଥ ହେଉଥାନ୍ତି । କେହି ବେମାର ପଡ଼ିଲେ ତାଙ୍କ କୃଶ ନେଇ ସ୍ପର୍ଶ କରାଉଥାନ୍ତି, ଏବଂ ଅନେକ ରୋଗୀ ସୁସ୍ଥ ହେଉଥାନ୍ତି । ତାଙ୍କର ଏ ସମସ୍ତ ଅଦ୍ଭୁତ କର୍ମ ଦେଖି ଦେବପୂଜକମାନେ କାଥଲିକ ହେବାକୁ ବଳେ ଟାଣି ହୋଇ ଯାଉଥାନ୍ତି ।

### ମାଲବାରରେ ସାଧୁ ଫ୍ରାନ୍ସିସ

୧୫୪୩ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସିସ ମାଲବାର ଉପକୂଳରେ ଆସି ପହଞ୍ଚିଲେ । ସେ ପ୍ରଥମେ ପାରବା ଜାତିର ଲୋକଙ୍କୁ ଭେଟିଲେ । ସେମାନଙ୍କ ସଂଖ୍ୟା ୨୦ ହଜାରରୁ ଉର୍ଦ୍ଧ୍ୱ ଥିଲା । ୧୫୩୨ ସାଲରେ ପର୍ତ୍ତୁଗୀଜମାନେ ସେମାନଙ୍କୁ ମୁସଲମାନମାନଙ୍କ ଅତ୍ୟାଚାରରୁ ରକ୍ଷା କରିଥିଲେ । ତା'ପରେ ପାରବାମାନଙ୍କ ମଧ୍ୟରୁ ଅନେକ କାଥଲିକ ଧର୍ମ ଗ୍ରହଣ କରିଥିଲେ । ଏମାନେ ଧର୍ମଶିକ୍ଷାର ଅଭାବରୁ

ପୂର୍ବର ଅନ୍ଧ ବିଶ୍ୱାସଗୁଡିକ ଛାଡ଼ି ପାରି ନ ଥିଲେ । ଝେବୀୟେର ସେମାନଙ୍କ ଭାଷା ଶିଖିଲେ । ସେ ଦୁଇଟି ଗୋଆନ ଯାଜକଙ୍କ ସାହାଯ୍ୟରେ ସେମାନଙ୍କୁ ଧର୍ମଶିକ୍ଷା ଦେଲେ । ଦିନରାତି ପ୍ରଚାର କରି ସକଳ ପାରବା ଜାତିକୁ ଖ୍ରୀଷ୍ଟୀୟାନ ଧର୍ମରେ ଦୀକ୍ଷିତ କଲେ । ସହସ୍ର ସହସ୍ର ଲୋକଙ୍କୁ ସେ ଆପଣା ହାତରୁ ସ୍ନାନ ସଂସ୍କାର ଦେଇ ଧର୍ମରେ ଗ୍ରହଣ କଲେ ।

ଫ୍ରାନ୍ସିସ ପାରବା ଜାତିଙ୍କଠାରେ ଅନେକ ଅଦ୍ଭୁତ କର୍ମ ସାଧନ କରିଥିଲେ । ଦିନେ ଜଣେ ପାରବା ସ୍ତ୍ରୀ ପ୍ରସୂତି ଦଶାରେ ମରିଯାଉଥିଲା । ଦେବଦେବୀଙ୍କୁ ଡ଼ାକି କିଛି ଫଳ ହେଲା ନାହିଁ । ଶେଷରେ ଫ୍ରାନ୍ସିସଙ୍କୁ ଡ଼କାହେଲା । ଫ୍ରାନ୍ସିସ ସ୍ତ୍ରୀଲୋକଟିଙ୍କୁ ସ୍ନାନ ସଂସ୍କାର ଦେଲା ପରେ ସେ ସୁସ୍ଥ ହେବା ପାଇଁ କିଛି ପ୍ରାର୍ଥନା କଲେ । ସ୍ତ୍ରୀ ଲୋକଟି ସଙ୍ଗେ ସଙ୍ଗେ ଆରୋଗ୍ୟ ପାଇଗଲା । ଏହା ଦେଖି ଗାଁ ତମାମ କାଥଲିକ ହୋଇଥିଲେ । ଆଉ ଦିନେ କୋଇମ୍ବାତୁରରେ ପିଲାଟିଏ କୁଅଁରେ ବୁଡ଼ି ମଲା । ପିଲାଟିର ମାଆ ଫ୍ରାନ୍ସିସଙ୍କ ପାଖରେ ଯାଇ ଭାରି ବିକଳରେ କାନ୍ଦିଲା । ଫ୍ରାନ୍ସିସ୍ ପ୍ରାର୍ଥନା କରି ଶବ ଉପରେ ଆଶୀର୍ବାଦ ଦେଉ ଦେଉ ପିଲାଟି ଜୀ ଉଠିଲା । କାହା ରୋଗ ହେଲା, କାହା ଜ୍ୱର ହେଲା, କାହା ମୁଣ୍ଡ ବିନ୍ଧିଲା, ଏମିତି ସମସ୍ତେ ଫ୍ରାନ୍ସିସଙ୍କୁ ଡ଼ାକି ପଠାଇଲେ, ଆଉ ପ୍ରାୟ ସମସ୍ତେ ତାଙ୍କ ପ୍ରାର୍ଥନା ଓ ଆଶୀର୍ବାଦ ବଳରେ ସୁସ୍ଥ ହୋଇଗଲେ । ପାରବାମାନେ ସେମାନଙ୍କ ଧର୍ମପିତା ଫ୍ରାନ୍ସିସଙ୍କ ଅଦ୍ଭୁତ କର୍ମସବୁ ଭୁଲିଯାଇ ନାହାନ୍ତି । ପ୍ରୋଟେଷ୍ଟାଣ୍ଟ ମିଶନାରୀମାନେ ସେମାନଙ୍କୁ କାଥଲିକ ଧର୍ମ ଛାଡ଼ିବାକୁ କେତେ ପ୍ରଚାର କରିଥିଲେ । ପାରବାମାନେ ସେମାନଙ୍କୁ ଯୁକ୍ତି କରି କହୁଥିଲେ, "ଆମ ପିତା ଫ୍ରାନ୍ସିସଙ୍କ ଭଳି ତୁମ୍ଭେମାନେ ଅଦ୍ଭୁତ କର୍ମ ଦେଖାଅ, ଆଉ ତେବେ ଯାଇ ଆମେ ତୁମ୍ଭମାନଙ୍କ ଧର୍ମ ଶିକ୍ଷାରେ ବିଶ୍ୱାସ କରିବୁ ।" ପ୍ରୋଟେଷ୍ଟାଣ୍ଟମାନେ ତୁନ୍‌ତାନ୍ କୁଆଡ଼େ ଚାଲିଗଲେ । କାଥଲିକ ଧର୍ମ ନିମନ୍ତେ କେତେ କଷ୍ଟ, କେତେ ଉପଦ୍ରବ ସହିବାକୁ ହୋଇଥିଲେ ହେଁ ପାରବାମାନେ କାଥଲିକ ଧର୍ମ ଛାଡ଼ି ନାହାନ୍ତି । ଆଜି ସୁଦ୍ଧା ସେମାନେ, ଦୃଢ କାଥଲିକ ।

### ବ୍ରାହ୍ମଣଙ୍କ ମଝିରେ ସାଧୁ ଫ୍ରାନ୍ସିସ

ପାରବାମାନେ ଅସ୍ପୃଶ୍ୟ ଜାତି ଥିଲେ । ଫ୍ରାନ୍ସିସ ସେମାନଙ୍କ ସହିତ ମିଳାମିଶା କରୁଥିଲେ । ସୁତରାଂ ବ୍ରାହ୍ମଣମାନେ ତାଙ୍କୁ ଗ୍ରହଣ କଲେନି, ବ୍ରାହ୍ମଣମାନଙ୍କ ସେ ବ୍ୟବହାର ତାଙ୍କୁ ଅଟକାଇ ପାରିଲା ନାହିଁ । ସେ ସେମାନଙ୍କ ନିକଟରେ ଧର୍ମ ପ୍ରଚାର କଲେ । ସେମାନଙ୍କୁ ଈଶ୍ୱର, ତାହାଙ୍କର ଆଜ୍ଞାବଳି, ସ୍ୱର୍ଗ, ନରକ ଆଦି ବିଷୟରେ ଅନେକ ଶିକ୍ଷା ଦେଲେ । ସେମାନେ ଖ୍ରୀଷ୍ଟୀୟାନ ଧର୍ମ ସତ୍ୟ ବୋଲି ସ୍ୱୀକାର କଲେ, କିନ୍ତୁ ଧର୍ମ ଗ୍ରହଣ କଲେ ନାହିଁ । ବ୍ରାହ୍ମଣ ପୁରୋହିତ କାମ କଲେ ଯାଇ ବଞ୍ଚିବ ଏହି ଭାବ ସେମାନଙ୍କ ହୃଦୟରେ ଦୃଢୀଭୁତ ହୋଇଯାଇଥିଲା । ଏଣୁ ସେମାନେ କାଥଲିକ ହେଲେ ନାହିଁ ।

### ତ୍ରିଭାଙ୍କୁଡରେ ସାଧୁ ଫ୍ରାନ୍ସିସ

୧୫୪୪ ସାଲରେ ଫ୍ରାନ୍ସିସ ତ୍ରିଭାଙ୍କୁଡରେ ଧର୍ମ ପ୍ରଚାର କରିଥିଲେ । ସେଠାରେ ଦିଗନ୍ତ ବିସ୍ତାରିତ ଶ୍ୟାମଳ ଶସ୍ୟ କ୍ଷେତ୍ର ଦେହରେ ତରୁଣର ସୁଧା ସ୍ପର୍ଶ ଫ୍ରାନ୍ସିସଙ୍କ ସୌନ୍ଦର୍ଯ୍ୟ ପ୍ରିୟ ପ୍ରାଣରେ ଖେଳାଇ ଦେଲା ଅପୂର୍ବ ପ୍ରୀତିର ଉତାଳ ତରଙ୍ଗ । ପ୍ରକୃତିର ସୌମ୍ୟମୂର୍ତ୍ତି ଦର୍ଶନରେ ସେ ମୁଗ୍‌ଧ ଚକିତ । ପ୍ରକୃତି ସୌନ୍ଦର୍ଯ୍ୟର ଉପାସକ ସେ ; କିନ୍ତୁ ଅମର ଆତ୍ମାର ସୌନ୍ଦର୍ଯ୍ୟ  ଜଡ଼ ପ୍ରକୃତିର ସୌନ୍ଦର୍ଯ୍ୟର ବହୁ ଉପରେ । ସେହି ଆତ୍ମାର ପରିତ୍ରାଣ ତାଙ୍କ ଜୀବନର ମହାବ୍ରତ । ସୁତରାଂ ଲାଗିଗଲେ ଫ୍ରାନ୍ସିସ ଆତ୍ମୋଦ୍ଧାର କର୍ମରେ ପ୍ରକୃତିଚ ସୌନ୍ଦର୍ଯ୍ୟ ପ୍ରୀତିକୁ ପଛରେ ପକାଇ । କେଉଟ ଜାତିଙ୍କଠାରେ ସେ ପ୍ରଧାନ ଭାବରେ ଧର୍ମ ପ୍ରଚାର କରିଥିଲେ । ଗାଁ ଗାଁ ବୁଲି ସେ ଧର୍ମଶିକ୍ଷା ଦେଉଥିଲେ । ମାସକ ଭିତରେ ସେ ୧୦ ହଜାର ଲୋକଙ୍କୁ ସ୍ନାନ ଦେଇଥିଲେ । ସ୍ନାନ ପାଇଲା ଲୋକଙ୍କ ନାମଗୁଡ଼ିକ ତାଳପତ୍ରରେ ଲେଖା ଯାଉଥିଲା । ସେଠାରେ ସେ ସହସ୍ର ସହ୍ର ଲୋକଙ୍କୁ ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ କରି ସ୍ନାନ ଦେଲେ । ତାଙ୍କ ବଂଶଧରମାନେ ଆଜିସୁଦ୍ଧା ଫ୍ରାନ୍ସିସଙ୍କ ଆଧ୍ୟାତ୍ମିକ ସନ୍ତାନ ବୋଲି ଗର୍ବ ଅନୁଭବ କରନ୍ତି । ଫ୍ରାନ୍ସିସ ଧର୍ମ ପ୍ରଚାର କର୍ମରେ ବହୁ ବାଧା ପାଇଥିଲେ । ତ୍ରିଭାଙ୍କୁଡରେ ବ୍ରାହ୍ମଣ ଓ ମୁସଲମାନମାନେ ତାଙ୍କୁ ପ୍ରାଣରେ ମାରିବାକୁ ଚେଷ୍ଟା କରିଥିଲେ । ଦିନେ ସେମାନେ ତାଙ୍କ ଶୋଇଥିବା କୁଡ଼ିଆରେ ନିଆଁ ମାଡ଼ି ଦେଲେ । ଈଶ୍ୱରଙ୍କ କୃପାରୁ ସେ କୁଡ଼ିଆରୁ ବାହାରି ଯାଇ ରକ୍ଷା ପାଇଥିଲେ । ୧୫୦୪ରେ

ବାଡବା ନାମକ ଗୋଟିଏ ବର୍ବର ଜାତି ଟୁଟୁକୁରିନ ର ଶହ ଶହ କାଥଲିକଙ୍କୁ ହତ୍ୟା କରିଥିଲେ । ଫ୍ରାଞ୍ଚିସ ସେତେବେଳେ ଖ୍ରୀଷ୍ଟିୟାନମାନଙ୍କୁ ସାହାଯ୍ୟ କରିବାକୁ ଟୁଟିକରିନ ଯାଉଥିଲେ । ବାଟରେ ଶତ୍ରୁମାନେ ତାଙ୍କୁ ଅଟକାଇଥିଲେ, କିନ୍ତୁ ସେ କ୍ରୁଶ ଦେଖାଇ ଅଦ୍ଭୁତ ଭାବରେ ସେମାନଙ୍କୁ ପଛକୁ ହଟାଇ ଦେଇ ଚାଲିଗଲେ ।

## ସିଂହଳରେ ସାଧୁ ଫ୍ରାନ୍ସିସ୍

ଫ୍ରାଞ୍ଚିସଙ୍କ ଅଦ୍ଭୁତ କର୍ମ ବିଷୟ ସିଂହଳରେ ଶୁଣା ଯାଇଥିଲା । ୧୫୪୪ ସାଲରେ ତାଙ୍କୁ ସେଠାକୁ ଯିବାକୁ ନିମନ୍ତ୍ରଣ ଆସିଲା । ସିଂହଳ ଉପକୂଳ ବର୍ତୀ ମାନର ଦ୍ୱୀପକୁ ତାଙ୍କୁ ଯିବାକୁ ହୋଇଥିଲା । ସିଂହଳର ପାପନାଟାପନ ରାଜା ଲୋକଙ୍କ ନିମନ୍ତ୍ରଣ ପାଇ ଫ୍ରାଞ୍ଚିସଙ୍କୁ ସେଠାକୁ ଯାଉଥିବା କଥା ଶୁଣି ଅତିଶୟ ଭୀତ ହେଲେ, କାରଣ ଫ୍ରାଞ୍ଚିସଙ୍କ ଧର୍ମୋପଦେଶରେ ସହସ୍ର ସହସ୍ର ଲୋକ କାଥଲିକ ହୋଇ ଯାଉଥିଲେ । ଦେବ ପୂଜକ ରାଜା ଏହା ସହ୍ୟ କରି ପାରିଲେ ନାହିଁ । ଏଣୁ ସେ ସୈନ୍ୟ ପଠାଇ ମାନର ଦ୍ୱୀପର ୬୩୬ କାଥଲିକଙ୍କୁ ହତ୍ୟା କଲେ । ସେମାନେ ଧର୍ମସାକ୍ଷୀର ଗୌରବ ମୁକୁଟରେ ଭୂଷିତ ହୋଇଥିଲେ । ଏହାର ପ୍ରତିଶୋଧ ନେବା ପାଇଁ ପର୍ତ୍ତୁଗୀଜ ଲାଟ ଡନ୍ ମାର୍ଟିନ ସୌସା ସିଂହଳ ବିପକ୍ଷରେ ସୈନ୍ୟ ପଠାଇଥିଲେ । ସୈନ୍ୟ ବିଭାଗରେ ଗଣ୍ଡଗୋଳ ହେବାରୁ ସେ ଅଭିଯାନଟି ବିଫଳ ହୋଇଥିଲା । ଫ୍ରାଞ୍ଚିସ ସିଂହଳ ଯିବା ଆଶା ଛାଡ଼ି ଦେଲେ । ସେ ସାଧୁ ଥୋମାସଙ୍କର କବର ଦେଖିବା ଆଶାରେ ତୀର୍ଥ ଯାତ୍ରା କରି ମାଇଲା ପୁର (ମାନ୍ଦ୍ରାଜ) ଗଲେ ।

## ଜଣେ ପାପୀର ମତି ପରିବର୍ତ୍ତନ ଓ ଫ୍ରାଞ୍ଚିସଙ୍କ ପ୍ରାୟଶ୍ଚିତ

୧୫୪୫ ସାଲରେ ଫ୍ରାଞ୍ଚିସ ଗୋଆ ସହରରୁ ସମୁଦ୍ର ଯାତ୍ରା କରି ତ୍ରିଭାଙ୍କୁଡ଼ ଯାଉଥିଲେ । ବୋଇତରେ ତାଙ୍କ ସହଯାତ୍ରୀମାନଙ୍କ ମଧ୍ୟରେ ଜଣେ ସୈନ୍ୟ ଥିଲା । ସେ ଅତି ଦୁରାଚାରୀ ପୁରୁଷ ଥିଲା । ବୋଇତରେ ସେ ପଶା ଖେଳି ତାର ସବୁ ଧନ ସମ୍ପତି ହରାଇଲା । ତେବେ ସେ ନିରାଶ ହୋଇ ଈଶ୍ୱରଙ୍କ ଅପବାଦ କରିବାକୁ ଲାଗିଲା । ଫ୍ରାଞ୍ଚିସ ତାର ଆଧ୍ୟାତ୍ମିକ ଦଶା ଦେଖି ଭାରି ଦୁଃଖିତ ହେଲେ । ସେ ତା ପ୍ରତି ବିଶେଷ ସହାନୁଭୂତି ପ୍ରକାଶ କଲେ । ତାଙ୍କୁ କିଛି ପଇସା ଦେଇ ଆଉ ଏକ ଥର ତା ଭାଗ୍ୟ ପରୀକ୍ଷା କରିବାକୁ ତାଙ୍କୁ ସେ ବଳାଇଲେ । ପ୍ରଥମେ

ସେ ଅମଙ୍ଗ ହୋଇଥିଲେ; କିନ୍ତୁ ପରେ ସେ ତାଙ୍କ କଥା ରଖି ଖେଳରେ ଯୋଗ ଦେଲା । ଏଥର ସେ ଜୟୀ ହେଲା । ସେ ଫ୍ରାଞ୍ଜିସଙ୍କ ପ୍ରତି କୃତଜ୍ଞ ହେଲା । ସଙ୍ଗେ ସଙ୍ଗେ ଦୁହିଁଙ୍କ ମଝିରେ ଘନିଷ୍ଠ ସୌହାର୍ଦ୍ଦ୍ୟ ଜନ୍ମିଲା । ଏ ସୁଯୋଗ ପାଇ ଫ୍ରାଞ୍ଜିସ ତାକୁ ପାପ ସ୍ୱୀକାର ବିଷୟରେ ବୁଝାଇଲେ । ତାଙ୍କ ଉପଦେଶ ଲୋକଟିର ସ୍ପର୍ଶ କଲା । ସେ ତାଙ୍କ ନିକଟରେ ପାପ ସ୍ୱୀକାର କଲା । ସେ ଅତି ଗୁରୁତର ପ୍ରତିକାରର ଆଦେଶ ଅପେକ୍ଷା କରୁଥିଲା । ଫ୍ରାଞ୍ଜିସ ତାକୁ ଅତି ସାମାନ୍ୟ ପ୍ରତିକାରର ଆଦେଶ ମାତ୍ର ଦେଇଥିଲେ । କିଛି ସମୟ ପରେ ସେ ଦେଖିଲା ଯେ ଫ୍ରାଞ୍ଜିସ ଆପଣାକୁ କଠୋର ପ୍ରହାର କରୁଛନ୍ତି । ତାହାର କାରଣ ପଚାରି ସେ ବୁଝିଲେ ସେ, ତାରି ପାପର ପ୍ରତିକାର ସ୍ୱରୂପ ଫ୍ରାଞ୍ଜିସ ତାହା କରୁଥିଲେ । ସୈନିକଟି ଫ୍ରାଞ୍ଜିସଙ୍କ ହାତରୁ କଶାଟା ଛଡ଼ାଇ ନେଇ ଆପଣାକୁ ଏପରି କଠୋର ଭାବରେ ପ୍ରହାର କଲା ଯେ, ତା' ଦେହରୁ ରକ୍ତ ନାଳୀ ବୋହିଗଲା । ସେ ଅବଧି ଏକ ସିଦ୍ଧ ଖ୍ରୀଷ୍ଟିୟାନର ଜୀବନ କଟାଇଲା ।

**ଈଶ୍ୱର ଭକ୍ତି**

ଫ୍ରାଞ୍ଜିସ ସର୍ବଦା ଈଶ୍ୱରଙ୍କ ସହିତ ଆଧ୍ୟାତ୍ମିକ ଭାବରେ ମିଳିତ ରହୁଥିଲେ । ଈଶ୍ୱରଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ସେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସର୍ବବିଧ ଦୁଃଖ ନିର୍ଯ୍ୟାତନା ସହ୍ୟ କରିବାକୁ ସର୍ବଦା ପ୍ରସ୍ତୁତ ଥିଲେ । ଦୁଃଖ ନିର୍ଯ୍ୟାତନା ଆସିଲେ ସେ ଆହୁରି ଆସୁ ବୋଲି କାମନା କରୁଥିଲେ । ଈଶ୍ୱର ଯେତେବେଳେ ତାଙ୍କ ଆତ୍ମାରେ ଆଶ୍ୱାସନା ଦେଉଥାନ୍ତି, ସେ ଯଥେଷ୍ଟ ହେଲା ବୋଲି ଈଶ୍ୱରଙ୍କଠାରେ ଆପତି କରୁଥାନ୍ତି । ସମୁଦ୍ର ଯାତ୍ରାବେଳେ ସେ ରାତି ସାରା ପ୍ରାର୍ଥନାରେ କଟାଉଥିଲେ । ସେ ଯେତେବେଳେ ପ୍ରାର୍ଥନା କରୁଥାନ୍ତି, ଝଡ଼ ତୋଫାନର ଆଶଙ୍କା ରହୁ ନ ଥାଏ । ସମୁଦ୍ରରେ ଝଡ଼ ହେଲେ ତାଙ୍କ ସହଯାତ୍ରିମାନେ କହୁଥାନ୍ତି, "କିଛି ଭୟ ନାହିଁ, ପିତା ତ ପ୍ରାର୍ଥନାରେ ଅଛନ୍ତି ।" ମାଇଲା ପୁରରୁ ମାଲାଖା ଗଲାବେଳେ ବୋଇତରେ ତାଙ୍କୁ ଗୋଟିଏ ସାନ ବଖରା ମିଳିଥିଲା । ସେଠି ତାଙ୍କ ଶୋଇବାକୁ ଖଟିଆଟି ପଡ଼ିଥାଏ । ଖଟିଆ ଉପରେ ସେ ଖଣ୍ଡିଏ ପଥର ତକିଆ କରି ଶୋଉଥାନ୍ତି । ବଖରାଟିରେ ଛୋଟ ମେଜଟିଏ ବି ଥାଏ, ତା' ଉପରେ କ୍ରୁଶ ଥୋଇ ଫ୍ରାଞ୍ଜିସ କ୍ରୁଶ ଆକାରରେ ହାତ ପ୍ରସାରି ଦିନରାତି ପ୍ରାର୍ଥନା କରୁଥାନ୍ତି । ଯାତ୍ରୀମାନେ ତାହା ଦେଖି

ଅବାକ୍ ହେଉଥାନ୍ତି । ସେମାନେ ତାଙ୍କ ଈଶ୍ୱର ଭକ୍ତି ଓ ପ୍ରାର୍ଥନାରେ ଅଧ୍ୟବସାୟ ଦେଖି ଈଶ୍ୱରଙ୍କ ସେବାରେ ମନଯୋଗ କରୁଥାନ୍ତି ।

**ସାଧୁ ଫ୍ରାନ୍ସିସ୍‌ଙ୍କ ଆଜ୍ଞାବହତା**

ଫ୍ରାନ୍ସିସଙ୍କଠାରେ ଯାଜକୋଚିତ ସର୍ବବିଧ ପୁଣ୍ୟ ଭରପୁର ଥିଲା । ପବିତ୍ରତାରେ ତାଙ୍କ ଆତ୍ମା ସର୍ବଦା ଅଳଙ୍କୃତ ଥିଲା । ଏହି ପୁଣ୍ୟ ଯୋଗରେ ତାଙ୍କ ଆତ୍ମା ବିଶୁଦ୍ଧ ଜଳପୂର୍ଣ୍ଣ କାଚପାତ୍ର ରୂପରେ ସର୍ବଦା ସ୍ୱଚ୍ଛ ଦେଖା ଯାଉଥିଲା । ଗର୍ବ ଅଭିମାନ ଆଦି ତାଙ୍କ ହୃଦୟକୁ ଆଦୌ ସ୍ପର୍ଶ କରି ନ ଥିଲା । ସେ ଏକ ଉଚ୍ଚକୋଟିର ପ୍ରଚାରକ ଥିଲେ ହେଁ ଚିରବିନୀତ ଖ୍ରୀଷ୍ଟଙ୍କର ଯୋଗ୍ୟ ଶିଷ୍ୟ ଥିଲେ । ସେ ଥିଲେ ପୁଣ୍ୟ ପିତାଙ୍କର ପ୍ରତିନିଧି । ତଥାପି ଯେଶ୍ୱିଟ୍ ସଂଘର ସଭ୍ୟ ହିସାବରେ ସର୍ବଦା ସଂଘର ଅଧ୍ୟକ୍ଷଙ୍କ ଆଜ୍ଞାବହ ହୋଇ ରହିଥିଲେ । ଯେଶ୍ୱିଟ୍ ସଂଘର ପ୍ରତିଷ୍ଠାତା ସାଧୁ ଇଗ୍ନେଶୀୟଙ୍କ ପ୍ରତି ତାଙ୍କର ଏପରି ପ୍ରଗାଢ଼ ଭକ୍ତି ଥିଲା ଯେ, ତାଙ୍କ ନିକଟକୁ ସେ ଜାନୁପାତ କରି ଚିଠି ପତ୍ରାଦି ଲେଖୁଥାନ୍ତି । ସାଧୁ ଇଗ୍ନେଶୀୟଙ୍କଠାରୁ ଯେଉଁ ଆଦେଶ ଆସୁଥାଏ, ତାହା ସ୍ୱୟଂ ଈଶ୍ୱରଙ୍କଠାରୁ ମଣି ସେ ଆକ୍ଷରିକ ଭାବରେ ଶିରୋଧାର୍ଯ୍ୟ କରୁଥାନ୍ତି । ଏ ସବୁ ପୁଣ୍ୟ ତାଙ୍କୁ ଧର୍ମ ପ୍ରଚାରରେ ଯଥେଷ୍ଟ ଧୈର୍ଯ୍ୟ ଓ ସାହାସ ଦେଉଥାଏ ।

ସୁଦୂର ପ୍ରାଚ୍ୟରେ ସାଧୁ ଫ୍ରାନ୍ସିସ ମାଇଲାପୁରଠାରୁ ମାଲଖା ଯାତ୍ରା କଲେ । ମାଲଖାରୁ ଆମ୍ବୋୟାନା, ଚେରାନ୍ ଆଦି ଦର୍ଶନ କରିଥିଲେ । ଏ ଦ୍ୱୀପଗୁଡ଼ିକରେ ଲୋକେ ତାଙ୍କୁ ସ୍ୱାଗତ କରିଥିଲେ । ସେ ଅବାଧରେ ଧର୍ମ ପ୍ରଚାର କରିଥିଲେ । ସହସ୍ର ସହସ୍ର ଲୋକ କାଥଲିକ ଧର୍ମ ଗ୍ରହଣ କରିଥିଲେ ।

**ଅପହାରିତ କ୍ରୁଶ**

ଦିନେ ସମୁଦ୍ର ଯାତ୍ରା କରି ଆମ୍ବୋୟାନାରୁ ଚେରାନ୍ ଦ୍ୱୀପକୁ ଗଲାବେଳେ ସମୁଦ୍ରରେ ବଡ ତୋଫାନ ହେଲା । ବୋଇତ ପାଣିରେ ବୁଡ଼ିଯିବା ଉପରେ । ଯାତ୍ରୀମାନେ ପ୍ରାଣର ଆଶା ଛାଡ଼ିଲେ । ସମସ୍ତେ ଉତ୍‌କଣ୍ଠାରେ ଚାହୁଁଥାନ୍ତି ଫ୍ରାନ୍ସିସଙ୍କ ଆଡ଼କୁ । ଫ୍ରାନ୍ସିସ ଗଳାରୁ କ୍ରୁଶ କାଢ଼ି ନେଇ ପାଣିରେ ବୁଡ଼ାଇ ବାନ୍ଧି ଦେଲେ ଓ ପ୍ରାର୍ଥନାରେ ରତ ହେଲେ । ହଠାତ୍ ଝଡ ବନ୍ଦ ହେଲା । ସମସ୍ତେ ପ୍ରାଣ ପାଇଲେ ।

ତାହାରି ଈଶ୍ୱର ଭକ୍ତି ଓ ଆନନ୍ଦର ସୀମା ରହିଲା ନାହିଁ ଫ୍ରାନ୍ସିସ କିନ୍ତୁ ଦୁଃଖିତ ହେଲେ; କାରଣ କ୍ରୁଶ ବନ୍ଧା ଡୋରି ଛିଡ଼ି ଯିବାରୁ ଲହଡ଼ିରେ ତାହା କୁଆଡେ ଭାସି ଚାଲିଗଲା। ତାହା ଯେ କେତେ ଏମିତି ଅଦ୍ଭୁତ କର୍ମ ନ ଥିଲା। ଏହା ତାଙ୍କୁ ଅତି ବାଧିଲା। କିନ୍ତୁ ସେ କୂଳକୁ ପହଞ୍ଚି ବୋଇତରୁ ଓହ୍ଲାଇଛନ୍ତି କି ନାହିଁ; ଏତିକିବେଳେ ଗୋଟିଏ କଙ୍କଡ଼ା ସେ କ୍ରୁଶଟିକୁ କାମୁଡ଼ି ଆଣି ତାଙ୍କ ସାମନାରେ ଥୋଇଦେଲା ଓ ପାଣିରେ ବୁଡ଼ି ଅଦୃଶ୍ୟ ହୋଇଗଲା। କ୍ରୁଶଟି ଫେରି ପାଇ ଫ୍ରାନ୍ସିସ ଓ ତାଙ୍କ ସହଯାତ୍ରୀମାନେ ଆଣ୍ଠୁ ମାଡ଼ି ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ।

### ନୁସାଲୋଟ୍‌ରେ ଫ୍ରାନ୍ସିସଙ୍କ ମିଶନ୍

ଫ୍ରାନ୍ସିସ ଚେରାନ୍ ଦ୍ୱୀପରୁ ନୁସାଲୋଟ୍ ଦ୍ୱୀପକୁ ଗଲେ। ସେଠାରେ ଅଲଫୁର ଜାତି ବାସ କରୁଥିଲେ। ସେମାନେ ନରଖାଦକ ଓ ବର୍ବର ଜାତି ଥିଲେ। ସେ ସେମାନଙ୍କ ମତିପରିବର୍ତ୍ତନ କରିବାକୁ ଚେଷ୍ଟା କଲେ। ତାଙ୍କ ଧର୍ମ ପ୍ରଚାରର କିଛି ଫଳ ଦେଖାଯାଇ ନ ଥିଲା। ଅଲଫୁରମାନେ ଏତେ ବର୍ବର ଓ ଜଡ ଥିଲେ ଯେ, ଈଶ୍ୱରଙ୍କ ବାଣୀ ଶୁଣିବାକୁ ଆଦୌ କାନ ଦେଉନଥିଲେ। ସେଠାରେ କେବଳ ଜଣେ ଯୁବକ କାଥଲିକ ହୋଇଥିଲେ। ସ୍ନାନ ସଂସ୍କାରରେ ଯୁବକଟିକୁ ଫ୍ରାନ୍ସିସ ନାମ ଦିଆଯାଇଥିଲା। ସେ ସେହି ଯୁବକକୁ ଉପଦେଶ ଦେଇ କହିଲେ, "ଫ୍ରାନ୍ସିସ, ଈଶ୍ୱରଙ୍କ ଅନୁଗ୍ରହରେ ଆସ୍ଥା ରଖ, ଧର୍ମରେ ଦୃଢ଼ ରହ, ତେବେ ତୁମେ ଯେଶୁ ନାମ ଉଚ୍ଚାରଣ କରି ଶୁଭ ମରଣ ପାଇବ"। ତାଙ୍କର ଏହି ଉପଦେଶ ଯୁବକ ହୃଦୟରେ ଅଙ୍କି ହୋଇ ରହିଲା। ଯୁବକ ଫ୍ରାନ୍ସିସ ସୈନ୍ୟ ହେଲେ। ମୁସଲମାନ୍‌ମାନଙ୍କ ବିରୋଧରେ ଅନେକ ଯୁଦ୍ଧରେ ଲଢିଲେ। ଇୟାମା ଦୁର୍ଗ ଅବରୋଧ କଲାବେଳେ ଗୁଳି ଚୋଟରେ ସେ ତିନିଥର ଯେଶୁ ନାମ ଉଚ୍ଚାରଣ କରି ପ୍ରାଣ ତ୍ୟାଗ କରିଥିଲେ। ଏହି ଭାବରେ ଫ୍ରାନ୍ସିସ ଜାବୀୟରଙ୍କ ଭବିଷ୍ୟତ୍ ବାଣୀ ପୂର୍ଣ୍ଣ ହୋଇଥିଲା।

### ଟେର୍ଣ୍ଣେଟ ରାଜ ପରିବାର

ଫ୍ରାନ୍ସିସ ଟେର୍ଣ୍ଣେଟ ଦ୍ୱୀପକୁ ଗଲେ। ସେଠାରେ ଜଣେ ମୁସଲମାନ୍ ରାଜା ରାଜତ୍ୱ କରୁଥିଲେ। ରାଜା ତାଙ୍କୁ ନିଜ ଦେଶରେ ଧର୍ମ ପ୍ରଚାର କରିବାକୁ ଅନୁମତି ଦେଲେ। ଫ୍ରାନ୍ସିସ ସେଠାରେ ତିନି ମାସ ଧର୍ମ ପ୍ରଚାର କରିଥିଲେ। ରାଜାଙ୍କ ମାତା

ଓ ରାଜ ପରିବାରରୁ କେତେ ଜଣ କାଥଲିକ ଧର୍ମ ଗ୍ରହଣ କଲେ । ପ୍ରଜାଙ୍କ ମଧ୍ୟରୁ ସହସ୍ର ସହସ୍ର ଲୋକ କାଥଲିକ ହେଲେ । ଫ୍ରାନ୍ସିସଙ୍କ ଉପଦେଶ ବାଣୀ କି ରାଜାଙ୍କୁ କି ପ୍ରଜା କି ଦେବ ପୂଜକ, କି ମୁସଲମାନ୍ ହୃଦୟକୁ ସ୍ପର୍ଶ କରି ପାରିଥିଲା । ତାଙ୍କ ଧର୍ମୋପଦେଶ ଓ ଅପୂର୍ବ ବ୍ୟକ୍ତିତ୍ୱ ଅସଂଖ୍ୟ ଲୋକଙ୍କୁ ଈଶ୍ୱରଙ୍କ ଆଡକୁ ଟାଣି ଆଣୁଥିଲା ।

## ମରଦ୍ୱୀପରେ ସାଧୁ ଫ୍ରାନ୍ସିସ

ମର ନାମକ ଦ୍ୱୀପରେ ଏକ ବର୍ବର ଜାତି ବାସ କରୁଥିଲେ । ଦିନେ ଏମାନେ କାଥଲିକ ଥିଲେ । କାଥଲିକ ଧର୍ମର କଠୋର ନୀତି ମାନି ଚଳିବାକୁ କଷ୍ଟ ହେବାରୁ ଏମାନେ ଯାଜକ ମାନଙ୍କୁ ହତ୍ୟା କରି ଧର୍ମ ତ୍ୟାଗ କରିଥିଲେ । ବିଦେଶୀମାନଙ୍କୁ ଏମାନେ ଦ୍ୱୀପ ଭିତରେ ପୂରାଇ ଦେଉ ନ ଥିଲେ । ଫ୍ରାନ୍ସିସ ସେ ଦ୍ୱୀପକୁ ଯିବାକୁ ବାହାରିଲେ । ଅନେକ ଲୋକ ତାଙ୍କୁ ମନାକଲେ । ପର୍ତ୍ତୁଗୀଜ୍‌ମାନେ ତାଙ୍କ ବୋଇତ ଦେବାକୁ ନାରାଜ ହେଲେ । ତେବେ ଫ୍ରାନ୍ସିସ ପହଁରି କରି ଯିବାକୁ ବସିଲେ । ପରିଶେଷରେ ବୋଇତ ମିଳିଲା । ଅନେକ ସାହାସ ପର୍ତ୍ତୁଗୀଜ୍ ଯୁବକ ମଧ୍ୟ ତାଙ୍କ ସଙ୍ଗୀ ହେଲେ । ମର ଦ୍ୱୀପରେ ପହଞ୍ଚି ଫ୍ରାନ୍ସିସ ସେହି ଭ୍ରଷ୍ଟ ଖ୍ରୀଷ୍ଟୀୟାନମାନଙ୍କ ପଛରେ ଗୋଡ଼ାଇଲେ । ସେମାନଙ୍କୁ ସେ ଈଶ୍ୱରଙ୍କ ପଥରେ ଫେରାଇ ଆଣିବାକୁ ଚେଷ୍ଟା କଲେ । ବହୁ ପରିଶ୍ରମ ସତ୍ତ୍ୱେ ସେ ସେମାନଙ୍କ ମତି ପରିବର୍ତ୍ତନ କରିପାରିଲେ ନାହିଁ । ସେ ମର ଦ୍ୱୀପରେ ତିନିମାସ କଟାଇ ଥିଲେ ।

## ଆକିମର ଦସ୍ୟୁମାନଙ୍କ ମନ ପରିବର୍ତ୍ତନ

୧୫୪୭ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସିସ ମାଲଖା ଫେରିଲେ । ସେ କାଳରେ ଆକମର ମୁସଲମାନ୍ ଦସ୍ୟୁମାନେ ମାଲଖା ଆସି ଲୁଟ ତରାଜ କରୁଥାନ୍ତି । ଦସ୍ୟୁ-ଉପଦ୍ରବରୁ ରକ୍ଷା ପାଇବାର କୌଣସି ଉପାୟ ନ ଦେଖି ଲୋକେ ମର୍ମାହତ ହୋଇ ପଡ଼ିଥିଲେ । ଫ୍ରାନ୍ସିସ ସେମାନଙ୍କୁ ଆକ୍ରମଣ କରିବାକୁ କେତେଖଣ୍ଡ ବୋଇତରେ ଲୋକ ପଠାଇଲେ । ସେ ମଧ୍ୟ ସେମାନଙ୍କ ସଙ୍ଗରେ ଯିବାକୁ ବସିଥିଲେ, କିନ୍ତୁ ଲୋକେ ଅନେକ ମନା କରିବାରୁ ସେ ସହରରେ ରହି ଧର୍ମ ପ୍ରଚାର କରିବାକୁ ଲାଗିଲେ । ଚାଳିଶ ଦିନ ଗଡ଼ିଗଲା; କିନ୍ତୁ ସେମାନଙ୍କ ବିଷୟରେ କିଛି ଖବର

ଆସିଲା ନାହିଁ । ଅବେଗର ଢେଉ ମାଲଖା ତମାମ ଖେଳିଗଲା । କେହି କେହି ସେମାନଙ୍କ ଶୁଭାଶୁଭ ନେଇ ଜ୍ୟୋତିଷମାନଙ୍କଠାରେ ଖଡ଼ି ଦେଖାଇଲେ । ଫ୍ରାନ୍ସିସ ଆପେ ସେମାନଙ୍କୁ ପଠାଇଥିଲେ ବୋଲି ସେମାନେ ତାଙ୍କ ବିରୋଧରେ ଗୁଜବୁଗାଜର ହେଲେ । ଫ୍ରାନ୍ସିସ ଦିନେ ସେମାନଙ୍କୁ କହିଲେ, "ମାଲଖା ଲୋକେ ଜୟୀ ହୋଇଛନ୍ତି; ସେମାନେ ଏଇ ନିକଟରେ ଫେରୁଛନ୍ତି" । ଏ ଖବର କେହି ଆଣି ନ ଥିବାରୁ ସେମାନେ ଅବାକ୍ ହେଲେ । କିନ୍ତୁ ସେ ତାହା ଅଦ୍ଭୁତ ଭାବରେ ଜାଣି ପାରିଥିଲେ । କିଛି କାଳ ପରେ ସେ କହିଲା ପ୍ରକାରେ ମାଲଖା ଲୋକେ ବିଜୟୀ ହୋଇ ଘରକୁ ଫେରିଥିଲେ । ଆକିମର ଦସ୍ୟୁମାନେ ଆଉ କେବେ ଦଗାବାଜି କରିବାକୁ ମାଲଖାକୁ ଆସି ନ ଥିଲେ ।

### ଫ୍ରାନ୍ସିସ ପୁଣି ଭାରତରେ

ଫ୍ରାନ୍ସିସ ମାଲଖାରେ ଥିଲା ବେଳେ ହାନିଷିର ନାମକ ଜଣେ ଜାପାନୀ ବଣିକଙ୍କଠାରୁ ଜାପାନ ବିଷୟରେ ଅନେକ କଥା ଶୁଣିଥିଲେ । ଜାପାନ ଯିବାକୁ ତାଙ୍କ ମନ ହେଲା । କିନ୍ତୁ ସେ ଭାରତ ଛାଡ଼ି ଅନେକ ଦିନ ହୋଇଯାଇଥିଲା । ଭାରତକୁ ଫେରି ତାଙ୍କ ପ୍ରତିଷ୍ଠିତ କାଥଲିକ ମଣ୍ଡଳୀମାନ ପୁଣି ଦର୍ଶନ କରିବା ଦରକାର ଥିଲା । ଅତଏବ ସେ ଜାପାନ ଯିବା ବଦଳରେ ଭାରତକୁ ଚାଲି ଆସିଲେ । ମାର୍ଗରେ ସେ ସିଂହଳ ଦର୍ଶନ କଲେ । ମାଲବାର ଉପକୂଳରେ ପହଞ୍ଚି ବିଭିନ୍ନ କାଥଲିକ ମଣ୍ଡଳୀମାନ ଦର୍ଶନ କରି ଆଧ୍ୟାତ୍ମିକ ଧ୍ୟାନ ପ୍ରଚାର କଲେ । ଲୋକେ ବହୁ ଦିନ ପରେ ଫ୍ରାନ୍ସିସଙ୍କ ଉପଦେଶ ଶୁଣିବାକୁ ପାଇ ଖୁବ୍ ଆନନ୍ଦିତ ଓ ଉତ୍ସାହିତ ହେଲେ । ସେମାନଙ୍କ ମଧ୍ୟରେ ଫ୍ରାନ୍ସିସଙ୍କ ଉପସ୍ଥିତି ଏକ ଅପୂର୍ବ ପ୍ରେରଣା ଦେଉଥାଏ । ମାଲବାର କାଥଲିକମାନଙ୍କୁ ଦର୍ଶନ କଲା ପରେ ସେ ଗୋଆ ସହରକୁ ଚାଲିଗଲେ । ସେଠାରେ ମଧ୍ୟ କାଥଲିକମାନଙ୍କୁ ଧର୍ମରେ ଦୃଢ଼ ରହିବାକୁ ସଚେତନ ଦେଲେ । ସେହିଠାରେ ଉକ୍ତ ଜାପାନୀ ବଣିକ ହାନିଷରଙ୍କୁ ଭେଟିଲେ । ମାଲଖାରେ ହିଁ ହାନିଷର ପାଉଲ ନାମରେ ଫ୍ରାନ୍ସିସଙ୍କଠାରୁ ସ୍ନାନ ପାଇଥିଲେ ।

### ହାନିଷରଙ୍କ ମନ ପରିବର୍ତ୍ତନ

ହାନିଷର ଜଣେ ଜାପାନୀ ବଣିକ ଥିଲେ । ଜାପାନରେ ଥରେ ଶହ ଶହ ନିରୀହ ଲୋକଙ୍କୁ ନୃଶଂସ ଭାବରେ ହତ୍ୟା କରାଯାଇଥିଲା । ସେହି ହତ୍ୟାକାଣ୍ଡରେ

ହାନିଷରଙ୍କ ହାତ ଥିଲା । କେତେକାଳ ପରେ ତାଙ୍କ ବିବେକ ତାଙ୍କୁ ଗଞ୍ଜଣା ଦେଲା । ସେ ନର ହତ୍ୟା ପାପର ଗୁରୁତ୍ୱ ବୁଝି ଆପଣାକୁ ଧିକ୍‌କାର କଲେ । ସେ ମନର ସକଳ ଶାନ୍ତି ହରାଇ ବସିଲେ । ସେ ପାଗଳ ପରି ବିଭିନ୍ନ ଜାଗାକୁ ଚାଲିବାକୁ ଲାଗିଲେ ; କିନ୍ତୁ ଆତ୍ମାରେ ଆଶ୍ୱସ୍ତି ପାଇ ପାରିଲେ ନାହିଁ । ନିଜ ବୌଦ୍ଧ ଗୁରୁଙ୍କଠାକୁ ଯାଇ ସେ ତାଙ୍କ ଆତ୍ମାର ଦଶା ଜଣାଇଲେ । ବୌଦ୍ଧ ସନ୍ନ୍ୟାସୀମାନେ ତାଙ୍କ ଆତ୍ମାକୁ ଶାନ୍ତି ଆଣି ଦେଇ ପାରିଲେ ନାହିଁ । ଜାପାନରୁ ସେ ପର୍ତ୍ତୁଗୀଜ ବୋଇତରେ ଚୀନ ପଳାଇଲେ । ପଥ ମଧ୍ୟରେ ସେ ସାଧୁ ଫ୍ରାନ୍ସିସଙ୍କ ବିଷୟରେ ଶୁଣିଲେ । ତେବେ ସେ ତାଙ୍କ ସହିତ ଦେଖା କରିବାକୁ ମାଲଖାକୁ ଆସିଲେ । ମାଲଖାରେ ଫ୍ରାନ୍ସିସଙ୍କୁ ଭେଟି ନ ପାରି ହାନିଷର ହତାଶ ହୋଇ ଜାପାନ ଫେରିଲେ । ସମୁଦ୍ର ମଧ୍ୟରେ ଝଡ ହେବାରୁ ତାଙ୍କ ବୋଇତ ଚୀନ ଉପକୂଳରେ ଆସି ଲାଗିଲା । ବିଚାରା ହାନିଷର ନିଜ ପାପମୟ ଅବସ୍ଥା ଦୃଷ୍ଟିରୁ ମରଣକୁ ବହୁ ଆଶଙ୍କା କରୁଥିଲେ । ଏହି ଆଶଙ୍କା ତାଙ୍କୁ ଈଶ୍ୱରଙ୍କ ପ୍ରତି ଅଧିକ ଆକର୍ଷଣ କଲା । ହାନିଷର ଫ୍ରାନ୍ସିସଙ୍କ ସହିତ ଦେଖା କରିବାକୁ ପୁଣି ମାଲଖା ଫେରିଲେ । ଏଥର ସେ ଫ୍ରାନ୍ସିସଙ୍କ ସହିତ ସାକ୍ଷାତ କଲେ । ତାଙ୍କଠାରୁ କାଥଲିକ ଧର୍ମ ବିଷୟ ଶୁଣି ସେ କାଥଲିକ ଧର୍ମଗ୍ରହଣ କରି ପାଉଲ ନାମରେ ସ୍ନାନ ପାଇଲେ । ହାନିଷର ପାଉଲ ସେହି ମୁହୂର୍ତ୍ତରୁ ଆତ୍ମାରେ ଅପୂର୍ବ ଶାନ୍ତି ପାଇଲେ ।

**ଜାପାନରେ ସାଧୁ ଫ୍ରାନ୍ସିସ**

୧୫୪୯ରେ ଫ୍ରାନ୍ସିସ ହାନିଷର ପାଉଲ ଓ ଅନ୍ୟ ଦୁଇଜଣ କାଥଲିକ ପ୍ରଚାରକଙ୍କୁ ସାଙ୍ଗରେ ନେଇ ଜାପାନ ଅଭିମୁଖେ ଯାତ୍ରା କଲେ । ଜାପାନ ପହଞ୍ଚି ଫ୍ରାନ୍ସିସ ଜାପାନୀ ଭାଷା ଶିଖିଲେ । ହାନିଷର ପାଉଲ ଶିକ୍ଷା ସଂକ୍ଷେପ, ପ୍ରାର୍ଥନାବଳି ଆଦି ଜାପାନୀ ଭାଷାରେ ଅନୁବାଦ କରିଥିଲେ । ଫ୍ରାନ୍ସିସ ଅଳ୍ପକାଳ ମଧ୍ୟରେ ଜାପାନୀ ଭାଷାରେ ପ୍ରଚାର କରିବାକୁ ଲାଗିଲେ । ଫ୍ରାନ୍ସିସ ଯେଉଁ ଯେଉଁ ନୂଆ ସ୍ଥାନକୁ ଯାଉଥାନ୍ତି, ସେଠାରେ ଭାଷା ଶିଖି ପକାଉଥାନ୍ତି । ସେ ଯେ କୌଣସି ନୂଆ ଭାଷା ଯେତେ ଦୁର୍ବୋଧ୍ୟ ହେଲେ ସୁଦ୍ଧା ଅତି ଶୀଘ୍ର ଶିଖି ପାରୁଥାନ୍ତି । ସ୍ଥାନୀୟ ଭାଷାମାନଙ୍କରେ ପ୍ରଚାର କରି ନ ଥିଲେ, ହୁଏତ ସେ ଏତେ ଲୋକଙ୍କ ମତି ପରିବର୍ତ୍ତନ କରି ପାରିନଥାନ୍ତେ । ସେ ବିଭିନ୍ନ

ଭାଷା ଶୀଘ୍ର ଶିଖି ପାରିବା ପାଇଁ ଈଶ୍ୱରଙ୍କ ଅନୁଗ୍ରହ ପାଇଥିଲେ, ଏଥିରେ ସନ୍ଦେହ ନାହିଁ ।

### କାଗୋଷିମାରେ ନିନ୍‌ଷିନଙ୍କ ମନ ପରିବର୍ତ୍ତନ

୧୫୫୦ରେ ଫ୍ରାନ୍ସିସ ପ୍ରଥମେ କାଗୋଷିମାରେ ଧର୍ମ ପ୍ରଚାର କରିଥିଲେ । ଗୋଟିଏ ବୌଦ୍ଧ ମନ୍ଦିରରେ ନିନ୍‌ଷିନ୍ ନାମକ ଜଣେ ବୌଦ୍ଧ ଗୁରୁଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ସେହି ବୌଦ୍ଧ ଗୁରୁଙ୍କ ସହିତ ଧର୍ମ ସମ୍ବନ୍ଧରେ ଅନେକ ଯୁକ୍ତି କଲେ । ନିନ୍‌ଷିନ୍ କାଥଲିକ ଧର୍ମ ସତ୍ୟ ବୋଲି ସ୍ୱୀକାର କରିଥିଲେ । କିନ୍ତୁ ସେ ତତ୍‌କ୍ଷଣାତ୍ କାଥଲିକ ଧର୍ମ ଗ୍ରହଣ କରି ନ ଥିଲେ । ସେ ନିଜ ମରଣାବସ୍ଥାରେ ସ୍ନାନ ସଂସ୍କାର ପାଇବା ପାଇଁ କାଥଲିକ ଯାଜକଙ୍କୁ ଡକାଇଥିଲେ । ଯାଜକ ପହଞ୍ଚିବା ପୂର୍ବରୁ ତାଙ୍କ ମୃତ୍ୟୁ ଘଟିଯାଇଥିଲା । ଫ୍ରାନ୍ସିସଙ୍କ ପ୍ରଚାରରେ କାଗୋଷିମାର ଅନେକ ଲୋକ କାଥଲିକ ଧର୍ମ ଗ୍ରହଣ କରିଥିଲେ ।

### ମିୟାକରେ ସାଧୁ ଫ୍ରାନ୍ସିସ

୧୫୫୧ରେ ଫ୍ରାନ୍ସିସ ମିୟାକ (କିଓଟୋ) ରେ ଧର୍ମ ପ୍ରଚାର କରିଥିଲେ । ମିୟାକରେ ଜାପାନ ଚକ୍ରବର୍ତ୍ତୀ ମିକାଡ଼ୋ ବାସ କରୁଥିଲେ । ଚକ୍ରବର୍ତ୍ତୀଙ୍କ ସହ ବନ୍ଧୁତା ସ୍ଥାପନ କଲେ ସମଗ୍ର ଜାପାନରେ ଅବାଧରେ ଧର୍ମ ପ୍ରଚାର କରି ହେବ, ଆଶା କରି ଫ୍ରାନ୍ସିସ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଚେଷ୍ଟା କଲେ । ସେତିକି ବେଳେ ଦେଶରେ ବିଦ୍ରୋହ ଘଟିଲା । ବିଦ୍ରୋହୀ ନେତା ମିୟାକ ସହର ଅଧିକାର କଲେ । ଚକ୍ରବର୍ତ୍ତୀ ଦୁର୍ବଳ ହୋଇ ପଡ଼ିଲେ । ଚକ୍ରବର୍ତ୍ତୀଙ୍କ ସହ ଦେଖା କରି କିଛି ଫଳ ହେଲା ନାହିଁ ଜାଣି ଫ୍ରାନ୍ସିସ ହତାଶ ହୋଇ ଗୋଟିଏ ସପ୍ତାହ ମଧ୍ୟରେ ୟାମାଗୁଚି ଚାଲିଗଲେ ।

### ୟାମାଗୁଚିରେ ସାଧୁ ଫ୍ରାନ୍ସିସ

ଖ୍ରୀଷ୍ଟ ଆଜୀବନ ଦରିଦ୍ର ଥିଲେ । ଦରିଦ୍ରତା ସେ ସ୍ୱେଚ୍ଛାରେ ବରଣ କରିଥିଲେ । ତାଙ୍କ ପ୍ରକୃତ ଭକ୍ତ ଅବଶ୍ୟ ଦରିଦ୍ରତା ବରଣ କରିବେ । ଫ୍ରାନ୍ସିସ ଯେଉଁଠି ସଂଘରେ

ପ୍ରବେଶ କରିବା ଦିନ ଦାରିଦ୍ର୍ୟ ବ୍ରତ ଗ୍ରହଣ କରିଥିଲେ । ସେ ତାହା ଭାରତରେ ଧର୍ମ ପ୍ରଚାର କଲାବେଳେ ଯଥାଯଥ ପାଳନ କରିଥିଲେ । ସେ ୟୁରୋପୀୟ ସମ୍ଭ୍ରାନ୍ତକୁଳୀନ ବ୍ୟକ୍ତି ଥିଲେ ହେଁ ପଦେ ପଦେ ଭାରତୀୟ ସଂସ୍କୃତିରେ ଜୀବନଯାପନ କରିଥିଲେ । ସେ ଭାତ ମୁଠାଏ ଖାଇ ପାଣି ମୁନ୍ଦାଏ ପିଇ ଚଳୁଥିଲେ । ସେ ଛୋଟ କୁଡ଼ିଆ ଭିତରେ ଖାଲି ଭୂଇଁରେ ଶୋଉଥିଲେ । ଦିନ ସାରା ଧର୍ମ ପ୍ରଚାର କରି ରାତିରେ ମୋଟେ ତିନିଘଣ୍ଟା ଶୋଇ ବାକି ସମୟ ପ୍ରାର୍ଥନାରେ କଟାଉଥିଲେ । ଏସବୁ ଦେଖି ଭାରତରେ ଲୋକେ ଅବାକ୍ ହୋଇ ଯାଉଥିଲେ, ତାଙ୍କୁ ଈଶ୍ୱର ପ୍ରେରିତ ମହାପୁରୁଷ ମଣି ତାଙ୍କ ଉପଦେଶ ଭକ୍ତିରେ ଶୁଣୁଥିଲେ ଓ କାଥଲିକ ଧର୍ମ ଗ୍ରହଣ କରୁଥିଲେ । ଜାପାନରେ ବିଶେଷତଃ ୟାମଗୁଚିରେ ଲୋକେ ଫ୍ରାନ୍ସିସଙ୍କ ଏଭଳି ନିରାଡ଼ମ୍ବର ଜୀବନକୁ ସୁଖ ପାଇଲେ ନାହିଁ । ସେମାନେ ଚାହୁଁଥିଲେ ଆଡ଼ମ୍ବର, ଚାକଚକ୍ୟ । ଫ୍ରାନ୍ସିସ ଥିଲେ ଯେଶ୍ୱିଟ, ପୁରାପୁରି ଯେଶ୍ୱିଟ । ବେଳକାଳ ଉଣ୍ଡି କାମ କରିବା ଯେଶ୍ୱିଟଙ୍କ ଧର୍ମ । ସେ ଭଲ ପୋଷାକ ପିନ୍ଧି, ଅନ୍ୟ ମିଶନାରୀମାନଙ୍କୁ ଦେହରକ୍ଷୀ ସ୍ୱରୂପ ନେଇ ପର୍ତ୍ତୁଗାଲ ରାଜାଙ୍କ ପରିଚୟ ପତ୍ର ଧରି ନାଗଟ ରାଜାଙ୍କର ସାକ୍ଷାତ୍ କରିବାକୁ ଗଲେ । ଦରବାରରେ ରାଜାଙ୍କ ଦେଖା କରି ସରକାରୀ ଭାବରେ ଚକ୍ରବର୍ତ୍ତୀ ମିକାଡ଼ଙ୍କ ପାଇଁ ଘଡି, ବାଜା ଓ ଅନ୍ୟ ଅନେକ ବହୁ ମୂଲ୍ୟ ଜିନିଷ ଉପହାର ଦେଲେ । ରାଜା ଉପହାର ଗୁଡ଼ିକ ପାଇ ଭାରୀ ଖୁସି ହେଲେ । ସେ ନିଜ ରାଜ୍ୟରେ ଧର୍ମ ପ୍ରଚାର କରିବାକୁ ଅନୁମତି ଦେଲେ । ଫ୍ରାନ୍ସିସଙ୍କ ରହିବା ପାଇଁ ଖାଲି ପଡିଥିବା ବୌଦ୍ଧ ମଠଟାଏ ମଧ୍ୟ ଦେଲେ । ଏ ସବୁ ଦେଖି ଲୋକେ ଆଚମ୍ଭିତ ହୋଇଗଲେ । ସମସ୍ତେ ଫ୍ରାନ୍ସିସଙ୍କୁ ସମ୍ମାନ କରିବାକୁ ଲାଗିଲେ । ସେମାନେ ପୂର୍ବାପେକ୍ଷା ଅଧିକ ଆଗ୍ରହ ସହିତ ତାଙ୍କ ଉପଦେଶ ଶୁଣିଲେ । ସେ ତେବେ ଅକାଟ୍ୟ ଯୁକ୍ତିରେ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ହଟାଇ ଦେଉଥାନ୍ତି । ଏହା ଦେଖି ଅନେକ ବୌଦ୍ଧ ଧର୍ମ ତ୍ୟାଗ କରି କାଥଲିକ ହୋଇଥିଲେ । ସେଠାରେ ସେ ଚୀନ ଭାଷା ଆଦୌ ଶିଖି ନ ଥିଲେ ହେଁ ପରିଷ୍କାର ଚୀନ ଭାଷାରେ ଚୀନ ଭାଷୀମାନଙ୍କ ନିକଟରେ ଧର୍ମ ପ୍ରଚାର କରିଥିଲେ । ଜାପାନୀ ଭାଷା ମଧ୍ୟ ସେ ସାମାନ୍ୟ ମାତ୍ର ଶିଖିଥିଲେ । ତଥାପି ଜାପାନୀମାନଙ୍କ ଭଳି ଏପରି ସ୍ପଷ୍ଟ ଭାବରେ ପ୍ରଚାର କରୁଥିଲେ ଯେ, ସେ ବିଦେଶୀ ବୋଲି ଆଦୌ ଜଣା ପଡୁ ନ ଥିଲା ।

## ଯୁନାଇରେ ସାଧୁ ଫ୍ରାନ୍ସିସ

ଯୁନାଇ ରାଜା ଫ୍ରାନ୍ସିସଙ୍କ ଖ୍ୟାତି ଶୁଣି ତାଙ୍କୁ ଦେଖିବାକୁ ଇଚ୍ଛା କରିଥିଲେ । ପର୍ତ୍ତୁଗୀଜ୍‌ମାନେ ତାଙ୍କୁ ବଡ଼ ଆଡ଼ମ୍ବର ସହକାରେ ଶୋଭାଯାତ୍ରା କରି ରାଜାଙ୍କ ନିକଟକୁ ନେଇ ଯାଇଥିଲେ । ଲୋକେ ସେ ଆଡ଼ମ୍ବର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଫ୍ରାନ୍ସିସଙ୍କୁ ବାସ୍ତବରେ ମହାପୁରୁଷ ଜ୍ଞାନ କରିଥିଲେ । ରାଜା ତାଙ୍କୁ ସାଦରେ ଗ୍ରହଣ କରିଥିଲେ । ଫ୍ରାନ୍ସିସ ରାଜାଙ୍କୁ ଅନେକ ବହୁମୂଲ୍ୟ ଭେଟି ଦେଇଥିଲେ । ରାଜା ଫ୍ରାନ୍ସିସଙ୍କୁ ନିଜ ରାଜ୍ୟରେ ଧର୍ମ ପ୍ରଚାର କରିବାକୁ ଅନୁମତି ଦେଲେ । ଅନେକ ଲୋକ କାଥଲିକ ଧର୍ମରେ ଦୀକ୍ଷିତ ହେଲେ । ଫ୍ରାନ୍ସିସଙ୍କ ଏହି ଦର୍ଶନର ୨୭ ବର୍ଷ ପରେ ଆପେ ରାଜା ୭୦ ହଜାର ପ୍ରଜାଙ୍କ ସହ କାଥଲିକ ଧର୍ମ ଗ୍ରହଣ କରିଥିଲେ । ଫ୍ରାନ୍ସିସଙ୍କ ଧର୍ମ ପ୍ରଚାର ଉଭାରୁ ୪୦ ବର୍ଷ ଭିତରେ ଜାପାନର କାଥଲିକ ସଂଖ୍ୟା ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ହୋଇଯାଇଥିଲା । ଫ୍ରାନ୍ସିସ ବିଶ୍ୱାସର ପ୍ରଥମ ବୀଜ ପକାଇଥିଲେ ବୋଲି ଜାପାନ ଭୂମିରେ ଏତେ ଫଳ ଉଠି ପାରିଥିଲା । ୨୫୦ ବର୍ଷ ପର୍ଯ୍ୟନ୍ତ କାଥଲିକମାନଙ୍କୁ ଧର୍ମ ପାଇଁ ଉପଦ୍ରବ ସହିବାକୁ ପଡ଼ିଥିଲେହେଁ ସେମାନଙ୍କ ବିଶ୍ୱାସ ତିଳେ ହେଲେ ଟଳି ନାହିଁ, ବରଂ ଦୃଢ଼ ହୋଇ ରହିଛି ।

## ଭାରତରେ ପୁଣି ସାଧୁ ଫ୍ରାନ୍ସିସ

୧୫୫୧ ଡିସେମ୍ବରରେ ଫ୍ରାନ୍ସିସ ଜାହାଜରେ ଭାରତ ଅଭିମୁଖରେ ଯାତ୍ରା କଲେ । ମାଲଖାରେ ଖ୍ରୀଷ୍ଟୀୟାନମାନେ ତାଙ୍କୁ ଅତି ଆନନ୍ଦରେ ଗ୍ରହଣ କଲେ । ସେଠାରେ ସେ ଚୀନ ଯିବାକୁ ଉଦ୍‌ଯୋଗ କରିଥିଲେ, କିନ୍ତୁ ତାହା ଅସମ୍ଭବ ହୋଇ ପଡ଼ିଥିଲା । କେହି ବିଦେଶୀର ଚୀନରେ ପାଦ ପକାଇବା ନିଷେଧ ଥିଲା । ଏହାର ଶାସ୍ତି ଥିଲା ମରଣ ବା ଅମରଣ ଜେଲ୍ । ମିଶନାରୀମାନଙ୍କ ପର୍ତ୍ତୁଗୀଜ୍ ରାଜା ଦୂତଙ୍କ ସଙ୍ଗରେ ଚୀନ ଯିବା ବିଷୟରେ ଫ୍ରାନ୍ସିସ ମାଲଖାର ପର୍ତ୍ତୁଗୀଜ୍ ଗଭର୍ଣ୍ଣର ଡନ୍ ପିଡ୍ରୋ ଡି ସିଲ୍‌ଭାଙ୍କ ସହିତ ପରାମର୍ଶ କରିଥିଲେ । ୧୫୫୨ ଫେବୃୟାରୀ ପହିଲାରେ ଫ୍ରାନ୍ସିସ ଗୋଆରେ ପହଞ୍ଚିଲେ । ସେଠାରେ ସେ ହାସପାତାଲ, ମଠ, ସାଣ୍ଟୋପି କଲେଜ ଆଦି ପରିଦର୍ଶନ କରିଥିଲେ । ତାଙ୍କ ଦ୍ୱାରା ପ୍ରେରିତ ସ୍ୱାମୀ ଗାସ୍ପାର ବେଟର୍ଜ ଗୋଆ ନିକଟବର୍ତ୍ତୀ ଆରମୁଜ୍ ଦ୍ୱୀପରେ ଅନେକଙ୍କ ମତି ପରିବର୍ତ୍ତନ କରିଥିଲେ । ମାଲାବାରରେ ସେ ଯେଉଁ ମିଶନାରୀମାନଙ୍କୁ ନିଯୁକ୍ତ କରି ଯାଇଥିଲେ, ସେମାନେ

ଅତି ଉତ୍ସାହ ସହିତ ପ୍ରଚାର କର୍ମ କରି ଆସିଥିଲେ । କୋଚିନ୍, ମାଇଲାପୁର, ମଲକାଶ ଆଦିରେ କାଥଲିକ ସଂଖ୍ୟା ଦିନୁକୁ ଦିନ ବୃଦ୍ଧି ପାଉଥିଲା । ମାଲବାର ଉପକୂଳର ଟାନୋର ରାଜ୍ୟର ରାଜା କାଥଲିକ ଧର୍ମ ଗ୍ରହଣ କରି ଗୋଆରେ ସ୍ଥାନ ପାଇଥିଲେ, ସିଂହଳର କେହି ଜଣେ ରାଜା ମଧ୍ୟ କାଥଲିକ ଧର୍ମ ଗ୍ରହଣ କରିଥିଲେ । ଏହି ଭାବରେ ଫ୍ରାନ୍ସିସଙ୍କ ପରିଶ୍ରମ ସହସ୍ର ଗୁଣରେ ଫଳ ଦେଇଥିଲା । ୧୫୫୨ ଏପ୍ରେଲ ୨୫ ତାରିଖରେ ଫ୍ରାନ୍ସିସ ପୁଣି ମିଶନାରୀ ଅଭିଯାନରେ ବାହାରିଥିଲେ ।

**କୁମାରିକା ଅନ୍ତରୀପରେ ସାଧୁ ଫ୍ରାନ୍ସିସ**

ଦିନେ ଫ୍ରାନ୍ସିସ କୁମାରିକାଠାରେ ଶହ ଶହ ଲୋକଙ୍କ ଆଗରେ ଧର୍ମ ପ୍ରଚାର କରୁଥିଲେ । ଦେବପୂଜକମାନେ ତାଙ୍କ ଶିକ୍ଷାରେ ଆଦୌ ବିଶ୍ୱାସ କରି ନ ଥିଲେ । ପାପରେ ସେମାନଙ୍କ ହୃଦୟ କଠିନ ପଡ଼ି ଯାଇଥିଲା । ଏଣୁ ସେ ଯାହା କହିଲେ ମଧ୍ୟ ସେମାନେ ଆଦୌ କାନ ଦେଇ ନ ଥିଲେ । ସେମାନଙ୍କ ମତି ପରିବର୍ତ୍ତନ ପାଇଁ ଫ୍ରାନ୍ସିସ ଈଶ୍ୱରଙ୍କଠାରେ ପ୍ରାର୍ଥନା କରିଥିଲେ । ଈଶ୍ୱର ତାଙ୍କ ପ୍ରାର୍ଥନା ଶୁଣିଲେ । ସେଠାରେ ତା' ପୂର୍ବ ଦିନ ଜଣେ ଲୋକ ମରି ଯାଇଥିଲା । ତାକୁ କବର ଦିଆଯାଇଥିଲା । ଫ୍ରାନ୍ସିସ ଦେବପୂଜକମାନଙ୍କୁ କହିଲେ ଯେ, ଖ୍ରୀଷ୍ଟିୟାନ ଶିକ୍ଷା ସତ୍ୟ ବୋଲି ଦର୍ଶାଇବାକୁ ଈଶ୍ୱର ଏହି ମୃତ ବ୍ୟକ୍ତିଟିକୁ ପୁନର୍ବାର ଜୀବନ ଦେବେ । ସେମାନେ ତାହା କଳ୍ପନା ସୁଦ୍ଧା କରି ନ ଥିଲେ । ଫ୍ରାନ୍ସିସ କବର ଖୋଲି ଶବବନ୍ଧା କନା ଫିଟାଇ ଦେଲେ । ପରେ ସେ ସେହି ମୃତ ଲୋକଟିକୁ ଜୀବନ ଧରି ଉଠି ଆସିବାକୁ ଈଶ୍ୱରଙ୍କ ନାମରେ ଆଦେଶ ଦେଲେ । ଲୋକଟି ସଙ୍ଗେ ସଙ୍ଗେ ସଜୀବ ହୋଇ ଉଠି ପଡ଼ିଲା । ତାହା ଦେଖି ଉପସ୍ଥିତ ଲୋକ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ; ଓ ସେମାନେ ସମସ୍ତେ କାଥଲିକ ଧର୍ମ ଗ୍ରହଣ କରିଥିଲେ ।

**ମାଲକ୍କାରେ ସାଧୁ ଫ୍ରାନ୍ସିସ**

ଫ୍ରାନ୍ସିସ ମାଲକ୍କାରେ ପହଞ୍ଚି ଦେଖିଲେ ଯେ, ସେଠାରେ ଅବସ୍ଥା ଭାରୀ ମନ୍ଦ ହୋଇଛି । ଗୋଟାଏ ସଂକ୍ରାମକ ରୋଗରେ ଅନେକ ପୀଡ଼ିତ ହୋଇ ପଡ଼ିଛନ୍ତି । ସେ ରୋଗୀମାନଙ୍କୁ  ନିଜ ହାତରେ ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ଶହ ଶହ

ଲୋକ ମରଣାବସ୍ଥାରେ ତାଙ୍କ ନିକଟରେ ପାପ ସ୍ୱୀକାର କଲେ । ତାଙ୍କ ନିକଟରେ ପାପ ସ୍ୱୀକାର କରି ମଲେ ପରିତ୍ରାଣ ନିଶ୍ଚିତ ଏହା ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା ।

**ପ୍ରତିରୋଧ**

ଫ୍ରାନ୍ସିସ ମାଲଖାରୁ ଚୀନ ଯିବାକୁ ଚେଷ୍ଟା କଲେ । ଏହି ସମୟରେ ପେରେରା ନାମକ ଏକ ଉତମ ପର୍ତ୍ତୁଗୀଜ୍ କାଥଲିକଙ୍କୁ ରାଜାଙ୍କ ପ୍ରତିନିଧି ହିସାବରେ ଚୀନ ଯିବାକୁ ହୋଇଥିଲା । ସେତେବେଳେ ମାଲଖରେ ପର୍ତ୍ତୁଗୀଜ୍ ଗଭର୍ଣ୍ଣର ଥିଲେ ଡନ୍ ଆଲ୍‌ଭାରୋ । ଧନଲୋଭୀ ଆଲ୍ ଭାରୋ ପେରେରାଙ୍କ ଶତ୍ରୁ ଥିଲେ । ପେରେରା ଚୀନ ଯାଇ ଧନୀ ହୋଇଯିବେ ଭାବି ଆଲ୍ ଭାରୋ ଆଶଙ୍କା କରୁଥିଲେ । ଏଣେ ଫ୍ରାନ୍ସିସ ପର୍ତ୍ତୁଗୀଜ୍ ପ୍ରତିନିଧିଙ୍କ ସଙ୍ଗରେ ଗଲେ ମାତ୍ର ଚୀନ ଦେଶରେ ପ୍ରବେଶ କରି ପାରିବେ । ଫ୍ରାନ୍ସିସ ଆଲ୍ ଭାରୋଙ୍କୁ କେତେ ବୁଝାଇଲେ । କିଛି ଫଳ ହେଲା ନାହି । ସୁଦୁର ପ୍ରାଚ୍ୟରେ ଫ୍ରାନ୍ସିସ ସାଧୁ ବାପାଙ୍କ ପ୍ରତିନିଧି ଥିଲେ । ଆଲ ଭାରୋ ତାଙ୍କ ଯୋଜନା ବିରୋଧରେ କାମ କରୁଥିବାରୁ ମଣ୍ଡଳୀଗତ ଶାସ୍ତିର ଧମକ ମଧ୍ୟ ଦେଖାଇଲେ । କିନ୍ତୁ ଆଲ୍ ଭାରୋ କାହିଁରେ ଟଳିଲେ ନାହିଁ । ଯଦିଓ ପରିଶେଷରେ ପେରେରାଙ୍କ ବୋଇତରେ ଚୀନ ଯିବାକୁ ଅନୁମତି ମିଳିଲା, ତଥାପି ଗଭର୍ଣ୍ଣରଙ୍କ ଆପତି ଯୋଗୁଁ ପେରେରା ତାଙ୍କ ସହିତ ଯାଇ ପାଇଲେ ନାହିଁ ।

**ସାନ୍ସିୟାନ ଦ୍ୱୀପରେ ସାଧୁ ଫ୍ରାନ୍ସିସ**

୧୫୫୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ଶେଷ ସପ୍ତାହରେ ଫ୍ରାନ୍ସିସ ଚୀନ ଉପକୂଳବର୍ତୀ ସାନ୍ସିୟାନ ଦ୍ୱୀପରେ ପହଞ୍ଚିଲେ । ଦ୍ୱୀପଟି କାଣ୍ଟନ ନଦୀ ମୁହାଣରେ ଅବସ୍ଥିତ । କାଣ୍ଟନ ନଦୀ ଦେଇ ସେ ଚୀନ ଭିତରକୁ ଗୁପ୍ତ ଭାବରେ ପ୍ରବେଶ କରି ପାରିଥାନ୍ତେ । କିନ୍ତୁ ସେଥିଦ୍ୱାରା ପର୍ତ୍ତୁଗୀଜ ଲୋକ ତଥା ବାଣିଜ୍ୟର ବିଶେଷ କ୍ଷତିର ଆଶଙ୍କା କରି ତାହା ସେ କଲେ ନାହିଁ । କିନ୍ତୁ ପ୍ରାଣଦଣ୍ଡ ବା ଆମରଣ ଜେଲ୍‌କୁ ସେ ଭ୍ରୁକ୍ଷେପ କରୁ ନ ଥିଲେ । ପରିଶେଷରେ ସେ ଚୀନ ପ୍ରବେଶ କରିବା ଆଶା ଛାଡ଼ି ଦେଲେ ।

## ଯନ୍ତ୍ରଣା ଓ ମରଣ

୧୫୫୨ ନଭେମ୍ବର ୨୦ ତାରିଖରେ ସାଞ୍ଚୟାନ ଦ୍ୱୀପରେ ତାଙ୍କର ଭୀଷଣ ଜ୍ୱର ହେଲା । ସେ ବୋଇତ ଭିତରେ ପଡ଼ି ରହିଲେ । କିନ୍ତୁ ସମୁଦ୍ରରେ ତୋଫାନ ହୁଅନ୍ତେ ସେ ସେଥିରେ ଆଉ ରହି ପାରିଲେ ନାହିଁ । ସମୁଦ୍ର କୂଳକୁ ଆସି ବାଲି ଉପରେ ଶୋଇ ପଡ଼ିଲେ । ସମୁଦ୍ରର ଥଣ୍ଡା ବାୟୁ ତାଙ୍କ ପୀଡ଼ିତ ଦେହକୁ ଅଧିକ କଷ୍ଟ ଦେଲା । ଆଲଭାରୋଙ୍କ ଅପ୍ରିୟ ନ ହେବା ପାଇଁ ପର୍ତ୍ତୁଗୀଜ ବଣିକମାନେ ଫ୍ରାଞ୍ଚିସଙ୍କୁ ଅସହାୟ ଅବସ୍ଥାରେ ଛାଡ଼ି ଦେଲେ । କିନ୍ତୁ ଜର୍ଜ ଆଲ୍ଭାରେଜ ନାମକ ଜଣେ ବଣିକ ଦୟାରେ ବିଗଳିତ ହୋଇ ତାଙ୍କୁ ନିଜ କୁଡ଼ିଆ ଭିତରକୁ ଘେନିଗଲେ । କିନ୍ତୁ ତାଙ୍କ ଜ୍ୱର ଓ ବାନ୍ତି ଦେଖି ଭୟରେ ପର୍ତ୍ତୁଗୀଜ ବଣିକମାନେ ସମସ୍ତେ ତାଙ୍କୁ ଛାଡ଼ି ପଳାଇଗଲେ । ଆଣ୍ଟୋନୀୟ ନାମକ ଜଣେ ଚୀନ ଓ ଖ୍ରୀଷ୍ଟାବେଲ ନାମକ ଅନ୍ୟ ଏକ ଜଣ ଏ ଉଭୟ ଖ୍ରୀଷ୍ଟୀୟାନ ତାଙ୍କୁ ମରଣଶଯ୍ୟାରେ ସାହାଯ୍ୟ କରିଥିଲେ । ଫ୍ରାଞ୍ଚିସ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରାର୍ଥନାରୁ ଆଦୌ ବିରତ ହୋଇ ନ ଥିଲେ । ସେ ଛୋଟ ଛୋଟ ସ୍ତୋତ୍ର ଅନବରତ ଉଚ୍ଚାରଣ କରୁଥାନ୍ତି ।

୧୫୫୨ ମସିହା ଡିସେମ୍ବର ୩ ତାରିଖରେ ଫ୍ରାଞ୍ଚିସ ନିଜ କର୍ମମୟ ଜୀବନ ସାଙ୍ଗ କରି ପରଲୋକ ଗମନ କଲେ । ମୃତ୍ୟୁ ବେଳେ ତାଙ୍କ ବୟସ ୪୬ ବର୍ଷ ମାତ୍ର ହୋଇଥିଲେ । ମିଶନାରୀ ଭାବରେ ସେ କେବଳ ଦଶ ବର୍ଷ ପରିଶ୍ରମ କରିଥିଲେ । କିନ୍ତୁ ତାଙ୍କ କଠୋର ପରିଶ୍ରମ ହେତୁରୁ ସେ ଅକାଳବୃଦ୍ଧ ହୋଇ ଯାଇଥିଲେ । ତାଙ୍କ କେଶ ସବୁ ସଂପୂର୍ଣ୍ଣ ଧଳା ପଡ଼ି ଯାଇଥିଲା । କିଛିକାଳ ପରେ ତାଙ୍କ ଅସ୍ଥି ଘୁଞ୍ଚାଇ ନେଇ ଯିବାର ଉଦ୍ଦେଶ୍ୟ କରି ତାଙ୍କ ଶବକୁ ଚୂନ ମାଟି ଦେଇ କବର ଦିଆଯାଇଥିଲା ।

## ସାଧୁ ଫ୍ରାଞ୍ଚିସଙ୍କ ଶରୀର

୧୫୫୩ରେ ଫେବୃୟାରୀ ଶେଷ ସପ୍ତାହରେ ତାଙ୍କ ଅସ୍ଥି ସାଞ୍ଚୟାନ ଦ୍ୱୀପରୁ ଗୋଆ ସହରକୁ ଘୁଞ୍ଚାଇ ନେବା ପାଇଁ ତାଙ୍କ କବର ଖୋଲା ଯାଇଥିଲା । ଶବଟି ନ ସଢ଼ି ଠିକ୍ ବଞ୍ଚି ଥିଲା ଭଳି ଦେଖାଯାଉଥିଲା । ତାହା ରଙ୍ଗ ଟହ ଟହ ହୋଇ ଯାଉଥିଲା । ଜଙ୍ଘରେ ଛୁରୀ ଦେଇ ଟିକିଏ ଫୋଡ଼ି ଦେବାରୁ ରକ୍ତ ବହିପଡ଼ିଲା ।

ତେବେ ସମସ୍ତେ ବୁଝିଗଲେ ଯେ, ଈଶ୍ୱର ନିଜ ଭକ୍ତଙ୍କ ଗୌରବ ପାଇଁ ତାଙ୍କ ମୃତ ଦେହରେ ମହିମା ଦେଖାଇଛନ୍ତି ।

ଏଣେ ସାନ୍ତକ୍ଲାଇ୍ ବୋଇତ ଯାତ୍ରା ପାଇଁ ପ୍ରସ୍ତୁତ ଅଛି । ସଙ୍ଗେ ସଙ୍ଗେ ସାଧୁଙ୍କ ପୁଣ୍ୟ ଦେହ ଧରି ବୋଇତ ଚାଲିଲା ମାଲଖା ଅଭିମୂଖେ । ସେଠାରେ ସେତେବେଳେ ଭୀଷଣ ମହାମାରୀ ଲାଗିଛି । ଖ୍ରୀଷ୍ଟୀୟାନ କି ଅଖ୍ରୀଷ୍ଟୀୟାନ ସମସ୍ତେ ସାଧୁଙ୍କ ଦେହକୁ ନମସ୍କାର ଜଣାଇବା ପାଇଁ ଦୀପଦିହୁଡ଼ି ହାତରେ ଧରି ଆସି କୂଳରେ ଜମା ହୋଇଗଲେ । ବୋଇତ କୂଳରେ ଲାଗୁ ଲାଗୁ ମହାମାରୀ ବନ୍ଦ ହୋଇଗଲା । ସେଠାରେ ଦେଲ୍‌ମନ୍ତେ କୁମାରୀ ଗୀର୍ଜାରେ ସାଧୁଙ୍କ ଶରୀର କବର ଦିଆଗଲା । ସେହି ବର୍ଷ ଅଗଷ୍ଟ ମାସରେ ସ୍ୱାମୀ ଯୋଆମ ବେଇରା କବର ଖୋଲିଥିଲେ ଓ ଦେହଟି ପ୍ରକୃତିସ୍ଥ ଦେଖିଥିଲେ । ପରେ ସାଧୁଙ୍କ ବନ୍ଧୁ ଦିଯୋଗ ପେରେରା ଶରୀରକୁ ଏକ ବହୁମୂଲ୍ୟ ପେଡ଼ିରେ ଏକ ସୁନାଚାଦର ଘୋଡ଼ାଇ ରଖିଲେ ।

### ଗୋଆରେ ସାଧୁ ଫ୍ରାନ୍ସିସଙ୍କ ଶରୀର

୧୫୫୩ରେ ବୋଇତ ସାଧୁଙ୍କ ଦେହ ନେଇ ଗୋଆ ଅଭିମୂଖେ ଚାଲିଲା । ବୋଇତଟି ଏକାଧିକ ବାର ଅଦ୍ଭୁତଭାବରେ ରକ୍ଷା ପାଇ ଗୋଆ ନିକଟବର୍ତ୍ତୀ ହେଲା । ତେବେ ପୁଣ୍ୟ ସପ୍ତାହ ପାଇଁ କିଛି ସମୟ ମାତ୍ର ବାକି ରହିଛି । ତତ୍‌ପୂର୍ବରୁ କାଳେ ବୋଇତ ପହଞ୍ଚି ପାରିବ ନାହିଁ ଆଶଙ୍କା କରି ସେନାଧ୍ୟକ୍ଷ ଗୋଟିଏ ବେଗବାନ ବୋଇତ ପାଇଁ ନୌକାଟିରେ ଗୋଆ ଚାଲିଲେ । ପର୍ତ୍ତୁଗୀଜ ଭାଇସରାୟ ସାଧୁଙ୍କ ଶରୀରର ସାଡ଼ମ୍ବର ସମ୍ବର୍ଦ୍ଧନା ପାଇଁ ଆଦେଶ ଜାରି କରିଦେଲେ ।

ସାଧୁଙ୍କ ଶରୀର ମାର୍ଚ୍ଚ ତା ୧୫ରିଖରେ ଏକ ସାମରିକ ଜାହାଜରେ ସଶସ୍ତ୍ର ସେନା ଦ୍ୱାରା ପହରା ଦିଆଯାଇ ଗୋଆ ସହରରେ ପହଞ୍ଚିଲା । ତେବେ ସହରଯାକ ଆନନ୍ଦରେ ନାଚି ଉଠିଲା । ସାଧୁଙ୍କ ଶରୀର ଘେନି ଏକ ବିପୁଳ ଜନତା ମହା ଆଡ଼ମ୍ବର ସହିତ ସହର ଦାଣ୍ଡରେ ଶୋଭାଯାତ୍ରା କଢ଼ାଇଲେ । ଦୁର୍ଗମାନଙ୍କରେ ତୋପ କମାଣ ଫୁଟୁଥାଏ । କୋଠା ଅଟ୍ଟାଳୀରୁ ପୁରସ୍ତ୍ରୀମାନେ ହୁଳହୁଳି ଦେଇ ଫୁଲ ବୃଷ୍ଟି କରୁଥାନ୍ତି । ଶୋଭାଯାତ୍ରାରେ ଶରୀର ଘରମାନଙ୍କ ଦେଇ ଗଲାବେଳେ ଘରେ ପଡ଼ିଥିବା ଅନେକ ରୋଗୀ ଦୈବାତ୍ ସୁସ୍ଥ ହୋଇଗଲେ । ପରେ ଶିଶୁ ଯେଶୁ ଗୀର୍ଜାରେ

ପୁଣ୍ୟ ସ୍ଥାନର ପାଚେରୀ ଖୋଳାଯାଇ ପୁଣ୍ୟ ଶରୀରଟି ସସମ୍ମାନ ରଖାଗଲା । ସାଧୁ ଫ୍ରାନ୍ସିସଙ୍କ ପୁଣ୍ୟ ଶରୀର ଆଜି ସୁଦ୍ଧା ସେଠାରେ ରହି ଅନେକ ଆଶ୍ଚର୍ଯ୍ୟ କର୍ମ କରି ସତ୍ୟ ଧର୍ମର ଦିବ୍ୟଗୁଣ ପ୍ରକାଶ କରିଥାଏ ।

**ଉପସଂହାର**

୧୬୨୨ ଖ୍ରୀଷ୍ଟାବ୍ଦରେ ପୁଣ୍ୟପିତା ପନ୍ଦରଶ ଗ୍ରେଗରୀୟ ସାଧୁ ଫ୍ରାନ୍ସିସଙ୍କୁ ସିଦ୍ଧ ଶ୍ରେଣୀଭୁକ୍ତ କଲେ, ଏବଂ ପରେ ପୁଣ୍ୟପିତା ୧୦ମ ପୀୟ ତାଙ୍କୁ ମିଶନପାଳକ ପଦରେ ଭୂଷିତ କଲେ । ଲୋକରେ ସେ ପ୍ରାଚ୍ୟ-ଭାରତ-ପ୍ରେରିତ ନାମରେ ଖ୍ୟାତ ହୋଇ ଆସୁଅଛନ୍ତି ।

ସାଧୁ ଫ୍ରାନ୍ସିସସ ପ୍ରେରିତ ସାଧୁ ଥୋମାସଙ୍କ ଭଳି ଆମ ଦେଶର ପ୍ରେରିତ । ପ୍ରଚାରକ ହିସାବରେ ସାଧୁ ପାଉଲଙ୍କୁ ଛାଡ଼ି ଅନ୍ୟ କେହି ତାଙ୍କଠାରୁ ବଡ଼ ନ ଥିଲେ । ସାଧୁ ପାଉଲଙ୍କ ଭଳି ସେ ସହସ୍ର ସହସ୍ର ମାଇଲ ପଦବ୍ରଜରେ ଚାଲିଥିଲେ । ନିଜ ଦଶ ବର୍ଷ ମିଶନାରୀ କର୍ମରେ ଲୋକଙ୍କର ଆତ୍ମୋଦ୍ଧାର ହିଁ ତାଙ୍କ ଐକାନ୍ତିକ ଉଦ୍ଦେଶ୍ୟ ହୋଇଥିଲା । ଈଶ୍ୱରଙ୍କଠାରେ ସେ ନିତ୍ୟ ପ୍ରାର୍ଥନା କରି କହୁଥାନ୍ତି, "ସବୁ ନିଅ, ଆତ୍ମା ଦିଅ" । କ୍ଷୁଧା, ତୃଷା, କ୍ଳାନ୍ତି ଆଦି କିଛି ହିଁ ତାଙ୍କୁ ନିଜ ମହତ୍ ଉଦ୍ଦେଶ୍ୟରୁ ବିଚ୍ୟୁତ କରିପାରି ନଥିଲା । ସେହି ଉଦ୍ଦେଶ୍ୟରେ ଫ୍ରାନ୍ସିସ ସ୍ୱଦେଶ ଛାଡ଼ି ଆସି ବିଦେଶରେ ଆକୁଣ୍ଠିତ ଚିତ୍ତରେ ନିଜ ଅମୂଲ୍ୟ ଜୀବନ ବଳିଦାନ କରିଥିଲେ । ଜୀବନ କାଳରେ ଫ୍ରାନ୍ସିସ ଯେପରି କାୟମନୋ ବାକ୍ୟ ଦ୍ୱାରା ନରନାରୀଙ୍କ ପାଇଁ ଈଶ୍ୱରଙ୍କର ଅଜସ୍ର ଅନୁଗ୍ରହ ଅର୍ଜନ କରିଥିଲେ, ସେହିପରି ଆଜି ସୁଦ୍ଧା ସେ ସ୍ୱର୍ଗରୁ ଅସଂଖ୍ୟ ଭକ୍ତଙ୍କ ଉପରେ ଅପୂର୍ବ ଐଶ୍ୱରିକ ଦାନ ବର୍ଷଣ କରିଥାନ୍ତି ।

**ସାଧୁ ଫ୍ରାନ୍‌ସିସ ଜେଭିୟରଙ୍କ କେତୋଟି ଉକ୍ତି :**

✸ "ଏହିପରି ସାଧୁ କେହି ନାହାନ୍ତି ଯିଏ ଦୁଇଟି 'p'କୁ ଗୁରୁତ୍ୱ ଦେଇନାହାନ୍ତି, ସେଗୁଡ଼ିକ ହେଲା *prayer and penance* ଅର୍ଥାତ୍ ପ୍ରାର୍ଥନା ଓ ପ୍ରାୟଶ୍ଚିତ"।

✸ "ଯଦି ତୁମ୍ଭେ ବିପଦରେ ପଡ଼ିଅଛ କିଅବା ତୁମ୍ଭର ହୃଦୟ ବିଚଳିତ ତେବେ ମାରୀୟାଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କର । ତାଙ୍କ ଆଡ଼କୁ ଦୃଷ୍ଟିପାତ କର ତହିଁରେ ତୁମ୍ଭେ ରକ୍ଷା ପାଇବ । ସେ ଆମର ସାନ୍ତ୍ୱନା ଦାୟିନୀ, ଆମର ସାହାଯ୍ୟ"।

✸ "ମୁଁ ଯାତ୍ରା କରେ, କାମ କରେ, ମୋର ଦୁର୍ବଳ ଶରୀର ଯୋଗୁ କଷ୍ଟ ପାଏ, ପ୍ରାୟ ହଜାର ପ୍ରକାର ଅସୁବିଧାର ସମ୍ମୁଖିନ ହୁଏ, କିନ୍ତୁ ଏହିସବୁ କିଛି ନୁହଁ କାରଣ ଏହି ଜଗତ ଅତି କ୍ଷୁଦ୍ର"।



# କ୍ରୁଶର ସାଧୁ ଯୋହନ

## (୧୫୪୨-୧୫୯୧, ଡିସେମ୍ବର ୧୪)

୧୫୪୨ ମସିହାରେ କ୍ରୁଶର ସାଧୁ ଯୋହନ ସ୍ପେନ ଦେଶର ଫଣ୍ଟିଭେରସ୍ ନଗରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଜଣେ ବୁଣାଳିର ଝିଅଙ୍କୁ ବିବାହ କରିଥିଲେ । ଏଣୁ ତାଙ୍କ ପରିବାର ବର୍ଗ ତାଙ୍କୁ ତୁଚ୍ଛ ମନେ କରୁଥିଲେ । ପିତାଙ୍କର ମୃତ୍ୟୁପରେ ପରିବାରକୁ ଭରଣ ପୋଷଣ କରିବା ପାଇଁ ତାଙ୍କ ମା'ଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଥିଲା । ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ୧୪ ବର୍ଷ ବୟସରେ ଯୋହନଙ୍କୁ ହସ୍ପିଟାଲ୍‌ରେ କାମ କରିବାକୁ ପଡ଼ିଥିଲା । ଅଭାବ ଅନାଟନ ପରିବେଶ ମଧ୍ୟରେ ବଢି ଯୋହନ ତ୍ୟାଗ କରିବାର ଗୁଣ ଶିଖିବା ସାଥେ ସାଥେ 'ସୌନ୍ଦର୍ଯ୍ୟ ଓ ଉତ୍ତମତା ଏହି ପୃଥିବୀର ନୁହେଁ, କିନ୍ତୁ ଈଶ୍ୱରଙ୍କଠାରେ' ଅନ୍ୱେଷଣ କରିଥିଲେ ।

କାର୍ମେଲାଇଟ୍ ସଂଘରେ ଯୋଗ ଦେବା ପରେ ସେମାନେ ଯୋହନଙ୍କୁ ସାଲାମାଙ୍କ University କୁ ଅଧ୍ୟୟନ ପାଇଁ ପଠାଇଥିଲେ । ଯାଜକତା ଅଭିଷେକ ପରେ ସଂଘର ନବୀକରଣ କରିବା ପାଇଁ ତେରେସା ଆଭିଲା ଯୋହନଙ୍କର ସାହାଯ୍ୟ ଲୋଡ଼ିଥିଲେ । ଯୋହନ ଅନୁଭବ କଲେ ଯେ ସଂଘର ପରିବର୍ତ୍ତନ ଆଣିବାକୁ ହେଲେ, ସେମାନଙ୍କୁ ପ୍ରଥମେ ପ୍ରାର୍ଥନାମୟ ଜୀବନ ବିତାଇବାକୁ ପଡ଼ିବ । ପ୍ରାର୍ଥନା ସହିତ ଅନ୍ୟାନ୍ୟ ତ୍ୟାଗମୟ ଜୀବନ ଏବଂ ସଂଘର ନିୟମ ଠିକ୍ ଭାବରେ ପାଳନ କରିବାକୁ ପଡ଼ିବ । ଯୋହନଙ୍କର ଏହି ପ୍ରକାର କଠୋର ନିୟମ ପାଳନ ଏବଂ ନବୀକରଣରେ ସଂଘର ସଭ୍ୟମାନେ ପସନ୍ଦ କଲେ ନାହିଁ । ଏଣୁ କେତେ ଜଣ ସଭ୍ୟ ତାଙ୍କୁ ବାଧବାଧକତାରେ Kidnap କରି ଗୋଟିଏ ଗୁହା ବା Cell ରେ ତାଲା ପକାଇ ଲୁଚେଇ ରଖିଲେ । ସପ୍ତାହରେ ତିନି ଦିନ ତାଙ୍କୁ ସନ୍ନ୍ୟାସୀମାନେ ବେତ୍ରାଘାତ କରୁଥିଲେ । ଛାତର ଶୀର୍ଷରେ କେବଳ ଗୋଟିଏ ଛୋଟିଆ ଝରକା ଥାଏ । ବିନା ଖାଦ୍ୟ, ବିନା ପୋଷାକରେ ତାଙ୍କୁ ୯ ମାସ ପର୍ଯ୍ୟନ୍ତ ତଳେଦରେ ରଖାଗଲା । ସେମାନେ ତାଙ୍କୁ ଅନେକ ଲଜ୍ଜା, ଅପମାନ ସହିତ କ୍ରୁର ବ୍ୟବହାର ଦେଖାଇଲେ । କୁମାରୀ ମାରିଆଙ୍କ ମଧ୍ୟସ୍ଥତାରେ ସେଠାରୁ ସେ ବାହାରି ପାରିଲେ । ତାଙ୍କ ନିର୍ଯ୍ୟାତନାକାରୀମାନଙ୍କୁ

ସେ କହନ୍ତି, 'ମୋର ବିଶିଷ୍ଟ ଉପକାରୀ' । ତଥାପି ସେହି ପ୍ରକାର ଅସହ୍ୟ ଅନ୍ଧାର ଏବଂ ଥଣ୍ଡା ପରିବେଶ ଭିତରେ ତାଙ୍କର ବିଶ୍ୱାସ ଏବଂ ପ୍ରେମର ଅଗ୍ନି ପ୍ରଜ୍ୱଳିତ ଥିଲା । ପ୍ରଭୁଙ୍କ ବ୍ୟତୀତ ସେହି କୋଠରିରେ ତାଙ୍କର କିଛି ନଥିଲା, ତଥାପି ଈଶ୍ୱର ହିଁ ତାଙ୍କର ଆନନ୍ଦର ଉତ୍ସଥିଲେ ।

ସେହି ସମୟରେ ଆଧ୍ୟାତ୍ମିକ କ୍ଷେତ୍ରରେ ଜଣେ ଦକ୍ଷ ଜ୍ଞାନୀ ଏବଂ ପ୍ରାର୍ଥନାଶୀଳ ଆଧ୍ୟାତ୍ମିକ ନିର୍ଦ୍ଦେଶକଙ୍କ ବିଶେଷ ଆବଶ୍ୟକ ଥିଲା ।

କ୍ରୁଶର ସାଧୁ ଯୋହନଙ୍କ ପ୍ରାର୍ଥନାମୟ ଜୀବନର ତିନୋଟି ଉତ୍ସ ହେଲା ; ନୀରବତା, ଜୀବନର ଅନୁଭବ ଏବଂ ପ୍ରଭୁଙ୍କ ବାକ୍ୟ । ପ୍ରଭୁଙ୍କର ବାକ୍ୟ ତାଙ୍କ ଜୀବନର ପ୍ରେରଣାର ଉତ୍ସ । ଏହା ବ୍ୟତୀତ ଦିବ୍ୟଯଜ୍ଞ ଏବଂ ଦିବ୍ୟ ସୁରକ୍ଷାରେ ପ୍ରଭୁଙ୍କର ଉପସ୍ଥିତି ତାଙ୍କ ପ୍ରାର୍ଥନାମୟ ଜୀବନର କେନ୍ଦ୍ରସ୍ଥଳୀ ଥିଲା । ତାଙ୍କର ସମସ୍ତ ଲେଖାରେ ତିନୋଟି ମୁଖ୍ୟ ବିଷୟ ବିଶେଷ ଭାବରେ ପରିଲକ୍ଷିତ ହୁଏ । ପ୍ରଥମ ହେଲା, ବିବାହ ଆଧ୍ୟାତ୍ମିକ ଏକତ୍ରୀକରଣ Spritual Union of Marriage ଯାହା ଆତ୍ମା ଏବଂ ଈଶ୍ୱରଙ୍କ ମଧ୍ୟରେ ହୋଇଥାଏ । ଆତ୍ମାକୁ ସେ ଜଣେ Bride ଏବଂ ଈଶ୍ୱରଙ୍କୁ Bridegroom ବୋଲି ଧରିନିଅନ୍ତି । ଈଶ୍ୱରଙ୍କ ଅନୁଗ୍ରହ ଏବଂ ପ୍ରେମ ଦ୍ୱାରା ଜଣେ ଆଧ୍ୟାତ୍ମିକର ସବୁଠାରୁ ଉଚ୍ଚ ସୋପାନରେ ପହଞ୍ଚିଥାଏ, ଯାହା ମନୁଷ୍ୟ ଭାବରେ ଏହି ପୃଥିବୀରେ ସମ୍ଭବପର ହୋଇଥାଏ । ଦ୍ୱିତୀୟଟି ହେଲା ଆଧ୍ୟାତ୍ମିକ ଦିଗରେ ଏହି ବିବାହ ପୂର୍ବରୁ ଜଣେ ତିନୋଟି ବିପଦଗାମୀ ଶତ୍ରୁର ସମ୍ମୁଖୀନ ହେବାକୁ ପଡ଼ିଥାଏ, ଯେଉଁମାନେ ତାର ଯାତ୍ରାକୁ ପ୍ରତିରୋଧ କରିଥାନ୍ତି । ସେହି ଶତ୍ରୁଗୁଡ଼ିକ ହେଲା ସଂସାର, ଆମ ଶରୀର (ମାଂସଜାତ) ଏବଂ ସଇତାନ୍ । ଏହି ଆଧ୍ୟାତ୍ମିକ ବିବାହ ବା ଈଶ୍ୱରଙ୍କ ସହିତ ଆମ ପ୍ରେମର ଏକତ୍ରୀକରଣ ତିନୋଟି ସୋପାନ ମଧ୍ୟ ଦେଇ ଗତି କରିଥାଏ । ପ୍ରଥମଟି ହେଲା ଆମର ଅଭିଳାଷ Appetite କୁ ଆୟତ୍ତ କରିବା (୨) ବିଶ୍ୱାସ ଦେଇ ଯାତ୍ରା କରିବା (୩) ଆମର ଆତ୍ମାକୁ ଈଶ୍ୱରଙ୍କ ବାର୍ତ୍ତାରେ ପୂର୍ଣ୍ଣ କରିବା । ସାଧୁ ଯୋହନ ଅତି ଜୀବନ୍ତ ଭାବରେ ପ୍ରତ୍ୟେକ ବିଷୟକୁ ପଦ୍ୟ ମାଧ୍ୟମରେ ବିଭିନ୍ନ ପ୍ରତିଛବି ଦେଇ ବର୍ଣ୍ଣନା କରନ୍ତି । ସାଧୁ ଯୋହନ କହନ୍ତି ଯେ, 'ଆତ୍ମା ତା'ର ପ୍ରକୃତିଗତ ଗୁଣ ଦ୍ୱାରା କେବେହେଲେ ଈଶ୍ୱରଙ୍କ ସହିତ ପହଞ୍ଚି ପାରିବ

ନାହିଁ । କେବଳ ଈଶ୍ୱରଙ୍କର Super Natural ଦୈବିକ ଶକ୍ତି ଦ୍ୱାରା ଏହା ସମ୍ଭବ ହୋଇପାରିବ । ଏଇଥିପାଇଁ ଆତ୍ମାକୁ ଆଧ୍ୟାତ୍ମିକ ସଂଘର୍ଷର ଅନ୍ଧକାର ରାତ୍ରି ମଧ୍ୟ ଦେଇ ଗତି କରିବାକୁ ପଡ଼ିବ । ଆଧ୍ୟାତ୍ମିକ ସଂଘର୍ଷ ହେଉଛି ତିନୋଟି ରାତିର ବିଭିନ୍ନ ଯାତନାର ଅନ୍ଧକାର । ପ୍ରଥମେ ଆମର ଇନ୍ଦ୍ରିୟଗୁଡ଼ିକୁ ଆୟତ୍ତ କରିବା, ଯାହାକୁ ସାଧୁ ଯୋହନ କହନ୍ତି Twilight of the soul ଆତ୍ମାର ସୂର୍ଯ୍ୟାସ୍ତ । ଏହା ହେଉଛି ଦିବସର ସେହି ସମୟ ଯେଉଁ ସମୟରେ ଆଧ୍ୟାତ୍ମିକ ଦିବସର ଆଲୋକ ଅଦୃଶ୍ୟ ହୋଇ ରାତ୍ରିର ଅନ୍ଧକାର ପ୍ରବେଶ କରେ । ଦ୍ୱିତୀୟ ପର୍ଯ୍ୟାୟ ହେଲା ବିଶ୍ୱାସର ଯାତ୍ରା, ଯାହାକୁ ସାଧୁ ଯୋହନ କହନ୍ତି, ଆତ୍ମାର ମଧ୍ୟରାତ୍ର, ଯେଉଁ ସମୟରେ ଆଲୋକ ସମ୍ପୂର୍ଣ୍ଣ ଭାବରେ ଉଭେଇ ଯାଇ ଅନ୍ଧକାର ସମ୍ପୂର୍ଣ୍ଣ ଭାବରେ ଅବତୀର୍ଣ୍ଣ ହୁଏ । ତୃତୀୟ ପର୍ଯ୍ୟାୟ ହେଲା, ଆମର ଆତ୍ମାରେ ଈଶ୍ୱର କଥା କହନ୍ତି । ଏହା ସେହି ସମୟର ଦିବସ, ଯେତେବେଳେ ମଧ୍ୟରାତ୍ରିର ଅନ୍ଧକାର ବିଦାୟ ନେଇ ଦିବସର ଆଲୋକ ପ୍ରବେଶ କରେ, ଈଶ୍ୱର ଚାହାନ୍ତି ଅନେକ ଆତ୍ମା ଏହି ସମୟରେ ଈଶ୍ୱରଙ୍କ ସହିତ ଏକତ୍ରିତ ହୁଅନ୍ତି । ଈଶ୍ୱର ଅନେକଙ୍କୁ ନିମନ୍ତ୍ରଣ କରନ୍ତି, କିନ୍ତୁ ଯାହାଙ୍କୁ ସେ ନିମନ୍ତ୍ରଣ କରନ୍ତି, ସେମାନେ ଅନେକ ଯାତନା ସହ୍ୟ କରିବା ପାଇଁ ପସନ୍ଦ କରନ୍ତି ନାହିଁ । ଶରୀର ମଧ୍ୟରୁ ଆମର ଆତ୍ମା ବିଦାୟ ନେବା ପୂର୍ବରୁ ଏହି ପ୍ରକ୍ରିୟା ଈଶ୍ୱରଙ୍କ ସହିତ ଏକତ୍ରୀକରଣ ହେବାପାଇଁ ଯତ୍ନ ଆବଶ୍ୟକ ।

ଦିନେ ଯୋହନ ଗ୍ରାନାଡ଼ାକୁ ଯାତ୍ରା କରିବା ସମୟରେ ଜଣେ ସ୍ତ୍ରୀ ଲୋକ ଗୋଟିଏ ଛୋଟ ଶିଶୁକୁ ନେଇ ଆସି ଯୋହନଙ୍କୁ ଦେଇ କହିଲେ, ଏହି ଶିଶୁଟି ତୁମର ଏବଂ ଶିଶୁଟିର ଭବିଷ୍ୟତ ତୁମେ ଦେଖିବ । ତାଙ୍କୁ କୁହାଗଲା ଯେ ଶିଶୁଟିର ମା' ଜଣେ ଭଲ ବ୍ୟକ୍ତି । ଗ୍ରାନାଡା ଛାଡ଼ି ସେ କେବେ କୁଆଡ଼େ ଯାଇ ନାହାନ୍ତି । ସେ ପଚାରିଲେ ଶିଶୁଟିର ବୟସ କେତେ ? ଶିଶୁଟିର ବୟସ ପ୍ରାୟ ଏକ ବର୍ଷ ହେବ । ଏହା ଶୁଣି ଯୋହନ କହିଲେ, 'ଏହି ଆଶ୍ଚର୍ଯ୍ୟ କର୍ମ ପାଇଁ ଆସନ୍ତୁ ଈଶ୍ୱରଙ୍କୁ ଧନ୍ୟବାଦ ଦେବା କାରଣ ବର୍ଷେରୁ କମ୍ ହେବ ମୁଁ ଗ୍ରାନାଦାରେ ରହିଛି ଏବଂ ତା' ପୂର୍ବରୁ କେବେ ମୁଁ ଏଠାରେ ରହିନାହିଁ । ବିସ୍‌ରେ ପହଞ୍ଚିଲା ପରେ ଏହି ଘଟଣାଟି ସିଷ୍ଟେରମାନଙ୍କୁ କହି ସେ ଅତ୍ୟଧିକ ଆନନ୍ଦିତ ହେଲେ । ଦିନେ ପ୍ରଭୁ ଯୀଶୁ

କ୍ରୁଶରେ ରହି ଯୋହନଙ୍କୁ କହିଲେ, 'ଯୋହନ ତୁମର ସେବା ବଦଳରେ କ'ଣ ତୁମେ ମୋଠାରୁ ନେବା ପାଇଁ ଚାହଁ ?' ଯୋହନ ଉତ୍ତର ଦେଲେ 'ପ୍ରଭୁ ମୋର ଇଚ୍ଛା ମୋତେ ଯାତନା ଦିଅ ଯେପରି ତୁମ ପାଇଁ ମୁଁ ସବୁ ପ୍ରକାର ଅପମାନ ସହ୍ୟ କରିପାରିବି ଏବଂ ନିଜକୁ ନ୍ୟୁନରୂପେ ଗଣିତ ହେବି । ୧୫୯୧ ଜେନେରାଲ୍ Chapter (ଧର୍ମ ସଂଘର ନବୀକରଣ ସମ୍ପର୍କିତ ବୈଠକ) ପରେ ଯୋହନଙ୍କୁ ଅପମାନିତ କରି କୌଣସି ମେଡିକାଲ୍ ସାହାଯ୍ୟ ନ ଦେଇ ତାଙ୍କୁ ଦୁଇଟି ଆଶ୍ରମ ମଧ୍ୟରୁ ଗୋଟିଏ ଆଶ୍ରମରେ ରହିବା ପାଇଁ ବାଛିବାକୁ କୁହାଗଲା । ଯଦିଓ ଯୋହନ ବେଜା ଆଶ୍ରମକୁ ବହୁତ ଭଲ ପାଉଥିଲେ, ତଥାପି ଉବେଦା ଆଶ୍ରମରେ ରହିବା ପାଇଁ ନିଷ୍ପତ୍ତି ନେଲେ । କାରଣ ତାହା ତାଙ୍କ ପକ୍ଷରେ ବିରୋଧାତ୍ମକ ଥିଲା । ସେପ୍ଟେମ୍ବର ମାସରୁ ଡିସେମ୍ବର ମାସ ପର୍ଯ୍ୟନ୍ତ ସେଠାରେ ରହି ନିଜର କ୍ରୁଶ ଯାତନା ପ୍ରେମର ସହିତ ସମ୍ପାଦନ କରିଥିଲେ । ଯୋହନଙ୍କ ଜ୍ଞାନର ପ୍ରତିଭା ତାଙ୍କ ଲେଖାରୁ ଆମ୍ଭେ ଜାଣିପାରୁ । ତାଙ୍କ ଦ୍ୱାରା ଲିଖିତ ନିମ୍ନଲିଖିତ ପୁସ୍ତକ ଦ୍ୱୟ ସମସ୍ତଙ୍କୁ ଆପ୍ୟାୟିତ କରିପାରିଛି ଯଥା : Accent of Mount Carmel ଏବଂ Darknight of the soul ଯେଉଁମାନେ ପ୍ରାର୍ଥନାମୟ ଜୀବନ ଯାପନ କରିବା ପାଇଁ ଆଗ୍ରହୀ ସେମାନଙ୍କ ପାଇଁ ଏହି ପୁସ୍ତକଗୁଡ଼ିକ ବହୁତ ସାହାଯ୍ୟ କରିଥାଏ । ଯୋହନଙ୍କ ଦକ୍ଷିଣ ପାଦ ଆଲସେର୍ ଦ୍ୱାରା ଆକ୍ରାନ୍ତ ହୋଇ ୫ଟି ସ୍ଥାନରେ କ୍ରୁଶ ଆକାରରେ କ୍ଷତ ବ୍ୟାପିବାକୁ ଲାଗିଲା । ୧୫୯୧ ମସିହା ଡିସେମ୍ବର ୧୪ ତାରିଖରେ ମଧ୍ୟରାତ୍ରରେ ହସ୍ତରେ କ୍ରୁଶ ଧରି ସେ ମୃତ୍ୟୁବରଣ କଲେ । ମୃତ୍ୟୁ ସମୟରେ ତାଙ୍କର ଶେଷ ବାକ୍ୟ ଥିଲା 'ପ୍ରଭୁ ତୁମ୍ଭ ହସ୍ତରେ ମୋର ଆତ୍ମା ସମର୍ପଣ କରୁଅଛି' ।

ମୃତ୍ୟୁ ସମୟରେ ତାଙ୍କର ବୟସ ଥିଲା ୪୯ ବର୍ଷ । ତାଙ୍କ ଶରୀରକୁ ସେଗୋଭିଆରେ କବର ଦିଆଯାଇଛି । ୪୦୦ ଶତାବ୍ଦୀ ପରେ ମଧ୍ୟ ତାଙ୍କ ଶରୀର ଅକ୍ଷୟ ହୋଇ ରହିଅଛି । ସାଧୁ ଯୋହନ ତାଙ୍କ ଜୀବନସାରା ବିଭିନ୍ନ ପ୍ରକାରର କ୍ରୁଶ ଯାତନା ଅନୁଭବ କରିଥିଲେ ।

ତାଙ୍କର ମୁଖ୍ୟ ଉକ୍ତି ଥିଲା 'ଆମ ଜୀବନର ଶେଷ ମୁହୂର୍ତ୍ତରେ ଆମ୍ଭେ ପ୍ରେମ ଦ୍ୱାରା ବିଚାରିତ ହେବା' । ତାଙ୍କ ରଚିତ Canticleରେ ଈଶ୍ୱରଙ୍କ ସନ୍ତାନମାନଙ୍କର

ପ୍ରକୃତ ଓ ପୂର୍ଣ୍ଣ ସ୍ୱାଧିନତା ବିଷୟରେ ଲେଖି କହନ୍ତି, 'ବିନା ସ୍ୱାର୍ଥରେ ସ୍ୱାଧୀନତାର ସହ ପ୍ରେମ କରିବା, ରାଗ କ୍ରୋଧ ନ ରଖି କଷ୍ଟ ପାଇବା, ଦୁଃଖ ନ ରଖି ତ୍ୟାଗ କରିବା ଏବଂ ସର୍ବଦା ଆନନ୍ଦିତ ହେବା ।'

୧୭୨୬ ମସିହାରେ ପୁଣ୍ୟପିତା ତ୍ରୟୋଦଶ ବେନେଦିକ୍ତ କ୍ରୁଶର ସାଧୁ ଯୋହନଙ୍କୁ ସାଧୁରୂପେ ଘୋଷଣା କଲେ । ୧୯୨୬ ମସିହାରେ ପୁଣ୍ୟପିତା ଏକାଦଶ ପୀୟୂଷ ତାଙ୍କୁ ମଣ୍ଡଳୀର ଜଣେ ପଣ୍ଡିତ ବୋଲି ଘୋଷଣା କଲେ ।

**କ୍ରୁଶର ସାଧୁ ଯୋହନଙ୍କ କେତୋଟି ଉକ୍ତି :**

* "ଆମ ଜୀବନର ଅନ୍ତିମ ସମୟରେ ପରମେଶ୍ୱର ଆମର ଜାଗତିକ ସମ୍ପତ୍ତି ଓ ମନୁଷ୍ୟର ସଫଳତା ଦେଖି ବିଚାର କରନ୍ତି ନାହିଁ କିନ୍ତୁ କେତେ ପ୍ରେମରେ ଆମେ ବଞ୍ଚିଛୁ ତାହା ଦେଖି ବିଚାର କରିବେ" ।
* "ପରମେଶ୍ୱରଙ୍କ ପ୍ରଥମ ଭାଷା ନୀରବତା" ।
* "ଆତ୍ମାର ଅନ୍ଧକାର ରାତ୍ରୀରେ ପରମେଶ୍ୱରଙ୍କ ଆଲୋକର ନଦୀ ପ୍ରବାହିତ ହୁଏ" ।
* "ଅଧ୍ୟୟନରେ ତାଙ୍କୁ ଅନ୍ୱେଷଣ କର ତପସ୍ୟାରେ ତୁମେ ପାଇବ । ପ୍ରାର୍ଥନାରେ ଆଘାତ କର ଧ୍ୟାନରେ ପାଇବ" ।

✸✸✸

# ସାଧୁ ସାଧ୍ୱୀମାନଙ୍କ ବାଣୀ

### ୧. ସାଧୁ ଥମାସ ଆକ୍ୱିନାସ

"ନ୍ୟାୟ ବିନା ଦୟା ସମସ୍ତ ବିଘଟନ ର ମାଁ ଅଟେ ; ସେହିପରି ଦୟା ବିନା ନ୍ୟାୟ ନିଷ୍ଠୁରତା ଅଟେ" ।

"ଗୋଟିଏ ପୁସ୍ତକର ଲେଖକ ପ୍ରତି ସାବଧାନ ରୁହ" ।

### ୨. ସାଧୁ ଡନ୍ ବସ୍କୋ

"ଶିକ୍ଷା ହୃଦୟର ବିଷୟ ଅଟେ । ପିଲାମାନଙ୍କୁ କେବଳ ଭଲ ପାଇବା ତାହା ନୁହଁ, କିନ୍ତୁ ସେମାନେ ସେହି ପ୍ରେମକୁ ଅନୁଭବ କରିବା ଉଚିତ" ।

"ବିଦ୍ୟାଳୟ ଆମର ଶେଷ ଲକ୍ଷ୍ୟ ନୁହଁ; ଏହା ବରଂ ଜୀବନ ବିକାଶ ଧାରା ପାଇଁ ଏକ ମାଧ୍ୟମ ଅଟେ" ।

"ପ୍ରେମ ଓ ଦୃଢ ବିଶ୍ୱାସ ବିନା ବାସ୍ତବ ଶିକ୍ଷାର ସ୍ଥିତି ନ ଥାଏ । ତୁମ୍ଭେ ଯଦି ପ୍ରେମ ପାଇବାକୁ ଚାହଁ ତେବେ ନିଜକୁ ପ୍ରଥମେ ପ୍ରେମ କର ଏବଂ ତୁମର ପିଲାମାନେ ସେହି ପ୍ରେମକୁ ଅନୁଭବ କରିବା ଆବଶ୍ୟକ" ।

"ଯଦି ଜଣେ କିଛି ଉତ୍ତମ କାର୍ଯ୍ୟ କରିବା ପାଇଁ ଚାହେଁ, ତାହାର କିଛି ସାହାସ ଥିବା ଆବଶ୍ୟକ, ତ୍ୟାଗ ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ, ସମସ୍ତଙ୍କ ସହିତ ବନ୍ଧୁଭାବାପନ୍ନ ସୃଷ୍ଟି କରିବା ଏବଂ କାହାକୁ ମଧ୍ୟ ସାମାନ୍ୟ ଭାବେ ଦୃଷ୍ଟି ଦେବା ନାହି । ଏହି ପ୍ରଣାଳୀ ଅନୁକରଣ କରି ମୁଁ ଜୀବନରେ ସବୁବେଳେ ଗୁରୁତ୍ୱପୂର୍ଣ୍ଣ ସଫଳତା ବାସ୍ତବରେ ଚମତ୍କାର ସଫଳତା ଲାଭ କରିଛି" ।

### ୩. ସିଏନାର ସାଧ୍ୱୀ କାଥାରିନା

"ପ୍ରେମ ଦ୍ୱାରା ହିଁ ମନୁଷ୍ୟର ହୃଦୟକୁ ଆକର୍ଷଣ କରାଯାଇ ପାରିବ" ।

"ଯାହାକୁ ଜଣେ ପ୍ରେମ କରେ ତାହାକୁ ପ୍ରେମ ହିଁ ପରିବର୍ତନ କରେ" ।

ପ୍ରଭୁ କାଥାରିନାଙ୍କୁ କହନ୍ତି "ପ୍ରେମ ବିନା ଆତ୍ମା ବଞ୍ଚି ପାରିବ ନାହିଁ । ଜଣେ ସବୁବେଳେ ପ୍ରେମ କରିବାକୁ ଚାହେଁ କାରଣ ପ୍ରେମ ଉପାଦାନରେ ହିଁ ତାଙ୍କୁ ସୃଷ୍ଟି କରାଯାଇଛି ଏବଂ ପ୍ରେମରେ ମୁଁ ତାଙ୍କୁ ସୃଷ୍ଟି କରିଛି" ।

### ୪. ଜନ୍ ମାରି ଭିଆନି

"ସମସ୍ତଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କର ନାହିଁ। ଇଶ୍ୱରଙ୍କୁ, ଦୂତମାନଙ୍କୁ ଏବଂ ସାଧୁ ସାଧ୍ୱୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କର, କାରଣ ସେମାନେ ତୁମର ଜନ ସାଧାରଣ" ।

"ଦିବ୍ୟଯଜ୍ଞଠାରୁ ବଳି ମହାନ ଆଉ କିଛି ନୁହଁ । ଯଦି ତାହାଠାରୁ ଅଧିକ ମୂଲ୍ୟବାନ ପ୍ରଭୁଙ୍କଠାରେ ଥାଆନ୍ତା, ତେବେ ତାହା ସେ ଆମକୁ ଦେଇଥାନ୍ତେ" ।

"ଜଣେ ଯାଜକ ଯେତେବେଳେ ସ୍ୱର୍ଗକୁ ଯାଏ କିମ୍ବା ନର୍କକୁ ଯାଏ ସେ କେବେ ଏକା ଯାଆନ୍ତି ନାହି କିନ୍ତୁ ତାଙ୍କ ପଛରେ ହଜାର ହଜାର ଲୋକେ ଯାଆନ୍ତି" ।

### ୫. ଲିମାର ସାଧ୍ୱୀ ରୋଜ

"ସ୍ୱର୍ଗକୁ ପହଞ୍ଚିବା ପାଇଁ କ୍ରୁଶ ବିନା ଅନ୍ୟ କୌଣସି ସିଢ଼ି ନାହି" ।

"ଦୁଃଖ ଯେପରି ବଢ଼ି ଚାଲେ ଇଶ୍ୱରଙ୍କର ଅନୁଗ୍ରହର ଦାନ ସେହିପରି ବଢ଼ିଚାଲେ" ।

"ଗରୀବ ଓ ରୋଗୀ ମାନଙ୍କ ସେବାରେ ଆମ୍ଭେ ଯୀଶୁଙ୍କୁ ସେବା କରିଥାଉ । ଆମର ପୋଡଶୀମାନଙ୍କୁ ସାହାଯ୍ୟ କରିବାରେ କେବେ ହେଁ ଅବହେଳା କରିବା ନାହିଁ କାରଣ ସେମାନଙ୍କଠାରେ ଆମ୍ଭେ ଯୀଶୁଙ୍କୁ ସେବା କରୁ" ।

### ୬. ସାଧୁ ମାକ୍ସମିଲିଆନ କଲ୍‌ବେ

"ଜଣେ କାଥଲିକ ହୁଅ: ବେଦୀ ସମ୍ମୁଖରେ ଯେବେ ତୁମେ ଜାନୁପାତ କର, ତୁମ୍ଭେ ଏହିଭଳି ଭାବରେ କର ଯେପରି ଅନ୍ୟମାନେ ତୁମଙ୍କୁ ଦେଖି ଚିହ୍ନି ପାରିବେ ଯେ ଯାହାଙ୍କ ସମ୍ମୁଖରେ ତୁମେ ଜାନୁପାତ କର ତାହାଙ୍କୁ ତୁମ୍ଭେ ଜାଣ" ।

"ବିମଳା ମାରୀୟାଙ୍କୁ ଯିଏ ନିଜ ମାଁ ରୂପେ ଗ୍ରହଣ କରିନାହିଁ, ଖ୍ରୀଷ୍ଟଙ୍କୁ ସେ ନିଜର ଭାଇ ରୂପେ ଗ୍ରହଣ କରି ପାରିବ ନାହିଁ" ।

"କେବଳ ମାରୀୟା ଇଶ୍ୱରଙ୍କ ଦ୍ୱାରା ଶୟତାନ ଉପରେ ବିଜୟ ଲାଭ କରିବାର ପ୍ରତିଶ୍ରୁତି ପାଇଛନ୍ତି । ଯେଉଁ ଆତ୍ମା ତାଙ୍କ ନିକଟରେ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରନ୍ତି ସେହି ପ୍ରକାର ଆତ୍ମା ମାନଙ୍କୁ ସେ ଖୋଜନ୍ତି ଯେପରି ତାଙ୍କ ହସ୍ତରେ ସେମାନେ

ଶକ୍ତିଶାଳୀ ଉପାଦାନ ହୋଇ ଶୟତାନକୁ ପରାସ୍ତ କରି ପ୍ରଭୁଙ୍କ ରାଜ୍ୟ ବିସ୍ତାର କରି ପାରିବେ" ।

**୭. ସାଧ୍ୱୀ ମାଦେର ତେରେସା**

"ରକ୍ତରେ ମୁଁ ଜଣେ ଆଲ୍‌ବିନିଆନ୍, ନାଗରିକତାରେ ଜଣେ ଭାରତୀୟ, ବିଶ୍ୱାସରେ ମୁଁ ଜଣେ କାଥଲିକ ସେବାଭଗ୍ନୀ । ମୋର ଆହ୍ୱାନ ସାରା ବିଶ୍ୱବାସୀଙ୍କ ପାଇଁ ତ ମୋର ହୃଦୟ ସମ୍ପୂର୍ଣ୍ଣ ରୂପେ ଯୀଶୁଙ୍କ ହୃଦୟ ପାଇଁ" ।

"ଯିଏ ଯାହା କହୁନା କାହିଁକି ନିଜର କର୍ତ୍ତବ୍ୟ କର, ସବୁ ବିଷୟକୁ ହସର ସହିତ ଗ୍ରହଣ କରିବା ଉଚିତ" ।

**୮. ଲିସିଉକ୍ସର ସାଧ୍ୱୀ ତେରେସା**

"ପ୍ରେମ ପାଇଁ ଯେହେତୁ ଆମର ହୃଦୟ ସୃଷ୍ଟି, ଆସନ୍ତୁ ଆମ୍ଭେ ପ୍ରେମ କରିବା" ।

"ମୋର ପଥ ପ୍ରଦର୍ଶକ ନକ୍ଷତ୍ର କେବଳ ଦୟା । ସେହି ନକ୍ଷତ୍ରର ଆଲୋକରେ ମୁଁ ଦେଖି ପାରୁଛି ମୋର ଜଳଯାତ୍ରାର ସିଧା ମାର୍ଗ । ଜଳ ଜାହାଜରେ ମୋ ଆଦର୍ଶ ଲେଖାଯାଇଛି, ତାହା ହେଲା, 'ପ୍ରେମରେ ବଞ୍ଚିବା' ।

"ପ୍ରଭୁ ଆମର ମହାନ କାର୍ଯ୍ୟ କିମ୍ବା କଷ୍ଟସାଧ୍ୟ କାର୍ଯ୍ୟ ଦେଖନ୍ତି ନାହିଁ କିନ୍ତୁ ସେ ଦେଖନ୍ତି ଯେଉଁ ପ୍ରେମରେ ଆମ୍ଭେ ସେଗୁଡିକୁ ସମ୍ପାଦନ କରୁଅଛୁ" ।

**୯. ସାଧୁ ଭିନ୍‌ସେନ୍ତ ଡି ପାଉଲ**

"ଗୋଟିଏ ସମାଜକୁ ଈଶ୍ୱରଙ୍କ ସହିତ ଓ ଜଣେ ବ୍ୟକ୍ତିଙ୍କୁ ଅନ୍ୟମାନଙ୍କ ସହିତ ଯୋଡ଼ିବାର ସିମେଣ୍ଟ ହେଉଛି ପ୍ରେମର କାର୍ଯ୍ୟ" ।

"ଯଦି ପରମେଶ୍ୱର ତୁମ ଜୀବନର କେନ୍ଦ୍ରବିନ୍ଦୁ ତେବେ କୌଣସି ଶବ୍ଦର ଆବଶ୍ୟକତା ନୁହେଁ । ତୁମର ଉପସ୍ଥିତି ଦ୍ୱାରା ସମସ୍ତଙ୍କର ହୃଦୟକୁ ତୁମ୍ଭେ ସ୍ପର୍ଶ କରିପାରିବ" ।

**୧୦. ସାଧୁ ପାଦ୍ରେ ପିଓ**

"ହେ ପ୍ରଭୁ ମୋର ଅତୀତ ତୁମ ଦୟାରେ, ମୋର ବର୍ତମାନ ତୁମ ପ୍ରେମରେ ଓ ମୋର ଭବିଷ୍ୟତ ତୁମ ଇଚ୍ଛାରେ ହେଉ" ।

"ଦିବ୍ୟ ମଞ୍ଜୁଷାର ପାର୍ଶ୍ୱରେ ସର୍ବଦା ମାରୀୟା ଉପସ୍ଥିତ ଥିବା କଣ ତୁମ୍ଭେ ଦେଖୁନାହଁ" ?

"ପୃଥିବୀ ସୂର୍ଯ୍ୟ ବିନା ଗୋଟିଏ ଦିନ ବଞ୍ଚିଯାଇ ପାରିବ କିନ୍ତୁ ଜଣେ ଖ୍ରୀଷ୍ଟିୟାନ ଦିବ୍ୟଯଜ୍ଞ ବିନା ମୂହୁର୍ତ୍ତକ ସୁଦ୍ଧା ବଞ୍ଚି ପାରିବ ନାହି" ।

**୧୧. ଆସିସିର ସାଧୁ ଫ୍ରାନ୍‌ସିସ**

"ଯେଉଁଠାରେ ଘୃଣା ଅଛି, ସେହିଠାରେ ମୁଁ ପ୍ରେମ ଆଣିପାରେ, ଯେଉଁଠାରେ ଅଛି କ୍ଷତ, ସେହିଠାରେ କ୍ଷମା, ଯେଉଁଠାରେ ସନ୍ଦେହ, ସେହିଠାରେ ବିଶ୍ୱାସ"।

"ତୁମେ ସମାଜକୁ ପବିତ୍ର କରିବ ଯେବେ ନିଜକୁ ତୁମେ ପବିତ୍ର କର"।

**୧୨. ଆଭିଲାର ସାଧ୍ୱୀ ଟେରେସା**

"ଯାହା କିଛି ଆସୁ ନା କାହିଁକି ଯେଉଁଠି ସାହସ ଅଛି ସେଥିରେ ସବୁକିଛି ଅଛି"।

"ଯଦି ମୋତେ ଉପଦେଶ ଦେବାକୁ କୁହାଯାଏ, ତେବେ ପ୍ରଥମେ ପିତାମାତାଙ୍କୁ କହିବି ଯେ ସେମାନେ ସାବଧାନ ହେବା ଉଚିତ କେଉଁମାନଙ୍କ ସହ ସେମାନଙ୍କ ପିଲାମାନେ ଯୌବନ ଅବସ୍ଥାରେ ମିଳାମିଶା ବା ସାଙ୍ଗ ହୁଅନ୍ତି, କାରଣ ଅଧିକାଂଶ ଭୂଲ୍ ସେହି ସମୟରେ ଘଟିଥାଏ ଏବଂ ଭଲ ଅପେକ୍ଷା ମନ୍ଦ କରିବାର ପ୍ରବୃତ୍ତି ଅତି ସହଜରେ ଆସିଥାଏ" ।

"ମାନସିକ ପ୍ରାର୍ଥନା ମୋ ମତରେ ଦୁଇଜଣ ବନ୍ଧୁଙ୍କ ମଧ୍ୟରେ ଘନିଷ୍ଟ ଭାବେ ଜଡ଼ିତ ହୋଇ ସବୁକିଛି ପ୍ରକାଶ କରିବା । ଏହାର ଅର୍ଥ ତାହାଙ୍କ ସହିତ ଏକାକୀ ଅଧିକାଂଶ ସମୟ ବିନିଯୋଗ କରିବା ଯିଏ ଆମକୁ ଭଲ ପାଆନ୍ତି ବୋଲି ଆମେ ଜାଣୁ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ଅଧିକ ଭାବିବା ଅପେକ୍ଷା

ଅଧିକ ପ୍ରେମ କରିବା ପୁଣି ଯାହା ପ୍ରେମକୁ ଉଦ୍ଦୀପୀତ କରିବ ତାହା କରିବା । ପ୍ରେମ ମହା ଆନନ୍ଦ ନୁହେଁ କିନ୍ତୁ ଇଶ୍ୱରଙ୍କୁ ସବୁଥିରେ ସନ୍ତୁଷ୍ଟ କରିବାର ଅଭିଳାଷ" ।

**୧୩. ସାଧୁ ମାର୍ଟିନ ଡି ପରେସ**

"ଦୟା ଓ କ୍ଷମା ପ୍ରେମର କାର୍ଯ୍ୟ ଅଟେ"।

"ରୋଗୀ ସେବା, ବଗିଚା ସଫା, ପନିପରିବା କାଟିବା, ଝାଡୁ କରିବା ସବୁକିଛି ଯଦି ପରମେଶ୍ୱରଙ୍କୁ ଅର୍ପଣ କରାଯାଏ ତାହା ପ୍ରାର୍ଥନା ଅଟେ"।

**୧୪. ସାଧୁ ଫ୍ରାନ୍‌ସିସ ଜେଭିୟର**

"ଏହିପରି ସାଧୁ କେହି ନାହାନ୍ତି ଯିଏ ଦୁଇଟି 'p'କୁ ଗୁରୁତ୍ୱ ଦେଇନାହାନ୍ତି, ସେଗୁଡ଼ିକ ହେଲା prayer and penance ଅର୍ଥାତ୍ ପ୍ରାର୍ଥନା ଓ ପ୍ରାୟଶ୍ଚିତ"।

"ଯଦି ତୁମ୍ଭେ ବିପଦରେ ପଡ଼ିଅଛ କିଅବା ତୁମ୍ଭର ହୃଦୟ ବିଚଳିତ ତେବେ ମାରୀୟାଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କର । ତାଙ୍କ ଆଡ଼କୁ ଦୃଷ୍ଟିପାତ କର ତହିଁରେ ତୁମ୍ଭେ ରକ୍ଷା ପାଇବ । ସେ ଆମର ସାନ୍ତ୍ୱନା ଦାୟିନୀ, ଆମର ସାହାଯ୍ୟ"।

"ମୁଁ ଯାତ୍ରା କରେ, କାମ କରେ, ମୋର ଦୁର୍ବଳ ଶରୀର ଯୋଗୁ କଷ୍ଟ ପାଏ, ପ୍ରାୟ ହଜାର ପ୍ରକାର ଅସୁବିଧାର ସମ୍ମୁଖିନ ହୁଏ, କିନ୍ତୁ ଏହିସବୁ କିଛି ନୁହଁ କାରଣ ଏହି ଜଗତ ଅତି କ୍ଷୁଦ୍ର"।

**୧୫. ସାଧୁ ସେବାଷ୍ଟିଆନ୍**

"ଖ୍ରୀଷ୍ଟଙ୍କ ଅଧିନରେ ଥିବା ଆତ୍ମା ମାନଙ୍କୁ ଛିଣିବା ପାଇଁ ଶୟତାନ ତାର ସମସ୍ତ ଶକ୍ତି ପ୍ରୟୋଗ କରିଥାଏ । ଶୟତାନଠାରେ ଲଢ଼େଇ କରି ପରମେଶ୍ୱରଙ୍କୁ ସେହି ଆତ୍ମାଗୁଡ଼ିକୁ ଫେରାଇବା ପାଇଁ ଆମେ ଯେଉଁ ପରିଶ୍ରମ କରୁ ସେଥିପାଇଁ କ୍ରୋଧ କରିବା ନାହିଁ" ।

ମୃତ୍ୟୁ ପୂର୍ବରୁ ସେ କହନ୍ତି," ପ୍ରଭୁ ଯୀଶୁ ମୋର ଆତ୍ମାକୁ ଗ୍ରହଣ କର । ପ୍ରଭୁ ସେମାନଙ୍କର ଏହି ପାପ ପାଇଁ ସେମାନେ ଦୋଷୀ ନ ହୁଅନ୍ତୁ" ।

## ୧୬. ପାଦୁଆର ସାଧୁ ଆନ୍ତୋଣୀ

"ଶବ୍ଦଠାରୁ କାର୍ଯ୍ୟ ଅଧିକ କଥା କହେ । ତୁମର ଶବ୍ଦ ଶିକ୍ଷା ଦେଉ, ତୁମର କାର୍ଯ୍ୟ କଥା କହୁ" ।

"ବିଶ୍ୱାସର ଆତ୍ମା ପ୍ରେମ । ପ୍ରେମକୁ ଜୀବନ୍ତ ରଖ, ପ୍ରେମ ବିନା ବିଶ୍ୱାସ ମୃତ" ।

"ଶରୀରର ଜୀବନ ଆତ୍ମା ଅଟେ । ଆତ୍ମାର ଜୀବନ ପରମେଶ୍ୱର ଅଟନ୍ତି" ।

## ୧୭. ଲୟୋଲାର ସାଧୁ ଇଗ୍ନାସିୟସ୍

"କାର୍ଯ୍ୟ କର ଯେପରି ସବୁକିଛି ତୁମ ଉପରେ ନିର୍ଭର କରେ ; ବିଶ୍ୱାସ କର ଯେପରି ସବୁକିଛି ପରମେଶ୍ୱରଙ୍କଠାରେ ନିର୍ଭର କରେ" ।

"ଯେଉଁମାନେ ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ କୌଣସି ପ୍ରମାଣର ଆବଶ୍ୟକତା ନାହିଁ । ଯେଉଁମାନେ ଅବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଯେତେ ପ୍ରମାଣ ଦେଲେ ମଧ୍ୟ ତାହା ଯଥେଷ୍ଟ ନୁହଁ" ।

"ଯାହାଙ୍କୁ ପରମେଶ୍ୱର ଅଧିକ ଯନ୍ତ୍ରଣା ଦିଅନ୍ତି ତାହଙ୍କୁ ସାଧୁ କରିବା ପାଇଁ ସେ ସେହି ଚିହ୍ନ ଦିଅନ୍ତି" ।

## ୧୮. କ୍ରୁଶର ସାଧୁ ଯୋହନ

"ଆମ ଜୀବନର ଅନ୍ତିମ ସମୟରେ ପରମେଶ୍ୱର ଆମର ଜାଗତିକ ସମ୍ପତି ଓ ମନୁଷ୍ୟର ସଫଳତା ଦେଖି ବିଚାର କରନ୍ତି ନାହିଁ କିନ୍ତୁ କେତେ ପ୍ରେମରେ ଆମେ ବଞ୍ଚିଛୁ ତାହା ଦେଖି ବିଚାର କରିବେ" ।

"ପରମେଶ୍ୱରଙ୍କ ପ୍ରଥମ ଭାଷା ନୀରବତା" ।

"ଆତ୍ମାର ଅନ୍ଧକାର ରାତ୍ରୀରେ ପରମେଶ୍ୱରଙ୍କ ଆଲୋକର ନଦୀ ପ୍ରବାହିତ ହୁଏ" ।

"ଅଧ୍ୟୟନରେ ତାଙ୍କୁ ଅନ୍ୱେଷଣ କର ତପସ୍ୟାରେ ତୁମେ ପାଇବ । ପ୍ରାର୍ଥନା ଦ୍ୱାରା ଆଘାତ କର ଧ୍ୟାନରେ ପାଇବ" ।

## ୧୯. ସାଧ୍ୱୀ ଆଲଫନ୍‌ସା

"ମୋର ଯନ୍ତ୍ରଣା ଯାହା ହେଉନା କାହିକି, ମୁ କେବେ ଅଭିଯୋଗ କରିବି ନାହିଁ, ଯଦି ମତେ ଅପମାନ ଦେଇ ଯିବାକୁ ପଡେ ତେବେ ଯୀଶୁଙ୍କର ପବିତ୍ର ହୃଦୟରେ ଆଶ୍ରୟ ନେବି" ।

"ତୁମେ ଯାଣ କି ମୁଁ କାହିକି ଆଜି ବିଶେଷଭାବରେ ଖୁସୀ । ମୁଁ ଖୁସୀ କାରଣ ଯୀଶୁ ମୋ ହୃଦୟରେ ଅଛନ୍ତି" ।

"ମୁଁ ନିଜକୁ ସମ୍ପୁର୍ଣ୍ଣ ରୂପେ ଯୀଶୁଙ୍କୁ ଦେଇଅଛି । ତାଙ୍କୁ ଯେମିତି ସନ୍ତୁଷ୍ଟ ସେମିତି ସେ ମୋ ସହିତ ବ୍ୟବହାର କରନ୍ତୁ । ଏହି ପୃଥିବୀରେ ମୋର କେବଳ ଗୋଟିଏ ଇଛା ତାହା ହେଲା ପରମେଶ୍ୱରଙ୍କ ପ୍ରେମ ପାଇଁ କଷ୍ଟ ସହିବା ଓ ସେଥିରେ ଆନନ୍ଦିତ ହେବା" ।

"ଗଲେଟ୍ ଆଲେସାନ୍ଦ୍ର ସେରେନେଲିଙ୍କୁ ମୁଁ କ୍ଷମା କରେ ଏବଂ ମୋ ସହିତ ସ୍ୱର୍ଗରେ ସେ ସର୍ବଦା ରହୁ ଏହା ମୁଁ କାମନା କରେ" ।

## ୨୦. ଜେରେମାଇନ୍ କାଉସିନ

"ହେ ପରମେଶ୍ୱର ଅଧିକ କ୍ଷୁଧା ବା ଅଧିକ ତୃଷା ଯେପରି ମୁଁ ନ ହୁଏ । ମୋର ମାଁଙ୍କୁ ସନ୍ତୁଷ୍ଟ କରିବା ପାଇଁ ମୋତେ ସାହାଯ୍ୟ କର । ତୁମକୁ ସନ୍ତୁଷ୍ଟ କରିବା ପାଇଁ ମୋତେ ସାହାଯ୍ୟ କର" ।

## ୨୧. ସାଧୁ ଗନସାଲଭ ଗାରସିଆ

ସହୀଦ ହେବା ସମୟରେ ତାଙ୍କର ଜଣେ ବନ୍ଧୁଙ୍କୁ ଏହି ପରି କହି ଥିଲେ "ହେ ମୋର ଉତ୍ତମ ବନ୍ଧୁ ପ୍ରଭୁ ତୁମ ସହିତ ରହନ୍ତୁ । ମୁଁ ସ୍ୱର୍ଗକୁ ଯାଉଅଛି । ଫାଦେର ସେବାସ୍ତିଆନ ଗନସାଲଭନଙ୍କୁ ମୋର ହୃଦୟ ଭରା ଆଲିଙ୍ଗନ ଜଣାଇବ" ।

## ୨୨. ମହାନ ସାଧୁ ବାସିଲ, ଜାନୁୟାରୀ -୨

"ଉତ୍ତମ କର୍ମ କେବେ ବୃଥାରେ ଯାଏ ନାହି; ଯିଏ ଶିଷ୍ଟତା ବପନ କରେ ସେ ବନ୍ଧୁତା ଅମଳ କରେ ପୁଣି ଯିଏ ଦୟା ବପନ କରେ ସେ ପ୍ରେମ ସଂଗ୍ରହ କରେ" ।

**୨୩. ସାଧୁ ଗ୍ରେଗରି ନାଜିଆନଜେନ୍**

"ଯେତେ ଛୋଟ ହେଉନା କାହିଁକି ଯିଏ ଅଭାବରେ ଅଛି ତାଙ୍କୁ କିଛି ଦିଅ; ଯାହାର କିଛି ନାହିଁ ତା ପାଇଁ ତାହା ଛୋଟ ନୁହେଁ । ଯାହା ଆମେ କରିପାରିବା ଯଦି ତାହା କରୁଛୁ ତେବେ ତାହା ପ୍ରଭୁଙ୍କ ପାଇଁ ମଧ୍ୟ ତାହା ଛୋଟ ନୁହେଁ" ।

**୨୪. ସାଧୁ ଫ୍ରାନସିସ ଡି ସେଇଲ୍ସ**

"ଜୀବନରେ କଷ୍ଟ ଓ ବିପରୀତ ପରିସ୍ଥିତିର ସମ୍ମୁଖୀନ ହେବା ସମୟରେ ସେଗୁଡିକୁ ଏଡେଇବା ବା ଭାଙ୍ଗିବା ପାଇଁ ଚେଷ୍ଟା କର ନାହିଁ । ବରଂ ସମୟ ଓ ଭଦ୍ରତା ଦ୍ୱାରା ନୁଆଁଇବା ପାଇଁ ଚେଷ୍ଟା କର" ।

**୨୫. ସାଧ୍ୱୀ ଆଗାତା (୨୩୧-୨୫୧) ଫେବୃୟାରୀ -୫**

"ସାରା ସୃଷ୍ଟିର ପ୍ରଭୂ ହେ ଯୀଶୁ ଖ୍ରୀଷ୍ଟ; ତୁମେ ମୋର ହୃଦୟକୁ ନିରୀକ୍ଷଣ କର, ମୋର ଇଚ୍ଛାକୁ ତୁମେ ଜାଣ । ମୁଁ ଯାହା ସବୁ କିଛି କରେ ତୁମର । ମୁଁ ତୁମର ମେଷ । ଶୟତାନକୁ ଜୟ କରିବା ପାଇଁ ମୋତେ ଯୋଗ୍ୟ କର" ।

**୨୬. ସାଧୁ ପଲ୍‌ମିକି (୧୮୬୪-୧୫୯୭) ଫେବୃୟାରୀ -୬**

"ଖୁସୀ ହେବା ପାଇଁ ଖ୍ରୀଷ୍ଟଙ୍କ ସାହାଯ୍ୟ ଭିକ୍ଷାକରେ । ମୁଁ ଖ୍ରୀଷ୍ଟଙ୍କ ଆଜ୍ଞା ପାଳନ କରେ ଓ ଖ୍ରୀଷ୍ଟଙ୍କ ଆଦର୍ଶ ଅନୁକରଣ କରି ମୋର ତାଡ଼ନାକାରୀ ମାନଙ୍କୁ କ୍ଷମା ଦିଏ । ସମସ୍ତଙ୍କୁ ପ୍ରଭୁ ଯେପରି ଦୟା କରନ୍ତୁ ସେଥିପାଇଁ ମୁଁ ତାହାଙ୍କଠାରେ ପ୍ରାର୍ଥନା କରେ ଓ ଆଶା କରେ ଯେପରି ଫଳବନ୍ତ ବର୍ଷା ପରି ମୋର ରକ୍ତ ମୋର ସାଥିମାନଙ୍କ ଉପରେ ପଡେ" ।

**୨୭. ସାଧୁ ମିଗୁଏଲ ଫେବ୍ରେସ କର୍ଦ୍ଦେରୋ (୧୮୫୪-୧୯୧୦) ଫେବୃୟାରୀ -୯**

"ସନ୍ତୁଷ୍ଟ ହୃଦୟ ହିଁ ଧନୀ ହୃଦୟ ଅଟେ । ପୁଣି ଯେଉଁ ହୃଦୟ ନିଜର ଅଭିଳାଷ ଗୁଡିକୁ ପରମେଶ୍ୱରଙ୍କ ଆଡେ ଦୃଷ୍ଟିପାତ କରନ୍ତି ସେହି ହୃଦୟ ସର୍ବଦା ସନ୍ତୁଷ୍ଟ ରହେ" ।

**୨୮. ସାଧ୍ୱୀ ସ୍କଲାଷ୍ଟିକା (୪୮୦-୫୪୩)- ଫେବୃୟାରୀ -୧୦**

"ଶୁଣିଲ ନାହିଁ ତୁମେ, ଯେବେ ପଚାରିଲି ତୁମଙ୍କୁ ଶୁଣିଲେ ମୋର ପ୍ରଭୂ ଯେବେ ମୁଁ ପଚାରିଲି ତାହାଙ୍କୁ" ।

୨୯. ସାଧୁ ପିତର ଦାମିଆନ୍ (୧୦୦୭-୧୦୭୨) - ଫେବୃୟାରୀ - ୨୧

"ପରମେଶ୍ୱରଙ୍କଠାରୁ ଆସୁଥିବା ଦୁଃଖକୁ ଧର୍ଯ୍ୟର ସହିତ ଗ୍ରହଣ କରିବା ସବୁଠାରୁ ଉତମ ପ୍ରାୟଶ୍ଚିତ । ଦୈନନ୍ଦିନ କର୍ତବ୍ୟକୁ ପୁଙ୍ଖାନୁପୁଙ୍ଖ ଭାବେ ନିଜର ସମସ୍ତ ଶକ୍ତି ସହ ଅଧ୍ୟୟନ ଓ କର୍ମ କରିବା ପାଇଁ ନିଜକୁ ସମର୍ପଣ କରିବା ଉତମ ପ୍ରାୟଶ୍ଚିତ" ।

୩୦. ସାଧ୍ୱୀ କାଥାରିନା ଡ୍ରେକ୍ସଲ୍ (୧୮୫୮-୧୯୫୫), ମାର୍ଚ୍ଚ-୩

"ଦିବ୍ୟଯଜ୍ଞ ଅନନ୍ତ ବଳିଦାନ ଅଟେ । ଏହା ଏକ ପ୍ରେମର ସଂସ୍କାର, ପ୍ରେମର କର୍ମ ପୁଣି ସବୁଠାରୁ ଶ୍ରେଷ୍ଠ ପ୍ରେମ" ।

୩୧. ସାଧ୍ୱୀ କଲେଟା (୧୩୮୧-୧୪୪୭)

"ଅନନ୍ତ ସ୍ୱର୍ଗରାଜ୍ୟ ଯିବା ପାଇଁ ଯଦି କୌଣସି ସତ୍ୟ ପଥ ଥାଏ ତେବେ ନିଶ୍ଚିତ ଭାବରେ ଆମେ କହିପାରିବା ଧର୍ଯ୍ୟରେ ସହ୍ୟ କରିଥିବା ଯନ୍ତ୍ରଣା ହିଁ ସେହି ପଥ ଅଟେ"

୩୨. ଫ୍ଲୁଏର ସାଧୁ ନିକୋଲାସ (୧୪୧୭-୧୪୮୭), ମାର୍ଚ୍ଚ-୨୧

"ଜୀବନର ପ୍ରତ୍ୟେକ ଅବସ୍ଥାରେ କିଛି ବିଶେଷ କର୍ତବ୍ୟ ଥାଏ, ସେହି କର୍ତବ୍ୟକୁ ଉତମ ରୂପେ କରିବା ଦ୍ୱାରା ଜଣେ ଆନନ୍ଦ ପାଇଥାଏ" ।

୩୩. ପାଓଲାର ସାଧୁ ଫ୍ରାନସିସ (୧୪୩୬-୧୫୦୭), ଏପ୍ରିଲ-୨

"ଆଘାତ ପ୍ରାପ୍ତ ବା କ୍ଷତ ଘଟଣାଟିକୁ ସ୍ମରଣ କରିବା ଆତ୍ମା ପାଇଁ ବିଷ ଓ କଳଙ୍କିତ ଅଟେ" ।

୩୪. ଖ୍ରଚେଷ୍ଟେରର ସାଧୁ ରିଚାର୍ଡ (୧୧୯୭-୧୨୫୩), ଏପ୍ରିଲ-୩

"ହେ ପ୍ରିୟ ପ୍ରଭୁ, ପ୍ରତିଦିନ ମୁଁ ତିନୋଟି ବିଷୟ ପାଇଁ ପ୍ରାର୍ଥନା କରେ: ଯେପରି ତୁମକୁ ମୁଁ ସ୍ୱଚ୍ଛ ଭାବରେ ଦେଖିପାରିବି, ଅଧିକ ଭାବେ ପ୍ରେମ କରି ପାରିବି ଏବଂ ଅତି ନିକଟରେ ତୁମକୁ ଅନୁସରଣ କରି ପାରିବି" ।

**୩୫. ସାଧୁ ଡମନିକ ସାଭିଓ (୧୮୪୨-୧୮୫୭), ମଇ-୬**

"ଖୁସୀ ହେବା ପାଇଁ ଏହି ପୃଥିବୀର କିଛି ମୁଁ ଆବଶ୍ୟକ କରେ ନାହିଁ। ମୁଁ କେବଳ ଯୀଶୁଙ୍କୁ ସ୍ୱର୍ଗରେ ଦେଖିବା ପାଇଁ ଚାହେଁ, ଯାହାଙ୍କୁ ବିଶ୍ୱାସର ଚକ୍ଷୁରେ ବର୍ତମାନ ମୁଁ ବେଦୀରେ ଦେଖେ ଓ ଆରାଧନା କରେ" ।

**୩୬. ସାଧ୍ୱୀ ମେରୀ ଡମିନିକା ମାଜ୍ଜାରେଲୋ (୧୮୩୭-୧୮୮୧), ମଇ-୧୪**

"ମନ୍ଦତା ବଦଳରେ ସବୁବେଳେ ଉତମତା କରିବାର ଅର୍ଥ ସତ୍ୟ ପ୍ରେମ" ।

**୩୭. ଆର୍କର ସାଧ୍ୱୀ ଯୋଆନା (୧୪୧୨-୧୪୩୧), ମଇ-୩୧**

"ପରମେଶ୍ୱରଙ୍କ ସହିତ ଏକାକୀ ରହିବା ଉତମ। ତାହାଙ୍କ ପ୍ରେମ, ତାହାଙ୍କ ପରାମର୍ଶ ଓ ତାହାଙ୍କ ବନ୍ଧୁତ୍ୱ ମୋତେ କେବେ ପରିତ୍ୟାଗ କରିବ ନାହିଁ। ତାହାଙ୍କ ଶକ୍ତିରେ ମରିବା ପର୍ଯ୍ୟନ୍ତ ମୁଁ ସାହାସୀ ହେବି, ସାହାସୀ ହେବି ମୁଁ ସାହାସୀ ହେବି" ।

**୩୮. ସାଧୁ ପ୍ରଥମ କ୍ଳେମେନ୍ତ**

"ଯେଉଁମାନେ ସାଧୁମାନଙ୍କୁ ଅନୁସରଣ କରନ୍ତି ସେମାନେ ସାଧୁ ହୁଅନ୍ତି, ଏଣୁ ସାଧୁ ମାନଙ୍କୁ ଅନୁସରଣ କର"।

"କାହିଁକି ଯୀଶୁ ବିବାହ କଲେ ନାହିଁ ? ମଣ୍ଡଳୀକୁ ଯୀଶୁ ନିଜର ପତ୍ନୀ ରୂପେ ଗ୍ରହଣ କରିଥିଲେ" ।

**୩୯. ହଙ୍ଗେରୀର ସାଧ୍ୱୀ ଏଲିସାବେଥ୍ (ନଭେମ୍ବର-୧୬)**

"ପ୍ରଭୁ ଯେତେବେଳେ କଣ୍ଟାର ମୁକୁଟ ପରିଧାନ କରନ୍ତି, କେମିତି ବା ମୁଁ ସ୍ୱର୍ଣ୍ଣ ମୁକୁଟ ପରିଧାନ କରିବି" ।

**୪୦. ସାଧୁ ଫ୍ରାନ୍‌ସିସ୍ ଜେଭିୟର (ଡିସେମ୍ବର-୩)**

"ସୁସମାଚାର ପ୍ରଚାର ପାଇଁ ବ୍ୟକ୍ତିଗତ ସାକ୍ଷ୍ୟ ବିନା ଅନ୍ୟ କୌଣସି ଉପାଦାନ ଅଧିକ ଫଳପ୍ରଦ ନୁହେଁ। ଧାର୍ମିକ ମତବାଦ ଉପରେ ଜଣେ ଯୁକ୍ତିତର୍କ କରିପାରେ କିନ୍ତୁ ବ୍ୟକ୍ତିଗତ ସାକ୍ଷ୍ୟ ଉପରେ କେହି ଯୁକ୍ତି କରନ୍ତି ନାହିଁ" ।

## ୪୧. ସାଧୁ ଯାକୁବ ଇନ୍ତେରସିସୁସ (ନଭେମ୍ବର-୨୭)

"ସାଧୁ ଯାକୁବଙ୍କ ଶରୀରକୁ ୨୮ ଭାଗରେ ଖଣ୍ଡ ବିଖଣ୍ଡିତ କରାଯାଇଥିଲା । ସେ କହନ୍ତି ମୁଁ ଜଣେ ଖ୍ରୀଷ୍ଟ ବିଶ୍ୱାସୀ..। ଏହି ମୃତ୍ୟୁ ଯଦିଓ ଭୟଙ୍କର ତଥାପି ଅନନ୍ତ ଜୀବନ ତୁଳନାରେ ଏହା ଅତି ନଗଣ୍ୟ ଅଟେ" ।

## ୪୨. ମହାନ ସାଧ୍ୱୀ ଜେରଟ୍ରୁଡ

ତୁମ ପ୍ରେମରୁ ଝରୁଥିବା ସେହି ଅନୁଗ୍ରହ ଗୁଡିକୁ ମୋରି ଆତ୍ମାରେ ଢାଳିଦିଅ । ତୁମ ହୃଦୟରେ ମୋର ହୃଦୟ ଏକତ୍ରିତ କର । ସମସ୍ତ ବିଷୟରେ ତୁମର ଇଚ୍ଛାରେ ମୋର ଇଚ୍ଛାକୁ ପୂର୍ଣ୍ଣ କର । ମୋର ପ୍ରତ୍ୟେକ ଇଚ୍ଛା ଓ କାର୍ଯ୍ୟ ତୁମ ଇଚ୍ଛାର ନିୟମରେ ପରିଚାଳିତ ହେଉ ।

## ୪୩. ମହାନ ସାଧୁ ଆଲବେର୍ଟ

"ପରମେଶ୍ୱରଙ୍କଠାରେ ତୁମର ଯେତିକି ଅଧିକ ଦୃଢ ବିଶ୍ୱାସ ଓ ଧୈର୍ଯ୍ୟ ରହେ, ସେତିକି ପରିମାଣରେ ତୁମେ ଯାହା ମାଗିବ ତାହା ପ୍ରଚୁର ଭାବେ ପ୍ରାପ୍ତ କରିବ । ମୋର ନିଜର କିଛି ନ ହରାଇ ମୁଁ କେବେ ହେଲେ ବାହାରେ ଅନ୍ୟମାନଙ୍କ ପାଇଁ କିଛି କରିନାହିଁ" ।

## *BIBLIOGRAPHY*


1. Thomas Kanayamplavan, *Saint Damien of Molokai, Jeevan Books,* Bharmanganam, 2011.
2. John Rose, *Saints and Feast Days,* Hail Jesus Publications, Bangalore, 2011.
3. George Kaitholil, *Feast Days Homilies,* St. Paul Society, Bandra, 2006.
4. P.J. Joseph, *Heroic Models of Discipleship,* Sat Prachar Press, Vol. 1, Indore, 2019.
5. P.J. Joseph, *Heroic Models of Discipleship,* Sat Prachar Press, Vol. 2, Indore, 2019.
6. Leonard Foley, *Saint of the Day*, Claretian Publications, Bangalore,
7. J.M. Mausolte, J.K. Mausolte, *Saint Companions for each Day,* St. Paul Society, Bandra, 1986.
8. Sr. Leela Moorhagil, *Remembering Mother Teresa, Queen of the Poor,* St. Pauline Publications,
9. Fr. Jose Vettickat, *Saint Jude Thaddeus,* Bharananganam, 2011.
10. Saint Rita from Cascia, *Life and Prayer.*
11. Rev. Thomas B. Mc Donough, *The Lives of the Saints,* Catholic Press, Inc. Chicago, 1962.
12. J. Puthenkalam and A. Mampra, *Sanctity in India,* The Reteat Yercaud, Chennai, 2000.
13. Fr. Ajay Sabhasundar, *Akasara Taraka Punja*, Archbishop's House, Satya Nagar, BBSR, 2013.




# ଡଃ. ଫାଦେର୍ ଅଜୟ କୁମାର ସଭାନ୍ଧୁ[illegible]ର

**ଜନ୍ମସ୍ଥାନ :** କନ୍ଧମାଳ ଜିଲ୍ଲା ଅନ୍ତର୍ଗତ, କାଟିଙ୍ଗିଆ ନିକଟବର୍ତ୍ତୀ କୁଟ୍ଟକା ଗ୍ରାମ ।
**ଶିକ୍ଷାଗତ ଯୋଗ୍ୟତା :** ରୋମର ଲାଟେରାନ ବିଶ୍ୱ ବିଦ୍ୟାଳୟରୁ ପବିତ୍ର ଧର୍ମଶାସ୍ତ୍ରରେ ଡକ୍ଟରେଟ ଉପାଧି ଲାଭ ।

**ଯାଜକୀୟ କାର୍ଯ୍ୟ :** ବାଲିଗୁଡ଼ା, ପଦନପୁର (ଖୋର୍ଦ୍ଧା), ସମ୍ବଲପୁର, ରାଞ୍ଚି, ଚେଙ୍ଗେନାଚେରୀ (କେରଳ) ଓ ବିଭିନ୍ନ ଶିକ୍ଷାନୁଷ୍ଠାନରେ ଶିକ୍ଷାଦାନ ତଥା ବିଭିନ୍ନ ଧାର୍ମିକ ଅନୁଷ୍ଠାନ ଓ ଧର୍ମାଞ୍ଚଳରେ ଧ୍ୟାନ ପ୍ରଚାର । ବର୍ତ୍ତମାନ ଭୁବନେଶ୍ୱର ପ୍ରୋ କାଥେଡ୍ରାଲ୍ ପାରିଶର ମୂଖ୍ୟ ଯାଜକ ।

**ପରିଭ୍ରମଣ ଓ ପରିଦର୍ଶନ :** ଇସ୍ରାୟେଲ ଓ ପାଲେଷ୍ଟାଇନ୍ (ବେଥ୍ଲେହେମ୍, ନାଜାରେଥ, ଗାଲିଲୀ, ଯେରୁସାଲେମ୍),ଇଟାଲୀ, ଫ୍ରାନ୍ସ, ଜେର୍ମାନୀ, ବେଲ୍ଜିୟମ, ନେଦରଲ୍ୟାଣ୍ଡ, ଲଣ୍ଡନ ଓ ଉତ୍ତର ଆମେରିକା (ନ୍ୟୁୟର୍କ, ୱାସିଙ୍ଗଟନ୍)


**ଲେଖକଙ୍କ ଲିଖିତ ଅନ୍ୟାନ୍ୟ ପୁସ୍ତକ :**